# ଜଣେ ଶିକ୍ଷକଙ୍କ କାହାଣୀ

ମଦନ ମୋହନ ପ୍ରଧାନ

ସୁହୃଦ୍ ପ୍ରକାଶନୀ

# ଜଣେ ଶିକ୍ଷକଙ୍କ କାହାଣୀ

ମଦନମୋହନ ପ୍ରଧାନ

ସୁହୃତ୍ ପ୍ରକାଶନୀ

# ଜଣେ ଶିକ୍ଷକଙ୍କ କାହାଣୀ

ଲେଖକ :

**ଡାକ୍ତର ମଦନମୋହନ ପ୍ରଧାନ**

ପ୍ରକାଶକ :

**ସୁହୃତ୍ ପ୍ରକାଶନୀ**
୩୪୮୧/୨ ପଲାଶୁଣୀ, ଭୁବନେଶ୍ୱର-୧୦

ପ୍ରଥମ ପ୍ରକାଶ : **୧୯୯୭**

ପ୍ରଚ୍ଛଦ ଚିତ୍ର :

**ପ୍ରହ୍ଲାଦ ବେହେରା**

ମୁଦ୍ରଣ :

**ଲିପିକାର**, ଝାଞ୍ଜିରିମଙ୍ଗଳା, କଟକ-୯

ମୂଲ୍ୟ : **ଟ ୫୦-୦୦**

**(ପଚାଶଟଙ୍କା ମାତ୍ର)**

JANE SHIKSHYAKANKA KAHANI

Author :

**Dr. Madan Mohan Pradhan**

Publisher :

**Suhrut Prakashani**

3481/2 Palasuni, Bhubaneswar-10
Year of Publication—1997

Cover Design :

**Prahallad Behera**

Printed at :

**Lipikar**

Jhanjirimangala, Cuttack-9

Price : Rupees **Fifty Only**

ବକ୍ଷ କକ୍ଷରୁ ବଞ୍ଚିତ

ପୃଥିବୀର ଅଗଣିତ ଅନାଥ-

ପିଲାମାନଙ୍କ ଉଦ୍ଦେଶ୍ୟରେ

ଅର୍ପଣ କରୁଛି···

# ପୃଷ୍ଠଭୂମି

୧୯୮୦ ମସିହାର କଥା । ମୁଁ ସେତେବେଳେ କଟକର ରେଭେନ୍‌ସା ମହାବିଦ୍ୟାଳୟର ଛାତ୍ର । ଜୀବନର ଆଦର୍ଶ ଅନୁସନ୍ଧାନ କରିବାରେ ସେତେବେଳେ ମୋ ଯୁବସୁଲଭ ମନଟା ଘୂରିବୁଲୁଥାଏ । ପିଲାଦିନରୁ ବିଭିନ୍ନ ସାମାଜିକ ତଥା ଧାର୍ମିକ ଅନୁଷ୍ଠାନ ଭିତରଦେଇ ଆସିଥିଲି । ଜନସେବାର ପ୍ରତ୍ୟୟ ପାଇବା ପାଇଁ ମହାପୁରୁଷମାନଙ୍କ ଜୀବନୀ ପଢୁଥିଲି । ଡାକ୍ତର ଅଥବା ଶିକ୍ଷକ—କେଉଁ ଭୂମିକାରେ ମୁଁ ସମାଜପାଇଁ ଅଧିକ ଫଳପ୍ରଦ ଭାବରେ କାମ କରିପାରିବି ବୋଲି ଦ୍ୱନ୍ଦ୍ୱରେ ପଡ଼ିଯାଉଥିଲି । ପିଲାବେଳୁ ଗାଁରେ ବଙ୍ଗାଳୀ କମ୍ପାଉଣ୍ଡର ବାବୁଙ୍କର ଧଳାପ୍ୟାଣ୍ଟ ସାର୍ଟ ଓ ଇଞ୍ଜେକ୍‌ସନ ଦେବା ଆଦିକୁ ଦେଖି ଡାକ୍ତର ହେବାପାଇଁ ଇଚ୍ଛାଥିଲି । ମାତ୍ର ସଂସାରକୁ ଅଧିକରୁ ଅଧିକ ଜାଣିବାପରେ ଶିକ୍ଷକର ଭୂମିକା ମୋପାଇଁ ମହତ୍ତ୍ୱପୂର୍ଣ୍ଣ ମନେହେଲା । ତେବେ ଦୁଇଟିଯାକ ଜୀବନ ଏକାଠି ମିଶି ରହିପାରିବାର ସ୍ୱପ୍ନ ବି ମୁଁ ଦେଖୁଥିଲି । ଏଭଳି ଏକ ବାସ୍ତବ ଜୀବନ କାହାଣୀ ପଢ଼ିଲି ପରେ ମୋ ଭିତରେ ଏକ ସ୍ଥିର ଦୃଷ୍ଟି ଆସିପାରିଲା ପରି ମୋର ଅବବୋଧ ହେଲା ।

ସେତେବେଳେ ଗ୍ରୀଷ୍ମାବକାଶ । ମୁଁ ଡାକ୍ତରୀ ପ୍ରବେଶିକା ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥିଲି ଏବଂ ମାତୃଭବନରେ ଶ୍ରୀ ଅରବିନ୍ଦଙ୍କ ଶିକ୍ଷାଦର୍ଶନ ଉପରେ ଆଧାରିତ ଏକ ଶିକ୍ଷକ ପ୍ରଶିକ୍ଷଣ ଶିବିରରେ ଯୋଗଦେଇଥିଲି । ପ୍ରାୟ ଏକୋଇଶ ଦିନ କାଳ ଏହି ଶିବିରର ଅନ୍ତେବାସୀ ଭାବରେ ମୁଁ ଶିକ୍ଷକଭାଇ ଅପାମାନଙ୍କ ସହ ମିଶି ଜଣେ ଶିକ୍ଷକ ହୋଇଯିବାର ସ୍ୱପ୍ନ ଦେଖୁଥିଲି ।

ପ୍ରଶିକ୍ଷଣ କାର୍ଯ୍ୟକ୍ରମର ଦାୟିତ୍ୱ ଚନ୍ଦ୍ରଭାଇ (ପ୍ରଫେସର ଚନ୍ଦ୍ରରଞ୍ଜନ ଦାସ) ଙ୍କ ଉପରେ ନ୍ୟସ୍ତ କରାଯାଇଥିଲା । ପୃଥିବୀର ଗହନ ବଣରୁ ସଫଳ, ଅସଫଳ, ସମ୍ଭାବ୍ୟ ଶିକ୍ଷା ପରୀକ୍ଷଣଗୁଡ଼ିକୁ ସେ ଅବତାରଣା କରି ମୋର ସ୍ୱପ୍ନର ଦିଗନ୍ତକୁ ଏତେ ଦୂରକୁ ପ୍ରସାରିତ ଦେଉଥିଲେ ଯେ ମୁଁ ଜଣେ ଡାକ୍ତର ହେବାର ଅଭିଳାଷରୁ ବାହାରିଆସି ଜଣେ ଶିକ୍ଷକର ଜୀବନ ବଞ୍ଚିବା ପାଇଁ ବ୍ୟଗ୍ର ହୋଇଉଠୁଥିଲି ।

ଦିନେ ଜଣେ ଆମନ୍ତ୍ରିତ ପ୍ରଶିକ୍ଷକଙ୍କ ଅନୁପସ୍ଥିତିରେ ଚନ୍ଦ୍ରଭାଇ ଏକ ସ୍ୱତନ୍ତ୍ର କ୍ଲାସ ନେଉଥିଲେ । ସେଦିନ ସେ ଗୋଟିଏ ବହି ଧରି ଆସିଥିଲେ । ବହିଟିର ନାଁ ଥିଲା "ମିଷ୍ଟର ଡକ୍ଟର" । ପୋଲଣ୍ଡର ଇହୁଦୀ ପରିବାରରେ ଜନ୍ମଗ୍ରହଣ କରିଥିବା

ଜଣେ ଡାକ୍ତରଙ୍କର ଜୀବନ କାହାଣୀ ଥିଲା ବହିର ବିଷୟବସ୍ତୁ । ଡାକ୍ତରଜଣଙ୍କ ଡାକ୍ତରୀ ବ୍ୟବସାୟ ଛାଡ଼ି ଜୀବନସାରା ଶିକ୍ଷକ ଭାବରେ ଅନାଥ ପିଲାମାନଙ୍କ ପାଇଁ ନିଜ ଜୀବନକୁ ସମର୍ପିତ କରି ରଖିଥିଲେ । ବିଭିନ୍ନ ପ୍ରକାର, ଧର୍ମୀୟ, ସାମାଜିକ, ରାଜନୀତିକ ଝଡ଼ଝଞ୍ଜାର ପ୍ରତିକୂଳତା ଭିତରେ ସେ ତାଙ୍କର ପରୀକ୍ଷାମୂଳକ ଶିକ୍ଷା ଓ ପିଲାଙ୍କ ଜୀବନ ବିକାଶ ପାଇଁ ଅବିଶ୍ରାନ୍ତ ଭାବରେ ଲାଗିରହିଥିଲେ । ପରିଶେଷରେ ମାନବକୃତ ମୃତ୍ୟୁକୁଣ୍ଡ ଭିତରେ ଜୀବନ ଲୀଳା ସମ୍ବରଣ କରିଥିଲେ । ଶିକ୍ଷକ ଏସବୁ ବିଷୟରେ ସମ୍ୟକ ଭାବରେ ଆଲୋକପାତ କରି ବହି ଭିତରୁ ଏକ ଅନୁଚ୍ଛେଦ ପଢ଼ି ପ୍ରଶିକ୍ଷଣ ଶିବିରର ବାତାବରଣକୁ ଅଧିକ ଗାମ୍ଭୀର୍ଯ୍ୟପୂର୍ଣ୍ଣ କରିଦେଲେ । ଡାକ୍ତରଙ୍କ ଅନାଥାଶ୍ରମରୁ ଯେତେବେଳେ ପିଲାମାନେ ସେମାନଙ୍କର ଶିକ୍ଷା ସମାପନ କରି ବିଦାୟ ନିଅନ୍ତି, ସେତେବେଳେ ଡାକ୍ତର ଗୋଟିଏ ପ୍ରକାର ସନ୍ଦେଶ ଦିଅନ୍ତି । ସେହି ସନ୍ଦେଶଟି ଥିଲା ପଠିତ ଅନୁଚ୍ଛେଦର ବିଷୟବସ୍ତୁ । ସେହି ଅନୁଚ୍ଛେଦର ମର୍ମାର୍ଥ ଏହିପରି ଥିଲା—

"ଆମେମାନେ ତୁମକୁ ଈଶ୍ୱର ଦେଇନାହୁଁ, କାରଣ ତୁମକୁ ହିଁ ଈଶ୍ୱରଙ୍କୁ ଅନୁସନ୍ଧାନ କରିବାକୁ ହେବ । ତୁମେ ତୁମ ଅନ୍ତର ଭିତରେ ତାଙ୍କୁ ଠାବ କରିବ ।

ଆମେ ତୁମକୁ କୌଣସି ଦେଶ ଦେଇନାହୁଁ । କାରଣ ତୁମେ ତୁମର ଦେଶ ବାଛିବ ଏବଂ ଏହି ବାଛିବା ତୁମ ହୃଦୟ ଓ ବିବେକର ପସନ୍ଦ ଅନୁସାରେ ହେବ ।

ଆମେ ତୁମକୁ ମାନବ ପ୍ରେମ ଦେଇନାହୁଁ । କାରଣ କ୍ଷମା ବିନା ପ୍ରେମ ଅସମ୍ଭବ । ତୁମକୁ କଠିନ କର୍ମ ମାଧ୍ୟମରେ ପ୍ରେମକୁ ଖୋଜିବାକୁ ହେବ ।

ମାତ୍ର ଆମେ ତୁମକୁ ଗୋଟିଏ କଥା ଦେଉଛୁ । ତାହାହେଲା ଏକ ଉତ୍ତମ ଜୀବନପାଇଁ ତୁମ ଭିତରେ ଅଭୀପ୍‌ସା ଭରିଦେଉଛୁ । ଏହି ଜୀବନ ସତ୍ୟ ଓ ନ୍ୟାୟ ଉପରେ ପ୍ରତିଷ୍ଠିତ ରହିବ ଏବଂ ତୁମମାନଙ୍କ ଜୀବନର ଏହାହିଁ ପ୍ରକୃତ ଲକ୍ଷ୍ୟ ଓ ଉଦ୍ଦେଶ୍ୟ ।

ଆମେ ଆଶା କରୁଛୁ ତୁମର ଏହି ଅଭୀପ୍‌ସା ତୁମକୁ ଈଶ୍ୱର ତଥା ତୁମ ଦେଶ ଓ ପ୍ରେମ ନିକଟରେ ପହଞ୍ଚାଇଦେବ ।"

ସେହି କ୍ଲାସପରେ ମୁଁ ସେଦିନ ପ୍ରଶିକ୍ଷଣ କାର୍ଯ୍ୟସୂଚୀ ଭିତରେ ଆଉ ମନୋ-ନିବେଶ କରିପାରିଲି ନାହିଁ । କାହାର ଧାସପଡ଼ିଆରେ ବାଦଲଭରା ଆକାଶକୁ ଚାହିଁ ରହିଲି । ଗହଳି ଭିତରେ ଥାଇ ବି ମୁଁ ଭାବନା ରାଜ୍ୟରେ ବିଚ୍ଛିନ୍ନ ହୋଇଗଲି । ସତେ ଯେପରି ମୋ ଭିତରେ ଜଣେ ଡାକ୍ତର ଓ ଜଣେ ଶିକ୍ଷକ ପ୍ରେରଣାର ଦୁଇଟି ଖୁଣ୍ଟ ହୋଇ ଏକ ଭବିଷ୍ୟତ ସଂସାରକୁ ଆହ୍ୱାନ କରିବା ପାଇଁ ଆଗେଇ ଆସୁଥିଲେ ।

ମୁଁ ଚଉଧୁରୀଙ୍କଠାରୁ ସେହି ବହି ମାଗିଆଣିଥିଲି । ସେତେବେଳର ଅନୁର୍ବର ମସ୍ତିଷ୍କରେ ୨୬୭ ପୃଷ୍ଠାର ଇଂରାଜୀ ପୁସ୍ତକ ପଢ଼ିଲି । ଅନ୍ୟଦେଶ ଅନ୍ୟ ଜଳବାୟୁର ଏକ ଜୀବନ କାହାଣୀ । ଜଣେ ପ୍ରତିଷ୍ଠିତ ଡାକ୍ତର ସେଠିକାର ପ୍ରତିକୂଳ ସାମାଜିକ, ରାଜନୀତିକ ଓ ବର୍ବରତାପୂର୍ଣ୍ଣ ପରିସ୍ଥିତି ଭିତରେ ମୁଖ୍ୟତଃ ଜଣେ ଶିକ୍ଷକର ଭୂମିକାରେ ବୀରପୁରୁଷର ମର୍ଯ୍ୟାଦା ବହନ କରି ଜୀବନ ବଞ୍ଚୁଥିଲେ । ଯେ ମୃତ୍ୟୁକୁ ଆଖି ଆଗରେ ଦେଖୁଥିଲେ, ଶିରା ପ୍ରଶିରାରେ ମୃତ୍ୟୁର ତାଣ୍ଡବ ଲହରୀକୁ ଅନୁଭବ କରୁଥିଲେ; ମାତ୍ର ମୃତ୍ୟୁକୁ ଭୟ କରୁନଥିଲେ । ୨୦୦ ଜଣ ଅନାଥ ପିଲାଙ୍କ ଭାଗ୍ୟରେ ଭାଗ୍ୟ ମିଶାଇ ସେ ମହାପ୍ରୟାଣର ପଥିକ ସାଜିଥିଲେ ।

ପ୍ରବେଶିକା ପରୀକ୍ଷାରେ ସଫଳତା ହାସଲ କରି ମୁଁ କଟକର ଶ୍ରୀରାମଚନ୍ଦ୍ର ଭେଷଜ ମହାବିଦ୍ୟାଳୟରେ ଡାକ୍ତରୀ ପଢ଼ିବାର ସୁଯୋଗ ପାଇଲି । ନିପଟ ଗାଁ ଭିତରେ ବୃତ୍ତିକରି ଜୀବନ ଆରମ୍ଭକଲି । ତାପରେ ଭାରତ ଜ୍ଞାନବିଜ୍ଞାନ ସମିତି ମାଧ୍ୟମରେ ଦୀର୍ଘ ଛଅ ବର୍ଷ କାଳ ଏକ ଶିକ୍ଷା ଆନ୍ଦୋଳନରେ ତଥା ପୁରପଲ୍ଲୀରେ ବୁଲିବାର ସୁଯୋଗ ପାଇଲି । ଆମ ଦେଶର ଶିକ୍ଷା ତଥା ଶିକ୍ଷକମାନଙ୍କୁ ଅତି ନିକଟରୁ ଦେଖିଲି । ମୋର ସେହି ଡାକ୍ତରଙ୍କ କଥା ମନେପଡ଼ିଗଲା । ଚଉଧୁରୀଙ୍କଠାରୁ ପୁଣି ବହିଟି ପଢ଼ିବା ପାଇଁ ମାଗିଆଣିଲି । ଧୀରସ୍ଥିର ଚିତ୍ତରେ ବହିକୁ ଏ ମୁଣ୍ଡରୁ ସେମୁଣ୍ଡ-ଯାଏ ପଢ଼ି ନିଃଶ୍ୱାସ ମାରିଲି । ଡାକ୍ତରଙ୍କ ଜୀବନ-ଦର୍ପଣରେ ମୋ ଜୀବନକୁ ଦେଖିଲି ଏବଂ ଏହି ଜୀବନବୃତ୍ତାନ୍ତଟିକୁ ଓଡ଼ିଆ ପାଠକମାନଙ୍କ ପାଖରେ ପହଞ୍ଚାଇବାର ଏକ ଉଦ୍ୟମ ଆରମ୍ଭକଲି । ଜାଣିନାହିଁ ପୁସ୍ତକ କାହା ପାଇଁ ପ୍ରେରଣାର ଉତ୍ସ ହୋଇପାରିବ କି ନାହିଁ ? ତଥାପି ସେହି ମହାତ୍ମା ଡାକ୍ତର ଜାନୁସ୍ କୋର୍ଜାକ୍ ଓଡ଼ିଆ ମାନସରେ ଅମର ହୋଇ ରହିପାରିବେ ବୋଲି ମୋର ଏକ ସାମାନ୍ୟ ଆଶା ପୁସ୍ତକ ରଚନା ପଛରେ ନିହିତ ହୋଇ ରହିଛି ।

ପୁସ୍ତକ ରଚନା ପଛରେ ଚଉଧୁରୀଙ୍କର ପ୍ରେରଣା ଓ ଉତ୍ସାହ ମୋତେ ଅଧିକ ସନ୍ତୁଷ୍ଟ କରିପାରିଛି ଏବଂ ତାଙ୍କ ପ୍ରେରଣା ମୋ ବ୍ୟକ୍ତିଗତ ଜୀବନ ତଥା ଆନୁଷ୍ଠାନିକ ଜୀବନକୁ ଆହୁରି ମହତ୍ତର କରି ରଖିବ ବୋଲି ମୋର ଦୃଢ଼ ବିଶ୍ୱାସ ରହିଛି । ମୁଁ ଚଉଧୁରୀଙ୍କ ନିକଟରେ ଏହି ପୁସ୍ତକଟିର ଆତ୍ମପ୍ରକାଶ ପାଇଁ କୃତଜ୍ଞତା ଜ୍ଞାପନ କରୁଛି ।

ପାଣ୍ଡୁଲିପିଟିକୁ ତନ୍ନ ତନ୍ନ କରି ଦେଖି ସଜାଡ଼ିଦେବାରେ ଆନ୍ତରିକ ଉଦ୍ୟମ କରିଥିବା ମୋର ପ୍ରିୟ ଗୌରାଙ୍ଗ ଭାଇ (ଅଧ୍ୟାପକ ଡଃ ଗୌରାଙ୍ଗ ଚରଣ ଦାଶ) ଏବଂ ସାବିତ୍ରୀ ଭାଉଜ (ଅଧ୍ୟାପିକା ଡଃ ସାବିତ୍ରୀ ଦାସ)ଙ୍କ ନିକଟରେ ମୋର ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରୁଛି ।

ପୁସ୍ତକଟିର ପ୍ରକାଶନ ପାଇଁ ଅଧିକ ବ୍ୟାକୁଳତା ପ୍ରକାଶ କରିଥିବା ଏବଂ ଏଥିପାଇଁ ବାସ୍ତବ ଭୂଇଁରେ ସାହାଯ୍ୟ କରିବାର ଭରସା ଦେଇଥିବା କୁମୁଦିନୀ ଅପା (ଶ୍ରୀମତୀ କୁମୁଦିନୀ ଗୁରୁ,) ପାରିବାରିକ କ୍ଷେତ୍ରରେ ଆସୁଥିବା ପ୍ରତିକୂଳ ମୁହୂର୍ତ୍ତଗୁଡ଼ିକରେ ଧୈର୍ଯ୍ୟ ନହରାଇ, ମନ ଓ ହୃଦୟରେ ସାହସ ଓ ପ୍ରେରଣା ଭରିଦେଇଥିବା ମୋର ସହଧର୍ମିଣୀ ରାନୀ (ଶ୍ରୀମତୀ ରେଣୁବାଳା ସାମଲ) ତଥା ମୋର ସାନ ସାନ ଦୁଇ ପୁତ୍ର, ଯେଉଁମାନେ ପିତାର ସ୍ନେହ ପାଇବାପାଇଁ ଅପେକ୍ଷା କରିଥାନ୍ତି; ମାତ୍ର ମୋର ବ୍ୟସ୍ତତା ଯୋଗୁଁ ଏଥିରୁ ବଞ୍ଚିତ ହୁଅନ୍ତି, —ଏ ସମସ୍ତେ ମୋତେ ପ୍ରତ୍ୟକ୍ଷ ଏବଂ ପରୋକ୍ଷ ଭାବରେ ସହାୟକ ହୋଇଥିବାରୁ ସେମାନଙ୍କ ନିକଟରେ ମୁଁ ଚିର ଋଣୀ ।



॥ ଇତି ॥

**ଡକ୍ଟର ମଦନମୋହନ ପ୍ରଧାନ**

## (୧) ଜାନୁସ୍ କୋର୍ଯାକ

ଜାନୁସ୍ କୋର୍ଯାକଙ୍କ ପ୍ରକୃତ ନାମ ହେନେରୀକ୍ ଗୋଲ୍ଡ଼ସ୍ମିଥ୍ । ତାଙ୍କର ପ୍ରକୃତ ଜନ୍ମ ବର୍ଷଟି ସ୍ପଷ୍ଟରେ ଜଣାନାହିଁ । ୧୯୪୨ ମସିହା ଜୁଲାଇ ୨୧ ତାରିଖରେ ସେ ତାଙ୍କ ଜନ୍ମଦିନ ପାଳନ ଅବସରରେ ଦିନଲିପିରେ ଲେଖିଥିଲେ—

"ଆସନ୍ତା କାଲି ମୋର ଜନ୍ମଦିନ । ମାତ୍ର ଏହି ଜନ୍ମଦିନଟି ତେଷଠିତମ ନା ଚଉଷଠିତମ ସେକଥା ମୋତେ ଜଣାନାହିଁ । କାରଣ ମୋ ପିତା ମୋ ବୟସକୁ ରେଜିଷ୍ଟ୍ରେସନ୍ ଖାତାରେ କମାଇ କରି ଲେଟିଥିଲେ । ମାଆ କହୁଥିଲେ ଏସବୁ ପିତାଙ୍କର ଅବହେଳା ଯୋଗୁଁ ହୋଇଥିଲା । ମାତ୍ର ମୋ ପିତା ଥିଲେ ଜଣେ ଓକିଲ । ଜନ୍ମ ରେଜିଷ୍ଟ୍ରେସନ୍, ଜନ୍ମ ପ୍ରମାଣପତ୍ର ଆଦି ସମ୍ବନ୍ଧରେ ପିତାଙ୍କର ଅନ୍ୟମାନଙ୍କ ଅପେକ୍ଷା ନିଶ୍ଚିତ ଭାବରେ ଅଧିକ ଜ୍ଞାନ ଥିବ ।"

ଊନବିଂଶ ଶତାବ୍ଦୀରେ ରୁଷ୍ ଅଧିକୃତ ପୋଲାଣ୍ଡରେ ବାପା ମାଆମାନେ ପୁଅମାନଙ୍କ ବୟସ କମାଇ ଲେଖୁଥିଲେ । ୨୫ ବର୍ଷ ପୂରିଲେ ପୁଅ ପିଲାଙ୍କୁ ବାଧ୍ୟତାମୂଳକ ଭାବରେ ସୈନ୍ୟବାହିନୀରେ ଯୋଗଦେବାକୁ ପଡ଼ୁଥିଲା । ବୟସ କମ୍ କରି ଲେଖିଥିଲେ ସୈନ୍ୟବାହିନୀରେ ଯୋଗଦେଲାବେଳକୁ ପୁଅ ଆଉ ଟିକିଏ ବଡ଼ ହୋଇଯାଇଥିବ ଏବଂ ତା' ଦେହରେ ବଳ ଲାଗିଯାଇଥିବ ବୋଲି ଆଶାରଖି ବାପାମାଆମାନେ ଏହିପରି ମିଛରେ ଜନ୍ମ ବୟସ ଊଣା କରି ଲେଖୁଥିଲେ ।

ଜାନୁସ୍ କୋର୍ଯାକଙ୍କ ଜନ୍ମ ବର୍ଷ ଯେପରି ଠିକ୍ ଭାବରେ ଜଣାନାହିଁ, ତାଙ୍କର ମୃତ୍ୟୁ ତାରିଖ ବି ସେହିପରି ଅଜଣା । ୱେର୍ଷୋ ବା ଇହୁଦୀ ବସ୍ତିରେ ରହୁଥିବା ଇହୁଦୀମାନଙ୍କୁ ଜର୍ମାନମାନେ ଦଳ ଦଳ କରି ହତ୍ୟା କରିଥିଲେ । ଜାନୁସ୍ କୋର୍ଯାକ୍ ଅନାଥ ଇହୁଦୀ ପିଲାଙ୍କୁ ସାଙ୍ଗରେ ନେଇ ଏହି ଗଣହତ୍ୟା ଆଗରେ ଆତ୍ମବଳୀ ଦେଇଥିଲେ । ଠିକ୍ କେଉଁ ତାରିଖରେ ତାଙ୍କର ଅପମୃତ୍ୟୁ ଘଟିଲା, ତାହା ନିର୍ଣ୍ଣୟ କରିବା କଷ୍ଟକର । କାରଣ ଏ ସମ୍ବନ୍ଧରେ କୌଣସି ଲିଖିତ ପ୍ରମାଣ ମିଳୁନାହିଁ ।

ଜାନୁସ୍ କୋର୍ଯାକ୍ ଥିଲେ ଜଣେ ଅସାଧାରଣ ବ୍ୟକ୍ତି । ସାଧାରଣ ମଣିଷପରି ସେ କେବେ ନିଜ ପାଇଁ କିଛି ଉଦ୍ୟମ କରିନଥିଲେ । ଅନାଥ ଇହୁଦୀ ପିଲାମାନଙ୍କ ପାଇଁ ସେ ସମସ୍ତ ଜୀବନ ଉତ୍ସର୍ଗ କରିଦେଇଥିଲେ । ସେ ନିଜର ଘର ସଂସାର କରିନଥିଲେ । ବାହା ନହୋଇ ଅନେକ ଅନାଥ ପିଲାଙ୍କୁ ପ୍ରକୃତ ପିତୃ ହୃଦୟ

ପ୍ରଦାନ କରି ଅମର ହୋଇ ରହିଗଲେ । ଏଭଳି ଏକ ବିରଳ ମାନବ ଚରିତ୍ର ଇତିହାସ ପୃଷ୍ଠାରେ ଚିର ବନ୍ଦନୀୟ ହୋଇ କାଳ କାଳକୁ ରହିଗଲା । ଯେଉଁମାନେ ଡାକ୍ତରଙ୍କୁ ଆଗରୁ ଜାଣିଥିଲେ, ସେମାନଙ୍କ ପାଇଁ ତାଙ୍କର ମୃତ୍ୟୁ—ଏକ ଯୁଗର ଅବସାନ କହିଲେ ଅତ୍ୟୁକ୍ତି ହେବନାହିଁ ।

କୋର୍ଯାକ୍ ତାଙ୍କ ଜୀବନକୁ ସାତୋଟି ପର୍ଯ୍ୟାୟରେ ବିଭକ୍ତ କରିଥିଲେ । ମାତ୍ର ସେ ଏହି ସାତ ସଂଖ୍ୟାକୁ ଏପରି ଆଦର ନେଇଥିବାର କାରଣ କଅଣ ତାହା ଜାଣିବା କଷ୍ଟକର । ଜାନୁସ୍ କୋର୍ଯାକ୍ ଲେଖିଛନ୍ତି—"ମୁଁ ଭଲଭାବରେ ଜାଣେ ଯେ ପ୍ରତ୍ୟେକଙ୍କ ଜୀବନକୁ ପାଞ୍ଚଟି ଦିଗରୁ ସମାନ ଭାବରେ ବିଭକ୍ତ କରିଯାଇ ପାରିବ ଯଥା :—ଜୀବନ, ଯୁଦ୍ଧ, ଐଶ୍ୱର୍ଯ୍ୟ ବା ଦାରିଦ୍ର୍ୟ, ସଫଳତା ବା ବିଫଳତା ଏବଂ ବିପଦ ।" ମାତ୍ର ଜିପ୍‌ସିମାନଙ୍କର "ସାତ" ସଂଖ୍ୟାଟି ଉପରେ କୋର୍ଯାକ୍‌ଙ୍କ ଅଧିକ ବିଶ୍ୱାସ ରହିଥିଲା ।

କୋର୍ଯାକ୍‌ଙ୍କ ଏଭଳି ବିଶ୍ୱାସକୁ ଲକ୍ଷ୍ୟକଲେ ମନେହେବ ଯେ ଜଣେ ଭାଗ୍ୟବାଦୀ ଥିଲେ । ବାସ୍ତବରେ କୋର୍ଯାକ୍ ସଂଖ୍ୟା ବିଦ୍ୟାକୁ ବ୍ୟବହାର କରି ଜୀବନର ଅନେକ ଗୁଡ଼ିଏ ନିଷ୍ପତ୍ତି ମଧ୍ୟ ନେଇଥିଲେ ।

କୋର୍ଯାକ୍, ପାଲେଷ୍ଟାଇନ୍‌ରେ ରହୁଥିବା ତାଙ୍କ ବନ୍ଧୁ ଜୋସେଫ୍ ହେଲପର୍ଣ୍ଣଙ୍କୁ ଲେଖିଥିବା ଚିଠିରେ ଏ ବିଷୟରେ ସ୍ପଷ୍ଟ ଭାବରେ ଉଲ୍ଲେଖ କରିଥିଲେ ।

"ପ୍ରତି ୧୦ ବର୍ଷ ବ୍ୟବଧାନରେ ଜୀବନର ସଫଳତାଗୁଡ଼ିକୁ ହିସାବ ନିକାଶ କରି ଦେଖିବାକୁ ଇଚ୍ଛାହୁଏ । ମାତ୍ର ଦେଖିବାକୁ ମିଳେ ବିଫଳତା ଓ ହତାଶର ଏକ ତାଲିକା ଫର୍ଦ୍ଦ ଏବଂ ତା'ପରେ ଜଣେ ଅବଚେତନ ଭାବରେ ଆଶାୟୀ ହୋଇ ପରବର୍ତ୍ତୀ ୧୦ ବର୍ଷ ପାଇଁ ଉଚ୍ଚାଭିଳାଷୀ କାର୍ଯ୍ୟସୂଚୀ ପ୍ରସ୍ତୁତ କରିଦିଏ ।"

ହେନେରିକ୍ ଗୋଲ୍‌ଡ଼ସ୍ମିଥ୍‌ଙ୍କ ସ୍କୁଲ ଡାଏରୀରେ ଲେଖାଥିଲା "ଲୋକମାନେ କହନ୍ତି; ପ୍ରତି ୭ ବର୍ଷରେ ପ୍ରତ୍ୟେକ ଲୋକର କିଛି ନା କିଛି ପରିବର୍ତ୍ତନ ଘଟେ । ଚିନ୍ତା, କାର୍ଯ୍ୟ, ଶରୀର ଗଠନ ଓ ଶରୀର ଅଭିବୃଦ୍ଧି ସବୁ କ୍ଷେତ୍ରରେ ଏହି ପରିବର୍ତ୍ତନ ପ୍ରକାଶ ପାଏ । ମୋର ଆସନ୍ତା ୧୪ ବର୍ଷ ଭିତରେ କି ପ୍ରକାର ପରିବର୍ତ୍ତନ ହେବ, ସେଥିପାଇଁ ମୁଁ ଉକ୍ରଣ୍ଠାର ସହ ଅପେକ୍ଷା କରି ରହିଛି ।"

ପିଲାଦିନୁ ସେ ଜୀବନକୁ ଯେମିତି ଭାବରେ ବୁଝିଥିଲେ, ସାରାଜୀବନ ସେପରି ବିତାଇଥିଲେ । ଜୀବନର ଶେଷ କେଇମାସ ଭିତରେ କୋର୍ଯାକ୍ ଆତ୍ମଜୀବନୀ ରଚନା କରିବାପାଇଁ ପ୍ରୟାସ କରିଥିଲେ । ଭାଗ୍ୟବଶତଃ ତାଙ୍କର ଅନେକ ଲେଖା ତାଙ୍କ ଅନୁରାଗୀମାନଙ୍କ ଦ୍ୱାରା ଉଦ୍ଧାର କରାଯାଇପାରିଥିଲା । ଏହି ଆତ୍ମଜୀବନୀରେ ସେ

ଜୀବନକୁ ଏକ ଭିନ୍ନ ଢଗରୁ ବିଶ୍ଳେଷଣ କରିଥିଲେ । ଏଥିରେ କୌଣସି ରହସ୍ୟବାଦର ପ୍ରଭାବ ପରିଲକ୍ଷିତ ହୋଇନଥିଲା ।

ଆତ୍ମଜୀବନୀରେ କୋର୍ଚାକ୍ ଜୀବନର ଘଟଣାବଳୀଗୁଡ଼ିକୁ ଜୀବନଠାରୁ ଅଲଗା କରି ଦର୍ଶାଇଛନ୍ତି । ସେ ଏଥିପାଇଁ ଉପମା ଦେଇ ବୁଝାଇଛନ୍ତି । ସେ ଲେଖିଛନ୍ତି, ଯତେଯେପରି ଅପରିଚିତ ପଡ଼ିଆରେ ସେ ଜଣେ ଖେଳାଳୀ ଥିଲେ । କିମ୍ବା ମାଟି ବିଷୟରେ ଅବଗତ ନ ହୋଇ କୂଅ ଖୋଳୁଥିଲେ । ଗଭୀରରୁ ଗଭୀରକୁ କୂଅ ଖୋଳିଲାବେଳେ ଯେ କେବଳ କଅଁଳ ଭସଭସିଆ ମାଟି ପାଉନଥିଲେ । ପଥୁରିଆ ଟାଣମାଟି, ବଙ୍କାଟଙ୍କା ହୋଇ ମାଡ଼ିଥିବା ଗଛର ଚେର, ମାଟି ଭିତରେ ଆଗରୁ ପୋତି ହୋଇ ରହିଥିବା ନାନାପ୍ରକାର ବସ୍ତୁର ସମ୍ମୁଖୀନ ହେଉଥିଲେ । ଏସବୁ ଭିତରେ ସେ ଝାଳନାଳ ହୋଇ ମାଟି ତାଡ଼ି ବାହାରକୁ ଫୋପାଡ଼ି ଦେଉଥିଲେ ।

ବାସ୍ତବରେ କୋର୍ଚାକ୍ଙ୍କ ଜୀବନୀକୁ କେତେକ ତଥ୍ୟକୁ ଭିତ୍ତିକରି ବା ବୟସ ଅନୁସାରେ ସଜାଇ ଲେଖିବା ସହଜ ନୁହେଁ । ସାଧାରଣତଃ ଶିଶୁ ଅବସ୍ଥାରେ ଅନେକଙ୍କ ଜୀବନରେ ଯେପରି କିଛି ଆଖିଦୃଶିଆ ଘଟଣା ଘଟିନଥାଏ । ବାଲ୍ୟାବସ୍ଥାରେ ଅନେକ କିଛି ଅନୁଭୂତ ଠୁଳ ହୁଅନ୍ତି ଏବଂ କୈଶୋର ଅବସ୍ଥାରେ ଅନେକ ନୂତନ ସ୍ୱପ୍ନ ଭିତରୁ ନୂତନ ଘଟଣାମାନ ମୁଣ୍ଡଟେକି ବାହାରନ୍ତି । ତା'ପରେ ଆଗତ ହୁଏ ମାନବ ଜୀବନର ସୃଜନଶୀଳ ସମୟ । କିନ୍ତୁ କୋର୍ଚାକଙ୍କ ଜୀବନ ଏଥିରୁ ବ୍ୟତିକ୍ରମ ଥିଲା ।

ଜାନୁସ୍ କୋର୍ଚାକଙ୍କ କୌଣସି ଏକ ଲେଖାରେ ଥିଲା—ବାଲ୍ୟକାଳ ପର୍ବତମାଳା ସଦୃଶ । ପର୍ବତମାଳାର ଗିରି କନ୍ଦରରୁ ଝରିଆସେ କୁଳୁକୁଳୁ ହୋଇ ଜୀବନ ନିର୍ଝରଣୀଟିଏ । ନିର୍ଝରଣୀଟି କ୍ରମେ ଜୀବନ ନଈରେ ପରିଣତ ହୁଏ । ଆଗକୁ ଗତିକରେ ଅଙ୍କାବଙ୍କା ହୋଇ । ଜୀବନ ନଈର ସ୍ରୋତ ହୁଏ ପ୍ରଖର । ଜୀବନ ନଈର ଏହି ପ୍ରଖର ସ୍ରୋତର ମୂଳଉତ୍ସ ଯେଉଁ ବାଲ୍ୟକାଳ, ତାକୁ ଏତେ ଉପର-ଠାଉରିଆ ଭାବରେ କିପରି ଅବା ବର୍ଣ୍ଣନା କରାଯାଇ ପାରିବ ।

ଜାନୁସ୍ କୋର୍ଚାକ୍ ଜଣେ ଅଭିଜ୍ଞ ଡାକ୍ତର ହିସାବରେ ଯେପରି ସୁପ୍ରତିଷ୍ଠିତ ଥିଲେ ପିଲାଙ୍କ ଶିକ୍ଷା, ଲାଳନ ପାଳନ ସମ୍ବନ୍ଧରେ ବି ସେହିପରି ବିଖ୍ୟାତ ତଥା ବିପ୍ଳବୀ ଚିନ୍ତାନାୟକ ଥିଲେ । ତାଙ୍କର ଜୀବନ ଥିଲା ସୃଜନଶୀଳ । ଏହି ସୃଜନଶୀଳତାର ମୁଖ୍ୟ ଗନ୍ତାଘର ଥିଲା ତାଙ୍କ ପିଲାଦିନ । ଏହାକୁ ସ୍ମରଣ କରି ସେ ନିଜ ଭିତରେ ନୂତନ ପ୍ରେରଣା ଏବଂ ନୂତନ ଶକ୍ତି ପାଇ ପାରୁଥିଲେ । ସମସ୍ତ ବାଧା-ବିଘ୍ନ ଓ ଦ୍ୱନ୍ଦ୍ୱ ସତ୍ତ୍ୱେ ତାଙ୍କର ଜୀବନ ନଈ-ପ୍ରଖର ସ୍ରୋତ ଧରି ଅନନ୍ତ ଶାଶ୍ୱତର ସାଗର ବକ୍ଷକୁ ଧାଇଁଯାଇଥିଲା ।

"ମୁଁ ଯେତେବେଳେ ସାନ ହୋଇଯିବି" ପୁସ୍ତକରେ କୋର୍ଜାକ୍ ଏକ କାଳ୍ପନିକ ଚରିତ୍ରର ଉଦାହରଣ ଦେଇ ଲେଖିଛନ୍ତି, "ବ୍ୟକ୍ତିଟି ପୁନର୍ବାର ବାଲ୍ୟ-ଅବସ୍ଥାକୁ ଫେରିଯିବାକୁ ଇଚ୍ଛାକଲା । କାରଣ ପିଲାଦିନର ପରି ଗଳ୍ପ ଶୁଣିବା ପାଇଁ ତା'ର ପ୍ରବଳ ଆଗ୍ରହ ହେଲା ।"

ଜଣେ ଶିଶୁର ମନରେ ଥିବା କୋମଳତା ଏବଂ ମାନସିକ ଭାବକୁ ଜାନୁସ୍ କୋର୍ଜାକ୍ ଅନେକ ଜାଗାରେ ବର୍ଣ୍ଣନା କରିଛନ୍ତି । ସେ କହୁଥିଲେ, ପ୍ରେରଣା, କଳ୍ପନା, ପ୍ରତିଛବି ଆଦି ପିଲାର ଆଖିଆଗରେ ବିଭିନ୍ନ ଭାବରେ, ବିଭିନ୍ନ ସମୟରେ ନାଚିଉଠନ୍ତି ଏବଂ ଗ୍ରହଣଶୀଳ କଳ୍ପନାପ୍ରବଣ ଶିଶୁ ମନ ଭିତରେ ପ୍ରବେଶ କରନ୍ତି ।

କୋର୍ଜାକ୍ଙ୍କ ଜୀବନକୁ ହୃଦୟଙ୍ଗମ କରିବାକୁ ହେଲେ, ନିଜକୁ କୋର୍ଜାକ୍ଙ୍କ ଜୀବନ ସହ ଏକାତ୍ମ କରିଦେବାକୁ ହେବ । ତାଙ୍କ ଜୀବନ ସହ ଆଗକୁ ବା ପଛକୁ ଚାଲିବାକୁ ପଡ଼ିବ । ତାଙ୍କର ଗୌରବ, ଦୁଃଖ, ଯନ୍ତ୍ରଣା, ଗ୍ଲାନି, ଉଦାସୀନତା, ରାଗ ଅଭିମାନ ପ୍ରତିହିଂସା ଆଦିକୁ ଗ୍ରହଣ କରି ଇତିହାସର ସେଇ ସମୟକୁ ନିଜ ଭିତରେ ଅନୁଭବ କରିବାକୁ ପଡ଼ିବ । ୧୮୮୦ ମସିହାରେ ମଧ୍ୟବିତ୍ତ ଶ୍ରେଣୀର କୋହଲ ମାନବବାଦର ସମୟଠାରୁ ୧୯୪୨ ମସିହାର ଇହୁଦୀ ଗଣହତ୍ୟା ସମୟ ପର୍ଯ୍ୟନ୍ତ ଇତିହାସର ପ୍ରତି ପୃଷ୍ଠାକୁ ଭଲଭାବରେ ହଜମ କରିବାକୁ ପଡ଼ିବ । କୋର୍ଜାକ୍ଙ୍କ ସ୍ୱପ୍ନ ସହ ନିଜେ ସ୍ୱପ୍ନ ଦେଖିପାରିଲେ । ତାଙ୍କ କଳ୍ପନାର ରାଜ୍ୟକୁ ନିଜେ ଯାଇପାରିଲେ ଏବଂ ଏସବୁ ସ୍ୱପ୍ନ ଓ କଳ୍ପନା ଯେ ବାସ୍ତବରେ ରୂପାନ୍ତରିତ ହୋଇପାରିବ, ସେଥିପାଇଁ ଦୃଢ଼ ବିଶ୍ୱାସ ରଖିପାରିଲେ, କୋର୍ଜାକ୍ଙ୍କ ଜୀବନୀକୁ ଯଥାର୍ଥରେ ବୁଝିହେବ ।

## (୨) ବଂଶ ପରମ୍ପରା

ଜାନୁସ୍ କୋର୍ଜାକ ବଂଶ ପରମ୍ପରା ଭିତରେ ବାନ୍ଧିହୋଇ ଯାଇନଥିଲେ । ମାତ୍ର ପରିବାରର ଗୁରୁଜନମାନଙ୍କ ପ୍ରତି ତାଙ୍କର ଗଭୀର ଭକ୍ତି ଓ ସମ୍ମାନ ରହିଥିଲା । ପିତାମାତାଙ୍କର ସ୍ନେହ ଶ୍ରଦ୍ଧା ଓ ପୂର୍ବପୁରୁଷଙ୍କର ଆଦର୍ଶ ତାଙ୍କ ଜୀବନର ଗତିପଥକୁ ସମ୍ବେଦନଶୀଳ କରିଥିଲା । ଏଥିପାଇଁ ସେ ପରିବାର ନିକଟରେ ଋଣୀ ବୋଲି ସ୍ୱୀକାର କରୁଥିଲେ ।

ପିତାମାତାଙ୍କ ଉଦ୍ଦେଶ୍ୟରେ ଅର୍ପଣ କରିଥିବା ତାଙ୍କର ଗୋଟିଏ ବହିରେ ସେ କୃତଜ୍ଞତା ଜ୍ଞାପନ କରି ଲେଖିଛନ୍ତି, "ହେ ମୋର ପ୍ରିୟତମ ପିତାମାତା । ତୁମର

ତଥା ତୁମ ପୂର୍ବପୁରୁଷମାନଙ୍କର ସମସ୍ତ କଷ୍ଟ ଯନ୍ତ୍ରଣା ଓ ବଳବତ୍ତ ଅଭିଳାଷରୁ ମୁଁ ଆଜି ଉଚ୍ଚ ଓ ସରୁ ସୌଧଟିଏ ହୋଇ ଛିଡ଼ାହେବା ସକାଶେ ଉଦ୍ୟମ କରୁଛୁ । ଆମ ପରିବାରର ଏକମାତ୍ର ୩୦୦ ବର୍ଷର ପୂର୍ବପୁରୁଷମାନଙ୍କର ଅସ୍ଥିକଙ୍କାଳ ତ ମିଶିଲେ ଅସଂଖ୍ୟ । କିନ୍ତୁ, ସେମାନଙ୍କର ନାଁଗୁଡ଼ିକ କେତେ ଅଲଗା ଅଲଗା ସତେ !''

କୋର୍ଚ୍ଚାକଙ୍କ ପୂର୍ବପୁରୁଷମାନଙ୍କ ମୂଳ ହେଉଛି ଇହୁଦୀ ଓ ସେମାନେ ପାଲେଷ୍ଟାଇନ୍‌ରୁ ପୋଲାଣ୍ଡକୁ ଚାଲିଆସିଥିଲେ । ନୈଷ୍ଠିକ ଇହୁଦୀ ସଂସ୍କୃତି ଓ ପରମ୍ପରା ଭିତରେ ସେମାନଙ୍କର ବଂଶାନୁଗତ ପାରିବାରିକ ଜୀବନ ଗଢ଼ିଆସିଥିଲା । ପୋଲାଣ୍ଡକୁ ଆସିଲା ପରେ ପୋଲାଣ୍ଡର ଖ୍ରୀଷ୍ଟିଆନ ସଂସ୍କୃତି ଓ ପରମ୍ପରା ଦ୍ୱାରା ସେମାନଙ୍କ ପାରିବାରିକ ଚଳଣି ପ୍ରଭାବିତ ହେଲା ଏବଂ କାଳକ୍ରମେ ସମ୍ପୂର୍ଣ୍ଣ ଭାବରେ ପୋଲାଣ୍ଡୀୟ ହୋଇଗଲା ।

ଏହା ସ୍ୱାଭାବିକ ଯେ, ଜଣେ ଗୋଟିଏ ସମାଜ ଛାଡ଼ି ଆଉ ଗୋଟିଏ ସମାଜରେ ବାସିନ୍ଦା ହେଲେ । ପୂର୍ବ ଚାଲିଚଳନ ଓ ପରମ୍ପରାଠାରୁ ଜୀବନଧାରା ବିଚ୍ଛିନ୍ନ ହୋଇଯାଏ । ପୂର୍ବପୁରୁଷଙ୍କ ଧର୍ମ, ପରମ୍ପରା, ଯାବତୀୟ ଗୌରବମୟ ଇତିହାସ ଆଦି ନିରର୍ଥକ ମନେହୁଏ ।

ଏହି ପରିବର୍ତ୍ତିତ ଧାରାରେ କୋର୍ଚ୍ଚାକ ଧର୍ମୀୟ ପରମ୍ପରାଠାରୁ ମୁକ୍ତ ହୋଇ-ଯାଇଥିଲେ । ଏସବୁ ସତ୍ତ୍ୱେ ପୂର୍ବପୁରୁଷଙ୍କ ପ୍ରତି କୋର୍ଚ୍ଚାକଙ୍କର ଗଭୀର ଅନୁରକ୍ତି ଥିଲା । ପରିବାରର ସଦସ୍ୟଙ୍କ ସହିତ ଆତ୍ମିକ ସମ୍ପର୍କକୁ ସେ ବଜାୟ ରଖିଥିଲେ ଏବଂ ଏଥିପାଇଁ ଗର୍ବ ଅନୁଭବ କରୁଥିଲେ । ଆତ୍ମଜୀବନୀରେ ସେ ଲେଖିଛନ୍ତି—''ମୋ ପରି ଗୋସେଇଁ ବାପା ଝରକାରେ କାଚଲଗାଇବା କାମ କରୁଥିଲେ । ସେଥିପାଇଁ ମୁଁ ବହୁତ ଖୁସି । କାରଣ କାଚ ଭିତରଦେଇ ଉଷ୍ମତା ଏବଂ ଆଲୋକ ଘର ଭିତରକୁ ପ୍ରବେଶ କରିଥାଏ ।''

ଅନ୍ୟ ଏକ ସ୍ଥାନରେ ସେ କହିଛନ୍ତି, ''ମୋ ଲେଖାମାନଙ୍କରେ ମୁଁ ମୋ ପିତାଙ୍କ ପାଇଁ ଅନେକ ସ୍ଥାନ ଦେଇଛି । ମୁଁ କଅଣ ଅନୁସନ୍ଧାନ କରିବି, କାହାକୁ ଆଶ୍ରୟ କରି ମଣିଷଟିଏ ହେବି ଏବଂ ମୋ ଗୋସେଇଁବାପା କେଉଁ ପ୍ରକାର ସଫଳତା ହାସଲ କରିବା ସକାଶେ ଏତେ ବର୍ଷ ଧରି ଅଧ୍ୟବସାୟ କରିଥିଲେ—ଏସବୁକୁ ବୁଝିପାରିବା ପାଇଁ ମୋ ପିତା ମୋତେ କ୍ଷମ କରାଇଛନ୍ତି । ଏଥିପାଇଁ ମାଆଙ୍କର ଭୂମିକା ବି କିଛି କମ୍ ନୁହେଁ । ମୁଁ ଯେତେବେଳେ ଅନେକ ଅନାଥ ପିଲାମାନଙ୍କ ପାଇଁ ଉଭୟ ମାଆ ଓ ବାପାର ଭୂମିକା ଗ୍ରହଣ କଲି, ସେତେବେଳେ ବୁଝିପାରିଲି ପିଲାମାନଙ୍କ ପାଇଁ ବାପା ମାଆଙ୍କର ଭୂମିକା କଅଣ ଏବଂ ସେମାନେ ଏତେ ଅପରିହାର୍ଯ୍ୟ କାହିଁକି ? ମୋ ବାପା ମା'ଙ୍କୁ ମୋର ଅଶେଷ ଧନ୍ୟବାଦ, କାରଣ ସେମାନଙ୍କ ସକାଶେ ମୁଁ ଏ ସତ୍ୟକୁ ଭଲଭାବରେ ଉପଲବ୍ଧି କରିପାରିଲି ।''

କୋର୍ଚ୍ଚାକ ତାଙ୍କ ମା'ଙ୍କ କଫିନ ପାଖ ସ୍ମୃତି ପଥରରେ ଖୋଦେଇ ଲେଖିଥିଲେ, "ମୁଁ ତୁମର ନୀତି ନିୟମଗୁଡ଼ିକୁ ଭୁଲିଯାଇ ନାହିଁ, ସେଗୁଡ଼ିକୁ କେବେ ବି ଅମାନ୍ୟ କରିନାହିଁ ।"

ବାପା ମାଆଙ୍କ ସ୍ନେହ ମମତା ଛଡ଼ା ଆହୁରି ଅନେକ ପାରିବେଶିକ କାରଣ କୋର୍ଚ୍ଚାକଙ୍କୁ ନିଜ ପରିବାର ପ୍ରତି ଏଭଳି ଅନୁରକ୍ତ କରି ରଖିଥିଲା । ସେତେବେଳେ ପୋଲାଣ୍ଡର ପରିବେଶ ବହୁତ ଭଲ ଥିଲା । ଧନର ପ୍ରାଚୁର୍ଯ୍ୟ ଭରିରହିଥିଲା । ମାତ୍ର ପରେ ବହିଃଶତ୍ରୁର ଆକ୍ରମଣ ଦ୍ୱାରା ଏସବୁ ନଷ୍ଟ ହୋଇଗଲା । କୋର୍ଚ୍ଚାକଙ୍କ ଜନ୍ମ ସମୟରେ ପୋଲଣ୍ଡର ସାମାଜିକ, ରାଜନୀତିକ ପରିସ୍ଥିତି ଅତ୍ୟନ୍ତ ଶୁଭଙ୍କର ଥିଲା । ଉଗ୍ର, ଜାତୀୟତାବାଦର ପ୍ରାଧାନ୍ୟ ନଥିଲା । ଇହୁଦୀ ବିରୋଧୀ ମନୋଭାବ ସୃଷ୍ଟି ହୋଇ-ନଥିଲା । ମାତ୍ର ପରେ ଇହୁଦୀ ବିରୋଧୀ ସ୍ଳୋଗାନମାନ ପୋଲାଣ୍ଡର ପ୍ରଗତିଶୀଳ ମାନସିକ ବାତାବରଣକୁ ଆଚ୍ଛାଦିତ କରିଦେଇଥିଲା ।

ହେନେରିକ୍ ଗୋଲ୍ଡ଼ସ୍ମିଥ୍‌ଙ୍କ ବାପାଙ୍କ ନାମ ଥିଲା ଜୋସେଫ୍ ଗୋଲ୍ଡ଼-ସ୍ମିଥ । ସେ ଜଣେ ନାମଜାଦା ଓ ପ୍ରତିଷ୍ଠିତ ଓକିଲ ଥିଲେ । ବିବାହ ବିଚ୍ଛେଦ ଆଇନ୍ ଉପରେ ସେ ଥିଲେ ବିଶାରଦ । ହେନେରିକ୍ ଗୋଲ୍ଡ଼ସ୍ମିଥ୍‌ଙ୍କ ଗୋସେଇଁ-ବାପା ଥିଲେ ଜଣେ ଡାକ୍ତର । ସେ ଲବ୍‌ଲିନ୍ ନିକଟରେ ବାସ କରୁଥିଲେ । ମା'ଙ୍କ ନାମ ଥିଲା, ମେଘଲିଆ ଗେବିକା । ସେ ପୋଲାଣ୍ଡର ଏକ ସଂସ୍କୃତିସମ୍ପନ୍ନ ପରିବାରର କନ୍ୟା । ୧୯୪୦ ମସିହାରେ କୌଣସି ଏକ ସରକାରୀ କାଗଜପତ୍ର ପୂରଣ କଲାବେଳେ କୋର୍ଚ୍ଚାକ ଗୋସେଇଁବାପାଙ୍କ ବଦଳରେ ଅଜାଙ୍କ ନାମ ଗେବିକ୍ ଲେଖିଥିଲେ । ଜାତୀୟତା ସ୍ଥାନରେ ଲେଖିଥିଲେ ପୋଲାଣ୍ଡୀୟ । ଏଠାରେ ମନେ-ରଖିବାକୁ ହେବ ଯେ ଗେବିକ୍ ଥିଲେ ପୋଲଣ୍ଡର ଅଧିବାସୀ ଏବଂ ସେ ହେଉଛନ୍ତି କୋର୍ଚ୍ଚାଙ୍କ ମା'ଙ୍କ ବାପା । ଏଥିରୁ ଉପଲବ୍ଧ ହେଉଛି ଯେ କୋର୍ଚ୍ଚାକ୍ ପୂର୍ବପୁରୁଷଙ୍କ ମୂଳ ଭିଟାମାଟିରେ ନିଜକୁ ବାନ୍ଧି ରଖିନଥିଲେ । ପୋଲଣ୍ଡର ମାଟି, ପାଣି, ପବନ, ସବୁକିଛିକୁ ସେ ନିଜର କରିନେଇଥିଲେ ।

ତାଙ୍କର ଏକ ପୁରୁଣା ଡାଏରୀରେ ଲେଖାଥିଲା—ମୋ ନାଁ ସାଙ୍ଗରେ ମୋ ଗୋସେଇଁ ବାପାଙ୍କର ନାଁ ଯୋଡ଼ା ହୋଇ ରହିଛି । ମୋ ଗୋସେଇଁ ବାପାଙ୍କ ନାଁ ଥିଲା ହିର୍‌ସ ଏବଂ ବାପା ମୋ ନାଁ ଦେଇଥିଲେ ହେନେରିକ୍ । ମୋ ନାମକରଣ ଏପରି କରିବା ପାଇଁ ବାପା ହକ୍‌ଦାର ଥିଲେ, କାରଣ ତାଙ୍କ ଗୋସେଇଁ ବାପାଙ୍କ ନାମ ଅନୁସାରେ ବାପାଙ୍କ ନାଁ ଦିଆଯାଇଥିଲା । କିନ୍ତୁ, ମୋ ଦାଦା, ପିଉସୀ ଆଦିଙ୍କ ନାଁ ଖ୍ରୀଷ୍ଟିଆନ ନାମ ଅନୁଯାରେ—ମାରିଆ, ଲୋଇସ୍, ମାଗ୍‌ଦାଲେନା, ଜାକୋବ୍, ଏବଂ କାରୋଲ ଆଦି ଦିଆଯାଇଥିଲା ।

୧୮୫୦ ଦଶକରେ ଏହିଭଳି ନାଁ ସବୁ ଦିଆଯାଉଥିଲା । ସେତେବେଳେ ଅନେକ ଲୋକ ଦେଶ ଛାଡ଼ି ଚାଲିଆସୁଥିଲେ ବିଦେଶରେ ବସତି ସ୍ଥାପନ କରିବା ପାଇଁ । ଚାରିଆଡ଼େ ଭ୍ରାତୃତ୍ୱର ବାତାବରଣ ଖେଳାଇ ହୋଇ ରହିଥିଲା । ସବୁ ଜାତିର ଲୋକମାନଙ୍କ ପାଇଁ ଏକ ଈଶ୍ୱରୀୟ ମୁକ୍ତିର ଧ୍ୱନି ପ୍ରତିଧ୍ୱନିତ ହେଉଥିଲା । ଅନ୍ୟ ଦେଶରୁ ଆସିଥିବା ଲୋକମାନଙ୍କୁ ଆଦରନେବାର ମହାନୁଭବତା ରହିଥିଲା । ଏହି ପରିବାରଗୁଡ଼ିକରେ ଧନସମ୍ପତ୍ତିର ପ୍ରାଚୁର୍ଯ୍ୟ ଥିଲା । ଏହା ଉଦାର ମନୋଭାବ ଏବଂ ମୁକ୍ତିପାଇଁ ଗତିଶୀଳତା ଆଣିଦେଉଥିଲା ।

ଇଶ୍ରାଏଲରୁ ଆସିଥିବା ଇହୁଦୀ ପରିବାରଗୁଡ଼ିକ ପୋଲାଣ୍ଡର ସଂସ୍କୃତିକୁ ଆଦରି ନେଉଥିଲେ । କୋର୍ଯାକଙ୍କ ପରିବାର ତିନିପୁରୁଷ ଧରି ପୋଲାଣ୍ଡରେ ରହିଆସିଲେଣି । ତେଣୁ ସେମାନଙ୍କର ମୂଳ ଇହୁଦୀ ସଂସ୍କୃତି ପୋଲାଣ୍ଡର ସଂସ୍କୃତି ଭିତରେ ସମ୍ପୂର୍ଣ୍ଣ ଭାବରେ ଲୀନ ହୋଇସାରିଥିଲା । କେବଳ ପାରିବାରିକ ସ୍ନେହ ଶ୍ରଦ୍ଧା ଓ ପରମ୍ପରା ପୂର୍ବପୁରୁଷଙ୍କ କଥା ମନେପକାଇ ଦେଉଥିଲା । ଏହିଭଳି ଏକ ସ୍ୱାଧୀନ ସଂସ୍କୃତିରେ ହେନେରିକ୍‌ଙ୍କ ଜୀବନର ଅଭିବୃଦ୍ଧି ଘଟିଥିଲା । ଫଳରେ ତାଙ୍କ ଭିତରେ ପରିବାରର ମୂଳ ସଂସ୍କୃତି ପ୍ରତି କୌଣସି ପ୍ରକାର ମୋହ ବା ଆକର୍ଷଣ ନଥିଲା । ସେ ଧର୍ମ ଓ ପରମ୍ପରାଗତ ପ୍ରଭାବରେ ନପଡ଼ି ନୀତିଶିକ୍ଷା ଦେଇପାରୁଥିଲେ ।

୧୯୩୦ ମସିହାରେ କୋର୍ଯାକ୍ "ଗୋସେଇଁ ବାପା ଓ ନାତି" (Grand Father Grand Child) ନାମକ ଏକ ଉପନ୍ୟାସ ଲେଖିବା ପାଇଁ ଯୋଜନା କରିଥିଲେ । ଏହି ଉପନ୍ୟାସରେ ଯେ ତାଙ୍କ ତିନି ପୁରୁଷଙ୍କ କାହାଣୀ ଲେଖିବା ପାଇଁ ସ୍ଥିର କରିଥିଲେ । ମାତ୍ର ୧୯୪୨ ମସିହାରେ ତାଙ୍କ ଜୀବନ ନାଟିକାର ଅବସାନ ଘଟିଲା ଏବଂ ଉପନ୍ୟାସଟି ଆଉ ସମ୍ପୂର୍ଣ୍ଣ ହୋଇପାରିଲା ନାହିଁ ।

୧୯୪୬ ମସିହାରେ କୋର୍ଯାକଙ୍କ ପୈତୃକ ସମସ୍ୟାର ସମାଧାନ ପାଇଁ ତାଙ୍କ ବାପା ମା'ଙ୍କ ଜନ୍ମ ମୃତ୍ୟୁର ପ୍ରମାଣପତ୍ର ଖୋଜିବା ପାଇଁ ଦରକାର ପଡ଼ିଲା । ଏହି ଖୋଜାଖୋଜି ବେଳେ ଆହୁରି ଅନେକ ତଥ୍ୟ ପାଇବାପାଇଁ ଚେଷ୍ଟା କରାଯାଇଥିଲା । ଗୋସେଇଁ ମା'ଙ୍କର ବିବାହ ପୂର୍ବର କାଟି ଆଦୌ ମିଳିଲା ନାହିଁ । ଏଥିରୁ ଅନୁମେୟ ଯେ କୋର୍ଯାକଙ୍କ ପରିବାରରେ ଇସ୍ରାଏଲର ଅନେକ ମୂଳ ବଂଶଗତ ତଥ୍ୟ ଉପରେ ବିଶେଷ ପ୍ରାଧାନ୍ୟ ଦିଆଯାଇନଥିଲା । ଓ୍ୱାର୍ସୋରେ ଘଟିଯାଇଥିବା ବିସ୍ଫୋରଣରେ ଅନେକ କିଛି ଧ୍ୱଂସ ହୋଇଯାଇଥିଲା । କଫିନ୍‌ଗୁଡ଼ିକ ଅନାବନା ଗଛ ଭିତରେ ଲୁଚିଯାଇଥିଲେ । କଫିନ ପାଖରେ ଥିବା ସ୍ମୃତି ପଥରଗୁଡ଼ିକ ବି ନଷ୍ଟ ହୋଇଯାଇ-ଥିଲେ । ତାଙ୍କ ପରିବାରର ଇତିହାସ ଯୋଗାଡ଼ କରିବା ପାଇଁ ଅନ୍ୟ କୌଣସି ଲିଖିତ ପ୍ରମାଣ ମିଳିନଥିଲା ।

ହେନେରିକ୍‌ଙ୍କ ପିଲାଦିନର ଡାଏରୀଟି ଠିକ୍ ଖ୍ରୀଷ୍ଟିଆନ ପିଲାଙ୍କ ଡାଏରୀ ଭଳି । ଶିକ୍ଷା ଦୀକ୍ଷା, ସାଙ୍ଗ ସାଥୀ, ବନ୍ଧୁପଣ, ସମାଜସେବା ଆଦି ସବୁକିଛି ସେ ଖ୍ରୀଷ୍ଟିଡାଷାରେ କରୁଥିଲେ ବୋଲି ଡାଏରୀରୁ ଜଣାପଡ଼ୁଥିଲା ।

ଜାନୁସ୍ କୋର୍ଚାକ୍ ହେନେରିକ୍ ଗୋଲ୍‌ଡସ୍ମିଥ୍‌ଙ୍କ ଛଦ୍ମନାମ । ମାତ୍ର ଏହି ନାଁଟି ପ୍ରକୃତରେ ପୋଲାଣ୍ଡର ନାଁ ଥିଲା । ପ୍ରଥମ ଲେଖାରେ ହିଁ ହେନେରିକ, ଜାନୁସ୍ କୋର୍ଚାକ ନାଁଟି ବ୍ୟବହାର କରିଥିଲେ । ଏହି ନାଁରେ ହିଁ ସେ ସୁପରିଚିତ । କହିବାକୁ ଗଲେ ଜାନୁସ୍ କୋର୍ଚାକ୍ ପୋଲାଣ୍ଡର ଗୋଟାପୁଅ ହୋଇଯାଇଥିଲେ । ତଥାପି ତାଙ୍କ ପରିବାରରେ ଗୋଟିଏ ଉକ୍ତି ଉପରେ ବିଶେଷ ଚର୍ଚ୍ଚାହୁଏ । ସେଇଟି ହେଲା ପ୍ୟାରିସ୍‌ର ମୁଖ୍ୟ, ରାଚ କୋର୍ଚାକଙ୍କ ବାପାଙ୍କ ପାଖକୁ କୋର୍ଚାକଙ୍କ ସମ୍ପର୍କରେ ଲେଖିଥିବା ମନ୍ତବ୍ୟ । ସେହି ମନ୍ତବ୍ୟଟି ହେଉଛି, "ହେନେରିକ୍ ଗୋଲ୍‌ଡସ୍ମିଥ୍ ଇସ୍ରାଏଲର ଜଣେ ବଡ଼ ଲୋକ ହେବେ ।"

ନିଜ ପରିବାରର ପ୍ରଭାବ ବ୍ୟତୀତ ହେନେରିକ୍ ପରିବେଷ୍ଟନୀ ଦ୍ୱାରା ଅନେକ ଭାବରେ ପ୍ରଭାବିତ ହୋଇଥିଲେ । ହେନେରିକ୍ ସେତେବେଳେ ପାଞ୍ଚ ବର୍ଷ ବୟସର ହୋଇଥାନ୍ତି । ତାଙ୍କର ଗୋଟିଏ ପୋଷା କାନାରୀ (ହଳଦିଆ ପରିଥିବା ଏକ ପ୍ରକାର ପକ୍ଷୀ) ଥିଲା । ହେନେରିକ୍ କାନାରୀକୁ ବହୁତ ଭଲ ପାଉଥିଲେ । କାନାରୀଟି ମରିଗଲା । ହେନେରିକ୍ କାନାରୀକୁ ଗୋଟିଏ ମିଠା ଟିଣରେ ଭର୍ତ୍ତିକରି ଶବସତ୍କାର କରାଇଲେ । କବର ଦେବା ପାଇଁ ସେ ଅଗଣାରେ ଗାତଟିଏ ଖୋଳିଲେ । କବର ଉପରେ ଗୋଟିଏ "କ୍ରସ" ଚିହ୍ନ ରଖିଲେ । ଘରର ଚାକର ଏହା ଦେଖି କହିଲା, "ଏମିତି କରିବା ଅପବିତ୍ର ଆଉ ପାପ । କାରଣ କାନାରୀର ମଣିଷମାନଙ୍କ ପରି ଖ୍ରୀଷ୍ଟିୟାନ୍ ଆତ୍ମା ନାହିଁ ।"

ଜଗୁଆଳର ପୁଅ ହେନେରିକ୍‌ଙ୍କୁ ଚିଡ଼ାଇଲା, "କାନାରୀ ଗୋଟିଏ ଇହୁଦୀ ଥିଲା । ତୁ ବି ଜଣେ ଇହୁଦୀ । ମାତ୍ର ମୁଁ ଜଣେ କାଥୋଲିକ୍ ଖ୍ରୀଷ୍ଟିୟାନ୍ । ମୁଁ ମୃତ୍ୟୁପରେ ସ୍ୱର୍ଗକୁ ଯିବି ।" ହେନେରିକ୍ ଏସବୁ ଶୁଣି ଭାରି ଡରିଗଲେ । ଜଗୁଆଳୀର ପୁଅ କହିଚାଲିଲା, "ତୁ ଯଦି ଖରାପ କଥା କହିବୁ ନାହିଁ ଓ ମୋ ପାଇଁ ବହୁତ ମିଠା ଆଣିଦେବୁ, ତାହାହେଲେ, ତୁ ଇହୁଦୀମାନଙ୍କ ପରି ନର୍କକୁ ଯିବୁ ନାହିଁ । ତୁ ଆଉ ଏକ ସ୍ଥାନକୁ ଯିବୁ, ଯାହାକି ନର୍କ ନୁହେଁ କିନ୍ତୁ, ଅନ୍ଧାରୁଆ ।"

"ମୃତ୍ୟୁ—ଇହୁଦୀ-ନର୍କ"—ଏହିପରି ଶବ୍ଦଗୁଡ଼ିକ ହେନେରିକ୍‌ଙ୍କୁ ଅନେକ ଆନ୍ଦୋଳିତ କରିଥିଲା । ତାଙ୍କ ବାଳସୁଲଭ ମନ ଭିତରେ ଏସବୁ ଗମ୍ଭୀର ରେଖାପାତ କରୁଥିଲା । ଏହିପରି ଭାବରେ ପରିବେଷ୍ଟନୀର ପ୍ରଭାବରେ ଆସ୍ତେ ଆସ୍ତେ ହେନେରିକ୍‌ଙ୍କ

ଭିତରେ 'ଇହୁଦୀ'ର ବୀଜ ଅଙ୍କୁରିତ ହେବାକୁ ଲାଗିଲା । ତାଙ୍କ ଭିତରେ ଇହୁଦୀ ଜାତୀୟତା ଭାବ ଉଦ୍ରେକ ହେବାକୁ ଲାଗିଲା । ଇହୁଦୀମାନଙ୍କ ସମ୍ମାନ ପାଇଁ ତାଙ୍କ ଭିତରେ ନୂତନ ପ୍ରେରଣା ଓ ଶକ୍ତି ସଂଗୃହୀତ ହେବାକୁ ଆରମ୍ଭ କଲା । ଠିକ୍ ଏହି ସମୟରେ ଇଉରୋପରେ ଆରମ୍ଭ ହୋଇଗଲା ଇହୁଦୀ ବିରୋଧୀ ଅଭିଯାନ । ଯୁଦ୍ଧ-ଖୋର ଜାତୀୟତାବାଦୀମାନେ ଫ୍ରାନ୍ସ, ଜର୍ମାନୀ, ରୁଷିଆ ଏବଂ ଅନ୍ୟାନ୍ୟ ଇଉରୋପୀୟ ଦେଶଗୁଡ଼ିକରେ ମୁଣ୍ଡ ଟେକିଉଠିଲେ ଏବଂ ଇହୁଦୀ ବିରୋଧୀ କଥା ପ୍ରଚାର କଲେ । ଏଥିପାଇଁ ସାଧାରଣ ଲୋକଙ୍କୁ ମତାଇଲେ । ଇହୁଦୀ ବିରୋଧୀ ପ୍ରଚାର ଯଥାଶୀଘ୍ର ବାଲୁଙ୍ଗାଡାସ ପରି ସର୍ବତ୍ର ବ୍ୟାପିଗଲା ।

ଅନେକ ବର୍ଷ ପରେ ଥରେ ଗ୍ରୀଷ୍ମ ଛୁଟିରେ ସ୍ୱେଚ୍ଛାସେବୀ ଭାବରେ କାମ କରୁଥିବାବେଳେ କୋର୍ଜାକ୍ ଇହୁଦୀ ପିଲାମାନଙ୍କଠାରୁ ପ୍ରଥମକରି ଅତ୍ୟାଚାର ଓ ନିର୍ଯାତନାର ଅଭିଯୋଗ ଶୁଣିବାକୁ ପାଇଲେ । ସେ ସେତେବେଳେ ଲେଖିଥିଲେ, "ଇହୁଦୀ ପିଲା ହେଉ ବା ପୋଲାଣ୍ଡର ପିଲା ହେଉ, ଦୁଃଖକଷ୍ଟ ପିଲାଙ୍କ ପାଇଁ ସମାନ । ପୋଲାଣ୍ଡରେ ସ୍ମୁଟ୍ନୋ (Smutno) ଅର୍ଥ ଦୁଃଖୀ । ସେହିପରି ଇହୁଦୀମାନଙ୍କ ଭିତରେ ସ୍ମୁଟ୍ନୋ ଶବ୍ଦ ସମାନ ଅର୍ଥ ଧାରଣ କରେ । ପୋଲାଣ୍ଡର ପିଲା ହେଉ ବା ଇହୁଦୀ ପିଲା ହେଉ, କଷ୍ଟ ବା ଯନ୍ତ୍ରଣା ଲାଗିଲେ ଉଭୟେ କହିବେ ସ୍ମୁଟ୍ନୋ । କୋର୍ଜାକ୍ ଇହୁଦୀ ପରିବାରରେ ଜନ୍ମ ହୋଇ ଇହୁଦୀ ସଂସ୍କୃତି ଓ ଇହୁଦୀମାନଙ୍କର ସାମାଜିକ ପରିସ୍ଥିତି କିଅଣ ସେ ସଂପର୍କରେ ଅଜ୍ଞ ଥିଲେ । ଇହୁଦୀମାନଙ୍କର ସମସ୍ୟାର ସମାଧାନ ପାଇଁ ସେ ଇହୁଦୀର ଭୂମିକା ଗ୍ରହଣ କରିନଥିଲେ । ସେ ଗ୍ରହଣ କରିଥିଲେ ଏକ ଯଥାର୍ଥ ମନୀଷୀର ଭୂମିକା ।

ଜନ୍ମରୁ କୋର୍ଜାକ୍ ପୋଲାଣ୍ଡର ଅଧିବାସୀ । ପୋଲାଣ୍ଡୀୟ ସଂସ୍କୃତି, ପରିବେଶ, ଆଚାର ବିଧି ଆଦରରେ ସେ ଲାଳିତପାଳିତ ହୋଇଥିଲେ । ମାନସିକ ଚିନ୍ତାଧାରା, ଦୃଷ୍ଟିଭଙ୍ଗୀ ସେହି ଅନୁସାରେ ପ୍ରଭାବିତ ହୋଇଥିଲା ।

ଯେତେବେଳେ ରାଜନୈତିକ ଷଡ଼ଯନ୍ତ୍ର ଆରମ୍ଭ ହେଲା ଏବଂ ଯୁଦ୍ଧ ଲାଗିଲା, ସେତେବେଳେ କୋର୍ଜାକଙ୍କୁ ବାସନ୍ଦ କରିଦିଆଗଲା । ସେ ନାନା ଭାବରେ ନିର୍ଯାତନା ଭୋଗ କରିଥିଲେ । ଜାତିବାଦର ସମସ୍ୟାକୁ ନେଇ ତାଙ୍କ ଭିତରେ ବ୍ୟକ୍ତିଗତ ସମସ୍ୟା ଦେଖାଦେଇଥିଲା । କୋର୍ଜାକ୍ ପୋଲାଣ୍ଡର ଅଧିବାସୀ ଭାବରେ ନିଜକୁ ଜଣେ ପୋଲାଣ୍ଡୀୟ ବୋଲି ପରିଚୟ ଦେଇଥିଲେ । ଅନ୍ୟ ପକ୍ଷରେ ତାଙ୍କର ବଂଶାନୁଗତ ପରିଚୟ ଥିଲା ଇହୁଦୀ । ଏହି ସମୟରେ ଇହୁଦୀମାନଙ୍କ ଦୁଃଖ ଯନ୍ତ୍ରଣା ଦେଖି ସେ ପରିଚୟର ଦ୍ୱନ୍ଦ୍ୱ ଜାଲ ଭିତରେ ଛନ୍ଦି ହୋଇ ପଡ଼ିଥିଲାପରି ଅନୁଭବ କରୁଥିଲେ । ସତେ-ଯେପରି ସେ ନିଜେ ବିଭାକ୍ତ ହୋଇଯାଇଛନ୍ତି । ନିଜର ଆବେଗ ଓ ଅଭିମାନ ପ୍ରତି ସେ ବିବ୍ରତ ଥିଲେ । ଇହୁଦୀ ଲୋକମାନଙ୍କପାଇଁ ସେ ସମ୍ବେଦନଶୀଳ ହୋଇପଡ଼ିଥିଲେ

ଏବଂ ସେମାନଙ୍କ ସେବାରେ ଜୀବନକୁ ଉତ୍ସର୍ଗ କରିଦେଲେ । ତାଙ୍କର ଏହି କାର୍ଯ୍ୟରେ କୌଣସି ପାରିବାରିକ ଭୂମିକା ନଥିଲା । ଏହା ଥିଲା ତାଙ୍କର ନିଜସ୍ୱ ।

ବର୍ଷ ପରେ ବର୍ଷ ବିତିଗଲା । କୋର୍ଚ୍ଚାକଙ୍କ ଦୁଃଖର ଭାର ବଢ଼ି ବଢ଼ି ଚାଲିଥିଲା । ଇହୁଦୀମାନଙ୍କର ଦୈନନ୍ଦିନ ସମସ୍ୟାର ସମାଧାନ ତଥା ଇହୁଦୀ ପିଲାମାନଙ୍କର ଦୁଃଖଯନ୍ତ୍ରଣା ଦୂର କରିବା ପାଇଁ ସେ ଅଧିକରୁ ଅଧିକ ନିଜକୁ ନିବେଦିତ କରି-ଚାଲିଲେ ।

ଇଉରୋପ ଇତିହାସରେ ଇହୁଦୀ ବିରୋଧବାଦର ବୃଦ୍ଧି ସାଙ୍ଗରେ କୋର୍ଚ୍ଚାକଙ୍କ ଜୀବନ ଓତପ୍ରୋତ ଭାବରେ ଜଡ଼ିତ । ଅମାନୁଷିକ ବର୍ବରତାରୁ ଏକ ଜାତିକୁ ରକ୍ଷା କରିବା ସକାଶେ, ସେହି ଜାତିର ଅନାଥପିଲାମାନଙ୍କୁ ସୁରକ୍ଷା ଦେବା ସକାଶେ କୋର୍ଚ୍ଚାକ୍ ଦୁର୍ବଳ ତଥା ଲାଞ୍ଛିତ ଇହୁଦୀମାନଙ୍କ ପାଚେରି ଭିତରେ ନିଜର ସମସ୍ତ ଜ୍ଞାନ, କୌଶଳ, ବଳ, ବିବେକ ଲଗାଇ ସଂଗ୍ରାମ ଅବ୍ୟାହତ ରଖିଥିଲେ ଜୀବନର ଶେଷ ନିଃଶ୍ୱାସ ପର୍ଯ୍ୟନ୍ତ । ଇତିହାସର ଏକ ବୀଭତ୍ସିକାମୟ ମୃତ୍ୟୁର ତାଣ୍ଡବଲୀଳା ଭିତରେ ସେ ଗଣହତ୍ୟାର ଦୁର୍ଦ୍ଦାନ୍ତ ଚକତଳେ ଚାପି ହୋଇଗଲେ ।"

## (୩) ଦୁଃଖୀ ବାଳକ

ଜାନୁସ୍ କୋର୍ଚ୍ଚାକ୍ ଏକ ବିଳାସବ୍ୟସନର ପ୍ରାଚୁର୍ଯ୍ୟ ଭିତରେ ଜନ୍ମଗ୍ରହଣ କରିଥିଲେ । ଏଗାର ବର୍ଷ ବୟସ ପର୍ଯ୍ୟନ୍ତ ସେ ଏହି ବିଳାସପୂର୍ଣ୍ଣ ପାରିବାରିକ ଜୀବନକୁ ଉପଭୋଗ କରିଥିଲେ । ବାପା ଜଣେ ଭଲ ଓକିଲ ଥିଲେ । ଘରର ରୋଜଗାର ଭଲଥିଲା । ବାପା ସବୁବେଳେ ବିଳାସ ଓ ଆରାମ ଭିତରେ ଜୀବନ ବିତାଇବାକୁ ଭଲ ପାଉଥିଲେ ।

କୋର୍ଚ୍ଚାକ୍ ତାଙ୍କ ଜୀବନୀ ସୂତ୍ରରେ ଏହି ବାଲ୍ୟକାଳଟିକୁ ବର୍ଣ୍ଣନା କରି ଲେଖିଛନ୍ତି । "ମୁଁ ମୋ ଭଉଣୀ, ଏକ କୌତୂକପୂର୍ଣ୍ଣ, ଆବେଗଭରା ସ୍ୱାଭାବିକ ପରିବେଶ ଭିତରେ ପରିବାରର ଅଭ୍ୟର୍ଥନା ପାଇ ସଂସାରକୁ ଆସିଥିଲୁ । ପରିସ୍ଥିତି ଯେତେ କ୍ଲାନ୍ତିକର କିମ୍ବା ବିଫଳତାପୂର୍ଣ୍ଣ ହେଉଥିଲେ ମଧ୍ୟ ବାପା ଆମପାଇଁ ସବୁ ପ୍ରକାର ଆରାମ ଯୋଗାଇ ଦେଉଥିଲେ ।"

ବାପାଙ୍କ ସ୍ନେହ ଶ୍ରଦ୍ଧାକୁ ସ୍ମରଣ କରି କୋର୍ଚ୍ଚାକ୍ ଅନ୍ୟ ଏକ ଜାଗାରେ ଲେଖିଛନ୍ତି, "ସେ ଆମ ଜୀବନକୁ ନିର୍ଦ୍ଦିଷ୍ଟ ଭାବରେ ମୋଡ଼ ଦେଉଥିଲେ । ଶୀତଦିନର

ସ୍ପେଗେଟି ଅଣ୍ଡା ପାଗରେ ବାପା ଆମକୁ ଆଇସ୍କ୍ରିମ୍ ଏବଂ ଅଣ୍ଡା ପାନୀୟ କିଣି ଖାଇବାକୁ ଦେଉଥିଲେ । କିନ୍ତୁ, ଏଥିପାଇଁ ଆମେ ଯେତେବେଳେ ଅସୁସ୍ଥ ହୋଇପଡୁଥିଲୁ, ସେ ଆମ ଶଯ୍ୟା ଛାଡ଼ି ମୁହୂର୍ତ୍ତିକ ପାଇଁ ବାହାରକୁ ଯାଉନଥିଲେ । ଜ୍ୱରରେ ତ ତପୁଥିବା କପାଳଟି ତାଙ୍କ ସ୍ନେହଭରା ହାତର ସ୍ପର୍ଶରେ ଶୀତଳ ହୋଇଯାଉଥିଲା । ମାଆ ଅଧୀର ହୋଇପଡୁଥିଲେ । ବାପାଙ୍କୁ ଏସବୁ କାଣ୍ଡ ନକରିବା ପାଇଁ ବାରଣ କରୁଥିଲେ । ଆମ ନର୍ସରୀ ସ୍କୁଲରୁ ବାହାରିଯିବା ପାଇଁ ମାଆ, ବାପାଙ୍କ ପଛେ ପଛେ ଗୋଡ଼ାଉଥିଲେ । ବାପାଙ୍କର ବ୍ୟକ୍ତିତ୍ୱ ଅତି ଚମତ୍କାର ଥିଲା । ସେ ଥିଲେ ହୃଦୟବାନ୍, ଦୃଢ଼ମନା ଏବଂ ସ୍ନେହଭରା ମଣିଷଟିଏ ।''

ବାପାଙ୍କ ସାଙ୍ଗରେ କୋର୍ସାକ୍ ଭିଡ଼ ରାସ୍ତାରେ ବଡ଼ିଆ ବଡ଼ିଆ କଲଣିଆ ଦୋକାନକୁ ଗଲେ, ଗଲାଯାଉଥିଲେ । ବେଳେବେଳେ ହ୍ରଦପାଖକୁ ଯାଇ ନୌକା ଚଲାଉଥିଲେ । ଆଉ କେତେବେଳେ ମାଛଧରାଳୀ ମାଲିକର ପୁଅ ସାଙ୍ଗରେ ମିଶି ଡଙ୍ଗା ଚଲାଇ ଖୁସି ହେଉଥିଲେ । ଶ୍ରେଷ୍ଠ ପିଲାବେଳର ଏସବୁ ଆନନ୍ଦଦାୟକ ଅନୁଭୂତିଗୁଡ଼ିକୁ ମନେପକାଇ କୋର୍ସାକ୍ ବୃଦ୍ଧ କାଳରେ ଆତ୍ମହରା ହୋଇପଡୁଥିଲେ । ଏସବୁ ସୁଖକର ଦିନଗୁଡ଼ିକ କୋସାକ୍‌ଙ୍କ ଜୀବନରେ ବେଶିଦିନ ରହିପାରିଲା ନାହିଁ । ୧୧ ବର୍ଷ ବୟସ ବେଳୁହିଁ କୋର୍ସାକ୍‌ଙ୍କ ଉପରେ ଦୁଃଖର ଭାର ଘନେଇ ଆସିଲା । ବାପାଙ୍କର ମାନସିକ ଭାରସାମ୍ୟ ରହିଲା ନାହିଁ । ତାଙ୍କ ଚିକିତ୍ସା ନିମନ୍ତେ ସବୁବେଳେ ଡାକ୍ତରଖାନାକୁ ନେବାଆଣିବା କରିବାକୁ ପଡ଼ିଲା । ଘରର ସୁଖ ସ୍ୱାଚ୍ଛନ୍ଦ୍ୟ କ୍ରମେ ମଉଳି ଆସିଲା । ଏଭଳି ଅସୁସ୍ଥ ମାନସିକ ସ୍ଥିତିରେ ବାପାଙ୍କର କୌଣସି ବିଚାରଶକ୍ତି ରହିଲା ନାହିଁ । ସେ ଘରର ସଂପତ୍ତିବାଡ଼ି ବିକିବାକୁ ଲାଗିଲେ ଏବଂ ପୁରା ଋଣଗ୍ରସ୍ତ ହୋଇପଡ଼ିଲେ । ବାପାଙ୍କର ଦେହାନ୍ତ ହେଲା । ଘରର ଆସବାବପତ୍ର ବିକ୍ରି କରିବାକୁ ପଡ଼ିଲା । ନୈରାଶ୍ୟ ଘନେଇ ଆସିଲା । ଦାରିଦ୍ର୍ୟର କଷାଘାତରେ ଓ ସମସ୍ୟାର ଘେରରେ ପରିବାର ବୁଡ଼ିରହିଲା । ମା'ଙ୍କ ସାଙ୍ଗରେ ଦୁଇ ସନ୍ତାନ ଆନା ଓ ହେନେରିକ୍ ଘୋର ଦାରିଦ୍ର୍ୟ ଭିତରେ ଜୀବନ ବିତାଇଲେ ।

ଅତି ଶ୍ରେଷ୍ଠ ବୟସରୁ ହେନେରିକ୍ ଗୋଲ୍ଡ଼ସ୍ମିଥ୍‌ଙ୍କୁ ରୋଜଗାରର ପନ୍ଥା ଖୋଜିବାକୁ ପଡ଼ିଲା । ସେ ଘରେଇ ଟ୍ୟୁସନ୍ କଲେ ଏବଂ ଏଥିପାଇଁ ହେନେରିକ୍‌ଙ୍କୁ ବହୁତ ପରିଶ୍ରମ କରିବାକୁ ପଡ଼ୁଥିଲା । ସ୍କୁଲରେ ଯେଉଁ ପାଠ ଦିଆଯାଉଥିଲା, ସେଥିପାଇଁ ସେ ଘରେ ସମୟ ପାଇ ପାରୁ ନଥିଲେ । ତେଣୁ ପରୀକ୍ଷାଖାତାରେ ସେ କମ୍ ନମ୍ବର ରଖୁଥିଲେ । ମାତ୍ର ମୌଳିକ ପ୍ରଶ୍ନ ଉତ୍ତରରେ ତାଙ୍କର ପ୍ରବଳ ଧୀଶକ୍ତିର ପରିଚୟ ମିଳିଯାଉଥିଲା । ସମସ୍ତ ପ୍ରକାର ବାଧାବିଘ୍ନ ସତ୍ତ୍ୱେ ସେ ପରୀକ୍ଷାଗୁଡ଼ିକରେ କୃତକାର୍ଯ୍ୟ ହେଉଥିଲେ । ଏହିପରି ଭାବରେ ସେ ମାଟ୍ରିକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ।

ପିଲାଦିନେ ହେନେରିକ୍ ବହୁତ ଦୃଢ଼ମନା ଥିଲେ । ଦିନକର ଘଟଣା ହେନେରିକ ଓ୍ୱାର୍ସୋର ଅଳ୍ପ ଆଲୋକିତ ସହରତଳି ଗଳିରେ ବୁଲୁଥାନ୍ତି । ହଠାତ୍ ସେ ଦେଖିଲେ ଗୋଟିଏ ଦୋକାନରେ ଝରକା ପାଖରେ କାନ୍ଥ ଘଣ୍ଟାଟିଏ ଝୁଲୁଛି । ଏହି ଘଣ୍ଟାଟି ତାଙ୍କ ନିଜ ଘରର ଘଣ୍ଟା ବୋଲି ସେ ଚିହ୍ନିପାରିଲେ । ଘଣ୍ଟାଟି ଥିଲା ତାଙ୍କ ପରିବାରର ପ୍ରାଚୁର୍ଯ୍ୟର ଏକ ପ୍ରତୀକ । ଭଉଣୀ ଆନା ଏବଂ ହେନେରିକ୍ କଥାବାର୍ତ୍ତା ହୋଇ ନିଷ୍ପତ୍ତି କଲେ ଘଣ୍ଟାଟିକୁ ଘରକୁ ଫେରାଇ ଆଣିବେ । ଦୋକାନୀ ଘଣ୍ଟାଟିର ମୂଲ୍ୟ ବହୁତ ଅଧିକ କହିଲା । ମାତ୍ର ଏହା ଭାଇଭଉଣୀଙ୍କର ଦୃଢ଼ ଇଚ୍ଛାକୁ ବଳାଇଗଲା ନାହିଁ । ସବୁଦିନେ ଭାଇଭଉଣୀ ସେହି ରାସ୍ତା ଦେଇ ଗଲାବେଳେ ଦୋକାନର ଝରକାଆଡ଼କୁ ଅନାନ୍ତି । ଘଣ୍ଟାଟି ଅଛି କି ନାହିଁ ବୋଲି ଲକ୍ଷ୍ୟ କରନ୍ତି । ପରିଶେଷରେ ସେମାନେ ଘଣ୍ଟାଟି କିଣିବାପାଇଁ ଆବଶ୍ୟକ ଅର୍ଥ ସଞ୍ଚୟ କଲେ । ମାତ୍ର ଯେତେବେଳେ ଦୋକାନୀ ପାଖରେ କିଣିବାକୁ ପହଞ୍ଚିଲେ, ସେତେବେଳେ ଘଣ୍ଟାଟି ବିକ୍ରି ହୋଇଯାଇଥିଲା । ବୋଧହୁଏ ଏହି ଅନୁଭୂତିଟି କୋର୍ଚ୍ଚାକଙ୍କୁ ଜୀବନର ନମୁନା ଶୀର୍ଷକ ପୁସ୍ତକଟି ଲେଖିବାକୁ ବାଧ୍ୟ କରିଥିଲା । ଏହି ବିଷୟରେ ସେ ଲେଖିଛନ୍ତି, "ମୁଁ ପିଲାବେଳେ ଧନୀ ଥିଲି । ତାପରେ ଗରିବ ହୋଇଗଲି···ତେଣୁ କଥାଟିର ସଦର ମଫସଲ ମୋତେ ଜଣା ।" ପିଲାଦିନେ କୋର୍ଚ୍ଚାକ୍ ଦୁର୍ବଳମନା ଥିଲେ ଏବଂ ଅତି ସାଧାରଣ କଥାରେ ଭୟଭୀତ ହୋଇପଡ଼ୁଥିଲେ ।

କୋର୍ଚ୍ଚାକଙ୍କ ବାଲ୍ୟାବସ୍ଥାର ପ୍ରଥମ ବର୍ଷଗୁଡ଼ିକ ପ୍ରାଚୁର୍ଯ୍ୟରେ ପରିପୂର୍ଣ୍ଣ ଥିଲା । ମା' ଜେଜେମା, ଚାକର ଚାକରାଣୀ ଆଦି ସମସ୍ତଙ୍କ ସ୍ନେହ ଭିତରେ କୋର୍ଚ୍ଚାକ୍ ବଢ଼ିଥିଲେ । ଏସବୁ ସତ୍ତ୍ୱେ ସବୁକିଛି ଯେ ରଙ୍ଗୀନ ଥିଲା ସେକଥା ନୁହେଁ । ସେତେବେଳେ ବି କୋର୍ଚ୍ଚାକ୍ ନିସଙ୍ଗ ଅନୁଭବ କରୁଥିଲେ ଓ ତାଙ୍କୁ ସବୁକିଛି ଅତି ମାନ୍ଦା ଲାଗୁଥିଲା, ମନରେ ଅସନ୍ତୋଷ ଭରିରହୁଥିଲା । କୋର୍ଚ୍ଚାକଙ୍କୁ ଭୟ ଲାଗୁଥିଲା । ଅନ୍ଧାର, ଲାଜ ଏବଂ ହତାଶାକୁ ସେ ଭୟ କରୁଥିଲେ । ଜେଜେବାପାଙ୍କ ଅପୂର୍ଣ୍ଣ ସ୍ୱପ୍ନ, ବାପାଙ୍କର ଭୟ କାତରତାର ପ୍ରଭାବ, ନିଜର ବୁଦ୍ଧି ଏବଂ ସମ୍ବେଦନଶୀଳତା କୋର୍ଚ୍ଚାକଙ୍କ କଳ୍ପନା-ଶକ୍ତିକୁ ବହୁଗୁଣରେ ବଢ଼ାଇଦେଇଥିଲା । ତା'ଛଡ଼ା ଏସବୁ ତାଙ୍କର ସୃଜନଶୀଳତା ଏବଂ ବିଦ୍ରୋହର ଉତ୍ତେଜନାକୁ ଅଙ୍କୁରିତ କରାଇପାରିଥିଲା ।

ପିଲାବେଳୁ କୋର୍ଚ୍ଚାକଙ୍କ ଭିତରେ ଏକ ଆଧ୍ୟାତ୍ମିକ ଅସନ୍ତୋଷ ଏବଂ ଏକ ଅଭାବ-ବୋଧ ଭରିରହିଥିଲା । ଏହିସବୁ ଅନୁଭବ ଯୋଗୁଁ ତାଙ୍କୁ ନିସଙ୍ଗତା ଭଲ ଲାଗୁଥିଲା । ନିସଙ୍ଗତା ଏବଂ ନୀରବତାର ମୁହୂର୍ତ୍ତଗୁଡ଼ିକ ଭିତରେ ସେ ନିଜ ଭିତରକୁ ତଥା ସଂସାରକୁ ଭଲଭାବରେ ନିରୀକ୍ଷଣ କରୁଥିଲେ । ତାଙ୍କ ଲେଖାମାନଙ୍କରେ ଅନେକ ଜାଗାରେ ଏ ପ୍ରକାର ସମ୍ବେଦନପୂର୍ଣ୍ଣ ପ୍ରତିଫଳନମାନ ଦେଖିବାକୁ ମିଳେ । କୋର୍ଚ୍ଚାକ୍ ନିଜ ପିଲାଦିନ କଥା ମନେପକାଇ ଲେଖିଛନ୍ତି— 'ମୁଁ ଥିଲି ସେହି ଶିଶୁ ଯିଏ ଏକୁଟିଆ

ଖେଳିବାକୁ ଭଲପାଉଥିଲି ଏବଂ ଉପଭୋଗ କରୁଥିଲି । ମୋତେ ଲକ୍ଷ୍ୟକରି ଅନ୍ୟମାନେ କହୁଥିଲେ, ଘରେ ପିଲାଟିଏ ଅଛୁବୋଲି ଜଣାପଡ଼ୁନି । ମୋତେ ୭ ବର୍ଷ ବୟସ ବେଳେ, ଘୂରକୋଣିଆ କାଠଖଣ୍ଡ, ଖେଳନା ଇଟା ଏବଂ ଏହିପରି ଅନ୍ୟ ବସ୍ତୁମାନ ଖେଳିବାକୁ ଦିଆଯାଉଥିଲା । ଚଉଦ ବର୍ଷ ବୟସ ବେଳକୁ ମୁଁ ଏସବୁ ଖେଳିବା ବନ୍ଦ କରିଦେଲି ।''

ହସ ଖେଳକୁଦ ନାଚ ଆଦି ଯେକୌଣସି ପିଲାକୁ ଖୁସି କରାଇଥାଏ । ମାତ୍ର କୋର୍ଝାକଙ୍କୁ ସବୁଠାରୁ ବିରକ୍ତ ଲାଗୁଥିଲା । ବାପାଙ୍କ ସାଙ୍ଗରେ କୋର୍ଝାକ ଚର୍ଚ୍ଚକୁ ଯାଉଥିଲେ । ଚର୍ଚ୍ଚର ବଡ଼ ହଲ୍‌ରେ ପ୍ରବଳ ଜନସମାବେଶ, ଉଜ୍ଜ୍ୱଳ ଆଲୋକମାଳା ଏବଂ ବାଇବେଲର ଦୃଶ୍ୟପଟସବୁ କୋର୍ଝାକଙ୍କୁ ରୋମାଞ୍ଚିତ କରୁଥିଲା; ମାତ୍ର ରାତିରେ ଏସବୁ ତାଙ୍କ ସମ୍ବେଦନଶୀଳ ମନ ଭିତରେ ଆନ୍ଦୋଳିତ ହୋଇ ଭୟଙ୍କର ସ୍ୱପ୍ନ ଆକାରରେ ଅଭିବ୍ୟକ୍ତ ହେଉଥିଲା । ଛୁଣ୍ଡାକତରା ପରିହିତ ଲୋକଙ୍କ ଭିକାରଟିକୁ ଦେଖିବା ଦ୍ୱାରା ତାଙ୍କ ମନ ଭିତରେ ଭୟ ଏବଂ ଆତଙ୍କର ପ୍ରତୀକମାନ ଖେଳି-ବୁଲୁଥିଲା । ଯେତେବେଳେ ଆଲୋକ ଲିଭିଯାଉଥିଲା, ସେତେବେଳେ ସେ ଏଭଳି ଭୟଭୀତ ହୋଇପଡ଼ୁଥିଲେ ଯେ ତାଙ୍କ ଆଖିରେ ଲୁହ ଜକେଇ ଆସୁଥିଲା ଏବଂ ତାଙ୍କ ପାଟିରୁ କଥା ବାହାରୁନଥିଲା । ସେ ଅସୁସ୍ଥ ହୋଇପଡ଼ୁଥିଲେ ବା ଭୀଷଣ ଭାବରେ ଥଣ୍ଡା ସର୍ଦ୍ଦିରେ ପଡ଼ୁଥିଲେ ଏବଂ ଉଷ୍ମ ଶଯ୍ୟାରେ ବିଶ୍ରାମ ନେଉଥିଲେ । ଏହା ତାଙ୍କୁ ମାନସିକ ଉତ୍ତେଜନା ଏବଂ ଭୟଙ୍କର ସ୍ୱପ୍ନରୁ ଉଦ୍ଧାର କରୁଥିଲା ।

କେବଳ ଘର ଭିତରେ ନେ ସେ ଏପରି ଭୟଙ୍କର ପରିସ୍ଥିତିର ସମ୍ମୁଖୀନ ହେଉଥିଲେ ତାହା ନୁହେଁ, ସ୍କୁଲରେ ବି ଏଭଳି ଅସୁନ୍ଦର ଅନୁଭୂତିମାନ ଆସୁଥିଲା । ଏ ବିଷୟରେ ସ୍ମରଣ କରି ସେ ଲେଖିଛନ୍ତି, ''ସାଧାରଣ ଭାବରେ କହିବାକୁଗଲେ ମୋ ସମୟରେ ସ୍କୁଲଗୁଡ଼ିକ ଏତେ ଭଲ ନଥିଲା । ଅନେକଗୁଡ଼ିଏ ସ୍କୁଲର ଅବସ୍ଥା ଅତ୍ୟନ୍ତ ଖରାପ ଥିଲା । କିଛି ନୂଆ ସୃଜନଶୀଳ କାମ କରିବାକୁ ଅନୁମତି ମିଳୁନଥିଲା । ସ୍କୁଲ ଘରର ବାତାବରଣ ଆଦୌ ପ୍ରେରଣାଦାୟକ ନଥିଲା । ସ୍କୁଲ ବାତାବରଣ ସମ୍ବନ୍ଧରେ ମୁଁ ଶୋଇଲାବେଳେ ସ୍ୱପ୍ନ ଦେଖୁଥିଲି ଏବଂ ପ୍ରାୟ ସବୁଥର ଥଣ୍ଡା ଝାଳ ବାହାରି ମୋ ନିଦ ଭାଙ୍ଗିଯାଉଥିଲା···ଉଠିଲା ପରେ ମୁଁ ଖୁସି ହୋଇଯାଉଥିଲି ଯେ ଏହା ପ୍ରକୃତ କଥା ନୁହେଁ, କେବଳ ମାତ୍ର ସ୍ୱପ୍ନଟିଏ ।''

ଆଠବର୍ଷ ବୟସବେଳେ କୋର୍ଝାକ ବେତକୁ ଭାରି ଡରୁଥିଲେ । ''ଯେତେ-ବେଳେ ମୁଁ ସାନ ହେବି'' ଶୀର୍ଷକ ଏକ ପିଲାଙ୍କ ବହିରେ ସେ ଲେଖିଛନ୍ତି, ପ୍ରେଟୋ ଗଳିରେ ଥିବା ସ୍ମରଣୀ ସ୍କୁଲରେ ଦଣ୍ଡ ଦିଆଯାଏ ନାହିଁ । ଦଣ୍ଡ ବଦଳରେ ଥାଏ ଅପୂର୍ବ ଉଦାରତା ।'' ସ୍କୁଲରେ ଥରେ ତାଙ୍କର ସହପାଠୀକୁ ଦଣ୍ଡ ଦିଆଯାଉଥିବାର ସେ ଦେଖିଲେ । ସେହିଦିନଠାରୁ ଶାରୀରିକ ଦଣ୍ଡ ପ୍ରତି ତାଙ୍କ ଭିତରେ ତୀବ୍ର ବିରୋଧ

ଭାବ ଜାଗ୍ରତ ହେଲା । ସ୍କୁଲରେ ବଳୁଆ ପିଲମାନେ ପରସ୍ପର ଭିତରେ ମାଡ଼ ଲାଗୁଥିଲେ । ଏଭଳି ମାଡ଼ଗୋଳ ଦେଖିଲେ କୋର୍ସାକ୍ ଆଡ଼େଇହୋଇ ରହୁଥିଲେ । ଯେଉଁ ପିଲମାନେ ତାଙ୍କୁ ଭଲପାଉଥିଲେ, ସେମାନଙ୍କ ସାଙ୍ଗରେ ସେ ମିଶୁଥିଲେ । ପ୍ରକାରାନ୍ତରେ ସେଇ ପିଲମାନେ ଥିଲେ ଭୟାଳୁ ଓ ସେମାନଙ୍କୁ ଅନ୍ୟ ପିଲମାନେ ହଇରାଣ କରୁଥିଲେ ।

ମାଧ୍ୟମିକ ସ୍କୁଲମାନଙ୍କରେ ବିଦେଶୀ ଭାଷା ହିସାବରେ ଋଷିଆର ଭାଷାକୁ ଛାତ୍ରଙ୍କ ଉପରେ ଲଦିଦିଆଯାଉଥିଲା । ଏହା ଅଧିକ ଯନ୍ତ୍ରଣାଦାୟକ ମନେହେଉଥିଲା । ସ୍କୁଲ ପରେ ଘରେ ସାମାଜିକ ଚଳଣିର ଧରାବନ୍ଧା ଗାତାମାତ ଦେଖି କୋର୍ସାକ ବଡ଼ ବ୍ୟସ୍ତ ହୋଇପଡୁଥିଲେ । "ପିଲାଙ୍କୁ କିପରି ଭଲପାଇବ" ବହିରେ ନିଜ ପିଲାଦିନ କଥା ମନେପକାଇ ଲେଖିଛନ୍ତି—ତାଙ୍କ ଗୁରୁଜନମାନଙ୍କର ଉପଦେଶ କେତେ ମିଛ ଥିଲା ! "ତୁମେମାନେ ମୋତେ କହୁଥିଲ, ଗରିବ ପିଲମାନେ ଭାରି ମଇଳା ଆଉ ଅସନା । ସେମାନେ ଅଶ୍ଳୀଳ ଭାଷା କହନ୍ତି । ସେମାନଙ୍କ ମୁଣ୍ଡବାଳରେ ଉକୁଣି ରହିଥାନ୍ତି, ସେମାନେ ରୋଗଗ୍ରସ୍ତ ଥାନ୍ତି ଏବଂ ମୁଁ କାଳେ ସେମାନଙ୍କ ରୋଗରେ ସଂକ୍ରମିତ ହୋଇପଡ଼ିବି । ତୁମେ କହୁଥିଲ ଯେ ସେମାନେ ଢେଲା ଫିଙ୍ଗନ୍ତି, ସେମାନେ ମାଡ଼ପିଟ୍ ହୁଅନ୍ତି ଏବଂ ଆଖିକୁ ଫୋଡ଼ନ୍ତି । ଏସବୁ ଭୟଙ୍କର କଥା କହି ସେମାନଙ୍କ ସହି ଅଗଣାରେ ଖେଳିବାକୁ ମୋତେ ମନା କରାହୋଇଥିଲା । ଏପରିକି ମୁଁ ସେଥିପାଇଁ ଘରେ ବି ରହିପାରୁନଥିଲି । ପ୍ରକୃତରେ ମୋ ପାଇଁ କିଛି ବି ଆଗ୍ରହପ୍ରଦ ନଥିଲା; ବରଂ ଜୀବନ ମୋତେ ଅନ୍ୟକଥା ଶିଖାଇଲା । ଗରିବ ପିଲାମାନେ ରୋଗଗ୍ରସ୍ତ ନୁହଁନ୍ତି । ସେମାନେ ଖେଳନ୍ତି । ସାରାଦିନ ଗୁରିଆଡ଼େ ଦୌଡ଼ି ବୁଲନ୍ତି । କୂଅରୁ ବିଶୁଦ୍ଧ ପାଣି ପିଅନ୍ତି ଯାହାକୁ ତୁମେ କହୁଥିଲ କାଳେ ସେ ପାଣିରେ ରୋଗ ଜୀବାଣୁ ଥିବେ । ସାନ ପିଲାମାନେ ଶସ୍ତା, ରଙ୍ଗଦିଆ ସୁସ୍ୱାଦୁ ମିଠା କିଣିଖାଆନ୍ତି… …ନ୍ତି, ସେମାନଙ୍କର ଅଶାଳୀନ ଭାଷା ଭାରି କୌତୁକିଆ ଏବଂ ମୋତେ ସେଥିପାଇଁ ଘରଟି ସହିତର ଅପେକ୍ଷା ଅଧିକ ଖୁସି ଦେଉଥିଲା ।"

ହେନେରିକ୍ ଜୀବନରେ ପରିବର୍ତ୍ତନ ଆସିଲା । ତାଙ୍କର ଭୟ ଦୂର ହୋଇଗଲା । ମନରୁ ଦୁର୍ବଳତା, କାତରତା ଓ ହତାଶାଭାବ କଟିଗଲା । ଊନବିଂଶ ଶତାବ୍ଦୀ ବେଳକୁ ହେନେରିକ ବାସ୍ତବ ସାମାଜିକ ସ୍ଥିତିକୁ ଅନୁଭବ କରିବାକୁ ଲାଗିଲେ । ଗରିବମାନଙ୍କୁ ଅତି ନିକଟରୁ ଦେଖିବାର ସୁଯୋଗ ପାଇଲେ । ପରିବାରର ଭାଗ୍ୟରେ ବିଡ଼ମ୍ବନା ଆସିବା ପୂର୍ବରୁ ହେନେରିକ୍ ଏସବୁ ଅନୁଭୂତ ଲାଭ କରିସାରିଥିଲେ । ହତଭାଗା ଗରିବମାନଙ୍କ ସଂସ୍ପର୍ଶରେ ଆସି ସେ ସେମାନଙ୍କର ଆବଶ୍ୟକତା ଓ ନୈତିକ ମୂଲ୍ୟବୋଧକୁ ନିର୍ଦ୍ଧାରଣ କରିବାକୁ ସକ୍ଷମ ହୋଇଥିଲେ । ଧନୀ ପରିବାରର ସନ୍ତାନ ହିସାବରେ ଦାମୀ ପୋଷାକ ପିନ୍ଧୁଥିବା ସମୟରେ ବି ସେ ଏହି ଗରିବମାନଙ୍କ

ଉଦ୍ଦେଶ୍ୟରେ ବିକାଶମୂଳକ ଯୋଜନାମାନ ମନରେ ଆଙ୍କୁଥିଲେ ଯାହାକି ପରବର୍ତ୍ତୀ କାଳରେ ସେ ହୃଦୟଙ୍ଗମ କରିପାରିଥିଲେ । ସେ ତାଙ୍କ ଜୀବନସ୍ମୃତିରେ ଲେଖିଛନ୍ତି, "ମାଆ ଥରେ କହୁଥିଲେ, ମୋର କୌଣସି ନିର୍ଦ୍ଦିଷ୍ଟ ଲକ୍ଷ୍ୟ ନାହିଁ । କଅଣ ପିନ୍ଧୁଥିଲି, କାହାସହ ସାଥୀ ହେଉଥିଲି ଆଦି ପ୍ରତି ମୋର ଖାତିର ନଥିଲା । ବଡ଼ଘର ବା ଶ୍ରେଷ୍ଠ ଘରର ପିଲା ସମସ୍ତେ ମୋ ପାଇଁ ସମାନ ଥିଲେ । ସେମାନେ ବି ତ ମୋ ଭଳି କୁନି କୁନି ଉଜ୍ଜ୍ୱଳ ତାଜ୍ୱଲ ପିଲା ଥିଲେ । ଏହାହିଁ ମୋ ପାଇଁ ସବୁଠାରୁ ବଡ଼କଥା ଥିଲା । ତା'ଛଡ଼ା ମୁଁ ତ ଶ୍ରେଷ୍ଠପିଲାଟିଏ ଥିଲି ଏବଂ ଆମ ଅଗଣାରେ ରହୁଥିବା ଏହି ଗରିବ, କ୍ଷୁଧାଗ୍ରସ୍ତ ଏବଂ ମଇଳା ବସନ ପରିହିତ ପିଲାମାନଙ୍କର କୌଣସି ସମସ୍ୟା ସମାଧାନ କରିପାରୁନଥିଲି ।"

ମାତ୍ର ଚଉଦ ବର୍ଷ ବୟସ ବେଳୁ କୋର୍ଯାକ ଶିକ୍ଷାରେ ସଂସ୍କାର ଆଣିବା ପାଇଁ ମନେ ମନେ ଯୋଜନା କରିବାକୁ ଆରମ୍ଭକଲେ । ଯେତେବେଳେ ଶିକ୍ଷାର ବିଶାଳ ବକ୍ଷଟିକୁ କୋର୍ଯାକ୍ ପରିଷ୍କାର ଭାବରେ ଉପଲବ୍ଧି କରିପାରିନଥିଲେ । ଅର୍ଥର ଅଭାବ ସମସ୍ୟା ସମାଧାନ ବାଟରେ ଅନ୍ତରାୟ ହେଉଥିଲା ବୋଲି ସେ ହୃଦୟଙ୍ଗମ କରୁଥିଲେ । ସୁରକ୍ଷିତ ପାରିବାରିକ ପରିବେଶଟି ତାଙ୍କପାଇଁ ଅଦୃଶ୍ୟ ହୋଇଗଲା । ଗରିବ ଲୋକମାନେ ବଞ୍ଚୁଥିବା ଦୁର୍ବିସହ ଜୀବନକୁ ସେ ଅତି ନିକଟରୁ ଦେଖିଲେ ଏବଂ ଏସବୁ ତାଙ୍କ ଭିତରେ ଅନେକ ଆନ୍ଦୋଳନାତ୍ମକ ଉତ୍ତ୍ୟକ୍ତ ଚିନ୍ତାଶୀଳ ବକ୍ତୃତାମାନ ସୃଷ୍ଟି କରିପାରିଥିଲା । କୋର୍ଯାକ୍ ଲକ୍ଷ୍ୟକଲେ ଯେ ଧନୀଲୋକମାନଙ୍କ ସମବେଦନା ଓ ସାହାଯ୍ୟ ପ୍ରଦାନ ଗରିବମାନଙ୍କୁ ଗରିବୀ ସ୍ଥିତିରେ ରହିବା ପାଇଁ ଅଧିକ ସହାୟକ ହେଉଥିଲା । ଅଭାବୀମାନେ ଧନିବାନଙ୍କଠାରେ ନିର୍ଭରଶୀଳ ହୋଇ ରହିବା ସମ୍ବନ୍ଧରେ କୋର୍ଯାକ୍‌ଙ୍କ ଦୃଷ୍ଟିକୋଣ ଅଧିକ ଶାଣିତ ଥିଲା ଏବଂ ଏ ସମ୍ପର୍କରେ ନିର୍ଦ୍ଦିଷ୍ଟ ମତାମତ ପ୍ରଦାନ କରିବା ପାଇଁ ତାଙ୍କ ଭିତରେ ପ୍ରେରଣା ଜାଗ୍ରତ ହେଲା ।

ବାପଛେଉଣ୍ଡ ସନ୍ତାନ ହୋଇ କୋର୍ଯାକ ଯେତେବେଳେ କିଶୋର ଅବସ୍ଥାରେ ପଦାର୍ପଣ କଲେ, ସେତେବେଳେ ସେ ନିଜର ନିକଟ ସମ୍ପର୍କୀୟମାନଙ୍କ ପ୍ରତି ତଥା ନିଜ ପ୍ରତି ଥିବା କର୍ତ୍ତବ୍ୟ ବିଷୟରେ ଅଧିକ ସଚେତନ ହୋଇପଡ଼ିଲେ । ସେ ଏଭଳି ଏକ ଜୀବନ ବଞ୍ଚିବାକୁ ଶପଥ ନେଲେ ଯାହାକି ତାଙ୍କ ପିଲାବେଳର ପ୍ରାଚୁର୍ଯ୍ୟଭରା ଜୀବନଧାରାଠାରୁ ସମ୍ପୂର୍ଣ୍ଣ ବିପରୀତ । କିନ୍ତୁ ୫ ବର୍ଷ ବେଳେ ସେ ଯେଉଁ ଯୋଜନା ପ୍ରସ୍ତୁତ କରିଥିଲେ, ସେସବୁ ତାଙ୍କ ମନରୁ ଉଭେଇଗଲା ନାହିଁ । ତାଙ୍କ ମାଆ ଠିକ୍ କହୁଥିଲେ । କୋର୍ଯାକ କେବଳ ଶ୍ରେଷ୍ଠ ଘର ପିଲାମାନଙ୍କ ସହ ଖେଳୁଥିଲେ ତାହା ନୁହେଁ ସେ ସବୁ ଶ୍ରେଣୀର କୁନିପିଲାଙ୍କ ସାଙ୍ଗରେ ଖେଳୁଥିଲେ ।

କୋର୍ଯାକ୍‌ଙ୍କ ଏହି ଦରଦୀ ମନିଷ ହୃଦୟ ପିଲାବେଳ ଜୀବନ ଭିତରେ ଆବଦ୍ଧ ନଥିଲା । ଜୀବନର ଅନ୍ତିମ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ଦରିଦ୍ରତମ ଅନାଥ ପିଲାମାନଙ୍କ

ସାଙ୍ଗରେ ଖେଳିଥିଲେ । ଏହି ପିଲାମାନଙ୍କ ପାଇଁ ଦେଶସାରା ସେ ଉନ୍ମୋଚନ କରିଥିଲେ ଅନେକ ଘର, ଅନେକ ଅନେକ ଅନୁଷ୍ଠାନ, ଅନେକ ଅନାଥାଶ୍ରମ, ଯାହାକି ଅଦ୍ୟାବଧି ତାଙ୍କର ସ୍ମୃତିଚାରଣ କରୁଛି ।

## (୪) କୈଶୋରର ରହସ୍ୟ

କୋର୍ଝାକ୍ ମନ ଭିତରେ କୌଣସି ପ୍ରକାର ଆବିଳତା ନରଖି ନିଜ ଜୀବନ ସମ୍ପର୍କରେ ତାଙ୍କ ଜୀବନୀ ପୁସ୍ତକ ତଥା ଅନ୍ୟ ଲେଖାମାନଙ୍କରେ ଅତି ଖୋଲାଖୋଲି ଭାବରେ ପ୍ରକାଶ କରିଛନ୍ତି । ଜୀବନର ଯେଉଁସବୁ କଥା ଜଣେ ପଦାରେ ପ୍ରକାଶ କରିବାକୁ କୁଣ୍ଠାବୋଧ କରିଥାଏ, କୋର୍ଝାକ ସେହିଭଳି କଥାକୁ ଅତି ସ୍ୱାଭାବିକତାର ସହ ତାଙ୍କ ଲେଖାମାନଙ୍କରେ ସ୍ୱୀକାର କରିଛନ୍ତି । ସତେଯେପରି ତାଙ୍କ ଜୀବନଟି ଏକ ନିର୍ମଳ ପୋଖରୀ ଯାହାର ମାଟିତଳ ପର୍ଯ୍ୟନ୍ତ ସବୁକିଛି ପରିଷ୍କାର ଦିଶିଯାଉଛି ।

"ଜଣେ ପିଲାକୁ କିପରି ଭଲ ପାଇବ" ପୁସ୍ତକର ଶେଷ ଆଡ଼କୁ କୋର୍ଝାକ୍ କିଶୋର ଅବସ୍ଥା ସମ୍ବନ୍ଧରେ ଲେଖିଛନ୍ତି । ସେ କୈଶୋର ଶବ୍ଦଟିକୁ ସମାଲୋଚନା କରିଛନ୍ତି । ତାଙ୍କ ମତରେ କିଶୋର ଅବସ୍ଥାରେ ଜୀବନର ଏତେ ସବୁ କଥା ଭରି-ରହିଛି ଯେ ଏହି ଶବ୍ଦରୁ ବାହାରୁଥିବା ଅର୍ଥଟି ସେସବୁକୁ ଆଦୌ ପ୍ରକାଶ କରିପାରୁ ନାହିଁ । କୋର୍ଝାକଙ୍କ ମତରେ ବ୍ୟକ୍ତିର ବିକାଶ ବୟସ ଉପରେ ନିର୍ଭର ନକରି ବ୍ୟକ୍ତିତ୍ୱ ଉପରେ ହିଁ ନିର୍ଭର କରେ ।

କୋର୍ଝାକ୍ ତାଙ୍କ ପିଲାଦିନର ଦିନଲିପିରେ ଲେଖିଥିବା ଗୋଟିଏ ଘଟଣାକୁ ତାଙ୍କ ଜୀବନୀ ପୁସ୍ତକରେ ବି ଅବତାରଣା କରିଛନ୍ତି । ଜୀବନର ଶେଷ ଆଡ଼କୁ ସେ ଜୀବନୀ ପୁସ୍ତିକାରେ ଏହି ଅଂଶଟି ଲେଖିଥିଲେ । କିଶୋର ଅବସ୍ଥାର ଏହିଭଳି ଅନେକ ଘଟଣା ତାଙ୍କୁ ଜୀବନର ଶେଷ ପର୍ଯ୍ୟାୟ ପର୍ଯ୍ୟନ୍ତ ବି ପ୍ରଭାବିତ କରି ରଖିଥିଲା ।

"ଗୋଟିଏ ପ୍ରଜାପତିର ସ୍ୱୀକାର ଉକ୍ତି" ବହିରେ ୧ ବର୍ଷ ବୟସରେ ସେ ନିଜକୁ ଜଣେ ହିରୋ ଭାବରେ ଦର୍ଶାଇ ଲେଖିଛନ୍ତି, "ମୋତେ ଏବେ ୧୪ ବର୍ଷ । ତେଣୁ ମୁଁ ଭାବୁଛି ମୋର ଏକ ଅସ୍ତିତ୍ୱ ରହିଛି ।"

କୋର୍ଝାକ ତାଙ୍କ ତେଷଠିତମ ବର୍ଷ ବୟସରେ ଚଉଦ ବର୍ଷ ବୟସର ଜନ୍ମ ଦିବସକୁ ସ୍ମରଣ କରି ଜୀବନୀ ପୁସ୍ତକରେ ଲେଖିଛନ୍ତି, "ମୁଁ ମୋ ଚତୁଃପାର୍ଶ୍ୱକୁ ଲକ୍ଷ୍ୟ କରୁଛି । ମୁଁ ଗ୍ରହଣ କରୁଛି ଏବଂ ଅଧିକରୁ ଅଧିକ ଦେଖୁଛି ।" ପନ୍ଦର ବର୍ଷ ବୟସରେ ସେ ଲେଖିଛନ୍ତି, "ମୁଁ···ପଢ଼ୁଛି···ପଢ଼ୁଛି···ପଢ଼ୁଛି । ଗୋଟିଏ ବହି ପଢ଼ିସାରିଲାପରେ

ଆଉ ଗୋଟିଏ ବନ୍ଧ ମୁଁ ଧାର ସୂତରେ ମାଗିଆଣୁଛୁ ଏବଂ ପୁଣି ବନ୍ଧ ବଦଳାଇ ଆଉ ଗୋଟିଏ ବନ୍ଧ ଗଦା ଭିତରେ ନିଜକୁ ହଜାଇ ଦେଉଛୁ । ପାଠ ପଢ଼ିବା ଭିତରେ ମୁଁ ଏପରି ମଜ୍ଜିଯାଉଛୁ ଯେ ପୃଥିବୀରେ ଆଉ କିଛି ଅଛି ବୋଲି ମୋର ହୋସ୍ ରହୁନାହିଁ । ସତେ ଯେପରି ସବଂଶ କେବଳ ବନ୍ଧ ବନ୍ଧ ଆଉ ବନ୍ଧ ।''

କୋର୍ଯାକ ୧୪ରୁ ୧୬ ବର୍ଷ ବୟସ ଭିତରେ ମାଧ୍ୟମିକ ଶିକ୍ଷା ଶେଷ କରିଥିଲେ । ଏହି ସମୟରେ ବିଦ୍ୟାଳୟରେ ଥିଲାବେଳେ ତାଙ୍କର ଘର କଥା ମନେପଡ଼ୁଥିଲା । ଛୁଟିଦିନଗୁଡ଼ିକରେ ସେ ବହୁତ ହାଲୁକା ଓ ସୃଜନଶୀଳ ଅନୁଭବ କରୁଥିଲେ । ତାଙ୍କ ଭିତରେ ଅନେକ ସ୍ୱପ୍ନ, ଆଶା ଭରିଯାଉଥିଲା । ଏହି ଛୁଟିଦିନଗୁଡ଼ିକରେ ସେ ପ୍ରକୃତି କୋଳରେ ବୁଲି ବୁଲୁଥିଲେ ଏବଂ ପ୍ରକୃତିର ବିବିଧ ଜୀବନଧାରାକୁ ଉପଲବ୍ଧି କରି ଉପଭୋଗ କରୁଥିଲେ ।

କୋର୍ଯାକ୍ ପିଲାଦିନୁ ସ୍ପଷ୍ଟବାଦୀ ଥିଲେ । ସବୁକିଛି ମୁକ୍ତ ଭାବରେ ସ୍ୱୀକାର କରୁଥିଲେ । ସମ୍ପୂର୍ଣ୍ଣ ଭାବରେ ସତ୍ୟନିଷ୍ଠ ଥିଲେ । ଶରୀର ଗଠନ ଓ ଅଭିବୃଦ୍ଧି ସାଙ୍ଗକୁ ଯେତେ ଯେତେ ନୂଆ ନୂଆ ରହସ୍ୟମାନ ନିଜ ଭିତରେ ସେ ଆବିଷ୍କାର କରୁଥିଲେ, ସେ ସବୁକୁ ଅତି ସ୍ୱାଭାବିକ ଭାବରେ ପ୍ରକାଶ କରିପାରୁଥିଲେ । ପ୍ରେମର ଅନୁଭୂତି ତଥା ଖୁସି ଓ ନୈରାଶ୍ୟର ଅନୁଭୂତିକୁ ସେ ସମାନ ଭାବରେ ବ୍ୟକ୍ତ କରୁଥିଲେ । ସାମାନ୍ୟ ଟିକିଏ ବି ଲୁଚାଇ ରଖୁନଥିଲେ ।

କିଶୋର ଅବସ୍ଥାରେ ମନ ଓ ପରିବେଶ ଭିତରେ ଅନେକ ପାର୍ଥକ୍ୟ ଅନୁଭବ କରୁଥିଲେ । ଯୁବକ ତଥା ଜୀବନର ପ୍ରସ୍ଫୁଟନ ଅବସ୍ଥାରେ ଏହି ପାର୍ଥକ୍ୟ ବୋଧହୁଏ ଅଧିକ ସମସ୍ୟା ହୋଇ ଛିଡ଼ା ହୋଇଥିଲା । ମାତ୍ର ଏ ସମସ୍ତ ଅନୁଭୂତି ତାଙ୍କର ଭବିଷ୍ୟତ କର୍ମମୟ ଜୀବନ ପାଇଁ ଅନେକ ସଂପଦ ହୋଇ କାମକଲା ।

ପିଲାଦିନରୁ ହେନେରିକ୍ ତାଙ୍କ ସମବୟସ୍କ ପିଲାମାନଙ୍କଠାରୁ ନିଆରା ଥିଲେ । ଅନେକ ସ୍ୱପ୍ନ, ଆଶା ଆକାଙ୍‌କ୍ଷା ଓ ଯନ୍ତ୍ରଣା ଭିତରେ ତାଙ୍କ ପିଲାଦିନର ଜୀବନ ଉବୁଟୁବୁ ହେଉଥିଲା । ଏସବୁ କ୍ରମେ ତାଙ୍କ ସାରା ଜୀବନରେ ପ୍ରତିଫଳିତ ହୋଇଥିଲା । ଅନେକ ନବ ନବ ଉନ୍ମେଷଶାଳିନୀ ଚିନ୍ତା ଓ ଦୃଷ୍ଟିକୋଣ ତାଙ୍କ ବର୍ଦ୍ଧିଷ୍ଣୁ ମନଟିକୁ ଆଚ୍ଛାଦିତ କରି ରଖୁଥିଲା । ଜୀବନର ମୌଳିକ ସତ୍ୟଗୁଡ଼ିକ ଯଥା—ମୃତ୍ୟୁ, ନାସ୍ତି, ଈଶ୍ୱର, ଅର୍ଥ ଏସବୁ ତାଙ୍କ କଳ୍ପନାରାଜ୍ୟରେ ପ୍ରବେଶ କରି ତାକୁ ଦ୍ୱନ୍ଦ୍ୱ ଭିତରେ ଛନ୍ଦି ପକାଉଥିଲେ । ଏଥିପାଇଁ ଯନ୍ତ୍ରଣା ଭୋଗିଥିଲେ, ଅନୁସନ୍ଧିତ୍ସୁ ହୋଇପଡ଼ିଥିଲେ ଏବଂ ବିଦ୍ରୋହ କରିଥିଲେ ଏବଂ ପରିଶେଷରେ ଲେଖକ ହିସାବରେ ତାଙ୍କର କଲମର ମୁନ ଶକ୍ତିଶାଳୀ ହୋଇଉଠିଥିଲା ।

କୋର୍ଚ୍ଚାକଙ୍କ ପ୍ରାପ୍ତବୟସ୍କ ଜୀବନଟିକୁ ଲକ୍ଷ୍ୟକଲେ, ମନେହୁଏ ସେତେବେଳେ ପ୍ରେମ ବିଷୟରେ ତାଙ୍କର ଧାରଣା ନଥିଲା । ମାତ୍ର କୈଶୋର ସୁଲଭ ଅବସ୍ଥାରେ ସରଳ ଓ ନିଷ୍କପଟ ପ୍ରେମ ଏକ ମୁଖ୍ୟ ଦିଗ ଭାବରେ ପ୍ରତିଭାତ ହୋଇଉଠିଥିଲା । ତାଙ୍କର ଏହି ପ୍ରେମରେ ଦୃଢ଼ତା ଥିଲା, ଭାବମୟତାରେ ପରିପୂର୍ଣ୍ଣ ଥିଲା ଏବଂ ଏହି ପ୍ରେମ ମୌଳିକ ଥିଲା । ନିଜ ପ୍ରେମ ସଂବନ୍ଧରେ ସେ ଅତି ଖୋଲା ହୃଦୟରେ ପ୍ରକାଶ କରି ଲେଖିଛନ୍ତି—୭ ବର୍ଷରୁ ୧୪ ବର୍ଷ ବୟସ ମଧ୍ୟରେ ସେ କେତେ କେତେ ଝିଅକୁ ଭଲପାଇଛନ୍ତି । ସେମାନଙ୍କ ଭିତରୁ ଅନେକଙ୍କ କଥା ତାଙ୍କର ମନେଅଛି । କେଉଁ ଝିଅ ପାଇଁ ସେ ଫୁଲ ଛିଣ୍ଡାଇ ଆଣି ଦେଇଛନ୍ତି । ଆଉ କାହାକୁ ଖୁସି କରାଇବା ସକାଶେ ଆଉ କଅଣ ସବୁ କରିଛନ୍ତି । କେଉଁ ଝିଅକୁ ସେ ସପ୍ତାହକ ପାଇଁ ତ ଆଉ କାହାକୁ ମାସେରୁ ତିନିମାସଯାଏ ଭଲ ପାଇ ବସିଛନ୍ତି । ଏହି ଭଲ ପାଇବା ପୁଣି ବିଭିନ୍ନ ରକମର ଥିଲା । କାହାକୁ ସେ ଭଉଣୀ ଭାବରେ ଭଲ ପାଉଥିଲେ, ଆଉ କାହାକୁ ସହଧର୍ମିଣୀ ଭାବରେ ତ ଆଉ କାହାକୁ ଶାଳୀ ଭାବରେ ଭଲ ପାଉଥିଲେ । ତାଙ୍କର ଏସବୁ ପ୍ରେମ ଅତ୍ୟନ୍ତ ମୌଳିକ ତଥା ନିଜସ୍ୱ ଥିଲା । ଜଣକୁ ସ୍ତ୍ରୀ ଭାବରେ ପାଇବା ପାଇଁ ପ୍ରେମ କରିବା ପ୍ରତ୍ୟେକଙ୍କ ନିକଟରେ ଅତି ସ୍ୱାଭାବିକ କଥା; ମାତ୍ର କାହାକୁ ଭଉଣୀ ବା ଶାଳୀ ଭାବରେ ପ୍ରେମ କରିବା ସହଜରେ ଦେଖାଯାଏ ନାହିଁ । କୋର୍ଚ୍ଚାକଙ୍କ ପ୍ରେମ ଦୈହିକ ପ୍ରେମଠାରୁ ବହୁ ଊର୍ଦ୍ଧ୍ୱରେ ରହିଥିଲା । ତାଙ୍କ ପ୍ରେମରେ ଭରିରହିଥିଲା, ନିସ୍ୱାର୍ଥପରତା ତଥା ଅତି ଭୌତିକ ସ୍ତରର ମହାନୀୟତା ।

ଯେଉଁ କୁନି କୁନି ଝିଅମାନଙ୍କ ପ୍ରେମରେ କୋର୍ଚ୍ଚାକ ପଡ଼ିଯାଇଥିଲେ ବୋଲି ଉଲ୍ଲେଖ କରିଛନ୍ତି, ସେମାନେ ତାଙ୍କ ଜୀବନର ବାସ୍ତବ କ୍ଷେତ୍ରରେ ବିଶେଷ ଭୂମିକା ଗ୍ରହଣ କରିନଥିଲେ । ମାତ୍ର ଏମାନଙ୍କ ବିଷୟରେ କୋର୍ଚ୍ଚାକଙ୍କ ମନ ଭିତରେ ଏକ ଗଭୀର ଛାପ ପଡ଼ିଯାଇଥିଲା । ତାଙ୍କ ଲେଖାରେ ଏମାନଙ୍କ ବିଷୟରେ ପୃଷ୍ଠା ପୃଷ୍ଠା ବର୍ଣ୍ଣନା କରାଯାଇଛି । କାହାର ଦୁଃଖପୂର୍ଣ୍ଣ ଅନୁକୂଳ ଅବସ୍ଥାଗୁଡ଼ିକରେ ସେ ନିଜର ବେଦନାସିକ୍ତ ଆବେଗକୁ ନିଖୁଣ ଭାବରେ ବର୍ଣ୍ଣନା କରିଛନ୍ତି । ତାଙ୍କ ଭିତରର ଏହି ସମ୍ବେଦନଶୀଳତା ପରବର୍ତ୍ତୀ ଜୀବନରେ ଅନାଥ ପିଲାମାନଙ୍କ ସକାଶେ ଅଜାଡ଼ି ହୋଇ ପଡ଼ିଥିଲା । ଏହାଦ୍ୱାରା ସେ ଅନେକ ଅନାଥା ପିଲାଙ୍କୁ ପ୍ରକୃତ ପିତାର ହୃଦୟଟି ପ୍ରଦାନ କରିପାରିଥିଲେ । "ନିସାହାଯ୍ୟମାନଙ୍କର ବି ଏହି ବିଶ୍ୱକୁ ଅଧିକାର"—ଏହି ପ୍ରତ୍ୟୟଟି ସେ ପିଲାମାନଙ୍କ ଭିତରେ ଆଣି ଦେଇ ପାରିଥିଲେ । ଏସବୁ ବ୍ୟତୀତ କୋର୍ଚ୍ଚାକଙ୍କର ପଶୁପକ୍ଷୀ, ଗଛଲତା ତଥା ସମଗ୍ର ପ୍ରକୃତି ପ୍ରତି ଗଭୀର ଅନୁରାଗ ଥିଲା ।

ପିଲାଦିନରୁ କୋର୍ଚ୍ଚାକଙ୍କର ସାହିତ୍ୟ ପ୍ରତି ପ୍ରବଳ ଆଗ୍ରହ ଥିଲା । ୧୫ ବର୍ଷ ବେଳକୁ ତ ସେ ବହିପଢ଼ାରେ ମଜ୍ଜି ଯାଉଥିଲେ । ଛପାଦୁନିଆର ଅନେକ ମହତ୍ତ୍ୱପୂର୍ଣ୍ଣ

ସନ୍ଦେଶ ଜୀବନର ବିକାଶପଥରେ ତାଙ୍କର ସାଥିହୋଇ ରହିଗଲା ଏବଂ ପ୍ରକୃତ ଲକ୍ଷ୍ୟ ପଥରେ ପହଞ୍ଚାଇବା ପାଇଁ ସହାୟକ ହୋଇପାରିଥିଲା । ବହି ପଢ଼ିଲାବେଳେ ବହିର ଅନ୍ତର୍ନିହିତ ସନ୍ଦେଶ ଗୁଡ଼ିକ ଅନୁସାରେ ତାଙ୍କ ମୁଖମଣ୍ଡଳରେ ପରିବର୍ତ୍ତନର ପ୍ରତି-ଫଳନ ଦିଶିଯାଉଥିଲା । ଖୁସିର ସନ୍ଦେଶରେ ଗାଲଗୁଡ଼ିକରେ ଉଜ୍ଜ୍ୱଳତା ଫୁଟିଉଠୁଥିଲା । ଦୁଃଖ କଥାରେ ସେ ଅଶ୍ରୁଳ ନୟନରେ ସିକ୍ତ ହୋଇଉଠୁଥିଲେ । ବିଜୟର ପ୍ରତିଧ୍ୱନି ତାଙ୍କୁ ହର୍ଷୋତ୍କତାରେ ପରିପୂର୍ଣ୍ଣ କରି ଦେଉଥିଲା । ବେଳେବେଳେ ସେ ଅନେକ ବହି ଲୁଚାଇ ଲୁଚାଇ ପଢ଼ୁଥିଲେ । କାରଣ ଏସବୁ ବହି ପଢ଼ିବା ପାଇଁ ବାପାମା'ଙ୍କର ଅନୁମତି ମିଳୁନଥିଲା । ଯୌବନର ଆଦ୍ୟ ଦଶନ୍ଧିରେ ଯେ ଏତେ ଗୁଡ଼ିଏ ବହି ପାଠ କରିଥିଲେ ଯେ ତାହା ସାରା ବିଶ୍ୱର ପରିସରକୁ ପରିବ୍ୟାପ୍ତ କରିପାରୁଥିଲା । କୌଣସି ବହି ପ୍ରତି ଅଗ୍ରାହ୍ୟଭାବ ନରଖି ବା ମନ ଭିତରେ କୌଣସି ବାରଣ ନରଖି ସେ ବହିଟିକୁ ପଢ଼ି ଶେଷ କରି ଦେଉଥିଲେ । ପଢ଼ିଲାବେଳେ ସେ ଅନେକ ଚରିତ୍ର ଓ କାଳ୍ପନିକ ପରିବେଶ ଗୁଡ଼ିକ ସହିତ ନିଜକୁ ବ୍ୟାପ୍ତ କରିଦେଉଥିଲେ । ଏସବୁର ପ୍ରଭାବ ତାଙ୍କ ସୃଜନଶୀଳ ସାହିତ୍ୟ ପ୍ରତିଭା ଓ ରଚନା ଭିତରେ ପ୍ରତିଫଳିତ ହୋଇ-ପାରିଥିଲା । ପିଲାଦିନୁ ସେ ତାଙ୍କର ମନପସନ୍ଦ ଲେଖକମାନଙ୍କ ପାଖକୁ ଚିଠିରେ ପ୍ରଶଂସା ଜଣାଉଥିଲେ ଓ ତାଙ୍କ ଉଲ୍ଲସିତ ଅନୁଭବ ଗୁଡ଼ିକୁ ଲେଖି ଜଣାଇ ଦେଉଥିଲେ ।

ପ୍ରଥମେ ପ୍ରଥମେ କୋର୍ଯାକ୍ ତାଙ୍କ ରଚନା ଶୈଳୀର ବାଟ ପାଉନଥିଲେ । ପୋଲଣ୍ଡର ଅନେକ ପ୍ରତିଷ୍ଠିତ ଲେଖକଙ୍କ ବହି ପଢ଼ି ତଥା ଅନେକ ବିଦେଶୀ ଲେଖକ ଓ କଥାକାରଙ୍କ ରଚନାରୁ ଅନୁଭୂତି ସଂଗ୍ରହ କରି ସେ ନିଜର ରଚନା ଶୈଳୀକୁ ସ୍ଥିର ଓ ଦୃଢ଼ କରିପାରିଥିଲେ । ବିଦେଶୀ ଲେଖକଙ୍କ ଭିତରେ କାଉଣ୍ଟ ଷ୍ଟୋଲଷ୍ଟୟ ତାଙ୍କୁ ଅନେକ ପ୍ରଭାବିତ କରିଥିଲେ । ନିଜର ରଚନାଶୈଳୀକୁ ଅଧିକ ନିଜସ୍ୱ ଓ ସୃଜନଶୀଳ କରିବାପାଇଁ ସେ ଆହୁରି ଅନେକ ବହି ପଢ଼ି କଳ୍ପନାର ଦିଗନ୍ତକୁ ବିସ୍ତାରିତ କଲେ । ଦାନ୍ତେ, ସ୍କିଲର, ସେକ୍ସପିଅର ଆଦି ଅନେକ ଖ୍ୟାତି ସମ୍ପନ୍ନ ଲେଖକଙ୍କ ରଚନା ଗୁଡ଼ିକ ପଢ଼ିଲେ । ନିଜର ସମସ୍ତ ସମୟକୁ ଏହି କାର୍ଯ୍ୟରେ ନିୟୋଜିତ କରିବାପାଇଁ ଯଥାସମ୍ଭବ ସଚେଷ୍ଟ ରହିଲେ । ସତେଯେପରି ସେ ବୁଝିପାରୁଥିଲେ ଆଶା ଅନୁସାରେ ଜୀବନଟା ଅତ୍ୟନ୍ତ କ୍ଷୁଦ୍ର । ସେ ଉପଦେଶ ଛଳରେ ଲେଖିଥିଲେ, "ଯଦି କେତେବେଳେ ସମୟ ଟିକିଏ ବଳିପଡ଼ିଲା, ତାକୁ ନିଜ ମନକୁ ଶିକ୍ଷା ଦେବାପାଇଁ ବ୍ୟବହାର କର ।"

ନିଜର ସାହିତ୍ୟ ସୃଷ୍ଟି ପ୍ରଚେଷ୍ଟାରେ ସେ ଅନ୍ୟ କାହାଠାରୁ ବିଶେଷ ଦିଗ୍‌ଦର୍ଶନ ପାଇ ପାରିନଥିଲେ । ତେଣୁ ତାଙ୍କର ପ୍ରାଥମିକ ଉଦ୍ୟମ ଗୁଡ଼ିକରେ

ଅନେକ ଅଭାବ ଓ ଦୁର୍ବଳତାମାନ ପରିଲକ୍ଷିତ ହେଉଥିଲା । ଫଳରେ ପ୍ରକାଶକ-ମାନଙ୍କ ଦ୍ୱାରା ଲେଖାଗୁଡ଼ିକ ବିଶେଷ ଆଦୃତ ହୋଇପାରୁନଥିଲା ।

ଥରେ କୋର୍ଚ୍ଚାକ୍ ଗୋଟିଏ କବିତା ଲେଖିଥିଲେ । କବିତାଟିକୁ ପୋଲାଣ୍ଡର ଗୋଟିଏ ରବିବାରିଆ ପତ୍ରିକାରେ ପ୍ରକାଶ କରିବା ପାଇଁ ସେ ସମ୍ପାଦକଙ୍କୁ ସାକ୍ଷାତ କରିବା ସକାଶେ ଯାଉଥିଲେ । ସାକ୍ଷାତର ବାର୍ତ୍ତାଳାପକୁ ସେ ଜଣେ ବିଶ୍ୱସ୍ତ ବନ୍ଧୁଙ୍କ ଆଗରେ ଅତି ଦୁଃଖର ସହ ବର୍ଣ୍ଣନା କରିଥିଲେ । ସେ କହିଥିଲେ, "ମୁଁ ସମ୍ପାଦକଙ୍କ ଆଗରେ ମୋ କବିତାଟିକୁ ହାତରେ ଧରି ଥରି ଥରି ପାଠ କଲି । ସମ୍ପାଦକ କବିତାଟିକୁ ମନଧ୍ୟାନ ଦେଇ ଶୁଣିଲେ । ମୁଁ ଯେତେବେଳେ ଆବୃତ୍ତି କଲି—

"—ମୋତେ ମରିବାକୁ ଦିଅ
ମୋତେ ବଞ୍ଚିବାକୁ ଦିଅନା,
ଅନ୍ଧାରୁଆ ମଶାଣି ଭିତରକୁ
ମୋତେ ଖସି ପଳାଇଯିବାକୁ ଛାଡ଼ିଦିଅ ।

ସେତେବେଳେ ସମ୍ପାଦକ ଚଡ଼ାଗଳାରେ ଉତ୍ତର ଦେଲେ "ହଁ, ମୁଁ ତୁମକୁ ଦେବି ।" ସମ୍ପାଦକଙ୍କର ଏହି ମନ୍ତବ୍ୟ କୋର୍ଚ୍ଚାକଙ୍କୁ ବହୁତ ଆଘାତ ଦେଲା । ତା' ପରଠାରୁ ସେ ଆଉ କେବେ କବିତା ଲେଖିନଥିଲେ ।

ଦୁର୍ଭାଗ୍ୟର କଥା ଯେ କୋର୍ଚ୍ଚାକ୍ ଯେଉଁ କବିତାଟି ସମ୍ପାଦକଙ୍କ ଆଗରେ ପଢ଼ିବା ପାଇଁ ସ୍ଥିର କଲେ, ତାହା ଅତ୍ୟନ୍ତ ଦୁର୍ବଳ ମନୋଭାବକୁ ପ୍ରକାଶ କରୁଥିଲା ଏବଂ ଲେଖା ଶୈଳୀ ଆଦୌ ସୁଖଶ୍ରାବ୍ୟ ନଥିଲା । ମାତ୍ର ଏହି ପ୍ରଥମ ସ୍ତରରେ କବିତା ଗୁଡ଼ିକ ବି ପ୍ରେମ ଓ ବନ୍ଧୁତ୍ୱର ଆନନ୍ଦଦାୟକ ବିଷୟ ଗୁଡ଼ିକ ପ୍ରତି ଅର୍ପିତ ଥିଲା । ଧର୍ମ ସମ୍ବନ୍ଧୀୟ ସମ୍ବେଦନଶୀଳତା ଏବଂ ସଂଶୟମୁକ୍ତ ମନୋଭାବ କୋର୍ଚ୍ଚାକ୍‌ଙ୍କ କବିତା ଗୁଡ଼ିକର ପ୍ରତିପଦରେ ପ୍ରତିଫଳିତ ହୋଇଉଠୁଥିଲା ।

କୋର୍ଚ୍ଚାକ୍ ନିଜଲିପିରେ ଲେଖିଥିଲେ, ଯେ ୧୯ ବର୍ଷ ବୟସରୁ ତାଙ୍କର ଧର୍ମ ସମ୍ବନ୍ଧରେ ପରିପକ୍ୱତା ଆସିଯାଇଥିଲା । "ସମାଜର ପିଲା" ( Child of Society ) ଏବଂ "ପ୍ରଜାପତିର ସ୍ୱୀକାରୋକ୍ତି" ( Confession of a Butterfly ) ବହି ଦୁଇଟିରେ କୋର୍ଚ୍ଚାକ୍ ଏ ବିଷୟରେ ବର୍ଣ୍ଣନା କରି ଲେଖିଛନ୍ତି । ସେ ଲେଖିଛନ୍ତି ଯେ ପିଲାଟିବେଳରୁ ତାଙ୍କର ଧର୍ମ ସମ୍ବନ୍ଧୀୟ ବିକାଶ-ଧାରାରେ ଆବଶ୍ୟକ ମୁତାବକ ପରିବର୍ତ୍ତନ ହୋଇଥିଲା, ଯାହାକି ତାଙ୍କର ପରବର୍ତ୍ତୀ ଜୀବନରେ ଏବଂ କାର୍ଯ୍ୟଧାରାରେ ସୁଦୂରପ୍ରସାରୀ ପ୍ରଭାବ ପକାଇ ପାରିଥିଲା ।

ହେନେରିକ୍ ଗୋଲଡ଼ସ୍ମିଥ୍ ଅତ୍ୟନ୍ତ ସୃଜନଶୀଳ ଥିଲେ । ତାଙ୍କର ଚିନ୍ତା ଓ ଦୃଷ୍ଟିଭଙ୍ଗୀ ଅତ୍ୟନ୍ତ ମୌଳିକ ଓ ନିଜସ୍ୱ ଥିଲା । ଏଥିପାଇଁ ସେ ଧର୍ମ ଭିତରୁ

ସାହାଯ୍ୟ ପାଉନଥିଲେ କି ଧର୍ମ ତାଙ୍କପାଇଁ ପ୍ରତିବନ୍ଧକ ସୃଷ୍ଟି କରିପାରିନଥିଲା । ସେ ସମ୍ପୂର୍ଣ୍ଣ ଭାବରେ ମୁକ୍ତ ହୋଇ ବଢ଼ିଥିଲେ । ତାଙ୍କର ସ୍ୱାଧୀନ ଚିନ୍ତାଧାରା ପାଇଁ ପିତା ଜୋସେଫ୍‌ଙ୍କର ଅବଦାନ ଯଥେଷ୍ଟ ଥିଲା । ଜୋସେଫ୍ କେବଳ ଶିକ୍ଷାନୁଷ୍ଠାନ-ମାନଙ୍କରେ ହେନେରିକ୍‌ଙ୍କର ନାଁ ଲେଖା ବେଳେ ଯାହା ସାମାନ୍ୟ ଇହୁଦୀ ଧର୍ମର ସଙ୍କେତ ରଖୁଥିଲେ । ଏହା ବ୍ୟତୀତ ହେନେରିକ୍‌ଙ୍କ ଉପରେ ଅନ୍ୟ କୌଣସି ପ୍ରକାର ଧର୍ମୀୟ ପ୍ରତୀକ, କୁସଂସ୍କାର ଓ ଧର୍ମପରମ୍ପରା ଆଦିର ପ୍ରଭାବକୁ ସେ ପ୍ରଶ୍ରୟ ଦେଉ-ନଥିଲେ ।

ହେନେରିକ୍‌ଙ୍କର କୌଣସି ପ୍ରକାର ଧର୍ମୀୟ ଗୋଡ଼ାମି ବା ବିଶ୍ୱାସ ନଥିଲା । ଏପରିକି ତାଙ୍କ ସ୍କୁଲ ଶିକ୍ଷାରେ ଧର୍ମକୁ ଲଦିଦିଆଯାଉନଥିଲା । ସେତେ-ବେଳେ ପୋଲାଣ୍ଡର ଅଧିକାଂଶ ବିଦ୍ୟାଳୟରେ ରୋମାନ୍ କାଥୋଲିକ୍ ଧର୍ମ ବାଧ୍ୟତା-ମୂଳକ ଭାବରେ ପାଠ୍ୟକ୍ରମରେ ଅନ୍ତର୍ଭୁକ୍ତ ଥିଲା । ମାତ୍ର ଏହା ଇହୁଦୀ ପିଲାମାନଙ୍କ ପାଇଁ ବଳବତ୍ତର ନଥିଲା । ହେନେରିକ୍‌ଙ୍କ ଉପରେ ବିଶେଷତଃ ଖ୍ରୀଷ୍ଟିୟାନ ଧର୍ମ-ପୁସ୍ତକ, ଚର୍ଚ୍ଚ, ଉପାସନା ତଥା ଧର୍ମୀୟ ସିଦ୍ଧାନ୍ତ ଆଦିର କିଛି କିଛି ପ୍ରଭାବ ପଡ଼ିଥିଲା । ମାତ୍ର ଏହି ପ୍ରଭାବ ବିଶେଷ ଗଭୀର ଭାବରେ ପ୍ରତିଷ୍ଠିତ ହୋଇପାରିନଥିଲା । କାରଣ ସେ ପରୋକ୍ଷ ଭାବରେ ସାଙ୍ଗସାଥୀମାନଙ୍କ ଦ୍ୱାରା ସେମାନଙ୍କ ଗୃହଚଳନ, କଥାବାର୍ତ୍ତା, ଆଲୋଚନା ମାଧ୍ୟମରେ ଯାହା ଖ୍ରୀଷ୍ଟିୟାନ ଧର୍ମର ପ୍ରଭାବରେ ଆସିଥିଲେ । ହେନେରିକ୍‌ଙ୍କର ଧର୍ମ ଅପେକ୍ଷା, ଆଧ୍ୟାତ୍ମିକତା ଉପରେ ବିଶ୍ୱାସ ଥିଲା । ତେଣୁ ଧର୍ମ ସମ୍ବନ୍ଧୀୟ ଆଲୋଚନାରେ ସେ ମନଯୋଗ ଦେଉନଥିଲେ ।

ପିଲାଟିଦିନରୁ ସାମାଜିକ ସଂସ୍କାରମୂଳକ କାର୍ଯ୍ୟ କରିବା ପାଇଁ ନିଜକୁ ଅଧିକ ସମୃଦ୍ଧ ଓ ପୁଷ୍ଟିଯୁକ୍ତ କରିବା ସକାଶେ କୋର୍ଯାକ୍ ଶପଥ ଗ୍ରହଣ କରିଥିଲେ । ଶିକ୍ଷା-କ୍ଷେତ୍ରରେ ଆମୂଳଚୂଳ ପରିବର୍ତ୍ତନ ତାଙ୍କର ଲକ୍ଷ୍ୟ ଥିଲା । "ପିଲାଟି" (The Child) ନାମକ ଏକ ପୁସ୍ତକ ରଚନା କରିବା ପାଇଁ ସେ ଶୈଶବକାଳରୁ ସ୍ୱପ୍ନ ଦେଖୁଥିଲେ ।

## (୪) ବିଷର୍ଣ୍ଣ ଯୌବନ

କୋର୍ଯାକ୍‌ଙ୍କ ଯୁବକ ଅବସ୍ଥା ଅତ୍ୟନ୍ତ ବିଷାଦଗ୍ରସ୍ତ ଥିଲା । ତାରୁଣ୍ୟ ନାମକ କ୍ଷୁଦ୍ର ଗଳ୍ପରେ ସେ ଏ ସମ୍ବନ୍ଧରେ କହିଛନ୍ତି—"ତୁମେ କହୁଛ ଯୁବକ ଅବସ୍ଥାଟି କେତେ ଚମତ୍କାର । ମାତ୍ର ପ୍ରକୃତରେ ଏହା କେତେ ଭୟଙ୍କର ।"

ସେ ଏହି ପୁସ୍ତକଟିରେ ନିଜର ଅନୁଭୂତି ସକଳକୁ ଗଳ୍ପ ଆକାରରେ ବର୍ଣ୍ଣନା କରିଛନ୍ତି । ବ୍ରୋନ୍‌ସ୍କି ନାମକ ଏକ ବାଳକ ଏହି ଗଳ୍ପର ନାୟକ । ପୁସ୍ତକଟି ବିଷୟରେ ମନ୍ତବ୍ୟ ଦେବାକୁ ଯାଇ କୋର୍ଚାକ୍ କହିଛନ୍ତି—ଯଦି ଜଣେ ଏ ବହିଟି ପଢ଼ିବ ସେ ଭାବିବ ମୁଁ ଗୋଟାଏ ପାଗଳ । କିନ୍ତୁ ପ୍ରକୃତରେ ଯୌବନଟା କଅଣ ପାଗଳାମୀ ନୁହେଁ । କୋର୍ଚାକ ବୃଦ୍ଧ ଅବସ୍ଥାରେ ଥରେ ରେଡ଼ିଓ ସାକ୍ଷାତକାରରେ ନିଜ ଯୁବକ ଅବସ୍ଥାକୁ ମନେପକାଇ କହିଲେ, "ମୁଁ ଗୋଟିଏ ପାଗଳାଖାନାରୁ ଖସି ପଳାଇ ଆସିଲା ପରି ମୋ କିଶୋର ଅବସ୍ଥାକୁ ପାରି ହୋଇ ଆସିଲି ।" ଏହି ଉକ୍ତିଟିରୁ କୋର୍ଚାକ୍‌ଙ୍କର ତାରୁଣ୍ୟର ଦାରୁଣ ଅନୁଭୂତିକୁ ଆମେ ଅନୁମାନ କରିପାରିବା ।

କୋର୍ଚାକ୍ ଯୁବକ ଅବସ୍ଥା ପାରି ହୋଇଗଲେ । ବୟସ ବଢ଼ିବା ସାଙ୍ଗକୁ ତାଙ୍କ ମୁଣ୍ଡରେ ନୂଆ ନୂଆ ସ୍ୱପ୍ନମାନ ଉଙ୍କି ମାରିଲେ । ମାତ୍ର ଶାନ୍ତିରେ ଜୀବନ କାଟିବା ତାଙ୍କ ଭାଗ୍ୟରେ ନଥିଲା । ମଣିଷଟିଏ ହେବା ସଙ୍ଗେ ସଙ୍ଗେ ତାଙ୍କ ଭିତରେ ହତାଶ ଓ ବୈରାଗ୍ୟଭାବ ବଢ଼ି ଚାଲିଲା । ମଝିରେ ମଝିରେ ଆତ୍ମହତ୍ୟା ପାଇଁ ତାଙ୍କ ଭିତରେ ପ୍ରବଳ ଆବେଗ ସୃଷ୍ଟି ହେଉଥିଲା । ତାଙ୍କର ଏଭଳି ମାନସିକ ଅବସ୍ଥା ପରିବାରର ବଂଶାନୁଗତ ପ୍ରଭାବ ଯୋଗୁଁ ଯେ ହେଉଥିଲା ସେ କଥା କହିବା ଠିକ୍ ହେବନାହିଁ । କାରଣ ସେ ସମୟରେ ପୋଲାଣ୍ଡର ସାମାଜିକ ସ୍ଥିତି ଓ ପାରିପାର୍ଶ୍ୱିକ ଅବସ୍ଥା ବହୁତ ଦୁର୍ଭାଗ୍ୟଜନକ ଥିଲା । ଏହି ପରିସ୍ଥିତି କୋର୍ଚାକଙ୍କୁ ଏଭଳି ମାନସିକ ଦୁର୍ବଳତା ଭିତରକୁ ଟାଣିନେଉଥିଲା ।

ଯୌବନର ବିଷାଦମୟ ଅବସ୍ଥାକୁ ବର୍ଣ୍ଣନା କରି ସେ କହିଛନ୍ତି, "ଏପରିକି ସତର ବର୍ଷ ବୟସରେ ଆତ୍ମହତ୍ୟା କରିବା ପାଇଁ ଚୁମ୍ବକୀୟ ବେଗରେ ଆକର୍ଷିତ ହୋଇପଡ଼ୁଥିବାର ଅନୁଭୂତି ମୋ ଭିତରେ ଆସୁଥିଲା ।" ମୁଁ "ଆତ୍ମହତ୍ୟା" ନାମକ ଏକ ଉପନ୍ୟାସ ଲେଖିବାକୁ ଆରମ୍ଭ କଲି । ଏହି ଉପନ୍ୟାସର ମୁଖ୍ୟ ନାୟକ ଜଣକ ପାଗଳ ହୋଇଯିବା ଭୟରେ ନିଜ ଜୀବନକୁ ଘୃଣା କରିବାରେ ଲାଗିଲା । ତା'ପରେ ସେ କହିଛନ୍ତି, "ମୋ ବାପା ଯେଉଁ ପାଗଳାଖାନାରେ ଚିକିତ୍ସିତ ହେଉ-ଥିଲେ, ସେହି ପାଗଳାଖାନା ପ୍ରତି ମୋର ଅତି ସାଙ୍ଘାତିକ ମାତ୍ରାରେ ଭୟ ଥିଲା । ମୁଁ ଜଣେ ପାଗଳ ଲୋକର ସନ୍ତାନ ଭାବରେ ସେହି ବଂଶାନୁଗତ ଗୁଣର ଅଧିକାରୀ ବୋଲି ମୋ ଭିତରେ ଛନକା ପଶିଯାଉଥିଲା ।"

"ତାରୁଣ୍ୟ" ଉପନ୍ୟାସର ନାୟକ ବ୍ରୋନ୍‌ସ୍କି ହତାଶ ହୋଇ ଚିତ୍କାର କରି କହିଛି, "ମନେହେଉଛି କୌଣସି ଏକ ଅଦୃଶ୍ୟ ଶକ୍ତି ମୋତେ ମୃତ୍ୟୁ ମୁହଁକୁ ଠେଲି ଦେଉଛି ।" ତା'ର ଅଳ୍ପ କିଛି ଦିନ ପରେ ଲେଖିଥିବା "ସମାଜର ପିଲା" ନାମକ

ଉପନ୍ୟାସରେ ନାୟକ ଜଣକ ଗୋଟିଏ ବନ୍ଧୁକ ଧରି ନିଜ କପାଳ ଆଡ଼କୁ ଲକ୍ଷ୍ୟ କରୁଥିବା କଥା ସେ ବର୍ଣ୍ଣନା କରିଛନ୍ତି ।

ବିଂଶ ଶତାବ୍ଦୀର ଅଧାଧିରେ ପୋଲାଣ୍ଡ ବାତାବରଣରେ ଆତ୍ମହତ୍ୟାର ଏକ ଦୁର୍ବଳ ମାନସିକତା ଭରିରହିଥିଲା । ଲୋକମାନେ ଭାବିନେଇଥିଲେ ଯେ ସେମାନଙ୍କ ଭାଗ୍ୟରେ କେବଳ ପରାଜୟ ହିଁ ଲେଖାହୋଇଛି ।

୧୮୩୧ ରୁ ୧୮୬୭ ମସିହା ଭିତରେ ପୋଲାଣ୍ଡରେ ସର୍ବତ୍ର କେବଳ ନୈରାଶ୍ୟ ଆଉ ନୈରାଶ୍ୟର ପ୍ରତିଧ୍ୱନି । ଏ ଭିତରେ ପୋଲାଣ୍ଡ ଭାଗ ଭାଗ ହୋଇ-ଗଲା । ଅନେକ ସମ୍ବେଦନଶୀଳ, ଜ୍ଞାନୀ, ଗୁଣି, ବୁଦ୍ଧିମାନ ଲୋକଙ୍କର କଳାତ୍ମକ ଦାଗଗୁଡ଼ିକର ପତନ ଘଟିଲା ।

ଯୁବକମାନେ ସେମାନଙ୍କ ଶକ୍ତି ଉପରେ ଭରସା ହରାଇ ବସିଲେ । କେବଳ କଳ୍ପନାବିଳାସୀ ହୋଇ ସମୟ କଟାଇଲେ । ହତାଶା ଏବଂ ବିରକ୍ତିରେ ସେମାନେ ମାନସିକ ଆତ୍ମନିର୍ଯାତନା ଭିତରେ ଆଶ୍ରୟ ଖୋଜୁଥିଲେ । ବାସ୍ତବରେ ସେମାନଙ୍କର ଆଧ୍ୟାତ୍ମିକ ଆତ୍ମହତ୍ୟା ହୋଇଯାଇଥିଲା । କେବଳ ପାର୍ଥିବ ଶରୀରମାନ ଧାରଣ କରି ସେମାନେ ମଦ୍ୟନିଶାରେ ଆସକ୍ତ ହୋଇ ରହୁଥିଲେ । ବାସ୍ତବ ଦୁର୍ବଳତାକୁ ଭୁଲିଯିବାକୁ ଚେଷ୍ଟା କରୁଥିଲେ । ଶୃଙ୍ଖଳା ଏବଂ ନୈତିକତାଠାରୁ ଯୁବଗୋଷ୍ଠୀର ଜୀବନ ବହୁତ ଦୂରକୁ ଚାଲିଯାଇଥିଲା । ସେମାନେ ସେମାନଙ୍କ ପ୍ରବୃତ୍ତିକୁ ଲଗାମଛଡ଼ା କରି ଦେଇଥିଲେ ।

କୋରାକ୍‌ଙ୍କର ଜଣେ ବନ୍ଧୁ ଏଲ୍. ଏସ୍. ଲିସିନସ୍କି ଦୁଇଟି ପୁସ୍ତକ ରଚନା କରିଥିଲେ । ଗୋଟିଏ ହେଉଛି "ଚିତ୍ତ ବିଭ୍ରମ" Hallucination ଏବଂ ଅନ୍ୟଟି ହେଉଛି ଜଣେ "ଘୂରିବୁଲୁଥିବା କାର୍ଯ୍ୟରତ ମଣିଷର ଜୀବନୀ" (A Hobo's Memoirs) । ଲିସିନ୍‌ସ୍କି ଏବଂ କୋରାକ୍ ସାଥିରେ ଅନେକ କାମ ଏକାଠି ମିଶି କରୁଥିଲେ । ସେତେବେଳେ ଲିସିନ୍‌ସ୍କି ପ୍ରାୟ ବଢ଼ପାଗଳ ହୋଇ ମୃତ୍ୟୁର ଦ୍ୱାରଦେଶରେ ଉପନୀତ ଥିଲେ । ପୋଲାଣ୍ଡର ସେହି ଦୁର୍ବଳ ସମୟରେ ଯୁବକମାନେ ଯେଉଁଭଳି ଭାବରେ ଅତିବାହିତ କରୁଥିଲେ, ସେ ସମ୍ପର୍କରେ ବହିଗୁଡ଼ିକରୁ ସ୍ପଷ୍ଟ ଚିତ୍ର ମିଳିଯାଉଥିଲା । ହତାଶ ଓ ନୈରାଶ୍ୟ ଯେ ସମଗ୍ର ଯୁବସମାଜକୁ ଅତି ତୀବ୍ର ଭାବରେ କବଳିତ କରି ରଖିଥିଲା, ତାହା ଏହି ବହି ଦୁଇଟିରୁ ଅତି ପରିଷ୍କାର ଭାବରେ ଜଣାପଡ଼ିଯାଏ । ଏହି ବାତାବରଣ ଭିତରେ ହତ୍ୟା, ନାରୀ ଧର୍ଷଣ ତଥା ଯେ କୌଣସି ନୀତିହୀନ କୁକାର୍ଯ୍ୟ କରିବାକୁ ଯୁବଗୋଷ୍ଠୀ ପଛାଉନଥିଲେ ।

୨୦ ବର୍ଷ ବୟସରେ ପଦାର୍ପଣ କଲାବେଳକୁ କୋର୍ଯାକ୍ ତାଙ୍କ ମା'ଙ୍କ ଫ୍ଲାଟ ଛାଡ଼ି ବସ୍ତିବାସିନ୍ଦା, ଶ୍ରମିକଗୋଷ୍ଠୀ ତଥା ଦୁର୍ବୃତ୍ତମାନଙ୍କ ଜୀବନକୁ ଉପଲବ୍ଧି କରିବାପାଇଁ ସେମାନଙ୍କ ସାଙ୍ଗରେ ଯାଇ ରହୁଥିଲେ । ସେମାନଙ୍କ ବିଶୃଙ୍ଖଳ ଜୀବନ ନଷ୍ଟଚରିତ୍ରକୁ ପର୍ଯ୍ୟବେକ୍ଷଣ କରିବା ସହିତ ସେମାନଙ୍କୁ ଠିକ୍ ଭାବରେ ବୁଝିବା ପାଇଁ ସେ ସଙ୍କଳ୍ପବଦ୍ଧ ଥିଲେ ।

ଲିସିନ୍ସ୍କି କୋର୍ଯାକ୍‌ଙ୍କ ଅଦ୍ଭୁତ କାର୍ଯ୍ୟକଳାପ ସମ୍ପର୍କୀୟ ଏକ ଘଟଣାକୁ ଉଲ୍ଲେଖ କରିଛନ୍ତି—

ଦୁଇଜଣ ଦସ୍ୟୁ ପରସ୍ପର ଭିତରରେ ଲଢ଼େଇ ଆରମ୍ଭ କରିଦେଇଥିଲେ ପରସ୍ପରକୁ ସେମାନେ ଛୁରି ଧରି ଆକ୍ରମଣ କରିବାକୁ ଉଦ୍ୟତ ହେଉଥିଲେ । ଏହା ଦେଖି କୋର୍ଯାକ କିଛି ବିଚାର ନକରି ସେମାନଙ୍କ ଭିତରକୁ ଧସେଇ ପଶିଗଲେ ଏବଂ ସେମାନଙ୍କ ଗାଲରେ ଚୁମ୍ବନ ଭରିଦେଇ ସେମାନଙ୍କୁ ଚକିତ କରାଇଦେଲେ । ଦସ୍ୟୁମାନଙ୍କର ଲଢ଼େଇ ଭାଙ୍ଗିଗଲା । ଲିସିନ୍ସ୍କି କୋର୍ଯାକଙ୍କର ଏହି କାର୍ଯ୍ୟ ଉପରେ, ମନ୍ତବ୍ୟଦେଇ ଲେଖିଛନ୍ତି "କୋର୍ଯାକ ଧର୍ମପ୍ରଚାର ନମନ୍ତେ ଜଣେ ଈଶ୍ୱର ପ୍ରେରିତ ବ୍ୟକ୍ତି ଏବଂ ସେ ଜଣେ ସାଧୁପୁରୁଷ ।"

ଲେସିନ୍ସ୍କିଙ୍କ ପରି କୋର୍ଯାକଙ୍କ ଆଉ ଜଣେ ବନ୍ଧୁ ଲିଆନ ରିଗର କୋର୍ଯାକଙ୍କ ଶକ୍ତି ଏବଂ ଆତ୍ମାର ଏକନିଷ୍ଠାକୁ ବହୁତ ପ୍ରଶଂସା କରିଛନ୍ତି । ସମସ୍ତ ପ୍ରତିକୂଳ ବାତାବରଣ ଭିତରେ ଯୁବଗୋଷ୍ଠୀର ସାମଗ୍ରିକ ସ୍ଖଳନ ଘଟୁଥିଲାବେଳେ କୋର୍ଯାକ ଏକ ଆଦର୍ଶ ପ୍ରତି ଅନୁରକ୍ତ ରହି ନିଜର ନୈତିକ ସଂଯମତାକୁ ଦୃଢ଼ ରଖିଥିଲେ ।

କୋର୍ଯାକଙ୍କ ଉପରେ ବନ୍ଧୁ ଲିସ୍‌ନସ୍କାଙ୍କର ଅନେକ ପ୍ରଭାବ ରହିଥିଲା ଲିସିନ୍ସ୍କିଙ୍କ ସ୍ୱରୂପ ଗୁଣ ଓ ବିକୃତ ମାନସିକତାର ପ୍ରଭାବରେ, କୋର୍ଯାକ ନିମ୍ନଗାମୀ ହୋଇଯାଇନଥିଲେ । ଲିସ୍‌ନସ୍କି ଯକ୍ଷ୍ମା ରୋଗରେ ଆକ୍ରାନ୍ତ ହୋଇ ଯୁବକ ଅବସ୍ଥାରେ ପ୍ରାଣତ୍ୟାଗ କଲେ । ଉଭୟ ନୈତିକତା ଦୃଷ୍ଟିରୁ ଏବଂ ଶରୀର ଦୃଷ୍ଟିରୁ ସେ କୋର୍ଯାକଙ୍କ ଠାରୁ ଦୁର୍ବଳ ଥିଲେ ।

କୋର୍ଯାକ ନଇଁପଡ଼ି ତାଙ୍କ ମୃତ ବନ୍ଧୁଙ୍କ ବିରସ ବଦନରେ ଚୁମ୍ବନ ଆଙ୍କିଦେଲେ ।

ଲିସିନ୍ସ୍କିଙ୍କ ଯୋଗୁଁ କୋର୍ଯାକ ଓ୍ୱାର୍ସୋର ଗଳିକନ୍ଦିର ଦାରିଦ୍ର୍ୟ, ହତାଶା ଓ ନୈରାଶ୍ୟର ଚକ୍ରାନ୍ତକୁ ବୁଝିବାକୁ ସମର୍ଥ ହୋଇପାରିଥିଲେ ବୋଲି ବର୍ଣ୍ଣନା କରିଛନ୍ତି ।

କୋର୍ଯାକ ସେ ସମୟରେ, ତାଙ୍କର ଅନ୍ୟ ବନ୍ଧୁମାନଙ୍କ ପରି ସମାଜର ଦୁରବସ୍ଥାଠାରୁ ନିଜକୁ ଏଡ଼େଇଦେଇ ଚାଲିଯାଇ ନଥିଲେ । ୧୯୦୪ ମସିହାରେ ସେ

ଜଣେ ବନ୍ଧୁଙ୍କ ପାଖକୁ ଚିଠିରେ ଲେଖିଥିଲେ "ମୁଁ ଜଣେ ଅତି ସମ୍ବେଦନଶୀଳ ପିଲାଟିଏ ହୋଇ ଜନ୍ମ ହୋଇଥିଲି ଏବଂ ଭାବପ୍ରବଣତା ହେଉଛି ମୋର ଶତ୍ରୁ । ଏଥିପ୍ରତି ସଚେତନ ରହି, ମୁଁ ମୋର ଅସୁସ୍ଥତାରୁ କିପରି ଆରୋଗ୍ୟ ଲାଭ କରିବି ଅନ୍ତତଃ ଏହି ଅସୁସ୍ଥତାକୁ କିପରି ଏଡ଼େଇ ଦେଇ ପାରିବି—ସେ କଥା ଜାଣେ ।"

କୋର୍ଯାକ ବାପଛେଉଣ୍ଡ ଓ ନିଃସ୍ୱ ଥିଲେ । ତାଙ୍କ ଉପରେ ମା ଓ ଭଉଣୀଙ୍କ ଭରଣପୋଷଣ ନିର୍ଭର କରୁଥିଲା । ତା'ଛଡ଼ା ନିଜ ପ୍ରତି ବି ଦାୟିତ୍ୱ ରହିଥିଲା । କୋର୍ଯାକ ଏହି ଦାୟିତ୍ୱକୁ ମୁଣ୍ଡାଇବା ପାଇଁ ପ୍ରସ୍ତୁତ ଥିଲେ । ସେ ଦୀର୍ଘ ଆଠ ବର୍ଷ କାଳ ଜଣେ ଗୃହ ଶିକ୍ଷକ ଭାବେ ଖଟିଥିଲେ । ଦିନଗୁଡ଼ିକୁ ସେ ଘଣ୍ଟା ହିସାବରେ ଭାଗ କରିଦେଇଥିଲେ । ଗୋଟିଏ ଜାଗାରୁ ଆଉ ଗୋଟିଏ ଜାଗାକୁ ଯାଇ ତାଙ୍କୁ ପାଠ ପଢ଼ାଇବାକୁ ହେଉଥିଲା । ସୁନ୍ଦର ଜୀବନଟି ଏହିଭଳି ଭାବରେ ଭାରାକ୍ରାନ୍ତ ହୋଇ ରହିଥିଲା । ବହୁତ ଅଳ୍ପ ସମୟରେ ତାଙ୍କୁ ପଢ଼ିବାକୁ ପଡ଼ୁଥିଲା । ଅନେକ କିଛିରୁ ନିଜକୁ ବଞ୍ଚିତ କରି ଯୌବନର ହସ ଖୁସିକୁ ସେ ଜଳାଞ୍ଜଳି ଦେଇଥିଲେ ।

ବହୁତ କମ ସମୟ ଭିତରେ ସେ ବିଶ୍ୱବିଦ୍ୟାଳୟ ପାଠକୁ ଶେଷ କରିପାରି-ଥିଲେ । ତାଙ୍କ ମସ୍ତିଷ୍କର ଗ୍ରହଣ କରିବା ଶକ୍ତି ପ୍ରଖର ଥିଲା । ଏକୋଇଶ ବର୍ଷ ବୟସରେ ତାଙ୍କୁ ସେନାବାହିନୀରେ କାମକରିବାକୁ ପଡ଼ିଲା । ସେ ସେନାବାହିନୀରେ କାମ କରିବା ପାଇଁ କୌଣସି ପ୍ରକାର ଆଳ ଦେଖାଇ ଏଡ଼େଇ ଦେଇ ନଥିଲେ । ଜଣେ ଡାକ୍ତରୀ ସୁନ୍ଦର ଭାବରେ ତାଙ୍କୁ ସେଠାରେ ମାତ୍ର ଦୁଇବର୍ଷ ରହିବାକୁ ପଡ଼ିଲା ।

ଜୀବନକୁ ବଞ୍ଚିବା ତଥା ଗଢ଼ିବାପାଇଁ ତାଙ୍କୁ ଅନେକ କଠିନ ପରିଶ୍ରମ କରିବାକୁ ପଡ଼ୁଥିଲା । ଏଥିରେ ତାଙ୍କ ସ୍ନାୟୁ ଅବଶ ହୋଇପଡ଼ୁଥିଲା । ଅନେକ ହତାଶା ଭିତର ଦେଇ ତାଙ୍କୁ ଗତି କରିବାକୁ ପଡ଼ୁଥିଲା । ଅନେକ ସମୟରେ ବିକୃତ ମାନସିକତା ଭିତରକୁ ସେ ସଚେଯେପରି ଟାଣି ହୋଇଯାଉଥିଲେ । ମାତ୍ର ଏସବୁ ଭିତରେ ସେ ଗମ୍ଭୀର ଭାବରେ, ମାଆ ଓ ଭଉଣୀ ତାଙ୍କ ପାଇଁ ଯେଉଁ ଉତ୍ସର୍ଗୀକୃତ ଜୀବନ ବଞ୍ଚିଛନ୍ତି, ସେ ବିଷୟରେ ସଚେତନ ହୋଇପଡ଼ୁଥିଲେ । ବୈରାଗ୍ୟର ବିପଦକୁ ମାଆ ଓ ଭଉଣୀଙ୍କ ପ୍ରେମ ପ୍ରତିହତ କରିଦେଉଥିଲା ଏବଂ ସେ ବିପଦରୁ ରକ୍ଷା ପାଇଯାଉଥିଲେ ।

ମାତ୍ର ବାଇଶି ବର୍ଷ ବେଳେ ସେ ତାଙ୍କର ପ୍ରଥମ ଉପନ୍ୟାସ ଲେଖିଥିଲେ । ଉପନ୍ୟାସଟିର ନାମ ଥିଲା ମାଲିକ ବିହୀନ ପଶୁ (The waits) । ଲେଖାଟିରେ ପରିପକ୍ୱତା ପ୍ରକାଶିତ ହୋଇପାରିନଥିଲା । ନିର୍ବାସିତ ପିଲାମାନଙ୍କ ପ୍ରତି ତାଙ୍କର ମାନବିକତାର ସମ୍ବେଦନଶୀଳତା ପ୍ରତିଫଳିତ ହେଉଥିଲା । ଜୀବନର ପଶୁତ୍ୱରୁ ମୁକ୍ତି ପାଇବା ପାଇଁ କୋର୍ଯାକଙ୍କୁ ବାଟ ବାହାର କରିବାକୁ ପଡ଼ୁଥିଲା । ଏହି

ସମସ୍ତରେ କୋର୍ଯାକ୍ ହେନେରକ୍ ଗୋଲଡ଼ସ୍ମିଥ୍ ରୁ କୋର୍ଯାକ ନାମରେ ପରିଚିତ ହେବାକୁ ଲାଗିଲେ ।

ବାଇଶି ବର୍ଷ ବୟସରେ "କେଉଁ ବାଟରେ (Which Way) ନାମକ ଏକ ନାଟକ ଲେଖିଥିଲେ । ଏହି ନାଟକ ପାଇଁ ତାଙ୍କୁ ପୁରସ୍କାର ମିଳିଥିଲା । ଏହାର ଦୁଇବର୍ଷ ପରର ଘଟଣା । ଆଲେକ୍‌ଜାଣ୍ଡର, ପାର୍ନେଓ୍ୱସ୍କି ଗୋଟିଏ ସାପ୍ତାହିକ ବ୍ୟଙ୍ଗ ପତ୍ରିକା ସମ୍ପାଦନା କରୁଥିଲେ ଓ ନିଜେ ଏହାର ପ୍ରକାଶକ ଥିଲେ । ପତ୍ରିକାର ନାମ ଥିଲା "କଣ୍ଟା" (The Throme) ସେ ଏଥିରେ ଲେଖାଲେଖି କରିବାପାଇଁ ଭାଷା ଉପରେ ଦକ୍ଷତା ଥିବା ମେଧାବୀ ଛାତ୍ରମାନଙ୍କୁ ନିଯୁକ୍ତ କରିଥିଲେ । ଏମାନଙ୍କୁ ଗୋଟିଏ ଉପନ୍ୟାସକୁ ଧାରାବାହିକ ଭାବରେ ଲେଖିବା ପାଇଁ କୁହାଯାଇଥିଲା । ଉପନ୍ୟାସର ନାଁ ଥିଲା "ଗୃହର ନିର୍ବୋଧ ତଥା ମୁଖ୍ୟ ଘରକରର ଜୀବନୀ ।"

ଲେଖାଗୁଡ଼ିକ ଚମକପ୍ରଦ ହେବା ଆବଶ୍ୟକ ଏବଂ ଶୈଳୀରେ ସମ୍ପୂର୍ଣ୍ଣ ସ୍ୱାତନ୍ତ୍ର୍ୟ ରହିଥିବା ଦରକାର । କାଜ୍‌ମିର୍‌ଜ ପୋଲ୍‌କଙ୍କ ଭଳି କେତେ ଜଣାଶୁଣା ବ୍ୟକ୍ତିଙ୍କ ଛଡ଼ା ଅନ୍ୟମାନଙ୍କର ମାତ୍ର ଗୋଟିଏ ଲେଖାଏଁ ଲେଖା ଗ୍ରହଣ କରାଯିବାର ବ୍ୟବସ୍ଥା ଥିଲା । ପ୍ରକୃତରେ ପତ୍ରିକାଟି ପାଠକମାନଙ୍କ ଦ୍ୱାରା ବହୁତ ଆଦୃତ ହେଉଥିଲା । କୋର୍ଯାକ୍ 'ଛଦ୍ମ' ନାମରେ ଲେଖା ପଠାଇଥିଲେ । ସେ ତାଙ୍କ ଛଦ୍ମ ନାମ ହେନେରିକ୍ ରଖିଥିଲେ । ତାଙ୍କର ପ୍ରାୟ ତିନୋଟି ଲେଖା ପ୍ରକାଶିତ ହୋଇଥିଲା ।

ଆଲେକ୍‌ଜାଣ୍ଡର ପାର୍ନେଓ୍ୱସ୍କିଙ୍କ ପୃଷ୍ଠପୋଷକତାରେ କୋର୍ଯାକ୍‌ଙ୍କ ପ୍ରଥମ ଉପନ୍ୟାସ "ମାଲିକ ବିହୀନ ପଶୁ" (The waifs) ପ୍ରକାଶ ପାଇଲା ଏବଂ ୧୯୦୧ ମସିହା ବେଳକୁ ଓ୍ୱାର୍ସୋ ସହରର ଦୋକାନ ଗୁଡ଼ିକର ବହିଥାକ ମାନଙ୍କରେ ଉପନ୍ୟାସଟି ଶୋଭା ପାଇଲା ।

ଏହାର ପାଞ୍ଚବର୍ଷ ପରେ ସମାଜର ପିଲା (child of society) ବହିଟି ପ୍ରକାଶିତ ହେଲା । ଏହି ଦୁଇଟି ପ୍ରକାଶନର ମଧ୍ୟବର୍ତ୍ତୀ ସମୟ କୋର୍ଯାକ୍‌ଙ୍କ ଜୀବନରେ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ଏହି ସମୟରେ ସେ କଲମର ଦାସ ହୋଇଯାଇ-ଥିଲେ । ତାଙ୍କ ଲେଖକ ଜୀବନର ଭବିଷ୍ୟତ ସ୍ପଷ୍ଟ ହୋଇଯାଇଥିଲା ।

ମାଲିକ ବିହୀନ ପଶୁ (The waifs) ଉପନ୍ୟାସର ସମର୍ପଣ ଶୀର୍ଷକ ଉପକ୍ରମଣିକାରେ ସେ ଯେପରି ବାପା, ମା' ଶିକ୍ଷକମାନଙ୍କ ଦ୍ୱାରା ସଂସାରର ପ୍ରଶସ୍ତ ରାସ୍ତା ଉପରକୁ ଠେଲି ଦିଆଯାଇଥିବା ପିଲାମାନଙ୍କର ଅସହାୟତା କଥା ବି ଲେଖିଥିଲେ ।

ସରଳ ଓ କୋମଳ ଭାବରେ ତାଙ୍କ ସାହିତ୍ୟ ଆଦୃତ ହେଉଥିଲା ସମସ୍ତଙ୍କ ନିକଟରେ ।

ଭାଗ୍ୟକୁ ନିୟନ୍ତ୍ରିତ କରିବା ପାଇଁ ସେ କଠିନ ପରିଶ୍ରମ କରୁଥିଲେ । ଆଧୁନିକ ଶୈଳୀରେ ବଡ଼େଇକରି ଲେଖିବାକୁ ସେ ନାପସନ୍ଦ କରୁଥିଲେ । ଦୁର୍ବଳ ଓ ନିମ୍ନ ବର୍ଗର ଲୋକଙ୍କ ପାଖରେ ସେ ନିଜ ଲେଖାକୁ ପହଞ୍ଚାଇବାକୁ ଚାହୁଁଥିଲେ । ସେ ଲେଖିଥିଲେ, "ଗରିବ ପିଲାଟିକୁ ଶିକ୍ଷିତ କରିବା ପାଇଁ ତା' ବାପା ମା' ହିଁ ତା'ର ସମ୍ପଦ" ଦରିଦ୍ର, ନିର୍ବାସିତ, କ୍ଷୁଧାଗ୍ରସ୍ତ ବାପମାଆଙ୍କଠାରୁ ମାଡ଼ଖାଇଥିବା ଅବହେଳିତ, ଅଭିଶପ୍ତ ଅସଂଖ୍ୟ ପିଲାଙ୍କ କାହାଣୀ କୋର୍ଜାକ୍‌ଙ୍କ ପୁସ୍ତକ ଗୁଡ଼ିକର ପୃଷ୍ଠାମାନଙ୍କୁ ମଣ୍ଡନ କରିଥିଲା ।

ଜଣେ ଡାକ୍ତରୀ ଛାତ୍ର ହିସାବରେ ତାଙ୍କୁ ବହୁତ ପରିଶ୍ରମ କରିବାକୁ ପଡ଼ୁଥିଲା । ତା' ସାଙ୍ଗକୁ ଘରୋଇ ଶିକ୍ଷକ ଭାବରେ ସେ ଏ ଘରୁ ସେ ଘରକୁ ଯାଇ ପାଠ ପଢ଼ାଉଥିଲେ । ଏତେ କାମ ଭିତରେ ସେ ଅଣନିଶ୍ୱାସୀ ହୋଇପଡ଼ୁଥିଲେ । ସ୍ୱାସ୍ଥ୍ୟ ଦୌର୍ବଲ୍ୟ ଓ ଶାରୀରିକ କ୍ଳାନ୍ତି ତାଙ୍କୁ ଅବଶ କରୁଥିଲା । ବିଭିନ୍ନ ଘରକୁ ପାଠ ପଢ଼େଇବାକୁ ଯିବାଦ୍ୱାରା ସେ ଏଭଳି ବିଭିନ୍ନ ରକମର ପିଲାଙ୍କ ସଂସ୍ପର୍ଶରେ ଆସୁଥିଲେ । ସେମାନଙ୍କ ଜୀବନ ଥିଲା ବିଭୃଷ୍ଣ ତଥା କାରୁଣ୍ୟର ସମ୍ମିଶ୍ରଣ । କେତେକ ଥିଲେ ଭଲ ଚଳଣି ଥିବା ପରିବାରର ଅବହେଳିତ ସନ୍ତାନ । କେତେକ ପିଲାଙ୍କ ଆଖିରେ ଝଲସିଉଠୁଥିଲା ଚତୁରତାର ସ୍ଫୁଲିଙ୍ଗ । ସେମାନଙ୍କ ଭିତରୁ ଅଧିକାଂଶ ରୋଗିକଲା ଥିଲେ । ଅଧିକାଂଶଙ୍କର ପୋଷାକପତ୍ର ଆଦୌ ଭଲ ନଥିଲା । କୋର୍ଜାକ୍ ଏଇ ଅଭାଗା ପିଲାମାନଙ୍କର ବନ୍ଧୁ ପାଲଟି ଯାଇଥିଲେ । ଡାକ୍ତର ଭାବରେ ସେ ହସ୍‌ପିଟାଲରେ ପିଲାମାନଙ୍କୁ ଭେଟୁଥିଲେ । ଏମାନଙ୍କ ଭିତରୁ ଅଧିକାଂଶ ଗଳିବସ୍ତିର ଦରିଦ୍ର ଅବହେଳିତ ନିର୍ବାସିତ ପିଲା ଥିଲେ । ସେମାନେ ଭିକ୍ଷରେ ଥରୁଥିଲେ । ଏମାନଙ୍କ ସାଙ୍ଗରେ ସେ ଅତି ନିବିଡ଼ ଭାବରେ ମିଶି ଯାଉଥିଲେ । ପ୍ରତିଦିନ ଅନେକ ପିଲାଙ୍କୁ କୋର୍ଜାକ୍ ଭେଟୁଥିଲେ । ଯଦିଓ ସେମାନଙ୍କ ଭିତରୁ ଅଧିକାଂଶଙ୍କର ଅବସ୍ଥା ବହୁତ ଖରାପ ଥିଲା । ତଥାପି ସେମାନଙ୍କ ଆଖିରେ ବୁଦ୍ଧିର ଚମତ୍କାରିତା ଫୁଟିଉଠୁଥିଲା । କୋର୍ଜାକ୍ ଅଙ୍କ ଓ ବ୍ୟାକରଣର ମଜା ମଜା ନିୟମ କହି ସେମାନଙ୍କୁ ମଜାଇ ରଖୁଥିଲେ । ସେ ଟେବୁଲ ଉପରେ ବା ଟେବୁଲ ତଳେ ପିଲାମାନଙ୍କ ସହିତ ବସିଯାଉଥିଲେ । ସେମାନଙ୍କୁ ବଡ଼ ବଡ଼ କବି ଏବଂ ବୀରପୁରୁଷ ମାନଙ୍କର କାହାଣୀ ଶୁଣାଉଥିଲେ । ସେ ପିଲାଙ୍କର ଆବଶ୍ୟକତା କଅଣ ତାହା ଭଲ ଭାବରେ ଜାଣିଥିଲେ । ଏହି ଆବଶ୍ୟକତାକୁ ପୂରଣ କରିବା ପାଇଁ ସେ ପ୍ରାଣପଣେ ଉଦ୍ୟମ କରୁଥିଲେ । ସେ ପିଲାମାନଙ୍କୁ କଳ୍ପନାରାଜ୍ୟର ବହୁ ଊର୍ଦ୍ଧ୍ୱକୁ ଟାଣି ନେଉଥିଲେ ।

ଚ୍ୟାରିଟେବଲ୍ ସୋସାଇଟିର ଲାଇବ୍ରେରୀକୁ (The Library of the Charitable Society) ମାଗଣାରେ, ମାସ ଧାରି ସୂତ୍ରରେ ବହି ପଢ଼ିବାକୁ

ଦିଆଯାଉଥିଲା । ଏହି ଲାଇବ୍ରେରୀରେ କୋର୍ଯାକ୍ ଅନେକ ପିଲାଙ୍କୁ ଭେଟୁଥିଲେ; ଯେଉଁମାନେ ଥିଲେ ଶାନ୍ତ, ଧୀର, ଚତୁର ଏବଂ ସାହସୀ । ଏମାନଙ୍କୁ ଦେଖି ସେ ଆନନ୍ଦରେ ବିଭୋର ହୋଇ ଲେଖିଥିଲେ, ''ସେମାନଙ୍କର ଜ୍ଞାନ ଆବିଷ୍କାର କରି ତାକୁ ବିକଶିତ କରିବା କେତେ ରୋମାଞ୍ଚକର କାର୍ଯ୍ୟ ନୁହେଁ ସତେ !''

ଯୁବକ ଜାନୁସ କୋର୍ଯାକ୍ ଯୌବନର ଶୀର୍ଷଦେଶରେ ଉପନୀତ ହେଲେ । ଅଳ୍ପ ଅଳ୍ପ ଦାଣ ଦାଢ଼ିରେ ମୁଖମଣ୍ଡଳରେ ବୟସର ଛାପ ପଡ଼ିଲା । ଆଖିରେ ଉଜ୍ଜ୍ୱଳତା, ବ୍ୟକ୍ତିତ୍ୱରେ ଚଞ୍ଚଳତା ଭରିଗଲା । ଯଦିଓ ବେଳେବେଳେ ବିଷଣ୍ଣତା ପ୍ରକାଶିତ ହୋଇପଡ଼ୁଥିଲା, ଅଧିକାଂଶ ସମୟ ସେ ଚଳଚଞ୍ଚଳ ରହୁଥିଲେ । ସେ କହୁଥିଲେ ତାଙ୍କର ପିଲାଟିଏ ହୋଇଯିବାକୁ ମନ ହେଉଛି ।

ବିଦ୍ୟାର୍ଥୀମାନେ ତାଙ୍କୁ ଗୁରୁ ଭାବରେ ଗ୍ରହଣ କରୁଥିଲେ । ବିଶ୍ୱବିଦ୍ୟାଳୟର ୟୁନିଫର୍ମ ପରିଧାନ କରି ସେ କାଉଫିଙ୍କୋଟରେ ପିଲାଙ୍କ ସହ ହସୁଥିଲେ, କାଉତୁକିଆ କଥା କହି ପିଲାଙ୍କୁ ମଜେଇ ରଖୁଥିଲେ । ଯେତେବେଳେ ଅଧିକାଂଶ ଯୁବକ ବିବାହର ମଧୁର ସ୍ୱପ୍ନରେ ମଗ୍ନ ଥିଲେ, ସେତେବେଳେ କୋର୍ଯାକ୍ ନିଜକୁ ଅଲଗା ବାଟରେ ଚଳେଇ ନେଇଥିଲେ । ପିଲାମାନେ ହିଁ ତାଙ୍କ ଜୀବନରେ ସବୁ ।

ବହୁତ ଅଳ୍ପ ସମୟ ଭିତରେ ଡାକ୍ତର ଜାନୁସ୍ କୋର୍ଯାକ୍ କମ୍ୟୁନିଟିର ଜଣେ ପୁରୁଷ ହୋଇଗଲେ । ତାଙ୍କର ଜଣେ ପୂର୍ବତନ ଛାତ୍ର ତାଙ୍କ ବିଷୟରେ ସ୍ମରଣ କରି ଲେଖିଥିଲେ—

''ରବିବାରର ଅପରାହ୍ନ ସମୟ । ଭଡ଼ାରେ ଗୋଟିଏ ସିନେମା ଅଣାଯାଇଥିଲା । କଳା ଘରଟି ହଠାତ୍ ଏକ ଉଜ୍ଜ୍ୱଳ ଆଲୋକ ଦ୍ୱାରା ଭରି ହୋଇଗଲା । ପିଲାମାନେ ଖୁସିରେ ତାଳି ମାରିଲେ । କୋର୍ଯାକ୍ ନୀଳ ରଙ୍ଗର ୟୁନିଫର୍ମ ପିନ୍ଧି ଯାଦୁକର ଭଳି ଗୋଟିଏ ଏପିଡ଼ାସ୍କୋପ ଚଳାଉଥିଲେ । ରଙ୍ଗୀନ କାଚଗୁଡ଼ିକୁ ଏପଟ ସେପଟ ଘୁରାଇ ସେ ପରଦା ଉପରକୁ ଛବି ପକାଉଥିଲେ । ସେତେବେଳେ ସେ ଯାହା କରୁଥିଲେ ଏବଂ ଯାହା କହୁଥିଲେ, ମନେହେଉଥିଲା ସତେ ଯେପରି ଆଣ୍ଡରସନ୍‌ଙ୍କର ପରୀ ଗଳ୍ପ ଭିତରେ ଆମେ ସମସ୍ତେ ବୁଡ଼ିଯାଇଛୁ ।''

ରବିବାର ବ୍ୟତୀତ ସପ୍ତାହର ଅନ୍ୟ ସବୁଦିନେ କୋର୍ଯାକ୍ ହସ୍‌ପିଟାଲରେ ଖଟିଆର ଗୋଟିଏ କଡ଼ରେ ବସି ଝାଳ ବାହାରିପଡ଼ୁଥିବା, ଜ୍ୱରରେ ବାଉଳେଇ ହୋଇ ଛଟପଟ ହେଉଥିବା ଭୟାତୁର ରୋଗୀ ପିଲାମାନଙ୍କ ଦେହକୁ ହାତରେ ଆଉଁସି ଦେଇ, ସ୍ନେହବୋଳା କଥା କହି ଆଶ୍ୱାସନା ଦେଉଥିଲେ । ପରେ ଯେତେବେଳେ ସେ ସୁସ୍ଥ ହୋଇଆସୁଥିଲା ତା' ପାଇଁ ଗୋଟିଏ ବଡ଼ କ୍ରିମ୍ ଚକୋଲେଟ୍ ଆଣି ଦେଉଥିଲେ । ତାଙ୍କୁ ଲମ୍ବା ଲମ୍ବା ସୁନ୍ଦର କାହାଣୀ କହି ଖୁସି

କରୁଥିଲେ । ପିଲମାନଙ୍କ ପାଇଁ ତାଙ୍କ ଭିତରେ ଏତେ ସ୍ନେହ ମହଜୁଦ୍ ଥିଲା ଯେ ତାଙ୍କର ଆଦୌ ଧୈର୍ଯ୍ୟଚ୍ୟୁତ ହେଉନଥିଲା ।

ଅସୁସ୍ଥ ପିଲାଙ୍କ ପାଖରେ ସମୟ ଦେଇ ସେ ଅନେକ ଆଶ୍ୱସ୍ତି ପାଉଥିଲେ । ତାଙ୍କର ହୃଦ୍‌ବୋଧ ହୋଇସାରିଥିଲା ଯେ ପିଲାମାନଙ୍କ ପ୍ରତି ତାଙ୍କର ସ୍ନେହ, ମମତା, ହୃଦୟର ଆବେଗ ହିଁ ତାଙ୍କୁ ଦୁଷ୍କର୍ମ, ମାନସିକ ବିକୃତି ଏବଂ ଆତ୍ମହତ୍ୟାଜନିତ ମୃତ୍ୟୁ ମୁଖରୁ ରକ୍ଷା କରିପାରିବେ ।

## (୭) ଯୌବନର ଦ୍ୱନ୍ଦ୍ୱ

କୋର୍ଝାକ୍‌ଙ୍କ ଯୌବନ ନୈରାଶ୍ୟ ମଧ୍ୟଦେଇ ଗତି କରିଥିଲା । କିନ୍ତୁ ପରବର୍ତ୍ତୀ ଜୀବନରେ ସେ ଏହାକୁ ପାର୍ ହୋଇଯାଇଥିଲେ । ଥରେ ସେ କହିଥିଲେ, ''ଯୌବନ ଅବସ୍ଥା ଯଦି ହତାଶ ଓ ନୈରାଶ୍ୟର ଅନ୍ଧକାର ଭିତରେ ଗତି କରିଥାଏ, ତେବେ ପରବର୍ତ୍ତୀ ସମୟରେ ନିଶ୍ଚିତ ଭାବରେ ଜଣେ ଏହି ସମୟରେ ହରାଇଥିବା କ୍ଷତିକୁ ପୂରଣ କରିବାକୁ ଚେଷ୍ଟା କରିବ ଓ ନିଜକୁ ସୁଧାରିନେବ ।'' ନିଜର ଯୌବନ ଏହାର ଏକ ଦୃଷ୍ଟାନ୍ତ ବୋଲି ସେ ଦାବି କରୁଥିଲେ ।

ହତାଶ ହୋଇପଡୁଥିବା ସମୟରେ ସେ ନିଃସଙ୍ଗ ଅନୁଭବ କରୁଥିଲେ । ସତେଯେପରି ତାଙ୍କ ଉପରେ ଅନେକ ବୋଝ ଓ ଭିତରେ ଅନେକ କଷଣ । ନୈରାଶ୍ୟ ତାଙ୍କ ଜୀବନର ଗତିପଥକୁ ରୋଧିପାରୁନଥିଲା । ମାତ୍ର ଏଭଳି ଦୁର୍ଦ୍ଦିନର ମୁହୂର୍ତ୍ତ ତାଙ୍କପାଇଁ କ୍ୱଚିତ୍ ଆସୁଥିଲା । କାରଣ ସଦାସର୍ବଦା ସେ ବିଭିନ୍ନ କାର୍ଯ୍ୟ ଭିତରେ ଏପରି ବ୍ୟସ୍ତ ରହୁଥିଲେ ଯେ ନିଜ ବିଷୟରେ ଚିନ୍ତା କରିବାକୁ ସମୟ ପାଉନଥିଲେ । ନୈରାଶ୍ୟ ଭିତରେ ଚିନ୍ତାଗ୍ରସ୍ତ ହୋଇ ପଡ଼ିରହିବା ସକାଶେ ତାଙ୍କୁ ଫୁରୁସତ୍ ମିଳୁନଥିଲା ।

କିଶୋର ଜୀବନରେ ଗୋଟିଏ ସ୍ଥାନରେ ନୀରବରେ ଛିଡ଼ାହୋଇ ସେ କେବଳ ସଂସାରକୁ ପର୍ଯ୍ୟବେକ୍ଷଣ କରିବାକୁ ଭଲପାଉଥିଲେ । କିନ୍ତୁ ଯେତେବେଳେ ତାଙ୍କର ମାନସିକ ପରିପକ୍ୱତା ଆସିଲା, ସେ ସଂସ୍କାରମୂଳକ କାର୍ଯ୍ୟରେ ଲିପ୍ତ ରହିଲେ । ତାଙ୍କର ସଂସ୍କାରମୂଳକ କାର୍ଯ୍ୟଗୁଡ଼ିକ ଏପରି ମୌଳିକଧର୍ମୀ ଥିଲା ଯେ ପରିଶେଷରେ ତାହାସବୁ ବୈପ୍ଳବାତ୍ମକ ରୂପ ନେଉଥିଲା ।

ନିଜର କିଶୋର ବୟସର କଥା ମନେପକାଇ ସେ କହୁଥିଲେ, ''କୌଣସି ମହତ ଉଦ୍ଦେଶ୍ୟ ଏବଂ ନ୍ୟାୟପାଇଁ ଛିଡ଼ାହେଲେ, ଯେ କୌଣସି ଜାଗାରେ ତୁମକୁ

ଆଘାତ ଆସିପାରେ ଓ ଏହି ଆଘାତ ଦ୍ୱାରା ଆଖିରେ ରକ୍ତ ଜମିଯିବାର ସମ୍ଭାବନା ଥାଇପାରେ । ଏସବୁ କ୍ଷେତ୍ରରେ କୌଣସିମତେ ମୁଁ ନିଜକୁ ସମ୍ଭାଳିନେଇ ପାରୁଥିଲି । ସମସ୍ୟା ଏବଂ ମୁଁ, ପରସ୍ପର ସହିତ ଚୁମ୍ବକୀୟ ଭାବରେ ଛନ୍ଦାଛନ୍ଦି ହୋଇ ରହିଥିଲୁ ।

ସେ ଜଣେ ବନ୍ଧୁକୁ କହିଥିଲେ, "ଲୋକମାନେ ସେମାନଙ୍କୁ ଦୁଇ ଭାଗରେ ବିଭକ୍ତ କରିଦେଉଥିଲେ—ଗୋଟିଏ ଦଳ ବିଦ୍ରୋହ କରୁଥିଲେ ଓ ଆଉ ଗୋଟିଏ ଦଳ ଇସ୍ତଫା ଦେଇ ନୀରବ ହୋଇଯାଉଥିଲେ । କୋର୍ଯାକ୍ ନିଜକୁ ବିଦ୍ରୋହୀ ଗୋଷ୍ଠୀ ଭିତରେ ଅନ୍ତର୍ଭୁକ୍ତ କରୁଥିଲେ ।

ବିଂଶ ଶତାବ୍ଦୀର ପ୍ରଥମ କେଇବର୍ଷ ପୋଲାଣ୍ଡରେ ବିଦ୍ରୋହର ସ୍ଫୁଲିଙ୍ଗମାନ ଛୁଟିକି ଉଠୁଥିଲା । ୟୁରୋପରେ ପୁଞ୍ଜିବାଦୀ ଦେଶଗୁଡ଼ିକର ସମାଜବାଦୀମାନେ ଏହି ବିଦ୍ରୋହକୁ ଉତ୍ତେଜିତ କରୁଥିଲେ । ପୋଲାଣ୍ଡକୁ ଯେଉଁ ଶକ୍ତିଗୁଡ଼ିକ ଅଧିକାର କରି ରଖିଥିଲେ, ସେଗୁଡ଼ିକ ମଧ୍ୟରେ ରୁଷିଆ ଥିଲା ଅନ୍ୟତମ । ରୁଷୀୟ-ଜାପାନୀ ଯୁଦ୍ଧର ପରବର୍ତ୍ତୀ ସମୟରେ ରୁଷିଆ ଆଭ୍ୟନ୍ତରୀଣ କନ୍ଦଳରେ ବୁଡ଼ିରହିଲା । ଯୁବଗୋଷ୍ଠୀଙ୍କ ମୁହଁରେ ଗୋଟିଏ ଶବ୍ଦ ଥିଲା—ତାହା ହେଉଛି "ମୁକ୍ତି" ।

କୋର୍ଯାକ୍ ଏହି ଯୁବକମାନଙ୍କ ଭିତରୁ ଥିଲେ ଅନ୍ୟତମ, ଏକୋଇଶ ବର୍ଷ ବୟସରେ ସେ ଲେଖିଥିଲେ, "ମୋ ଚାରିପାଖରେ ସବୁକିଛି ଚୁପି ହୋଇ ରହିଛି । ଆଗରୁ ସ୍କୁଲରେ ଏହି ପରିସ୍ଥିତି ଥିଲା । ଏବେ ବୟସ ବଢ଼ିବା ସଙ୍ଗେ ସଙ୍ଗେ ମୁଁ ଅନୁଭବ କରୁଛି—ସତେ ଯେପରି ମୋ କଣ୍ଠରୁଦ୍ଧ ହୋଇଯାଉଛି । ମୁଁ ଏଥିରୁ ବାହାରି ଯିବାକୁ ଚାହେଁ । ସଂଗ୍ରାମ କରିବାକୁ ଚାହେଁ, ବିଜୟୀ ହେବାକୁ ଚାହେଁ ଏବଂ ନିଜକୁ ସଂପ୍ରସାରିତ କରିବାକୁ ଚାହେଁ ।

ନିଜର ରାଜନୈତିକ ଆଦର୍ଶରେ ସେ ବାମପନ୍ଥୀ ଦୃଷ୍ଟିକୋଣକୁ ଗ୍ରହଣ କରିଥିଲେ । "ପ୍ରଜାପତିଟିର ସ୍ୱୀକାରୋକ୍ତି" ପୁସ୍ତକରେ ସେ ଅତି ଗୁରୁତ୍ୱର ସହ ଲେଖିଥିଲେ ପୁଞ୍ଜିବାଦ ଧ୍ୱଂସ ହୋଇଯିବ; ମାତ୍ର ମୁଁ ଜାଣିନାହିଁ ଏହା କିପରି ଭାବରେ ହେବ ।

ଅନେକ ସମୟରେ ସେ ସ୍ୱାଧୀନତା ସଂଗ୍ରାମୀମାନଙ୍କୁ ସହଯୋଗ କରୁଥିଲେ । ୧୯୦୫ ମସିହାରେ ପୋଲାଣ୍ଡର ସମାଜବାଦୀଗୋଷ୍ଠୀ ଓ ଶ୍ରମିକଙ୍କ ସହ ରୁଷିଆ ସୈନ୍ୟମାନଙ୍କର ହାତାହାତି ସଂଗ୍ରାମ ଆରମ୍ଭ ହୋଇଯାଇଥିଲା । ସେତେବେଳେ କୋର୍ଯାକ ରୁଷୀୟ ସୈନ୍ୟବାହିନୀରେ ମେଡ଼ିକାଲ ଅଫିସର ଭାବରେ ଉଚ୍ଚପଦବୀରେ ଥାଇ କାମ କରୁଥିଲେ । ନିଜର ପଦପଦବୀକୁ ଖାତିର ନକରି ସେ ମାଡ଼ଗୋଳରେ ଝଣ୍ଡିଆଖାବରା ହୋଇ ଆସିଥିବା ଶ୍ରମିକମାନଙ୍କର ଚିକିତ୍ସା କରୁଥିଲେ ।

ସେ ସମୟରେ ସମାଜବାଦୀ ସଂଗଠନ ଗୁଡ଼ିକ ସହ ତାଙ୍କର ସଂପର୍କ ବହୁତ ଭଲଥିଲା । ସରକାରୀ ଚାକିରୀରେ ଅଧିଷ୍ଠିତ ଥାଇ ମଧ୍ୟ ସେ, ଏହି ସଂଗଠନ ଗୁଡ଼ିକ ସହ ସଂପର୍କ ଛିନ୍ନ କରୁନଥିଲେ । ଅନେକ ଦିନପର୍ଯ୍ୟନ୍ତ ତାଙ୍କର ଏ ସଂଗଠନଗୁଡ଼ିକ ପାଇଁ ସହାନୁଭୂତି ଥିଲା । ୧୯୧୧ ମସିହାରେ ପୋଲାଣ୍ଡର ସମାଜବାଦୀ ପାର୍ଟିର ଏକ ବେଆଇନ ପ୍ରକାଶନ ପାଇଁ ସେ ଗ୍ରାହକ ଚାନ୍ଦା ପଠାଉଥିଲେ । ବାମପନ୍ଥୀ ପତ୍ରିକା 'ବାଣୀ'ରେ ତାଙ୍କର କେତେଗୁଡ଼ିଏ ପ୍ରବନ୍ଧ ପ୍ରକାଶ ପାଇଥିଲା, ତା'ଛଡ଼ା ଆଞ୍ଚଳିକ ସମାଜବାଦୀ ସମ୍ବାଦପତ୍ର "ଡିଗ୍‌ବଲସ୍କି" କୁ ସେ ପ୍ରତି ସପ୍ତାହରେ ପ୍ରବନ୍ଧମାନ ପଠାଉଥିଲେ । ତାଙ୍କ ଲେଖାଗୁଡ଼ିକ ପ୍ରାୟ ସଂସ୍କାରମୂଳକ । ସେ ଅନେକ ତତ୍ତ୍ୱପୂର୍ଣ୍ଣ କଥାକୁ ରୂପାୟିତ କାର୍ଯ୍ୟରେ ପରିଣତ କରୁଥିଲେ ।

ବର୍ତ୍ତମାନ ପାଶ୍ଚାତ୍ୟ ଦେଶଗୁଡ଼ିକରେ ସେ ଦାବୀ କରୁଥିବା ଅନେକ ବିଷୟ ଆଧୁନିକ ସମାଜର ଅପରିହାର୍ଯ୍ୟ ଅଙ୍ଗ ଭାବରେ ଗୃହୀତ ହୋଇଗଲାଣି । ଉଦାହରଣ ସ୍ୱରୂପ ସେ ଦାବି କରୁଥିଲେ ଯେ ଶ୍ରମିକମାନେ ବି ଛୁଟି ପାଇବାକୁ ହକ୍‌ଦାର । ରୋଗ ବେମାରିରେ ଜୀବନବୀମା ସପକ୍ଷରେ ସେ ଯୁକ୍ତି କରୁଥିଲେ । ଅନ୍ୟ ଯେଉଁ ସଂସ୍କାରମୂଳକ ପଦକ୍ଷେପଗୁଡ଼ିକୁ ସେ ଅତି ଜୋର୍‌ରେ ଆଗେଇ ନେଉଥିଲେ, ସେଗୁଡ଼ିକ ହେଲା ସ୍ତ୍ରୀମାନଙ୍କ ପାଇଁ ଉପଯୁକ୍ତ ସୁବିଧା ସୁଯୋଗ, ନ୍ୟାୟସଙ୍ଗତ ଭୂମି ଭାଗ ଓ ବଣ୍ଟନ ଚିକିତ୍ସାପାଇଁ ସାହାଯ୍ୟ, ଶବ ସଂସ୍କାର, ଜୀବନବୀମା, ସମବାୟ ଆନ୍ଦୋଳନ ଏବଂ କୃଷି ଓ ଶିକ୍ଷା କ୍ଷେତ୍ରରେ ସଂସ୍କାର । ଶ୍ରମିକମାନଙ୍କର ଧର୍ମଘଟ କରିବାର ସମସ୍ତ ଅଧିକାର ରହିଛି ବୋଲି ସେ ଦାବି କରୁଥିଲେ ।

କୋର୍ଯାକଙ୍କ ଅନେକ ଲେଖା ପ୍ରଫେସର ଲୁଦ୍‌ଓ୍ୱିକ୍ ଓ ନିକ୍‌ଓ୍ୱିକ୍‌ଙ୍କ ସହ-ଯୋଗରେ ପ୍ରକାଶିତ ହେଉଥିଲା । ପ୍ରଫେସର ଲୁଦ୍‌ଓ୍ୱିକ୍ କୋଯାକଙ୍କ ପରି ଓ୍ୱାର୍ସାର ବଦାନ୍ୟ ସୋସାଇଟିଜ୍‌ର ମୁକ୍ତ ପାଠାଗାରରେ ଜଣେ ସକ୍ରିୟ କର୍ମୀ ଥିଲେ । ମୌଳିକବାଦୀ ସଂପ୍ରଦାୟର ଆଦର୍ଶ ପ୍ରଚାର କରୁଥିବା ଅଭିଯୋଗରେ ଉଭୟଙ୍କୁ ଗିରଫ କରାଯାଇଥିଲା । ଏକ ଇହୁଦୀ ବିରୋଧି ପତ୍ରିକା 'ରୋଲର' ସମ୍ପାଦକ ଜେଲେନ୍‌ସ୍କି ଏମାନଙ୍କୁ ତୀବ୍ର ଭାବରେ ବିରୋଧ କରୁଥିଲେ ।

ପ୍ରଫେସର ନିକ୍‌ଓ୍ୱିକ ଜଣେ ଜଣାଶୁଣା ବୈଜ୍ଞାନିକ । ତାଙ୍କର ଭିନ୍ନ ବିଜ୍ଞାନ ବିଷୟଗୁଡ଼ିକ କୋର୍ଯାକଙ୍କ ପରିସରଠାରୁ ସଂପୂର୍ଣ୍ଣ ଥିଲା । ମାତ୍ର ଗବେଷଣା ପ୍ରତି ପ୍ରଫେସରଙ୍କର ବହୁତ ମମତା ଥିଲା । ଯାହାକି କୋର୍ଯାକଙ୍କୁ ଆକର୍ଷିତ କରିଥିଲା । ତା'ଛଡ଼ା ଜେଲ୍‌ରେ ଛଅମାସ କାଳ ସେ ଯେପରି କୋର୍ଯାକଙ୍କ ସହ କଟାଇଥିଲେ, ତାହା ତାଙ୍କୁ କୋର୍ଯାକଙ୍କର ଆହୁରି ନିକଟତର କରିଦେଇଥିଲା । ପରେ ଯେତେବେଳେ କୋର୍ଯାକ ଓ୍ୱାର୍ସୋର ଇହୁଦୀ ବସ୍ତିରେ ଆଉଥରେ ବନ୍ଦୀହୋଇ

ରହିଲେ, ସେତେବେଳେ ସେ ନିକଓ୍ୱିକଙ୍କ ଉଦାହରଣ ଦେଇଥିଲେ ସେ କହୁଥିଲେ, "ଯେଉଁମାନେ ନୈରାଶ୍ୟ ଭିତରେ ଗତି କରୁଛନ୍ତି ଏବଂ ବନ୍ଦୀହୋଇ ଅନ୍ୟାୟ ଭୋଗ କରୁଛନ୍ତି ସେମାନେ ନିକଓ୍ୱିକଙ୍କ ଜୀବନକୁ ଅନୁସରଣ କରିବା ଆବଶ୍ୟକ ।"

ଶେତୋଓସ୍କି ବ୍ରଜୋଓ୍ୱସ୍କି ନାଟବୋଓ୍ୱିସ୍କି ଏବଂ ନିକଓ୍ୱିକ ଆଦିଙ୍କ ବାମପନ୍ଥୀ ଆଦର୍ଶର ଐତିହ୍ୟ ପୋଲାଣ୍ଡର ଜାତୀୟ ରାଜନୀତି ଚିନ୍ତାଧାରାକୁ ନୂଆରୂପ ଦେଇଥିଲା ଏବଂ ପାଠକମାନଙ୍କୁ ଏହି ଲେଖାଗୁଡ଼ିକ ସର୍ବପ୍ରଥମେ ଆକର୍ଷିତ କରୁଥିଲା । ଏମାନଙ୍କ ଭିତରୁ ଋାଜୋଓ୍ୱିସ୍କି କୋର୍ଯାକଙ୍କ କବିତାଗୁଡ଼ିକର ଦୃଢ଼ ସମାଲୋଚକ ଥିଲେ । ସେମାନେ ଯେଉଁ ଯୁକ୍ତି ଉପସ୍ଥାପିତ କରୁଥିଲେ, ତାହା ଯୁବଗୋଷ୍ଠୀଙ୍କ ଭିତରେ ବହୁତ ଆଦୃତ ହେଉଥିଲା । କୋର୍ଯାକ ୧୯୪୨ ମସିହାରେ ଲେଖିଥିଲେ, "ମୁଁ କେବଳ କୌଣସି ରାଜନୈତିକ ଦଳର ସଦସ୍ୟ ନଥିଲି । କିନ୍ତୁ ଏମାନେ ମୋ ସାମାଜିକ ପରିସରରେ ପରୋକ୍ଷ ଶିକ୍ଷକ ଥିଲେ ।"

କୌଣସି ସଂସ୍କାରମୂଳକ କାର୍ଯ୍ୟକ୍ରମରେ ନିଜେ ଜଡ଼ିତ ନଥାଇ କିମ୍ବା ଅଭିଜ୍ଞତା ନଥାଇ ସେ ଏ ବିଷୟରେ କିଛି ଲେଖିବାକୁ ପ୍ରସ୍ତୁତ ନଥିଲେ । ଘରର ବିଳାସ ଜୀବନକୁ ପରିତ୍ୟାଗ କରି ସହରର ହତଭାଗ୍ୟମାନଙ୍କର ଜୀବନଧାରାକୁ ବୁଝିବା ପାଇଁ ସେ ବସ୍ତିକୁ ଚାଲିଯାଇଥିଲେ । ନାଳ ନର୍ଦ୍ଦମାରେ କାମକରୁଥିବା ଶ୍ରମିକମାନଙ୍କ ସାଙ୍ଗରେ କୁଡ଼ିଆଘରେ ରାତିରାତି ବିତାଇଥିଲେ । ତାଙ୍କର ଲକ୍ଷ୍ୟଥିଲା "ବେଶି ଦେଖିବା ଅପେକ୍ଷା ବେଶି କାମକରିବା ଶ୍ରେୟସ୍କର" । ସାଧାରଣ ଦରିଦ୍ରତମ ଅବସ୍ଥାକୁ ନିଜେ ଅନୁଭବ କରିବାରେ ସନ୍ତୋଷ ଲାଭ କରୁଥିଲେ । ଅତି ନିବିଡ଼ ଭାବରେ ଦରିଦ୍ର ଲୋକମାନଙ୍କ ସହ ବ୍ୟକ୍ତିଗତ ସଂପର୍କ ମାଧ୍ୟମରେ ଦାରିଦ୍ର୍ୟକୁ ଅଙ୍ଗେ ଲଗାଇବା ପରେ ସେ ଏହି ସାମାଜିକ କ୍ଷତ ଓ ଅସୁସ୍ଥତାକୁ ଆରୋଗ୍ୟ କରିବାପାଇଁ ଚାହୁଁଥିଲେ ।

ଯେଉଁମାନଙ୍କ ପାଖରେ ରୋଗ ଚିକିତ୍ସା କରିବାପାଇଁ କୌଣସି ସମ୍ବଳ ନଥିଲା ସେମାନେ ମ୍ୟୁନିସିପାଲିଟିର ମାଗଣା କ୍ଲିନିକ୍‌ରେ ସ୍ୱେଚ୍ଛାସେବୀ ଡାକ୍ତରମାନଙ୍କ ଦ୍ୱାରା ଚିକିତ୍ସିତ ହେଉଥିଲେ ।

ଜଣେ ଅସାଧୁ ଡାକ୍ତର କେବଳ ନିଜର ପ୍ରଚାର କରିବା ପାଇଁ ସ୍ୱେଚ୍ଛାସେବୀ ଭାବେ କାମରେ ଯୋଗଦେଇଥିଲେ । ସେ କୋର୍ଯାକଙ୍କୁ ଏତେ ଚିଡ଼ାଇଦେଲା ଯେ କୋର୍ଯାକ ରାଗିଯାଇ କହିଲେ "ମୁଁ ଏକଥା ଦାବି କରୁଛି, ଯେଉଁ ମେଡ଼ିକାଲ୍ ଅଫିସର ତାଙ୍କର ବ୍ୟାବସାୟିକ ସେବା ଅର୍ପଣ କରିବା ପାଇଁ ନିଷ୍ପତ୍ତି ନେଇ ଏଠାରେ ଯୋଗଦେଇଛନ୍ତି, ସେ ଆମ ସର୍ତ୍ତ ଅନୁସାରେ ଏଠାରେ ଭଦ୍ର ଓ ନମ୍ର ହେବା ଆବଶ୍ୟକ ।"

ଯେଉଁମାନଙ୍କର ଭିତରଆ ଉଦ୍ଦେଶ୍ୟ ମନ୍ଦ ଥିଲା ସେମାନଙ୍କୁ ମୁହେଁ ମୁହେଁ ଜବାବ ଦେଉଥିଲେ । "ଅବାନ୍ତର (Nonsense) କୋର୍ଯାକଙ୍କର ଏକ ବ୍ୟଙ୍ଗ ଚଳ୍ପ ସଂକଳନ । ଏଥିରେ ମୁଖ୍ୟତଃ ସେ ସମୟର ସାମାଜିକ ସମସ୍ୟା ସମ୍ପର୍କରେ ଲେଖା-ଯାଇଥିଲା । ସେ ଜଣେ ଜମିଦାରଙ୍କ ମଜାଳିଆ ଛବି ଆଙ୍କିଥିଲେ । ଜମିଦାର ଜଣଙ୍କ ଇଚ୍ଛା କରୁଥିଲେ । ତାଙ୍କ ଝିଅ ଜଣେ ଧନୀ ପୁଅକୁ ବିବାହ କରିବା ଫଳରେ ସେ ତାଙ୍କ ବିଶ୍ୱବିଦ୍ୟାଳୟ ପଢ଼େଇବା ପାଇଁ କୋଉଁ ମାଧ୍ୟମରେ କିଛି ଯୋଗାଡ଼ କରିପାରିବେ । ଏ ଉଦ୍ଦେଶ୍ୟ ସାଧନ ପାଇଁ ସେ ତାଙ୍କ ଭଡ଼ାଘରର ଦାମ୍ ବଢ଼େଇଦେଲେ । ହଠାତ୍ ଏଭଳି ଏକ କାମ କରିବା ଦ୍ୱାରା ଅନ୍ୟ ପ୍ରକାରର ଅଦୃଷ୍ଟ ସମସ୍ୟା ସବୁ ଦେଖାଦେଲା । ଏହି ଗଳ୍ପରେ କୋର୍ଯାକ ଅତି ହୀନ ଜମିଦାରମାନେ କିପରି ବିଚିତ୍ର ଢଙ୍ଗରେ ସେମାନଙ୍କର କାମ ସବୁ କରନ୍ତି ଯେ ବିଷୟରେ ସବିଶେଷ ଧାରଣା ଦେଇଥିଲେ ।

କୋର୍ଯାକଙ୍କ ଯୌବନ ସମୟରେ ପୋଲାଣ୍ଡରେ ଅନ୍ୟାୟ, ଦୁର୍ନୀତି, ଅତ୍ୟାଚାର ଭରିରହିଥିଲା । ଋଷୀୟମାନଙ୍କୁ ଏହା ବହୁତ ସୁହାଉଥିଲା । ସେମାନେ ଚାହୁଁଥିଲେ ପୋଲାଣ୍ଡର ସର୍ବସାଧାରଣ ଅଳ୍ପ କେତେ ବ୍ୟକ୍ତିଙ୍କ ଉପରେ ସବୁବେଳେ ହାତ ପତାଇ ଚାଲୁଥାଆନ୍ତୁ ଏବଂ ଏହି ଅଳ୍ପ କେତେକଙ୍କୁ ସେମାନେ ନିଜ ହାତ ମୁଠାରେ ବଶୀଭୂତ କରି ରଖୁଥିଲେ ।

୧୯୦୫ ମସିହାରେ କୋର୍ଯାକ ଜଣେ ଆନ୍ଦୋଳନକାରୀ ଭାବରେ ମୁଖ୍ୟ ଭୂମିକା ନେଇଥିଲେ । ଏହି ସମୟରେ ଓ୍ୱାର୍ସୋରେ ରାଜନୈତିକ ଉତ୍ଥାନ ଘଟୁଥିଲା ଏବଂ ତାଙ୍କ ଭିତରେ ଏପରି କିଛି ଘଟିଲା ଯଦ୍ଦ୍ୱାରା ତାଙ୍କର ରାଜନୈତିକ ଧାରଣାସବୁ ବଦଳିଗଲା ।

ସୁବିଖ୍ୟାତ ପୋଲାଣ୍ଡ ଲେଖକ ବୋଲେସ୍ଲୋପ୍ରସ ଏବଂ ଲୁଡ୍‌ଓ୍ୱିକ୍ ସ୍ତ୍ରସ୍‌ଜେ-ଓ୍ୱିକ୍‌ଜଙ୍କ ପ୍ରଭାବରେ କୋର୍ଯାକଙ୍କ ଭିତରେ ପରିବର୍ତ୍ତନ ଆସିଲା ସେମାନଙ୍କ ରାଜନୈତିକ ଚିନ୍ତାଧାରା କୋର୍ଯାକଙ୍କ ମନକୁ ପାଇଲା । ଜୀବନୀ ସୂତ୍ରରେ ସେ ସେମାନଙ୍କ ବିଷୟରେ ବାରମ୍ବାର ଉଲ୍ଲେଖ କରି କହିଛନ୍ତି ଯେ ସାହିତ୍ୟ କ୍ଷେତ୍ରରେ ପ୍ରସ୍ ହେଉଛନ୍ତି ତାଙ୍କର ଅଭିନ୍ନ ଉପଦେଷ୍ଟା । ୧୯୩୨ ମସିହାରେ ପ୍ରସ୍ ଏବଂ ରାଜନାମା ପ୍ରବନ୍ଧରେ ପ୍ରସ୍‌ଙ୍କ ପ୍ରଭାବ ସମ୍ପର୍କରେ ବର୍ଣ୍ଣନା କରିଥିଲେ ।

କୋର୍ଯାକ ସମାଜବାଦୀ ଆନ୍ଦୋଳନ କମ୍ବା ରାଜନୈତିକ ରଣାଙ୍ଗନରେ ବୀର ପରି ସଂଗ୍ରାମ କରୁଥିଲେ । ଆଦର୍ଶବାଦୀ ଚିନ୍ତାଧାରାଙ୍କ ନରମ ନୀତି ତାଙ୍କୁ ଆଘାତ ଦେଉଥିଲା । ତେଣୁ ସେ ଲେଖିଥିଲେ—ସେମାନେ ଭିନ୍ନ ବାଟ ବାଛିବାର କିଛି ନିଶ୍ଚୟ କାରଣ ଥିଲା, ହେଲେ ମୋ ପାଖରେ ସମସ୍ତ କାହିଁ ସେମାନଙ୍କୁ ଅପେକ୍ଷା କରିବାକୁ ?

ତା ପରଠାରୁ ସେ ରାଜନୀତିଠାରୁ ଦୂରେଇଗଲେ । ସେ ଆଉ କୌଣସି ଆଦର୍ଶଗତ ଭାଷଣ ଦେଲେ ନାହିଁ ଏବଂ ସବୁ ପ୍ରକାର ରାଜନୈତିକ ଘୋଷଣା ଠାରୁ ନିଜକୁ ଅଲଗା କରିଦେଲେ । ସେ ତାଙ୍କର ଆଗ୍ରହକୁ ଶିଶୁକୈନ୍ଦ୍ରିକ କାର୍ଯ୍ୟରେ ବିନିଯୋଗ କଲେ ।

ସେ ପିଲାମାନଙ୍କ ସମସ୍ୟାକୁ ନେଇ ଲେଖାଲେଖି ଆରମ୍ଭ କଲେ । ମଧ୍ୟବିତ୍ତ ପରିବାରର ଶିଶୁ ଲାଳନ ପାଳନ ପଦ୍ଧତିକୁ ସମାଲୋଚନା କଲେ । ସାମାଜିକ ନୀତି ନିୟମ ଆଦି ପିଲାଙ୍କ ଉପରେ ଯେଉଁ କୁପ୍ରଭାବ ପକାଏ ତାକୁ ନିନ୍ଦାକଲେ । ପୂର୍ବରୁ ଥିବା ବଦ୍ଧମୂଳ ଧାରଣା ସାମାଜିକ ଚଳଣିରେ ଥିବା କୁସଂସ୍କାର, ଅନ୍ଧବିଶ୍ୱାସ ବିରୋଧରେ ଲେଖନୀ ଚଳାଇଲେ । ସେ ଏକ ମହତ୍ତ୍ୱପୂର୍ଣ୍ଣ ଅନୁସିଦ୍ଧାନ୍ତରେ ଆସି ଉପନୀତ ହେଲେ, ତାହା ହେଉଛି "ଏ ପୃଥିବୀକୁ ସୁନ୍ଦର କରି ଗଢ଼ିତୋଳିବା ଅର୍ଥ ଭବିଷ୍ୟତ ବଂଶଧରଙ୍କ ଲାଳନ ପାଳନ ଧାରାରେ ସଂସ୍କାର ଆଣିବା" । ସାମାଜିକ ସଂସ୍କାର ଓ ଡାକ୍ତରୀ ସେବାରେ ଯେପରି ନିଷ୍ଠା ସହକାରେ ସେ ଲାଗିଥିଲେ ପିଲାମାନଙ୍କ ଅଧିକାର ସୁବିଧା ସୁଯୋଗ ପାଇଁ ସେହି ମାତ୍ରାରେ ସେ ତାଙ୍କ ଲଢ଼େଇ ଆରମ୍ଭ କରିଦେଲେ । ତାଙ୍କ ପାଇଁ ପିଲାଟିର ମୁକ୍ତି ହିଁ ପ୍ରକୃତ ସ୍ୱାଧୀନତା ।

କୃଷୀ, ଶ୍ରମିକ, ନିଗ୍ରୋ, ଇହୁଦୀ ଏବଂ ନାରୀ ମୁକ୍ତିକୁ ସେ ଯେପରି ଗୁରୁତ୍ୱର ସହ ବିଚାର କରୁଥିଲେ, ପିଲାଙ୍କ ମୁକ୍ତି ପାଇଁ ମଧ୍ୟ ଚେଷ୍ଟା କରୁଥିଲେ । ପିଲାଙ୍କ ଅଧିକାର ଏବଂ ବୟସ୍କମାନଙ୍କ ଅଧିକାର ଭିତରେ ସେ କୌଣସି ପାର୍ଥକ୍ୟ ଦେଖିପାରୁ ନଥିଲେ । ବ୍ୟଙ୍ଗାତ୍ମକ ଉପନ୍ୟାସଗୁଡ଼ିକରେ ସେ ପିଲାମାନଙ୍କର ଅଧିକାର ସମ୍ପର୍କରେ ଅନେକ ତାତ୍ତ୍ୱିକ ବିଚାରକୁ ଉପସ୍ଥାପନ କରୁଥିଲେ । ପିଲାମାନଙ୍କର ଏହି ଅଧିକାର ସପକ୍ଷରେ କହିବାକୁ ଯାଇ ସେ ନିର୍ବୋଧ, ପଛୁଆ ଶିକ୍ଷକ ଏବଂ ଉଚ୍ଚାକାଂକ୍ଷୀ ନିର୍ଦ୍ଦୟ ବାପା ମାଆଙ୍କ ସହ ଯୁକ୍ତିତର୍କ କରୁଥିଲେ ।

କୋର୍ଯାକଙ୍କ "କୁନିରାଜାର ଚଟେଇ" ପୁସ୍ତକରେ ମୁଖ୍ୟନାୟକ ଜଣେ ବନ୍ଧୁଙ୍କୁ କହିଛନ୍ତି, "ନାରୀ ନିଜକୁ ମୁକ୍ତ କରିଦେଲା । ମାତ୍ର ଶିଶୁଟି ବାଳଶ୍ରମିକ ଅବସ୍ଥାରେ ବନ୍ଧା ହୋଇ ପଡ଼ିରହିଲା । ତା'ର ବଞ୍ଚିବା ଉପରେ ମଣିଷର ଅହଂକାର ଭୟଙ୍କର ଭାବରେ ପ୍ରକାଶ ପାଉଛି । ପିଲାର ଶିକ୍ଷା ବହୁ ପରିମାଣରେ ଏପର୍ଯ୍ୟନ୍ତ ବି କାରଖାନାର ସିଟି ବା ସ୍କୁଲଘଣ୍ଟି ଦ୍ୱାରା ନିୟନ୍ତ୍ରିତ ହେଉଛି ।"

ଯୁଦ୍ଧବିରୋଧୀ କୋର୍ଯାକ ପିଲାଙ୍କ ମୁକ୍ତି ପାଇଁ ସ୍ୱରଉତ୍ତୋଳନ କଲେ । ଏଥିପାଇଁ ସେ ବାପା ମାଆଙ୍କର ଅପ୍ରିୟ ହେଲେ । ଏପରିକି କେତେକ ସମାଜକଲ୍ୟାଣ ସଂସ୍ଥାଙ୍କ ସହିତ ଶତ୍ରୁତା ସୃଷ୍ଟିହେଲା । ଏକଥା ମଧ୍ୟ ସତ୍ୟ ଯେ ତାଙ୍କ ସମାଲୋଚନାଗୁଡ଼ିକରେ ଅନେକ ବାସ୍ତବ କଦର୍ଯ୍ୟ କଥାଗୁଡ଼ିକୁ ସମ୍ପୂର୍ଣ୍ଣ ଭାବରେ ସେ ଉଦ୍‌ଘାଟିତ କରୁନଥିଲେ ।

କାଳକ୍ରମେ କୋର୍ଝାକ ନରମିଗଲେ । ପରିଶେଷରେ ପିଲାଙ୍କ ପାଇଁ ଉଦ୍ଦିଷ୍ଟ ଲେଖା-ଗୁଡ଼ିକରେ ସେ ମୁଖ୍ୟତଃ ଦୁଇଟି ଶିବିର ବିଷୟ ଉଲ୍ଲେଖ କରିଥିଲେ । ସେଥିରୁ ଗୋଟିଏ ହେଲା ପିଲାଙ୍କ ଶିବିର ଓ ଅନ୍ୟଟି ହେଲା ବୟସ୍କମାନଙ୍କ ଶିବିର । ସବୁବେଳେ ତାଙ୍କର ଚିନ୍ତାର ବିଷୟ ଥିଲା, ଏହି ଦୁଇ ଶିବିର ମଧ୍ୟରେ କିପରି ଉତ୍ତମ ବୁଝାମଣା ସ୍ଥାପିତ ହୋଇପାରିବ ଏବଂ ଏମାନେ ପରସ୍ପରର ନିକଟବର୍ତ୍ତୀ ହୋଇପାରିବେ ।

କୋର୍ଝାକ ଆଉ ବିରୋଧ କଲେ ନାହିଁ କିମ୍ବା ଲଢ଼େଇ କଲେ ନାହିଁ । ପିଲା-ମାନଙ୍କର ଲାଳନପାଳନ ପଦ୍ଧତି ଏବଂ ସେମାନଙ୍କ ପ୍ରତି ଥିବା ଭ୍ରମାତ୍ମକ ବୁଝାମଣା ବିରୋଧରେ ସେ ଯୁକ୍ତି କରୁଥିଲେ । ସେ ସମୟରେ କୋର୍ଝାକ୍ ତାଙ୍କ କାମ ସମ୍ବନ୍ଧରେ ସୂଚନା ଦେଇ କହୁଥିଲେ, "ଏକ ସୁନ୍ଦର ଭବିଷ୍ୟତ ପାଇଁ **ବଞ୍ଚିବା, କାମ** କରିବା ଏବଂ ସଂଗ୍ରାମ କରିବା କ'ଣ ଜଣେ ବ୍ୟକ୍ତି ପାଇଁ ସର୍ବୋତ୍ତମ ଆନନ୍ଦ ନୁହେଁ ? ଏବଂ ଶିଶୁ ଆମର ଭବିଷ୍ୟତ । ତା'ପରେ ସେ ଏଥିରେ ଯୋଡ଼ି କହୁଥିଲେ, ରାଜନୈତିକ ଦଳମାନେ ଯେପରି ସେମାନଙ୍କର ସମସ୍ତ ଶକ୍ତିକୁ ଠୁଳ କରି ବାଲୁକା ପ୍ରାସାଦକୁ ସଫଳତାର ଶ୍ରେଣୀରେ ରୂପାନ୍ତରିତ କରିଥାନ୍ତି, ସେହିପରି ଆମକୁ ସଂଗ୍ରାମ ବଜାୟ ରଖିବାକୁ ହେବ ।

କୋର୍ଝାକ୍ ଥରେ ଚିନ୍ତାକରୁଥିଲେ, ଶିଶୁ ଶ୍ରେଣୀର ବାତାୟନରୁ ଶିଶୁଟି ଯେପରି ଜଗତକୁ ଦେଖି ଉପଭୋଗ କରେ, ତା'ର ଏକ ଇତିହାସ ଲେଖିବାକୁ । ଋଷିଆ ଅଧିକୃତ ପୋଲାଣ୍ଡର ସ୍କୁଲ ପିଲାମାନେ ଓ କଲେଜ ଛାତ୍ରମାନେ ଅନେକ ସମୟରେ ଋଷୀୟ ଭାଷାରେ ପଢ଼ାଯାଉଥିବା ଅଧ୍ୟାୟଗୁଡ଼ିକ ବିରୋଧରେ ଧର୍ମଘଟ କରୁଥିଲେ । ଏହି ମୁହୂର୍ତ୍ତଗୁଡ଼ିକରେ ପିଲାମାନେ ତଥା ଯୁବକମାନେ ଅନ୍ଧକାରରୁ ଗ୍ଲାଇ ଭିତରୁ ବାହାରି ଆସୁଥିଲେ । ସମାଜକଲ୍ୟାଣ ସଂସ୍ଥା ବିରୋଧରେ ସଂଗ୍ରାମ କଲାବେଳେ ବି ସେ ଏହି ପନ୍ଥା ଅବଲମ୍ବନ କରିଥିଲେ । କିନ୍ତୁ କୋର୍ଝାକ୍ ଇଚ୍ଛା କରୁଥିଲେ ପିଲାମାନେ ସବୁବେଳେ ପୃଥିବୀର ବୃହତ୍ତର ପରିସର ଭିତରକୁ ଉତ୍ପାଟିତ ହୁଅନ୍ତୁ । ସେ ଅନୁଭବ କରୁଥିଲେ ପିଲାମାନଙ୍କ ପ୍ରତି ଏହି ସମ୍ମାନ ଓ ମର୍ଯ୍ୟାଦା ପୃଥିବୀ ପ୍ରତି ମଙ୍ଗଳକାରକ ହେବ ।

କୋର୍ଝାକ୍ ପିଲାମାନଙ୍କୁ ପୃଥିବୀର ସବୁଠାରୁ ପୁରାତନ ସର୍ବହରା ଗୋଷ୍ଠୀ ବୋଲି ବର୍ଣ୍ଣନା କରିଥିଲେ ଏବଂ କହୁଥିଲେ, "ଆଇଜାକ୍‌ଙ୍କର ଆତ୍ମୋତ୍ସର୍ଗ, ହାଗାର ଏବଂ ଇସ୍‌ମାଇଲ୍‌ଙ୍କ ମରୁଭୂମିକୁ ନିର୍ବାସନ ଏବଂ ବେଥେଲ୍‌ହେମ୍‌ର ଗଣହତ୍ୟାଠାରୁ ଆରମ୍ଭକରି ଆଧୁନିକ ଯୁଗ ପର୍ଯ୍ୟନ୍ତ ପିଲାମାନେ ସଦାସର୍ବଦା ନିର୍ଯାତିତ ହୋଇ-ଆସିଛନ୍ତି । ଜେସସ୍ ଖ୍ରୀଷ୍ଟ ପିଲାମାନଙ୍କୁ କିପରି ପ୍ରେମ କରିବାକୁ ହେବ ସେ ସମ୍ପର୍କରେ ଉଦାହରଣ ଦେଇ କହିଛନ୍ତି, "ସେମାନଙ୍କୁ ମୋ ପାଖକୁ ଆସିବାପାଇଁ ଛାଡ଼ିଦିଅ ।"

ଅବହେଳିତ କମ୍ବା ନିର୍ଯାତିତ ଶିଶୁ ପାଇଁ କୋର୍ଯାକ୍‌ଙ୍କ ହୃଦୟ ବ୍ୟଥିତ ହୋଇପଡ଼ୁଥିଲା । ତାଙ୍କର ଏହି ସ୍ୱଭାବ ବାସ୍ତବ ଭାବରେ ଫୁଟିଉଠିଲା, ଯେତେବେଳେ ସେ ଡାକ୍ତରଖାନାରେ ଡାକ୍ତର ଭାବରେ ଏବଂ ଅନାଥାଶ୍ରମରେ ଉଭୟ ଶିକ୍ଷକ ଏବଂ ପିତା ଭାବରେ ଭୂମିକା ନିଭାଇଲେ । ଅନାଥ ପିଲାମାନେ ଡାକ୍ତରଙ୍କ ସମସ୍ତ ଦୃଷ୍ଟି ଆକର୍ଷଣ କରୁଥିଲେ ।

୧୯୦୫ ମସିହାର ବିପ୍ଳବାତ୍ମକ ଦିନଗୁଡ଼ିକରେ କୋର୍ଯାକ୍ ଘୋଷଣା କଲେ "କୌଣସି ଚମତ୍କାରିତା ଘଟିପାରେ । କୌଣସି ଏକ ଶତ ମସ୍ତକଧାରୀ ଓ ଅସ୍ତ୍ରଶସ୍ତ୍ର ସଜ୍ଜିତ ଶତହସ୍ତଧାରୀ ବୀରପୁରୁଷ ସମସ୍ତଙ୍କ ପାଇଁ କାମ ଯୋଗାଡ଼ କରି ଏଠାରେ ପହଞ୍ଚିବେ ଏବଂ ଆମ ସମସ୍ତଙ୍କ ପାଇଁ ତଥା ପିଲାମାନଙ୍କ ପାଇଁ ଏକ ସୁନ୍ଦର ଭବିଷ୍ୟତ କିଣିଆଣିବେ । ଇତିହାସ ଅଦ୍ଭୁତ ସ୍ୱପ୍ନ ଦେଖେ ।"

## (୭) ଜଣେ ଡାକ୍ତର ହିସାବରେ

ପିଲାଦିନରୁ କୋର୍ଯାକଙ୍କର ଡାକ୍ତରୀ ପଢ଼ିବା ପାଇଁ ଇଚ୍ଛା ଥିଲା । ପରିବାରରେ ଆଗରୁ ଜେଜେବାପା ଡାକ୍ତର ଥିଲେ । ତାଙ୍କର ପ୍ରଭାବ କୋର୍ଯାକ୍‌ଙ୍କ ଉପରେ ପଡ଼ିଥିଲା । କୋର୍ଯାକ୍ ତାଙ୍କ ରଚିତ ପୁସ୍ତକ "ନନ୍‌ସେନ୍‌ସ"ରେ ଲେଖିଥିଲେ, "ଜଣେ କଅଣ ପଢ଼ିବ ବା ନପଢ଼ିବ ତାହା ନିଜ ଭିତରର ଆହ୍ୱାନ ଉପରେ ଯେତିକି ନିର୍ଭର ନକରେ ତାଠାରୁ ଅଧିକ ନିର୍ଭର କରେ ପାରିପାର୍ଶ୍ୱିକ ଅବସ୍ଥା ଉପରେ । ଯଦି ମୋ ମାଆ ଓ୍ୱାର୍ସୋ ଅପେରାରେ ଗୀତ ଗାଇଥାନ୍ତେ, ତେବେ ମୁଁ ମଧ୍ୟ ମୋ ସ୍ୱର ଲମ୍ବାଇବା ପାଇଁ ମୋ ଗଳାକୁ ପ୍ରସ୍ତୁତ କରୁଥାନ୍ତି । ମାଂସ ଅଧିକ ଖାଇଥିବା ଶିଶୁର ପେଟ କାମୁଡ଼ାର ଗର୍ଜନ ମୁଁ ଶୁଣି ପାରୁନଥାନ୍ତି କି ଏଥିପାଇଁ ଓଲେଇରେସିନ୍ ମେଡ଼ିସିନ୍ ଲେଖୁନଥାନ୍ତି ।"

ଚଉଦ ବର୍ଷ ବେଳକୁ କୋର୍ଯାକ୍ ଜେଜେବାପାଙ୍କ ଭଳି ଜଣେ ଡାକ୍ତର ହେବାର ସ୍ୱପ୍ନ ଦେଖୁଥିଲେ । ପରେ ତାଙ୍କର 'ନନ୍‌ସେନ୍‌ସ' ପୁସ୍ତକରେ ସେ ଉଚ୍ଚାକାଂକ୍ଷୀ ବାପାମାଆମାନଙ୍କୁ ଉପଦେଶ ଦେଇ ଲେଖିଥିଲେ, "ଯଦି ତୁମ ଜହ୍ନ, ମାଛ, ଗୋଲ୍‌ଡଫିସ୍, ବିଲେଇ, କୁକୁରଙ୍କୁ ସେବାଶୁଶ୍ରୂଷା କରିବାକୁ ତଥା ବେଙ୍ଗ, ଅସରପା, ନିଜ ପ୍ୟାଣ୍ଟ, ସ୍କୁଲ ବହି ଆଦିକୁ କାଟି ପର୍ଯ୍ୟବେକ୍ଷଣ କରିବାକୁ ମନ ବଳାଉନାହିଁ, ତେବେ ତାକୁ ଡାକ୍ତରୀ ପଢ଼ିବାପାଇଁ ବାଧ୍ୟ କରାଅ ନାହିଁ ।"

ଷୋହଳ ବର୍ଷ ବୟସରେ ଯେତେବେଳେ ତାଙ୍କର ଗୋଟିଏ ଉପନ୍ୟାସ ପ୍ରକାଶନ ପାଇଁ ମନାକରିଦିଆଗଲା, ସେ ମନ୍ତବ୍ୟ ଦେଇଥିଲେ, "ମୁଁ ଆଉ ଲେଖକ ହେବ ନାହିଁ । ଆଉ ମୋ ପାଇଁ କଅଣ ବାକି ରହିଲା ? ଜଣେ ଠକ ଡାକ୍ତର ? ବୋଧେ ସେଇଆ ହେବ । ସେମିତି କହିଲେ ସାହିତ୍ୟ କଅଣ, ସାହିତ୍ୟ ହେଉଛି ଶବ୍ଦର ସମାହାର; ମାତ୍ର ମେଡ଼ିସିନ୍ ହେଉଛି କାମ ଆଉ କାମ ।"

ଡାକ୍ତରୀ ପଢ଼ିବାର ପ୍ରବଳ ଇଚ୍ଛା ସତେଯେପରି ତାଙ୍କର ଜନ୍ମଗତ ଥିଲା । ପାରିବାରିକ ପ୍ରଭାବ ଯେତିକି ତାଙ୍କୁ ଏ ଦିଗକୁ ଆକର୍ଷିତ କରିନଥିଲା, ତା ଅପେକ୍ଷା ଦେଶର ସାଧାରଣ ଅବସ୍ଥା ଏବଂ ତାଙ୍କ ନିଜର ପାରିପାର୍ଶ୍ୱିକ ପରିସ୍ଥିତି ତାଙ୍କୁ ଅଧିକ ଆକର୍ଷିତ କରିଥିଲା ।

ସେ ତାଙ୍କର ଜଣେ ବନ୍ଧୁଙ୍କୁ କହିଥିଲେ, "ସାହିତ୍ୟ ଚର୍ଚ୍ଚାର ଜୀବନ ଅତ୍ୟନ୍ତ ଅସ୍ଥିର ଅଟେ । ସାମ୍ବାଦିକତା ବହୁତ ବିପଦସଙ୍କୁଳ । ଚିକିତ୍ସାରେ ଯେଉଁ ଅତ୍ୟାଚାର ଆଉ ବାଧବାଧକତା ରହିଛି ସେଥିରେ ଶିକ୍ଷକତା କହିଲେ ତ ପ୍ରଶ୍ନ ହିଁ ଉଠୁନାହିଁ ।"

ଡାକ୍ତର ଭାବରେ ଜୀବନ ଗଢ଼ିବା ଦ୍ୱାରା ସେ ତାଙ୍କର ଧୀଶକ୍ତିକୁ ଉପଯୁକ୍ତ ଭାବରେ ବିନିଯୋଗ କରିପାରିଥିଲେ । ଏହାଦ୍ୱାରା ତାଙ୍କର ମାନସିକତା ଏବଂ ସାମାଜିକ ଆସ୍ପୃହା ପୂରଣ ହୋଇପାରିଥିଲା । ତା'ଛଡ଼ା, ନିଜର ଭରଣପୋଷଣ ପାଇଁ ଏହା ଯଥେଷ୍ଟ ସହାୟକ ହୋଇପାରିଥିଲା ଏବଂ ଅନ୍ୟାନ୍ୟ ଅନେକ ଆଶାକୁ ସନ୍ତୁଷ୍ଟ କରିପାରୁଥିଲା ।

ଓ୍ୱାର୍ସୋ ବିଶ୍ୱବିଦ୍ୟାଳୟରେ ସେ ଡାକ୍ତରୀ ଶିକ୍ଷା ଲାଭ କରିଥିଲେ । ମେଡ଼ିକାଲ କଲେଜର ସବୁ ପରୀକ୍ଷାରେ ସେ ବହୁତ ଭଲ ଭାବରେ ଉତ୍ତୀର୍ଣ୍ଣ ହେବାକୁ ସକ୍ଷମ ହୋଇଥିଲେ । ଡାକ୍ତରୀପାଠ ସାଙ୍ଗକୁ ସେ ସାହିତ୍ୟ ଲେଖା, ସାହିତ୍ୟ ଚର୍ଚ୍ଚା, ସାମାଜିକ କାମ ଆଦିରେ ନିଜକୁ ନିୟୋଜିତ କରୁଥିଲେ ଏବଂ ପରିବାର ପାଇଁ ରୋଜଗାର ବି କରୁଥିଲେ । ଏସବୁକୁ ବିଚାରକଲେ, ଡାକ୍ତରୀପାଠରେ ତାଙ୍କୁ ମିଳିଥିବା ସଫଳତା ଅତ୍ୟନ୍ତ ପ୍ରଶଂସନୀୟ ଅଟେ ।

ଓ୍ୱାର୍ସୋ ବିଶ୍ୱବିଦ୍ୟାଳୟରୁ କୋର୍ଯାକ୍ ଡକ୍ଟରେଟ୍ ଲାଭକଲେ । ବିଦେଶରେ କ୍ଲିନିକାଲ କାମକରି ଡାକ୍ତରୀ ଜ୍ଞାନକୁ ସମୃଦ୍ଧ କଲେ । ବିଦେଶକୁ ଯିବାରେ ତାଙ୍କର ଗୋଟିଏ ଉଦ୍ଦେଶ୍ୟ ଥିଲା, ତାହା ହେଉଛି ଅଧିକ ଜ୍ଞାନ ଲାଭ କରି ନିଜକୁ ଆଲୋକିତ କରିବା । ଜର୍ମାନୀରେ ସେ ଗୋଟିଏ ବର୍ଷ ରହିଲେ । ପରେ ପ୍ୟାରିସ୍‌ରେ ଛଅମାସ ରହିଲେ । ତା'ପରେ ତାଙ୍କୁ ବହୁତ ଅଭାବ ଭିତରେ ଗତି କରିବାକୁ ପଡ଼ିଥିଲା । ଦୁଇ ଗ୍ଲାସ ଦୁଧ, ପଟେ ପାଉଁରୁଟିରେ ଦିନସାରା ଚଳିବାକୁ ହେଉଥିଲା ।

ପରେ ସେ ତାଙ୍କ ଅଧ୍ୟୟନ ଜୀବନକୁ ବିଶ୍ଳେଷଣ କରି କହିଛନ୍ତି ଯେ ଇଉରୋପର ଛୋଟିଆ ଦେଶର ରାଜଧାନୀରେ ନିଜର କ୍ଲାନ୍ତ ଶରୀର ନେଇ ସେ ଡାକ୍ତରଖାନା ଚଟାଣ ପୋଛୁଛନ୍ତି, କେବଳ ପେଟ ପାଇଁ ଦାନା ମୁଠାଏ ଯୋଗାଡ଼ କରିବାକୁ ।

ଯୁଦ୍ଧ ସମୟରେ ଓ୍ୱାର୍ସୋର ଜର୍ମାନ କର୍ତ୍ତୃପକ୍ଷଙ୍କ ପାଖକୁ ପଠାଇଥିବା ଆତ୍ମ-ଜୀବନୀରେ ସେ ନିଜ ଡାକ୍ତରୀ ଶିକ୍ଷା ସମ୍ବନ୍ଧରେ ଲେଖିଥିଲେ, "ମୁଁ ଓ୍ୱାର୍ସୋରୁ ମେଡ଼ିସିନ୍‌ରେ ଡକ୍ଟରେଟ୍ ପାଇ ବର୍ଲିନ, ପ୍ୟାରିସ ଏବଂ ଲଣ୍ଡନରେ କ୍ଲିନିକାଲ ପାଠ ପଢ଼ିବାପାଇଁ ଯାଇଥିଲି । ସେ ଦେଶମାନଙ୍କରେ ବଦାନ୍ୟ ଅନୁଷ୍ଠାନଗୁଡ଼ିକର ଜାତୀୟ ଜୀବନ ପାଇଁ ଥିବା ଅବଦାନଗୁଡ଼ିକୁ ମୁଁ ଭଲ ଭାବରେ ଜାଣିପାରିଲି । ସତରେ ଏସବୁ କେତେ ଲାଭଦାୟକ ଅନୁଭୂତି ! ମୋ ବାଲକା ସମୟଠାରୁ ମୁଁ ଅନାଥାଶ୍ରମ ପିଲାମାନଙ୍କ ଲାଗି ଥିବା ଭୁଲ ସୁଧାର ଓ ଦଣ୍ଡବିଧାନର ଅନୁଷ୍ଠାନଗୁଡ଼ିକୁ ବୁଲି ଦେଖୁଥିଲି । ମାନସିକ ବିକଳାଙ୍ଗ ପିଲାମାନଙ୍କ ପାଇଁ ଥିବା ଏକ ଅନୁଷ୍ଠାନରେ ମୁଁ ମାସେକାଳ କଟାଇଥିଲି ଏବଂ ଆଉ ଏକ ମାସ ଜିଏନ୍‌ରେ ଥିବା ସ୍ନାୟୁଚିକିତ୍ସା କେନ୍ଦ୍ରରେ ବିତାଇଥିଲି ।"

"ଜଣେ ପିଲାକୁ କିପରି ଭଲ ପାଇବ" (How to love a child) ନାମକ ତାଙ୍କର ଏକ ବହିରେ ସେ ପୁଙ୍ଖାନୁପୁଙ୍ଖ ଭାବରେ ଏ ବିଷୟରେ ଅଧିକ ଚର୍ଚ୍ଚା କରିଛନ୍ତି । ସେ ଲେଖିଛନ୍ତି—

"ବର୍ଲିନ ହସ୍‌ପିଟାଲ ଏବଂ ଜର୍ମାନୀର ଡାକ୍ତରୀପାଠବହି ତାଙ୍କ ଜ୍ଞାନକୁ ଅଧିକ ଦୃଢ଼ୀଭୂତ କରିବା ସଙ୍ଗେ ସଙ୍ଗେ ତାଙ୍କୁ କିପରି ଆଗକୁ ପାଦ ପକାଇବାକୁ ହେବ ସେ ବିଷୟରେ ଶିଖାଇ ପାରିଥିଲା । ତାଙ୍କର କଅଣ ଜାଣିବାକୁ ବାକି ଅଛି ଏବଂ କଅଣ ନିଶ୍ଚିତ ଭାବରେ ଜାଣିବାକୁ ହେବ ସେ ବିଷୟରେ ଚିନ୍ତାକରିବାକୁ ସେ ପ୍ୟାରିସରୁ ଶିକ୍ଷାଲାଭ କରିଥିଲେ । ତା'ଛଡ଼ା ଆସନ୍ତାକାଲି ପାଇଁ ଦୂରଦୃଷ୍ଟି ରଖିବା ପାଇଁ ମଧ୍ୟ ସେ ପ୍ୟାରିସ୍‌ରୁ ଶିଖିଥିଲେ । ଏହି ଶିକ୍ଷାଦ୍ୱାରା ତାଙ୍କ ଭିତରେ ତୀବ୍ର ଆଶା ଓ ଅପ୍ରତ୍ୟାଶିତ ବିଜୟର ଅନୁଭବ ଆସୁଥିଲା । ଗୋଟିଏ ଦିନର ଶ୍ରେଷ୍ଠ ଶ୍ରେଷ୍ଠ ସମସ୍ୟା ଏବଂ ସେଗୁଡ଼ିକର ସମାଧାନ ବିଷୟରେ ସେ ବର୍ଲିନରୁ ଶିକ୍ଷାଲାଭ କରିଥିଲେ ।

ସେ ଆଉ ଏକ ମନ୍ତବ୍ୟ ଦେଇଥିଲେ, "ମୁଁ ଯେତେବେଳେ ପସିଆର ମେଡ଼ିକାଲ ଲାଇବ୍ରେରୀରେ ବସି ମୋଟାମୋଟା ପାରମ୍ପରିକ ଚିକିତ୍ସାଶାସ୍ତ୍ର ସବୁ ପଢ଼ୁଥିଲି, ସେତେବେଳେ ପିଲାଟି ଭିତରେ କେତେ ଚମତ୍କାର ସମନ୍ୱୟତା ରହିଛି ସେ ବିଷୟରେ ହୃଦୟଙ୍ଗମ କରି ବିଭୋର ହୋଇପଡ଼ୁଥିଲି ।"

ଡାକ୍ତର ହିସାବରେ ହେଉ ବା ଶିକ୍ଷକ ହିସାବରେ ହେଉ ସେ ତାଙ୍କ ରଚନା-ଗୁଡ଼ିକରେ ଖ୍ୟାତିସମ୍ପନ୍ନ ବିଶେଷଜ୍ଞମାନଙ୍କ ଲେଖାରୁ ଅନେକ କିଛି ଉଦ୍ଧାର

କରୁଥିଲେ । ଗ୍ରନ୍ଥ ଜୀବନରେ ରଚନା କରିଥିବା ପୁସ୍ତକଗୁଡ଼ିକରେ ସେ ହୋଲ୍ ଜର୍ମାନ ଶବବ୍ୟବଚ୍ଛେଦ ଆଟ୍‌ଲାସରୁ ଉଦ୍ଧୃତମାନ ଦେଇଥିଲେ । ଶବବ୍ୟବଚ୍ଛେଦ, ଅଣୁଜୀବ ବିଜ୍ଞାନ ଆଦିରେ ସେ ପ୍ରଫେସର ପ୍ରେଜ୍‌ଓ୍ୱାସ୍କି, ଜୀବ ବିଜ୍ଞାନରେ ନାସ୍‌ନୋ, ବିକୃତ ମାନସିକ ବିଜ୍ଞାନରେ କେର୍‌ବାକୋ, ଶିଶୁ ସ୍ୱାସ୍ଥ୍ୟ ବିଜ୍ଞାନ କ୍ଷେତ୍ରରେ ଫିନ୍‌କେଲଷ୍ଟିନ୍, ବାଗିନସ୍କି ଏବଂ ହ୍ୱିଟନେଲ ଆଦିମଙ୍କଠାରୁ ଉଦ୍ଧାର କରୁଥିଲେ । "ପର୍ସିଆ ପରିଭ୍ରମଣ"ରେ ସେ ଭର୍‌କୋ ଏବଂ ଗ୍ୟର୍‌କୋଟଙ୍କ କଥା ଦୃଷ୍ଟାନ୍ତ ଦେଇଥିଲେ ।

ସେତେବେଳେ ସେ ତାଙ୍କ ବିଶ୍ୱବିଦ୍ୟାଳୟରେ ଶିକ୍ଷା ବାତାବରଣ ଅତ୍ୟନ୍ତ ଅନୁକୂଳ ଥିଲା ତାହା ନୁହେଁ । ଅନେକ ନିରୁତ୍ସାହଜନକ ପରିସ୍ଥିତି ଭିତରେ ଆତ୍ମନିଷ୍ଠା ଓ ବିଶ୍ୱାସ ହିଁ କୋର୍ସାକ୍‌ଙ୍କୁ ମୁଣ୍ଡ ସିଧାକରି ଛିଡ଼ାକରାଇବାରେ ସମର୍ଥ କରାଇଥିଲା । ଥରେ ଜଣେ ଅଧ୍ୟାପକ, କୋର୍ସାକ୍‌ଙ୍କ ବା ପାପୁଲି ଉପରେ ତାହାଣ ବଣିଆଙ୍ଗୁଠି ରଖି ବାଡ଼େଇ କହିଲେ—କୋର୍ସାକ୍, ତୁ ଯାହା ଡାକ୍ତର ହେବୁ ତାହା ତୋତେ ଜଣା । ତୋର ଏହି ପାପୁଲିରେ ବରଂ ଆଗ ବାଳ ଉଠିବ; ମାତ୍ର ତୁ ସେପର୍ଯ୍ୟନ୍ତ ଡାକ୍ତର ହୋଇପାରି ନଥିବୁ । ଏ ପ୍ରକାର ନିରୁତ୍ସାହଜନକ ପରିସ୍ଥିତି ଭିତରେ କୋର୍ସାକ୍ ଅଧ୍ୟୟନ କରିଥିଲେ ।

ମାତ୍ର ପରିଶେଷରେ ସେ ଜଣେ ନାମଜାଦା ଡାକ୍ତର ଭାବରେ ଆତ୍ମପ୍ରକାଶ କଲେ । ଅଧ୍ୟାପକ ଜଣକ କୋର୍ସାକଙ୍କୁ ଯେଉଁ ମନ୍ତବ୍ୟ ଦେଲେ ସେଥିରେ ଯେ କୌଣସି ଯୁକ୍ତି ନଥିଲା ସେକଥା ନୁହେଁ । ହେନେରିକ୍ ଗୋଲ୍‌ଡ଼ସ୍ମିଥ୍ ଜଣେ କବି ଓ ସଂଦେହବାଦୀ ଦାର୍ଶନିକ ଥିଲେ । ଅନେକ ସମୟରେ ଭେଷଜ ବିଜ୍ଞାନର କେତେକ ମୌଳିକ କଥା ଉପରେ ଛୁଗୁଲେଇ କରି ମନ୍ତବ୍ୟ ଦେଉଥିଲେ । ସେ ଯେତେବେଳେ ଅଦ୍ଭୁତ ଖିଆଲ ରାଜ୍ୟରେ ପଶିଯାଉଥିଲେ, ଯେତେବେଳେ ବିଜ୍ଞାନଠାରୁ ବହୁତ ଦୂରକୁ ଚାଲିଯାଉଥିଲେ । ତା'ଛଡ଼ା ନିଜର ଜ୍ଞାନ ଆହରଣ ପାକଳ ହେବା ପୂର୍ବରୁ ସେ ପ୍ରଚଳିତ କେତେକ ଅନୈତିକ ଚିକିତ୍ସାକୁ ବିରୋଧ କରୁଥିଲେ ।

ଡାକ୍ତରୀ ପଢ଼ିବାର ପ୍ରଥମ ପର୍ଯ୍ୟାୟରୁ ସେ ଶିଶୁଚିକିତ୍ସା ବିଜ୍ଞାନ ବିଭାଗର ବିଶେଷଜ୍ଞ ହେବାପାଇଁ ସ୍ଥିର କରିନେଇଥିଲେ । ପ୍ରାୟ ୧୯୦୩ ମସିହା ବେଳକୁ ସେ ଡାକ୍ତର ଭାବରେ ପ୍ରଥମ ଚାକିରି ପାଇଲେ । ଏହି ଚାକିରି ଜାଗାଟି ଥିଲା ଓ୍ୱାର୍ସୋର ସ୍ଲିମ୍‌କା ଗଳିରେ ଥିବା ଶିଶୁ ଡାକ୍ତରଖାନା । ଏହି ଡାକ୍ତରଖାନାରେ ରେସିଡ଼େଣ୍ଟ ଡାକ୍ତର ଭାବରେ ଖୁବ୍ ଶୀଘ୍ର ନିଜର ଦକ୍ଷତା ହାସଲ କରିପାରିଥିଲେ । ଏଠିକାର କର୍ମମୟ ଜୀବନ ଭିତରେ ସେ ଏପରି ସଂଶ୍ଳିଷ୍ଟ ହୋଇଗଲେ ଯେ, ଏହା ତାଙ୍କ ଜୀବନର ଏକ ଅଂଶ ହୋଇପଡ଼ିଲା ଏବଂ ଏ ଦିନଗୁଡ଼ିକ ବିଷୟରେ ସେ ତାଙ୍କ ଜୀବନୀ ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି । ଯେଉଁ ବଡ଼ ବଡ଼ ଡାକ୍ତରମାନେ ତାଙ୍କୁ

ସେଠାରେ ତାଲିମ ଦେଉଥିଲେ ସେ ସେମାନଙ୍କର ଗୁଣ ଗାରିମା ସମ୍ବନ୍ଧରେ ତାଙ୍କ ଜୀବନୀରେ ସମ୍ୟକ୍ ଭାବରେ ବର୍ଣ୍ଣନା କରିବାକୁ ଭୁଲିଯାଇନାହାନ୍ତି । ଅର୍ଥନୈତିକ ସ୍ଥିତି ଦୃଷ୍ଟିରୁ କୋର୍ଗାନ୍‌ଙ୍କର ଏହି ଚାକିରିଟି ଅତ୍ୟନ୍ତ ସହାୟକ ହୋଇପାରିଥିଲା । ୪୦ ବର୍ଷ ପରେ ବି ସେ ଏହି ଚାକିରିଟିର ଗୁରୁତ୍ୱକୁ ସ୍ମରଣକରି ଲେଖିଥିଲେ—

"ଜଣେ ରେସିଡେଣ୍ଟ ଡାକ୍ତର ହିସାବରେ ମୋତେ ମାଗଣାରେ ଖାଇବା ଓ ରହିବାର ସୁବିଧା ମିଳିଯାଇଥିଲା । ବର୍ଷକୁ ୮ଟି କିସ୍ତିରେ ମୋତେ ୬୦୦ ରୁବଲ୍ ମିଳୁଥିଲା । ଅର୍ଥ ଦୃଷ୍ଟିରୁ ମୋ ଦାଦୀଙ୍କୁ ମାଆ ଥିଲେ ଜଣେ ଚମତ୍କାର ଗୃହିଣୀ । ସେ ମାସକୁ ମାତ୍ର ୧୫ ରୁବଲ୍‌ରେ ଆମ ଘର ଚଳାଇ ଦେଉଥିଲେ । ଘରୋଇ ଚିକିତ୍ସାରୁ ମୁଁ ଆଉ ୧୦୦ ରୁବଲ୍ ମାସକୁ ଅଧିକ ରୋଜଗାର କରୁଥିଲି । ଲେଖାଲେଖିରୁ ଆଉ ଅଳ୍ପ କିଛି କୋପେକ୍ ମିଳୁଥିଲା । ମୁଁ ବହୁତ ଅର୍ଥ, ଘୋଡ଼ାଚଢ଼ା ଶ୍ଳେଜ୍ ଖେଳଣା ଗାଡ଼ି କିଣିବାରେ ଖର୍ଚ୍ଚ କରିଦେଉଥିଲି । ଏଭଳି ବାଜେ ଖର୍ଚ୍ଚପାଇଁ ମାଆ ଅନେକ ସମୟରେ ମୋତେ ଗାଳିଦେଉଥିଲେ । "ଏ କଅଣ ! ଗୋଟିଏ ଶ୍ଳେଜ୍ ଗାଡ଼ିପାଇଁ ୬୦ କୋପେକ୍ ! ପୁରା ପାଗଳାମି ଛଡ଼ା ଆଉ କିଛି ନୁହେଁ, ବଦଖର୍ଚ୍ଚି ।"

ନିଜ ମୌଳିକତା ସୃଜନଶୀଳତା ପାଇଁ ଖ୍ୟାତିଲାଭ କରୁଥିବା ଜଣେ ଯୁବ ଡାକ୍ତର ଓ ଯୁବ ଲେଖକ ପାଇଁ ଏଭଳି ଶ୍ଳେଜ୍ ଶ୍ଳେଜ୍ ଖର୍ଚ୍ଚ ବା କେତେକର । ଡାକ୍ତରଙ୍କ ଲେଖାଗୁଡ଼ିକ ଔତ୍ସୁକ୍ୟରେ ହଇଚଇ ସୃଷ୍ଟି କରୁଥିଲା । ଯଦିଓ କେତେକଙ୍କ ପାଇଁ ଏହା ଅସହ୍ୟ ହେଉଥିଲା, ତଥାପି ଅନେକଙ୍କ ପାଖରେ ଏହା ଆଦୃତ ହେଉଥିଲା । ଶିକ୍ଷିତ ଓ ବୁଦ୍ଧିଜୀବୀମାନେ କୋର୍ଗାନଙ୍କୁ ଶିଶୁ ବିଶେଷଜ୍ଞ ଡାକ୍ତର ହିସାବରେ ଯେତେ ମାନ୍ୟତା ଦେଉନଥିଲେ, ଲେଖକ ହିସାବରେ ତା'ଠାରୁ ଅଧିକ ସମ୍ମାନ ଦେଉଥିଲେ ।

ଅନେକେ ଜାଣିଜାଣି ଡାକ୍ତରଙ୍କୁ ଅତି ପାଖରୁ ଦେଖିବା ପାଇଁ ରୋଗ ଦେଖାଇବା ବାହାନାରେ ଘରକୁ ନିମନ୍ତ୍ରଣ କରୁଥିଲେ । ଆଉ କେତେକ ଡାକ୍ତରଙ୍କୁ ତାଙ୍କ ବୈଠକଖାନାକୁ ଡାକିଆଣି ଆଳାପ କରୁଥିଲେ । ଏହିପରି ଭାବରେ ଡାକ୍ତରଙ୍କ ଖ୍ୟାତି ଔତ୍ସୁକ୍ୟ ସହରସାରା ଖେଳିଯାଇଥିଲା । ଅନେକ ଡାକ୍ତରଙ୍କ ପରିଚିତ ଲୋକ ବା ତାଙ୍କର ଜଣେ ବନ୍ଧୁ କହି ଗର୍ବ ଅନୁଭବ କରୁଥିଲେ । ଲୋକମାନଙ୍କ ପାଖରେ ଏତେ ଜନପ୍ରିୟତା ହାସଲ ହେବାଦ୍ୱାରା ତାଙ୍କର ରୋଜଗାର ବହୁତ ବଢ଼ିଯାଇଥିଲା ।

ସେ ଏକଥା ଉଲ୍ଲେଖ କରିଛନ୍ତି ଯେ ଧନୀ ଧନୀ ଲୋକମାନେ ତାଙ୍କୁ ଘରେ ଡାକିଲେ ୩ ରୁ ୫ ରୁବଲ୍ ଦେଉଥିଲେ । ବଡ଼ ବଡ଼ ଡାକ୍ତରମାନେ ଥାଇ ମଧ୍ୟ କୋର୍ଚାକ୍‌ଙ୍କୁ ଗୃହଆଡ଼ୁ ବେଶି ଡାକରା ଆସୁଥିଲା ।

ପ୍ରାୟ ସାତବର୍ଷକାଳ କୋର୍ଚାକ୍ ସ୍ଲିଘା ଗଳିର ଶିଶୁ ଡାକ୍ତରଖାନାର ଡାକ୍ତର ଭାବରେ କାମ କରିଥିଲେ । ଏହି ଦିନଗୁଡ଼ିକରେ ତାଙ୍କ ସ୍ମୃତିକୁ ଏକାଠି କଲେ ଗୋଟିଏ ବଡ଼ ବହି ହେବ ବୋଲି ସେ କହୁଥିଲେ । ଆପାତତଃ ଇହୁଦୀ ଡାକ୍ତରମାନଙ୍କୁ ଖ୍ରୀଷ୍ଟିଆନ୍‌ମାନେ ଖୁବ୍ କମ୍ ଡାକୁଥିଲେ । ବୋଓଲିପକ ଗଳିରେ ବାସକରୁଥିବା ଜଳଖିଆ ଦୋକାନୀ, ବ୍ୟାଙ୍କ କିରାଣୀ ଏବଂ କଲେଜ ଅଧ୍ୟାପକମାନଙ୍କ ଘରକୁ ଇହୁଦୀ ଡାକ୍ତରମାନେ ଚିକିତ୍ସା ପରାମର୍ଶ ପାଇଁ ଯାଉଥିଲେ । କାରଣ ଓ୍ୱାର୍ସୋର ଏହି ଜାଗାଟିରେ ପ୍ରାୟ ଇହୁଦୀମାନଙ୍କର ବସତି ଥିଲା । ଏହି ଅଞ୍ଚଳ ଶେଷରେ ସମୂହ ହତ୍ୟାକାଣ୍ଡର ଶିକାର ହୋଇଥିଲା । ଜର୍ମାନମାନଙ୍କ ହାତରେ ଶହ ଶହ ଶିଶୁଙ୍କର ପ୍ରାଣନାଶ ହୋଇଥିଲା । ଏଇଠି ଅନେକ ନିଜ ଜୀବନକୁ ପାଣି ଛଡ଼େଇ କାନ୍ଥ ଉପରକୁ ଚଢ଼ି ଆରପଟୁ ଆର୍ଯ୍ୟମାନଙ୍କୁ ଭିକ୍ଷା ମାଗୁଥିଲେ । ଇହୁଦୀ ବସ୍ତିରେ ଜର୍ମାନୀମାନଙ୍କ ଦ୍ୱାରା ଇହୁଦୀମାନଙ୍କର ଯେଉଁ ନାରକୀୟ ପରିଣତି ଘଟିଲା, ତାହାକୁ ଭାଷାରେ ବର୍ଣ୍ଣନା କରିହେବ ନାହିଁ ।

ସେ ସମୟର କଥାକୁ କୋର୍ଚାକ୍ ମନେରଖି ବର୍ଣ୍ଣନା କରିଛନ୍ତି—ତାଙ୍କ ପାଖକୁ କିପରି ଟେଲିଫୋନ୍‌ରେ ବିଭିନ୍ନଆଡ଼ୁ ଡାକରାସବୁ ଆସୁଥିଲା । "ମୋ ପାଖକୁ ଓ୍ୱାର୍ସୋର ସବୁଠାରୁ ଭଲ ଭଲ ଜାଗାରୁ ଟେଲିଫୋନ୍ ଆସୁଥିଲା । ମୋ ଟେଲିଫୋନ ଅନବରତ ବାଜୁଥିଲା । କେତେବେଳେ ଟିକିଏ ଫୁରୁସତ ମିଳୁନଥିଲା । ବଡ଼ ବଡ଼ ବଙ୍ଗଳାରୁ, ବଡ଼ ବଡ଼ ଅଫିସର, ଡାଇରେକ୍ଟର, ଚିଫ୍ ଜଷ୍ଟିସ୍ ଆଦିଙ୍କ ପାଖରୁ ମୋ ପାଖକୁ ଟେଲିଫୋନ୍‌ମାନ ଆସୁଥିଲା ।

ମୁଁ ଏସବୁ ବଡ଼ବଡ଼ଆଙ୍କ ନାଁ ଓ ଠିକଣା ଖଣ୍ଡିଏ ଗ୍ରେଟ କାଗଜରେ ଟିପି ରଖୁଥିଲି । ପରଦିନ ତାଙ୍କ ଘରକୁ ଦିନ ଗୋଟାକ ପରେ ବା ହସ୍‌ପିଟାଲରୁ ଫେରିଲାପରେ ଯିବ ବୋଲି କଥା ଦେଉଥିଲି ।

ଏପରିକି ଦିନେ ଜେନେରାଲ୍ ଗିଲ୍‌କେଜୋଙ୍କ ସ୍ତ୍ରୀ ଫୋନ୍ କରିଥିଲେ । ଓଃ— ସେ ହେଉଛନ୍ତି ଗଭର୍ଣ୍ଣର ଜେନେରାଲ୍‌ଙ୍କ ସ୍ତ୍ରୀ । ପିଲାର ଝାଡ଼ା ପାଇଁ Aide-de-camp ଫୋନ୍ କରିଥିଲେ । ପିଲାର ଝାଡ଼ା ଚର୍କା ମାରୁଥିଲାବେଳେ ଟେଲିଫୋନ୍‌ରେ ଯେତେ ଜୋର୍‌ରେ କହିହେବ ସେ ସେତେବଡ଼ ପାଟିରେ ମୋ ସାଙ୍ଗରେ କଥା ହେଉଥିଲେ ।

ଏହିଭଳି ଖବରରେ ତାଙ୍କ ପାଖକୁ ନିତ ଟେଲିଫୋନ୍ ଡାକରାମାନ ଆସୁଥିଲା ଏବଂ ସେ ସେହି ଅନୁସାରେ ବିଭିନ୍ନ ଘରକୁ ଯାଉଥିଲେ । 'ସମାଜର ପିଲା' (child of society) ବହିଟି କୋର୍ଜାକ୍‌ଙ୍କ ସୁନାମ ଚାରିଆଡ଼େ ବଢ଼ାଇଦେଲା । ପ୍ରତିଦିନ ସନ୍ଧ୍ୟାରେ କୋର୍ଜାକ୍ ପାହାଚ ସବୁ ଚଢ଼ି ଚଢ଼ି ପୂତିଗନ୍ଧମୟ ଗଳିକାରେ ବୁଲି ବୁଲି ପ୍ରକୃତ ଅସୁସ୍ଥ ଓ ଅଭାବୀ ପିଲାମାନଙ୍କ ଚିକିତ୍ସା କରୁଥିଲେ ।

ଥରେ ପୋକ୍‌ନାନ୍‌ସ୍କି ପରିବାରର ପ୍ରାସାଦକୁ କୋର୍ଜାକ୍‌ଙ୍କୁ ରୋଗୀ ଦେଖିବା ପାଇଁ ଡକାଯାଇଥିଲା । ଏହି ପ୍ରାସାଦଟି ଓ୍ୱାର୍ସୋର ଅତି ପରିଚିତ ଉଜକ୍‌ଦୋଓ୍ୱସ୍କି ପାର୍କ ପାଖରେ ଥିବା ସୁସଜ୍ଜିତ ଉଜକ୍‌ଦୋସ୍କି ରାଜପଥରେ ଅବସ୍ଥିତ ।

କୋର୍ଜାକ୍ ଧଇଁସଇଁ ହୋଇ ଏହି ନାମଜାଦା ପରିବାରର ପ୍ରାସାଦରେ ପହଞ୍ଚି ଜାଣିଲେ ଯେଉଁ ପିଲାଙ୍କୁ ସେ ଦେଖିବାକୁ ଆସିଛନ୍ତି, ସେ ଦୁଇଜଣଯାକ ପାର୍କରେ ଖେଳୁଛନ୍ତି । କୋର୍ଜାକ୍ ଆଶ୍ଚର୍ଯ୍ୟ ହୋଇଗଲେ । ପିଲାଦୁଇଟି ପାର୍କରେ ଖେଳୁଛନ୍ତି; ମାତ୍ର ମାଆ ସେମାନଙ୍କ ପାଇଁ ଡାକ୍ତର ଡକାଇ ଆଣିଛନ୍ତି ।

ପିଲାଙ୍କ ମାଆ ଡାକ୍ତରଙ୍କୁ ବସିବାକୁ ଅନୁରୋଧ କଲେ । ମନରେ ତାଙ୍କର କୌଣସି ବ୍ୟସ୍ତତା ନଥିଲା । ସେ କହିଲେ, "ଡାକ୍ତରବାବୁ, ଚା' ଟିକେ ପିଅନ୍ତୁ, ମୁଁ ପିଲାମାନଙ୍କୁ ସାଙ୍ଗେ ସାଙ୍ଗେ ଡାକଦେଉଛି ।"

କୋର୍ଜାକ୍ କହିଲେ, ମୁଁ ବହୁତ ଦୁଃଖିତ, ମୋ ପାଖରେ ଆଦୌ ସମୟ ନାହିଁ । ଯଦିଓ ଭିତରେ ସେ ବିରକ୍ତ ହୋଇଯାଉଥିଲେ, ମାତ୍ର ବାହାରକୁ ତାହା ସେ ପ୍ରକାଶ କରିନଥିଲେ ।

ତଥାପି ମାଆଙ୍କ ପାଖରେ କୌଣସି ପ୍ରକାର ପ୍ରତିକ୍ରିୟା ଜଣାପଡ଼ିଲାନାହିଁ । ସେ କୋର୍ଜାକ୍‌ଙ୍କୁ ପଚାରିଲେ, "ଡାକ୍ତରବାବୁ ମୋତେ କୁହ, ଏବେ ସବୁ କଅଣ ଲେଖାଲେଖି ଚାଲିଛି ।"

କୋର୍ଜାକ୍ ବିରକ୍ତ ହୋଇ କହିଲେ, କେବଳ ପ୍ରେସ୍‌କ୍ରିପ୍‌ସନ୍ ! ତା'ପରେ ସେ ଟୋପିଟି ଉଠାଇ ଚାଲିଆସିଲେ ।

ପରଦିନ ହସ୍‌ପିଟାଲରେ ତାଙ୍କ ଉପରେ ପ୍ରଶ୍ନବାଣ ବର୍ଷିଚାଲିଲା । କୋର୍ଜାକ୍‌ଙ୍କ ଅତି ଚହ୍ଲାକଣା ପ୍ରଫେସର ଏବଂ ପରିବାରର ବନ୍ଧୁ ଡାକ୍ତରମାନେ କୋର୍ଜାକ୍‌ଙ୍କ ପ୍ରତି ଉଦାସୀନତା ଭାବ ଦେଖାଇଲେ ଓ ରାଗିଯାଇଥିଲେ । ତାହା ଅତ୍ୟନ୍ତ ଯନ୍ତ୍ରଣାଦାୟକ ଥିଲା । କୋର୍ଜାକ୍‌ଙ୍କ ସବୁଠାରୁ ସିନିୟର ସହକର୍ମୀ ଟେରୁଲ୍ ବାଡ଼େଇ ଚିତ୍କାର କରି ଜାଣିବାକୁ ଦାବିକଲେ କାହିଁକି ସେଭଳି ପ୍ରଭାବଶାଳୀ ଓ ଉତ୍ତମ ସ୍ୱଭାବର ପରିବାରକୁ କୋର୍ଜାକ୍ ଖରାପ ବ୍ୟବହାର ପ୍ରଦର୍ଶନ କଲେ ?

ସେହି କଥାକୁ ସ୍ମରଣ କରି କୋର୍ଜାକ୍ କହିଛନ୍ତି, "ମୁଁ କେବଳ ସିଟି ମାରିଥିଲି (whistled) !" ବାସ୍ତବରେ କୋର୍ଜାକ୍ ଧନୀ ଓ ପ୍ରଭାବଶାଳୀ ବ୍ୟକ୍ତିମାନଙ୍କ ପ୍ରତି ଉଦାସୀନ ଥିଲେ । ତା'ଛଡ଼ା ସମାଜର ଜଣେ ଡାକ୍ତର ଭାବରେ ବ୍ୟାବସାୟିକ ବୁଦ୍ଧିସମ୍ପନ୍ନ ଡାକ୍ତରଙ୍କ ପ୍ରତି ସେ ମଧ୍ୟ ଉଦାସୀନ ଥିଲେ ।

ସେ ଧନୀ ଓ ସୁବିଧାବାଦୀମାନଙ୍କୁ ଭଲ ପାଇ ପାରିନଥିଲେ । ଡାକ୍ତର ହେବା ପୂର୍ବରୁ ଦାରିଦ୍ର୍ୟ କଅଣ ସେ ଅଙ୍ଗେ ଲିଭିଥିଲେ । ଏଭଳି ବିଶ୍ୱାସ ଓ ଚିନ୍ତାଧାରାର ମଣିଷଟି ଭାଗ୍ୟରେ ନିନ୍ଦା ଓ ଧନୀକଗୋଷ୍ଠୀ ମଝିରେ ଦୋଳାୟିତ ହୋଇ ଯନ୍ତ୍ରଣାର ଶିକାର ହେବା ଛଡ଼ା ଆଉ କଅଣ ଥାଇପାରେ ?

ଦରିଦ୍ର ଓ ଅଭାବୀମାନଙ୍କର ଆବଶ୍ୟକତାକୁ ହୃଦୟଙ୍ଗମ କରି କୋର୍ଜାକ୍ ଏଭଳି ଆଚରଣ ଓ ଧାରଣାକୁ ଗ୍ରହଣ କରିନେଇଥିଲେ । ସାମାଜିକ ନ୍ୟାୟ ପାଇଁ ସେ ପୋଲ୍‌ବାସୀ ପ୍ରାସାଦରେ କରିଥିବା ବ୍ୟବହାର ପରି ପ୍ରତିବାଦ କରିବାକୁ ଶ୍ରେୟସ୍କର ମଣୁଥିଲେ ।

ତାଙ୍କ ଉପନ୍ୟାସ 'ସମାଜର ପିଲା' (child of society)ର ନାୟକ ମ୍ୟୁନିସିପାଲିଟିରେ ମାଗଣାରେ ଚିକିତ୍ସା କରୁଥିବା ଡାକ୍ତରଙ୍କ ଉପରେ ସର୍ବାଧିକ କ୍ରୋଧ ଉଦ୍‌ଗାର କରୁଥିଲା । ଯେତେବେଳେ ଡାକ୍ତର ତାକୁ ତା'ର ପେସା କଅଣ ବୋଲି ପଚାରୁଥିଲେ, ସେ ଅତି ରାଗିକରି ଉତ୍ତର ଦେଉଥିଲା, "ମୁଁ ଗାଡ଼ିରେ ମଣିଷ ମଳ ବୁହେ !"

ଏଭଳି ଭାଷା ବ୍ୟବହାର କରି କୋର୍ଜାକ୍ ଆଦୌ ମନଦୁଃଖ କରିନାହାନ୍ତି । ଟାଉନ୍‌ର ଗରିବ ଶ୍ରେଣୀର ରୋଗୀମାନଙ୍କୁ ଯେଉଁପରି ଭାବରେ ଚିକିତ୍ସା କରାଯାଉଥିଲା, ଉପନ୍ୟାସଟିରେ ତାହାହିଁ ପ୍ରତିଫଳିତ ହୋଇଛି । ରୋଗୀକୁ ଆରୋଗ୍ୟ କରିବାକୁ ସେ ନିଜର କର୍ତ୍ତବ୍ୟ ବୋଲି ବାଛିନେଇଥିଲେ ଏବଂ ଯେକୌଣସି ସ୍ଥିତିରେ ସେ ଏହି କାମ କରିବେ ବୋଲି ଦୃଢ଼ ନିଷ୍ପତ୍ତି ନେଇଥିଲେ । ସେ ଧନୀ ଗରିବ ନିର୍ବିଶେଷରେ ସବୁ ରୋଗୀଙ୍କୁ ସମାନ ଦୃଷ୍ଟିଭଙ୍ଗୀରେ ବିଶ୍ୱାସ, ଧୈର୍ଯ୍ୟ ଓ ସମାନ ଡାକ୍ତରୀ କୁଶଳତାର-ସହ ଚିକିତ୍ସା କରୁଥିଲେ ।

ସେ କହୁଥିଲେ, "ମୁଁ ସମାଜସେବୀ, ଶିକ୍ଷକ, ସାମ୍ବାଦିକ ଏବଂ ଯୁବ ଓକିଲ, ଯେଉଁମାନେ କିଛି ନା କିଛି ସାମାଜିକ ପ୍ରଗତି ପାଇଁ ଚେଷ୍ଟା କରୁଛନ୍ତି, ସେମାନଙ୍କ ପିଲମାନଙ୍କୁ ବିନା ଫିସ୍‌ରେ ଚିକିତ୍ସା କରିଛି । ଏହା ମୋ ଜୀବନର ଉଜ୍ଜ୍ୱଳତର ଦିଗ ।"

ପିଲମାନଙ୍କ ପ୍ରତି କୋମଳତା ତାଙ୍କ ଜୀବନର ଅନ୍ୟ ଏକ ଦିଗ । ସେ କହୁଥିଲେ, ଯେହେତୁ ସିନିଅର ଡାକ୍ତରମାନେ ରାତିରେ ରୋଗୀ ଦେଖିବାକୁ

ପଗ୍ଭରୁଥାଲେ, ମୁଁ ଜଣେ ସାହାଯ୍ୟକାରୀଙ୍କୁ ଧରି ପ୍ରଚଣ୍ଡ ଶୀତରେ ପିଲାମାନଙ୍କ ପାଖରେ ପହଞ୍ଚୁଥିଲି । "ଯଦି ପିଲାଟିର ଶୀତରେ କଅଣ ହୋଇଯାଏ, କଅଣ ହେବ ?" ଏକଥା ମୁଁ ସବୁବେଳେ ନିଜକୁ ପଗ୍ଭରେ ଏବଂ ଯେତେ ଶୀଘ୍ର ହୋଇପାରେ ସେତେ ଶୀଘ୍ର ମୁଁ ପାହାଚ ଚଢ଼ି ପିଲା ପାଖରେ ପହଞ୍ଚିବାକୁ ଚେଷ୍ଟା କରୁଥିଲି ।

କୋର୍ଝାକ୍‌ଙ୍କର ଏହା ଥିଲା ନିଜସ୍ୱ କାର୍ଯ୍ୟଧାରା ଓ ବଗ୍ଭରଣୀଳତା । ତାଙ୍କୁ ଲୋଡ଼ୁଥିଲେ । କୌଣସି ବ୍ୟକ୍ତିକୁ ସେ କେବେ ମନାକରିଦେଉନଥିଲେ । ବେଳେ-ବେଳେ ଯେତେବେଳେ ସେ ଜାଣୁଥିଲେ ଲୋକଟି ଆବଶ୍ୟକ ଫିସ୍ ଦେଇପାରିବ, ସେତେବେଳେ ମଧ୍ୟ ସେ ତା'ଠାରୁ ମାତ୍ର ଅଧା ରୁବ୍‌ଲ ନେଉଥିଲେ । ବେଳେବେଳେ ମେଡ଼ିସିନ୍ କିଣିବାପାଇଁ ଗରିବ ରୋଗୀଙ୍କୁ ନିଜ ପକେଟରୁ ଦେଉଥିଲେ । ଅନେକ ସମୟରେ ନାମକୁମାତ୍ର ସେ ମାତ୍ର ୨୦ କୋପେକ୍ ଗ୍ରହଣ କରୁଥିଲେ; କାରଣ ତାଙ୍କୁ କୁହାଯାଇଥିଲା ଯେ "ଡଲ ମୁଡ଼୍"ରେ ଲେଖାଯାଇଛି ବିନା ଫିସ୍‌ରେ ଚିକିତ୍ସା କଲେ ରୋଗୀର କୌଣସି ଉପକାର ହେବନାହିଁ ।"

ସେ ସମୟରେ ପୋଲାଣ୍ଡରେ ଅନେକ ଡାକ୍ତରୀ ପଢ଼ୁଥିବା ଛାତ୍ର ଏବଂ ଅନେକ ଲୋକ ଯେଉଁମାନଙ୍କର ଡାକ୍ତରୀ ଡିଗ୍ରୀ ନଥିଲା, ରୋଗୀ ଚିକିତ୍ସା କରି ରୋଜଗାର କରୁଥିଲେ । କୋର୍ଝାକ୍‌ଙ୍କ ଏଭଳି ମାଗଣା ବା କମ୍ ଫିସ୍‌ର ଚିକିତ୍ସା ସେମାନଙ୍କୁ ଅଡ଼ୁଆରେ ପକାଇଲା; ସେମାନଙ୍କ ରୋଜଗାରରେ କ୍ଷତି ଘଟାଇଲା । ସେମାନେ ସମସ୍ତେ ମିଶି କୋର୍ଝାକ୍‌ଙ୍କୁ ବାସନ୍ଦ କଲେ । ଅନେକ ଫାର୍ମାସିଷ୍ଟ ମଧ୍ୟ ଡାକ୍ତରଙ୍କ ବିରୋଧରେ ମିଳିଜୁଳି ହେଲେ ଏବଂ ତାଙ୍କ ପ୍ରେସ୍‌କ୍ରିପ୍‌ସନ୍ ଅନୁସାରେ ଔଷଧ ବିକ୍ରି କଲେନାହିଁ । ସେମାନେ ପ୍ରଗ୍ଭର କଲେ ଯେ କୋର୍ଝାକ୍ ଜଣେ ପାଗଳ ।

କୋର୍ଝାକ୍ ଜଣେ ବନ୍ଧୁଙ୍କ ପାଖକୁ ଲେଖିଥିବା ଚିଠିରେ ଲେଖିଥିଲେ, "ସେମାନଙ୍କ ଭିତରେ ମୋତେ ନେଇ ଗୋଟିଏ ପ୍ରଶ୍ନ ସବୁବେଳେ ଉଦ୍ରେକ ହେଉଥିଲା । ତାହା ହେଉଛି, "ମୋତେ ପ୍ରକୃତରେ ସୁସ୍ଥ କରାଯାଇପାରିବ କି ନାହିଁ ।"

ଠକ ଚିକିତ୍ସକ ଓ ଫାର୍ମାସିଷ୍ଟମାନଙ୍କର ଏହି ଅସାମାଜିକ ଅଭିଯାନ ବିରୋଧରେ ସେ ଦୃଢ଼ ମୁକାବିଲା କଲେ । ଆତ୍ମସ୍ୱାର୍ଥସମ୍ବଳିତ ଏହି ଶକ୍ତି ଆଗରେ ସେ ନଇଁଯିବା ପ୍ରକୃତିର ବ୍ୟକ୍ତି ନଥିଲେ । ନିରୀହ ବ୍ୟକ୍ତିମାନେ ଏମାନଙ୍କ ଦ୍ୱାରା ଶୋଷିତ ହେବାକଥା ସେ ସହ୍ୟ କରିବାକୁ ପ୍ରସ୍ତୁତ ନଥିଲେ । ମନ୍ଦ ଉଦ୍ଦେଶ୍ୟ ଓ ନିର୍ବୋଧତା ବିରୋଧରେ ସେ ଦୃଢ଼ତାର ସହ ମୁକାବିଲା କରିବାକୁ ସକ୍ଷମ ଥିଲେ । କୋର୍ଝାକ୍ କେମିଷ୍ଟମାନଙ୍କ ଉପରେ କ୍ଷିପ୍ତ ରାଗିଯାଇଥିଲେ । କେମିଷ୍ଟମାନେ ତାଙ୍କ ଦ୍ୱାରା ପ୍ରେସ୍‌କ୍ରିପ୍‌ସନ୍‌କୁ ଦସ୍ତଖତ ପାଇଁ ପଠାଇଲାବେଳେ ସେ ମନାକରିଦେଉଥିଲେ । ସେତେବେଳେ

ରୁଷିଆର ଆଇନ ଅନୁସାରେ ଡାକ୍ତରଙ୍କ ଦସ୍ତଖତ ବିନା କେମିଷ୍ଟମାନଙ୍କର ଔଷଧ କିଣାଯାଇପାରୁନଥିଲା ।

କୋର୍ସାକଙ୍କ ଏଭଳି ଆଚରଣ ଅନେକଙ୍କ ପାଇଁ ଆଶୀର୍ବାଦ ଥିଲା । ଏକଥା ଅନେକଙ୍କ ପାଇଁ ବିପଦ ଥିଲା । ଯେଉଁମାନେ ଘରୋଇ ଚିକିତ୍ସା ମାଧ୍ୟମରେ ବିଭିନ୍ନ ପ୍ରକାର ଠକାମି, ଅମାନବିକତାକୁ ପ୍ରଶ୍ରୟ ଦେଇ ଭଲ ରୋଜଗାର କରିବାରେ ଲାଗିଥିଲେ, ସେମାନଙ୍କ ପାଇଁ କୋର୍ସାକ୍ ଥିଲେ ମହାକାଳ ଅନଭିଜ୍ଞ ଡାକ୍ତରଗୋଷ୍ଠୀ, ଫାର୍ମାସିଷ୍ଟ, କେମିଷ୍ଟ ଆଦି ସମସ୍ତଙ୍କର ଅସହଯୋଗକୁ ଏଡ଼ାଇଦେଇ କୋର୍ସାକ୍ ନିଜ କାମରେ ଆଗେଇ ଚାଲିଥିଲେ । ଶେଷକୁ ସେ ନିଜ ସାଙ୍ଗରେ ଔଷଧ ନେଉଥିଲେ ଏବଂ ଯେଉଁମାନଙ୍କ ପାଇଁ ଜରୁରୀ ଆବଶ୍ୟକ ଥିଲା ସେମାନଙ୍କୁ ଔଷଧ ଦେଇ ଚିକିତ୍ସା କରୁଥିଲେ ।

ରୋଗୀମାନେ ଡାକ୍ତରଙ୍କ କ୍ରୋଧରୁ ମୁକ୍ତ ପାଉନଥିଲେ । ତାଙ୍କ ଜୀବନ ସ୍ମୃତିରେ ସେ ଏଭଳି ଏକ ଘଟଣାର ଦୃଷ୍ଟାନ୍ତ ବର୍ଣ୍ଣନା କରିଛନ୍ତି—

"ହସ୍ପିଟାଲରେ ରାତସାରା କାମକରି କ୍ଳାନ୍ତ ହୋଇପଡ଼ିଥାଏ । ଏ ସମୟରେ ଗୋଟିଏ ଅସୁସ୍ଥ ପିଲାକୁ ଦେଖିଯିବା ପାଇଁ ଡାକରା ଆସିଲା । ମୋତେ କୁହାଯାଇଥିଲା ଯେ ପିଲାଟିକୁ ଦେଖିବା ଅତି ଜରୁରୀ । ପିଲାଟିର ମାଆ କାଳେ ବ୍ୟସ୍ତ ହୋଇପଡ଼ୁଥିବେ ଭାବି ମୁଁ ତରତର ହୋଇ ପିଲାଟିର ଘରକୁ ଗଲି । ମୁଁ ପିଲାର ମା'ଙ୍କୁ ପଚାରିଲି ପିଲାର କଅଣ ହୋଇଛି ?

ସେ ବୁଝାଇବାକୁ ଆରମ୍ଭ କଲେ—ସ୍କାରଲେଟ । ଜର ପରେ··· ।

ମୁଁ ଅଟକାଇ ପଚାରିଲି—କେଉଁ ଡାକ୍ତର ଦେଖୁଥିଲେ ?

ସେ ଡାକ୍ତରଙ୍କ ନାଁ କହିଲେ ।

ତାହାହେଲେ ତୁମେ ତାଙ୍କୁ ଡାକିଲ ନାହିଁ କାହିଁକି ?

ନିଶ୍ଚିତ ଭାବରେ ତୁମେ ତାଙ୍କୁ ଦରକାର କରୁଥିଲ···କାରଣ ସିଏ ପିଲାର ଅବସ୍ଥା ସାଙ୍ଘାତିକ ଥିଲାବେଳେ ଚିକିତ୍ସା କରୁଥିଲେ ।

ସେ କହିଲେ, "ମୁଁ ତୁମକୁ ଚାହୁଁଥିଲି, ଡାକ୍ତରବାବୁ ।" ମାତ୍ର ଏଥିପାଇଁ ତାଙ୍କ ପାଖରେ ବିଶେଷ ଯୁକ୍ତି ନଥିଲା ।

ମୁଁ କହିଲି ଡାକ୍ତର ପରିବର୍ତ୍ତନ କରିବା ପାଇଁ ତ କୌଣସି କାରଣ ଦେଖା-ଯାଉନି ।

ସେ କହିଲେ, "କିନ୍ତୁ ମୁଁ ତୁମକୁ ଫିସ୍ ଦେବି ଡାକ୍ତରବାବୁ ।"

ଫିସ୍ ଦେବାକଥା ପଡ଼ନ୍ତା । ମାତ୍ର ଅନ୍ୟ ଜଣେ ଡାକ୍ତର ଦେଖୁଥିଲାବେଳେ ମୋତେ କାହିଁକି ଡାକିଲ ? ପୁଣି ପିଲାର ଅବସ୍ଥା ତ ଏବେ ଭଲ ଅଛି ଆଉ ତୁମେ ଦିନ ହେବାଯାଏ ଅପେକ୍ଷା କରିପାରିଥାନ୍ତ । ବର୍ତ୍ତମାନ ମାତ୍ର ସକାଳ ଛଅଟା ବାଜିଛି ।

ମୁଁ କବାଟ ଫିଟାଇ ବାହାରି ଆସିଲି । ପିଲାର ବାପା ମାଆ ମୋ ପଛେ ପଛେ ପାଟିକରି କହିଲେ, "ବୁଢ଼ୁଟାଏ ! ଦିନ ତୁବ୍‌ଲ ରୋଜଗାର କରିବାର ଇଚ୍ଛା ନାହିଁ ।"

ଏ କ୍ଷେତ୍ରରେ ସକାଳ ୫ଟା ବେଳେ ମୋ ଶୋଇବା ଖଟରୁ ଉଠାଇ ଦିଆ-ହୋଇନଥିଲେ, ମୋ ପାଇଁ ପ୍ରକୃତ ପାଉଣା ମିଳିଯାଇଥାନ୍ତା !"

ରୋଗୀ ଶଯ୍ୟା ପାଖରେ ଡାକ୍ତରଙ୍କଠାରୁ ଯେଉଁ ମିଷ୍ଟଭାଷା ଆଶା କରାଯାଏ, ତାହା ବେଳେବେଳେ କୋଷାକ୍‌ଙ୍କ ପାଖରେ ନଥାଏ । ଯେତେ-ବେଳେ ଆବଶ୍ୟକ ମନେକରନ୍ତି, ସେ ରୁକ୍ଷ ଭାବରେ ପାଟିକରନ୍ତି । ବିଶେଷତଃ ଯେତେବେଳେ ଧନୀଘରର ପିଲାଙ୍କୁ ଚିକିତ୍ସା କରିବାକୁ ଥାଏ ଏବଂ ଯେଉଁ ମାଆମାନେ ଆବଶ୍ୟକତାଠାରୁ ଅଧିକ ଉଦ୍‌ବେଗ ପ୍ରକାଶ କରନ୍ତି, ଗେହ୍ଲା କରିଥାନ୍ତି, ସେ କ୍ଷେତ୍ରରେ ଡାକ୍ତରଙ୍କ ରାଗ ଭରିଯାଏ । ସେ ଏଭଳି ମାଆମାନଙ୍କୁ ଖୋଲଖୋଲି ଗାଳିଗୁଲଜ କରନ୍ତି ।

ଯେଉଁ ମାଆମାନେ ରୋଗ ହୋଇଥିବାର ବାହାନା କରି ଡାକ୍ତରଙ୍କୁ ଡକାଇ ଆଣନ୍ତି, ସେମାନେ ଡାକ୍ତରଙ୍କର ଏପରି ବ୍ୟବହାରରେ ଆଶ୍ଚର୍ଯ୍ୟ ହୋଇ ପଚାରନ୍ତି, "ଏଥିରେ ଭୁଲ ରହିଲା କେଉଁଠି ?"

ଡାକ୍ତର ସ୍ୱାଭାବିକ ଭାବରେ ଉତ୍ତର ଦିଅନ୍ତି, "ମୁଁ ଜାଣିନାହିଁ" ? ସାଧାରଣ ଥଣ୍ଡାସର୍ଦ୍ଦି ବା ପିଲାଟି ଟିକିଏ ବେଶି ଖାଇଦେଇଥିବା ଦ୍ୱାରା ପେଟ ଗଡ଼ବଡ଼ ଲାଗୁଥିବା ଯୋଗୁଁ ମାଆମାନେ ଡାକ୍ତରଙ୍କୁ ଡକାଇପଠାନ୍ତି । ଡାକ୍ତରବାବୁ ପିଲାଟିକୁ ପରୀକ୍ଷା ନିରୀକ୍ଷା କରି ଯେତେବେଳେ ଜାଣନ୍ତି ପିଲାଟିର କୌଣସି ଅସୁବିଧା ନାହିଁ ସେ ସେତେବେଳେ କିଛି ଔଷଧପତ୍ର ନଲେଖି ସିଧା ଫେରିଯାନ୍ତି । ଯଦି ଜଣେ ମାଆ ବ୍ୟତିବ୍ୟସ୍ତ ହୋଇ ପଚାରନ୍ତି, "ପିଲାପାଇଁ କଅଣ କିଛି ଔଷଧ ଦରକାର ନାହିଁ ?" ସେ ତାହାର ଉତ୍ତରରେ କହନ୍ତି । ହଁ, ତୁମେ ତାକୁ ମିଠାପାଣି ଟିକିଏ ଦେଇପାରିବ ।"

ଅବଶ୍ୟ ସେ କୌଣସି ଡାକ୍ତର ଏ କଥାଟି ନକହି ପ୍ରେସ୍‌କ୍ରିପ୍‌ସନ ଆକାରରେ ଲେଖିଦେଇଥାନ୍ତେ ଏବଂ ଏଥିପାଇଁ ଫିସ୍ ଆଦାୟ କରିଥାନ୍ତେ । ମାତ୍ର ଏହା କୋର୍ଷାକ୍‌ଙ୍କ ପକ୍ଷରେ ସମ୍ଭବ ହେଉନଥିଲା ?

ଜଣେ ଡାକ୍ତର ଯଦି ନିଜ ଲାଭ ପାଇଁ ଯତ୍ନବାନ ନହେଲା, ତେବେ ତା ପାଖକୁ ରୋଗୀ ଆସିବା ନିଶ୍ଚିତ ଭାବରେ କମିଯିବ । ଯେଉଁ ମାଆମାନେ ତାଙ୍କର ପିଲାଙ୍କର ଖାଦ୍ୟପେୟ ବିଷୟରେ ଅତି ପୁଙ୍ଖାନୁପୁଙ୍ଖ ତାଲିକା ଧରି ହାଜର ହୁଅନ୍ତି ବା ଯେଉଁ ମାଆମାନେ ତାଙ୍କର ଏକୋଇରବଲା ବିଶିକେଶନ ପାଇଁ ଅତ୍ୟଧିକ ସଚେତନ ହୋଇପଡ଼ନ୍ତି ଓ ଦରକାର ହେଉ ବା ନହେଉ ଅତି ଗ୍ରେଷ୍ଠ ଗ୍ରେଷ୍ଠ କଥାରେ ଡାକ୍ତର ଡକାଇପଠାନ୍ତି ସେମାନଙ୍କୁ ଡାକ୍ତର ଉପହାସ କରନ୍ତି । ଯେତେ-ବେଳେ ସହର ଲୋକଙ୍କର ଅନ୍ଧବିଶ୍ୱାସ ବିଷୟରେ ସେ କହିଲେ, ସେତେବେଳେ ତାଙ୍କର ଜନପ୍ରିୟତା ରହିଲା ନାହିଁ ।

ଅନାଥାଶ୍ରମର ପିଲାମାନଙ୍କର ପ୍ରକୃତ ଅସୁସ୍ଥତା ଏବଂ ଧନୀଘର ପିଲାଙ୍କର ସାଧାରଣ ଛୁଙ୍କ କାଶ ଭିତରେ ଯେଉଁ ଆକାଶ ପାତାଳ ପ୍ରଭେଦ ସେ ସମ୍ବନ୍ଧରେ ଡାକ୍ତର କୋର୍ଚ୍ଚାକ୍ ଅନେକ ଚିନ୍ତା କରୁଥିଲେ । ନିଜ ରୁଚି ଦୃଷ୍ଟିରୁ ସେ ଥିଲେ ଗରିବଙ୍କ ଡାକ୍ତର ।

ଧନୀ ଲୋକମାନେ କୋର୍ଚ୍ଚାକ୍‌ଙ୍କୁ ଆଉ ଚିକିତ୍ସା ପାଇଁ ଡାକିଲେ ନାହିଁ । ଡାକ୍ତରୀ ପରାମର୍ଶ ଦେବାପାଇଁ ବି ସେମାନେ ତାଙ୍କ ନାଁ ଆଉ ସୁପାରିଶ କଲେ ନାହିଁ । ଧନୀ ଲୋକମାନେ ଯେଉଁମାନେ କୋର୍ଚ୍ଚାକଙ୍କୁ ଡାକୁଥିଲେ ସେମାନଙ୍କର କିଛି ବର୍ଷ ଭିତରେ ମେଡ଼ିସିନ୍ ବ୍ୟବହାର କରିବା କମିଗଲା । 'ପିଲାକୁ କିପରି ଭଲପାଇବ' (How to love a child) ପୁସ୍ତକରେ ସେ ଏ ସମ୍ବନ୍ଧରେ ବର୍ଣ୍ଣନା କରି ଲେଖିଛନ୍ତି—

ସେ ଏପରି କରିବା ମୂଳରେ ଦୁଇଟି ମୁଖ୍ୟ କାରଣ ରହିଛି । ଗୋଟିଏ ହେଲା ତାଙ୍କର ଅଳ୍ପ କେଇଜଣ ଲୋଭୀଙ୍କ ବିରୋଧରେ ଅନବରତ ସଂଗ୍ରାମ । ଅନ୍ୟଟି ହେଲା, ସେ ଜଣେ ବୈଜ୍ଞାନିକ । ରୋଗୀମାନଙ୍କୁ ସେ ଶ୍ରଦ୍ଧା କରୁଥିଲେ । ପ୍ରକୃତ ରୋଗକୁ ନିଖୁଣ ଭାବରେ ଚିକିତ୍ସା କରୁଥିଲେ ।

ରୋଗୀକୁ ଦେଖି ରୋଗକୁ ପ୍ରାଥମିକ ଭାବରେ ଚିହ୍ନଟ କରି ସେ ଅନ୍ୟାନ୍ୟ ପରୀକ୍ଷା ପାଇଁ ସେ ଚିହ୍ନଟ କରୁଥିଲେ । ମାତ୍ର ଲୋକମାନେ, ସେମାନଙ୍କର ଦେଉଥିବା ଫିସ୍ ଅନୁସାରେ ଡାକ୍ତରଙ୍କ ଠାରୁ ପ୍ରେସ୍‌କ୍ରିପସନ୍ ଓ ରୋଗ ନିଦାନ ପାଇବାକୁ ଦାବି କରୁଥିଲେ ଏବଂ ଅନ୍ୟ ପରୀକ୍ଷାପତ୍ର ପାଇଁ ଡାକ୍ତରଙ୍କ ଉପଦେଶକୁ ବିଶେଷ ଗୁରୁତ୍ୱ ଦେଉନଥିଲେ । କୋର୍ଚ୍ଚାକ ଯେତେବେଳେ ଅନୁଭବ କରୁଥିଲେ ଯେ ରୋଗୀର ଚିକିତ୍ସା ପାଇଁ ଅଧିକ ପରୀକ୍ଷା ନିରୀକ୍ଷା ଦରକାର; କିନ୍ତୁ ରୋଗୀ ବା ତାଙ୍କର ସମ୍ପର୍କୀୟମାନେ ତାଙ୍କ କଥାକୁ ଗୁରୁତ୍ୱ ଦେଉନାହାନ୍ତି ସେତେବେଳେ ସେ ଅଧୈର୍ଯ୍ୟ ହୋଇପଡ଼ୁଥିଲେ ଏବଂ ଚିଡ଼ିଯାଉଥିଲେ ।

ସେ ଠକ ଚିକିତ୍ସକମାନଙ୍କ ଉପରେ ଭୀଷଣ ବିରକ୍ତ ହେଉଥିଲେ; କାରଣ ଅନେକ ସମୟରେ ସେମାନେ ରୋଗୀର କଅଣ ସମସ୍ୟା ଅଛି ନଜାଣି ଔଷଧ ଲେଖୁଥିଲେ । ନିଜେ ରୋଗୀକୁ ଭୁଲ୍ ଭାବରେ ଚିକିତ୍ସା କରିବା ଅପେକ୍ଷା ସେମାନଙ୍କୁ ଅନ୍ୟତ୍ର ପଠାଇବା ପାଇଁ ସେ ଶ୍ରେୟସ୍କର ମନେକରୁଥିଲେ । ଏହିପରି ସାଧୁତା ଓ ସଚ୍ଚୋଟତା ପାଇଁ କୋର୍ଯାକ ଡାକ୍ତରୀ ବିଦ୍ୟାରେ ନିପୁଣତା ହାସଲ କରିଥିଲେ ସୁଦ୍ଧା ବିଶେଷ ଭାବରେ ଡାକ୍ତରୀ ପ୍ରାକ୍ଟିସରେ ଉଧେଇ ପାରିଲେ ନାହିଁ । ଗରିବ ଏବଂ ଅଭାବୀ ରୋଗୀମାନଙ୍କ ପାଇଁ କୋର୍ଯାକ ଧନୀ ଶ୍ରେଣୀର ରୋଗୀମାନଙ୍କୁ ଦୂରେଇ ଦେଉଥିଲେ ।

କୋର୍ଯାକଙ୍କ ଜୀବନରେ ଏମିତି ହତାଶ ଓ ନୈରାଶ୍ୟର ମୁହୂର୍ତ୍ତମାନ ଆସିଛି, ଯେତେବେଳେ ସେ ଭିନ୍ନ ଧରଣର କାମ ଭିତରେ ନିଜକୁ ନିୟୋଜିତ କରିବାପାଇଁ ଇଚ୍ଛା କଲେ । ପିଲାଙ୍କ ରୋଗ ଚିକିତ୍ସା ସହିତ ସେ ଅନ୍ୟାନ୍ୟ ସମାଜ ମଙ୍ଗଳ କାର୍ଯ୍ୟ ଭିତରେ ମନୋନିବେଶ କଲେ । ସୁସ୍ଥ ଯୁବକ ଯୁବତୀମାନଙ୍କ ପାଇଁ ମେଡିସିନ୍ ଅପେକ୍ଷା ପଥପ୍ରଦର୍ଶନ ଏବଂ ସୁରକ୍ଷା ଆବଶ୍ୟକ ବୋଲି ସେ ଅଧିକ ଗୁରୁତ୍ୱ ଦେଇ ନିଜ କାର୍ଯ୍ୟ-ଧାରାରେ ପରିବର୍ତ୍ତନ ଆଣୁଥିଲେ । ସେ ଡାକ୍ତରଖାନା ନଯାଇ ଅନାଥାଶ୍ରମର କାର୍ଯ୍ୟ-କଳାପ ଭିତରେ ନିଜକୁ ନିମଜ୍ଜିତ ରଖୁଥିଲେ ।

ସେ ତାଙ୍କ 'ଜୀବନ ସ୍ମୃତି'ରେ ଲେଖିଛନ୍ତି—ମୁଁ ଡାକ୍ତରଖାନା ଛାଡ଼ିଲି ଏବଂ ଅନାଥାଶ୍ରମରେ ପ୍ରବେଶକଲି । ମୋ ଭିତରେ ନିଜକୁ ଦୋଷୀ ଦୋଷୀ ଲାଗୁଥିଲା । ଯାହାହେଲେ ବି ଡାକ୍ତରଖାନାରେ ମୁଁ ମଣିଷର ଅନ୍ତରର ଭାବ ସହିତ ସମ୍ପର୍କ ସ୍ଥାପନ କରିପାରୁଥିଲି, ମୁଁ ଡାକ୍ତରଖାନା ପ୍ରତି କୃତଘ୍ନ; କାରଣ ଏସବୁ ମହାନୁଭବତା ଲାଭ କରିବା ସତ୍ତ୍ୱେ ମୁଁ ଡାକ୍ତରଖାନା ବର୍ଜନ କଲି । ଏପରି ବର୍ଜନ ଅତ୍ୟନ୍ତ କୁତ୍ସିତ ଅଟେ ।

ଏହିପରି ନିଷ୍ପତ୍ତି କୋର୍ଯାକଙ୍କୁ ଅନେକ ଦିନ ପର୍ଯ୍ୟନ୍ତ ବିବ୍ରତ କରି ରଖିଥିଲା । କାରଣ ଅନ୍ୟ ସ୍ଥାନରେ ବି ସେ ଏ ସମ୍ବନ୍ଧରେ ଲେଖିଛନ୍ତି—"ମୁଁ ମିଥ୍ୟା ଆକାଂକ୍ଷା ଦ୍ୱାରା ଭାସିଗଲି । ମୁଁ ମେଡ଼ିସିନ୍ ଛାଡ଼ିଲି । ମୁଁ ରୋଗୀଣା ପିଲାଙ୍କ ଶେଯ ପାଖ ଛାଡ଼ିଲି, ମୁଁ ଶିଶୁ ଆତ୍ମାର ଭପ୍ତର ସାଜିବା ପାଇଁ ମୋ ଡାକ୍ତରୀ ବେଉସା ଛାଡ଼ିଲି ।" ସତରେ କହିବାକୁ ଗଲେ ସେ ପୁରାପୁରି ଡାକ୍ତରୀ ଛାଡ଼ି ପାରିନଥିଲେ । ସେ କେବଳ ନିଜର ଜ୍ଞାନ ଓ ଅନୁଭୂତିକୁ ଅନ୍ୟ କ୍ଷେତ୍ରକୁ ପ୍ରସାରିତ କରିଦେଲେ । ସେଇ ସମାନ ରୋଗ ବୈରାଗ୍ୟକୁ ସେ ଦେଖୁଥିଲେ; ମାତ୍ର ଅନ୍ୟ ଏକ ଦୃଷ୍ଟିଭଙ୍ଗୀରେ ।

ଯେତେବେଳେ ଦୁଶ୍ଚିନ୍ତା, ହତାଶାର କଳାବାଦଲ କୋର୍ଯାକଙ୍କ ଉପରେ ଘେରି-ରହିଥିଲା, ସେତିକିବେଳେ ସେ କଅଣ କରିବେ ଭାବି ପାରିନଥିଲେ । ନିଜ ଡାକ୍ତରୀ

ବେଉସାକୁ ଗ୍ରୁଡ଼ ଅଣାସ୍ୱଭ ଭାବରେ ଖାଲ ଭାବିଥିଲେ । ମାତ୍ର ସେ ଜୀବନର ଶେଷ ପର୍ଯ୍ୟନ୍ତ ଡାକ୍ତର ହୋଇ ରହିଲେ ।

କ୍ଷତବିକ୍ଷତ ଲୋକମାନଙ୍କୁ ସେ ଚିକିତ୍ସା କରୁଥିଲେ । ପିଲାଙ୍କ ସହ ଅନ୍ୟାନ୍ୟ କାମ ଭିତରେ ନିମଜ୍ଜିତ ଥିଲାବେଳେ ଯଦି କେହି ଅସୁସ୍ଥ ହୋଇପଡ଼ୁଥିଲା, ସେତେବେଳେ ସେ ଡାକ୍ତରର ଭୂମିକା ଗ୍ରହଣ କରୁଥିଲେ । ସେ ସବୁବେଳେ ଅତି ବିଶ୍ୱସ୍ତ ଭାବରେ ସ୍ୱୀକାର କରୁଥିଲେ, "ହସ୍‌ପିଟାଲରେ ମୋତେ ପ୍ରକୃତ ବାଟ ଦେଖାଇ ଦିଆଯାଇଥିଲା । କେତେ ସାହସ ଓ ବୁଦ୍ଧିମାନର ସହ ପିଲାଟିଏ ମୃତ୍ୟୁବରଣ କରେ ତାହା ମୁଁ ହସ୍‌ପିଟାଲରୁ ଶିଖୁଥିଲି ।"

"କିପରି ପିଲାଟିକୁ ଭଲପାଇବ" (How to love a child) ପୁସ୍ତକର ଦ୍ୱିତୀୟ ଭାଗରେ ସେ ଲେଖିଥିଲେ—"ଡାକ୍ତରଖାନା ମୋତେ ଚିକିତ୍ସାବିଦ୍ୟାର ଚମତ୍କାରିତାକୁ ସ୍ପଷ୍ଟ ଭାବରେ ଦେଖାଇ ଦେଇଥିଲା । ମୁଁ ପ୍ରକୃତି ଉପରେ ଗୋଇନ୍ଦାଗିରି କରିବା ପାଇଁ ଶିଖିପାରିଥିଲି । ଧନ୍ୟ ସେହି ବିଦ୍ୟାକୁ, ଯାହାଦ୍ୱାରା ମୁଁ ଶିଖିପାରିଥିଲି କିପରି ମଣିଷ ମୃତ୍ୟୁବରଣ କରେ ଏବଂ ବୁଝିପାରିଥିଲି ସେହି ଚମତ୍କାର ଶକ୍ତିକୁ ଯାହା ମାତୃଗର୍ଭରୁ ଚିର ଏକ ପରିପକ୍ୱ ମାନବ ଶିଶୁ ସୃଷ୍ଟିକରେ । ଧନ୍ୟ ସେହି ଡାକ୍ତରଖାନା, ଯାହା ମୋତେ ବିଭିନ୍ନ ଅଙ୍ଗକୁ ଚିହ୍ନାଇଲା ଏବଂ ସେମାନଙ୍କୁ ଯୋଡ଼ି ଏକ ଯୁକ୍ତିଯୁକ୍ତ ମୂର୍ତ୍ତି ଗଢ଼ିବାକୁ ଶିଖାଇଲା । ଏହା ମୋତେ ଜଣାଇଦେଲା ପ୍ରକୃତିର ବର୍ଣ୍ଣନାକର ବୈଚିତ୍ର୍ୟକୁ, ବିଜ୍ଞତା ଓ ଶକ୍ତିକୁ । ଏସବୁକୁ ଅନୁଭବ କରି ମୁଁ ଧାଇଁଲି, ହଠାତ୍ ଅଟକିଯିବାକୁ । ମୁଁ ପୃଥିବୀର ସର୍ବବୃହତ୍ ପ୍ରତିବନ୍ଧକ ପାଖରେ ପହଞ୍ଚିଗଲି—ତାହା ହେଉଛି "ଶିଶୁ" ।

## (୮) ପରିଭ୍ରମଣ

ବିଭିନ୍ନ ଜାଗା ବୁଲି ଦେଖିବାପାଇଁ କୋର୍ଜାକଙ୍କର ପିଲାଦିନୁ ପ୍ରବଳ ଇଚ୍ଛା ଥିଲା । କୌଣସିମତେ ନିଜର ଏହି କାମନାକୁ ପୂରଣ କରିବାପାଇଁ ସେ ଚିନ୍ତା କରୁଥିଲେ । ସ୍କୁଲରେ ମାତ୍ର ଦ୍ୱିତୀୟ ଏବଂ ତୃତୀୟ ସୋପାନରେ ପଢ଼ୁଥିଲାବେଳେ ସେ କାଳ୍ପନିକ ଭାବରେ ଗାର ଟାଣି ଯାତ୍ରାକରିବାର ମାନଚିତ୍ର ଆଙ୍କୁଥିଲେ । ପଞ୍ଚମଶ୍ରେଣୀ ବେଳକୁ ତାଙ୍କର ଏହି କଳ୍ପନା ବାସ୍ତବରେ ପରିଣତ ହେବାକୁ ଲାଗିଲା ।

'ପ୍ରଜାପତିର ସ୍ୱୀକୃତି' (Confession of a Buttefly)ର ନାୟକ ଫ୍ରାଙ୍କେଓ, ଭିଏନା, ପ୍ରେଗ୍, ବୁଦାପେଷ୍ଟ, ବେର୍ଲିନ୍, ନାପଲସ୍, ମୋନାକୋ, ପାରିସ୍ ଏବଂ ଲଣ୍ଡନ ଆଦି ଭ୍ରମଣ ପାଇଁ ପ୍ରତିଜ୍ଞା ନେଇଥିଲା । ଏହି ଜାଗାଗୁଡ଼ିକ ବିଭିନ୍ନ ପ୍ରକାରର ସଂସ୍କୃତିର ପ୍ରତିନିଧିତ୍ୱ କରୁଥିଲେ ।

ଡାକ୍ତର ହେବାର ପ୍ରଥମ ସାତବର୍ଷ ଭିତରେ କୋର୍ଚ୍ଚାକ ଦୁଇଥର ପୋଲାଣ୍ଡ ବାହାରକୁ ଅଧ୍ୟୟନ ପାଇଁ ଯାଇଥିଲେ । ପ୍ରଥମେ ଜର୍ମାନୀ ଓ ଦ୍ୱିତୀୟଥର ପ୍ୟାରିସ୍ । ବାଟରେ ଲଣ୍ଡନ ଓ ଭିଏନା ପରିଦର୍ଶନ କରିଥିଲେ ।

୧୯୦୪ରୁ ୧୯୦୫ ମସିହା ଭିତରେ ଋଷିଆ-ଜାପାନ ଅଭିଯାନ ଚାଲିଥିଲା । ଏହି ସମୟରେ ସେ ଜାରିଷ୍ଟ ସେନାବାହିନୀରେ ମେଡ଼ିକାଲ ଅଫିସର ଭାବରେ ସୁଦୂର ପ୍ରାଚ୍ୟରେ କାମ କରିଥିଲେ । ସେତେବେଳେ ସେ ଖାରବିନ୍ ଏବଂ ଟାଓ ଓ୍ୱେଦିକ୍‌ର ଡାକ୍ତରଖାନାରେ କାମ କରିଥିଲେ । ତା'ପରେ ତାଙ୍କୁ ସାଇବେରିଆରେ ଖାରବିନ ଓ ଖାବାରୋଭ୍ସ ମଧ୍ୟରେ ଚାଲୁଥିବା ଟ୍ରେନ୍-ହସ୍ପିଟାଲରେ କାମ କରିବାକୁ ପଡ଼ିଥିଲା । ପ୍ରଥମ ବିଶ୍ୱଯୁଦ୍ଧ ସମୟରେ ତାଙ୍କୁ 'କେଭ୍' ପର୍ଯ୍ୟନ୍ତ ଯିବାକୁ ପଡ଼ିଥିଲା ।

କହିବାକୁ ଗଲେ ଦୃଷ୍ଟିକୋଣର ଦିଗନ୍ତ ସଂପ୍ରସାରଣ ପାଇଁ ଏବଂ ପୃଥିବୀର ବିଭିନ୍ନ ବ୍ୟାପାର ସହି ପରିଚିତ ହେବାପାଇଁ ବହୁ ଭଲ ଭଲ ସୁଯୋଗମାନ ତାଙ୍କୁ ମିଳିଥିଲା । ବିଭିନ୍ନ ଜାଗା ଭ୍ରମଣ ବେଳେ ସେ ସବୁକିଛି ଉତ୍ତମ ରୂପେ ପର୍ଯ୍ୟବେକ୍ଷଣ କରୁଥିଲେ । ତାଙ୍କର ଅନୁସିଦ୍ଧାନ୍ତଗୁଡ଼ିକ ଅତ୍ୟନ୍ତ ତୀକ୍ଷ୍ଣ ଏବଂ ସମୀକ୍ଷାମୂଳକ ଥିଲା । ଏହି ଭ୍ରମଣ ବେଳର ପର୍ଯ୍ୟବେକ୍ଷଣ ଏବଂ ମନ୍ତବ୍ୟଗୁଡ଼ିକ ତାଙ୍କର ବିଭିନ୍ନ ଲେଖାରେ ପରିଦର୍ଶିତ ହୋଇଥିଲା । ଏହି ସମୟରେ ସେ ଅନେକ ଚିକିତ୍ସାବିଦ୍ୟା ସଂକ୍ରାନ୍ତରେ ପ୍ରବନ୍ଧ ଲେଖିଥିଲେ । ତା'ଛଡ଼ା ''ବାଣୀ'' ନାମକ ପତ୍ରିକାରେ ତାଙ୍କର ଯୁଦ୍ଧ ସମୟର ବିବୃତିମୂଳକ ପ୍ରବନ୍ଧମାନ ପ୍ରକାଶିତ ହୋଇଥିଲା ।

ବାହାରେ ଥିଲାବେଳେ ତାଙ୍କର ପ୍ରିୟଜନ ଓ ବନ୍ଧୁମାନଙ୍କର କଥା ମନେ-ପଡ଼ୁଥିଲା ଏବଂ ସେ ପୋଲାଣ୍ଡ ବିଶେଷକରି ଓ୍ୱାର୍ସୋକୁ ଫେରିଆସିବାକୁ ଇଚ୍ଛା କରୁଥିଲେ ।

ବାଇକାଲ ସାଗର ଏବଂ ଇଉରାଲ ପର୍ବତମାଳାର ସେପାରିରେ ଥିବା ଦେଶ-ଗୁଡ଼ିକରେ ଭ୍ରମଣ କରୁଥିଲାବେଳେ ଯେଉଁ ସ୍ମରଣୀୟ ଘଟଣା ତାଙ୍କ ଜୀବନରେ ଗ୍ରଥି-ହୋଇ ରହିଯାଇଥିଲା ତାହା, ହେଉଛି ଚାରିବର୍ଷର କୁନିଝିଅ ୟୁ-ଜାର ଅଙ୍ଗେଇ ଅଙ୍ଗେଇ ଚୀନଭାଷା କହି ଶିଖୁଥିବାର ଘଟଣା । ତାଛଡ଼ା ଚୀନ୍ ସ୍କୁଲମାନଙ୍କରେ ଶିକ୍ଷକମାନଙ୍କ ହାତରେ ଥିବା ବେତର ଦୃଶ୍ୟ ।

ଜର୍ମାନୀରେ ଲମ୍ବା ରହଣୀ ବେଳର ଗୋଟିଏ ଘଟଣା ତାଙ୍କର ମନ ଭିତରେ ରେଖାଙ୍କିତ ହୋଇ ରହିଯାଇଥିଲା । କୁନି ଏର୍‌ନା ତାଙ୍କୁ ଜର୍ମାନୀ ଭାଷା ଶିଖାଇଥିଲା । "ଓ୍ବିଲହେଲମ ଏବଂ ଫ୍ରାଇଡ଼ା ସେମାନଙ୍କ ବ୍ୟାକରଣ, ସ୍କୁଲ୍ ବନ୍ଦ ଓ ଘରେ ଦିଆ-ଯାଇଥିବା ପାଠରେ ବହୁତ ଆଗେଇଯାଇଥିଲେ ଯାହାକି କୋର୍ଯାକଙ୍କ ପାଇଁ କଷ୍ଟକର ଥିଲା ।

ଭିଏନା କଥା ମନେପକାଇ ସେ ଚଳଚ୍ଚିତ୍ର ବହୁତ ପ୍ରଶଂସା କରୁଥିଲେ । ଚିଠିମାନଙ୍କରେ ସେ ଭିଏନା ପିଲାଙ୍କ ବିଷୟରେ ଅନେକ କିଛି ଜାଣିବାର ଅଛି ବୋଲି ସୂଚନା ଦେଉଥିଲେ ।

ପ୍ରଥମରୁ ହିଁ ପିଲାମାନେ କୋର୍ଯାକଙ୍କ ହୃଦୟରେ ସ୍ଥାନ ପାଇଥିଲେ । ସମୟ ଅତିବାହିତ ହେବା ସଙ୍ଗେ ସଙ୍ଗେ, ପିଲାମାନଙ୍କ ଗୁରୁତ୍ୱ ତାଙ୍କ ପାଖରେ ଅଧିକରୁ ଅଧିକ ବଢ଼ିବାରେ ଲାଗିଥିଲା । କୋର୍ଯାକଙ୍କ ଜୀବନରେ ସବୁକିଛିର କେନ୍ଦ୍ରବିନ୍ଦୁ ଥିଲେ ଏଇ ପିଲାମାନେ । ପୋଲାଣ୍ଡ ବାହାରେ ବିଦେଶ ରହଣୀ ସମୟରେ ବି ଏହି ଭାବ କୌଣସି ଭାବରେ ଊଣା ହୋଇନଥିଲା । ତାଙ୍କ ପକ୍ଷରେ ପିଲାପାଖରେ ପହଞ୍ଚିବାପାଇଁ ଭାଷା କୌଣସି ପ୍ରକାର ପ୍ରତିବନ୍ଧକ ହୋଇ ଛିଡ଼ା ହୋଇ ପାରୁ ନଥିଲା ।

ବିଭିନ୍ନ ଦେଶ ବୁଲିସାରି ଯେତେବେଳେ ସେ ଓ୍ବାର୍ସୋକୁ ଫେରିଆସିଲେ ଏବଂ ସ୍ଲିସ୍କା ଗଳିର ହସ୍‌ପିଟାଲରେ ଯୋଗଦେଲେ, ତାଙ୍କର ଆନନ୍ଦର ସୀମା ରହିଲା ନାହିଁ । ଏହିଭଳି ବିଦେଶ ଭ୍ରମଣ ବ୍ୟତୀତ ସେ ଆଉ ଦ'ଥର ୨ରୁ ୩ ସପ୍ତାହ ଲେଖାଏ ତାଙ୍କର ପ୍ରିୟ ସହର ଓ୍ବାର୍ସୋ ଗ୍ରୀଡ଼ ବାହାରେ ରହିଥିଲେ । ପ୍ରକୃତରେ ସମାଜମଙ୍ଗଳ କାର୍ଯ୍ୟରେ କର୍ମୀ ଭାବରେ ଗ୍ରୀଷ୍ମାବକାଶରେ ବାହାରକୁ ଯାଇଥିଲେ । ପ୍ରଥମଟି ହେଲା ୧୯୦୭ ଓ ଅନ୍ୟଟି ୧୯୦୮ ମସିହାର କଥା । ଏହି ଗ୍ରୀଷ୍ମାବକାଶର ଭ୍ରମଣ ଆଦୌ ଅର୍ଥହୀନ ନଥିଲା । ଏହା ତାଙ୍କୁ ଦୁଇଟି ସୁଯୋଗ ଆଣି ଦେଇଥିଲା । ଗୋଟିଏ ହେଲା ପିଲା ଓ ଅନ୍ୟଟି ହେଲା ପ୍ରକୃତି । ଉଭୟ କୋର୍ଯାକଙ୍କର ଅତି ପ୍ରିୟ । ଏ ଦୁଇଟି ଜନପ ଡକ୍ଟରଙ୍କୁ ସମାଜମଙ୍ଗଳ ସ୍ୱେଚ୍ଛାସେବୀ କାର୍ଯ୍ୟାବଳୀରେ ନିମଜ୍ଜିତ ରହିବାପାଇଁ ପ୍ରେରଣା ଯୋଗାଇଥିଲେ ।

ପିଲାମାନେ କପରି ଗାଁ ପରିବେଶକୁ ଦେଖି ପ୍ରତିକ୍ରିୟା ପ୍ରଦର୍ଶନ କରୁଛନ୍ତି ସେ ସବୁକୁ ପର୍ଯ୍ୟବେକ୍ଷଣ କରି ସେ ଆନନ୍ଦ ଲାଭ କରୁଥିଲେ । ପୋଲାଣ୍ଡର ଗାଁଗହଳିର ପରିବେଶ ପ୍ରତି ତାଙ୍କର ନିଜର ଏକ ସ୍ନେହାର୍ଦ୍ର ଓ କୋମଳ ଭାବ ଥିଲା । ତାଙ୍କ ଭିତରେ ଏହା କବି ଓ ଭାବୁକର ସ୍ପନ୍ଦନ ସୃଷ୍ଟି କରୁଥିଲା । କୋର୍ଯାକ ଜନ୍ମହୋଇଥିଲେ

ସହରରେ; ମାତ୍ର ଗାଁ ପାଇଁ ତାଙ୍କର ମମତା କିଛି କମ୍ ନଥିଲା । ସେ ଓ୍ୱାର୍ସୋଠାରୁ ୧୦ ମାଇଲ ଦୂର ଗୋଓଟେ ଯାଇ ସେଠାରୁ ଶଗଡ଼ ଗାଡ଼ିରେ ମିକାଲୋସ୍କା ଗାଁକୁ ଯାଇଥିଲେ । ଏହି ଗ୍ରାମ୍ୟ ପ୍ରକୃତି ଭିତରକୁ ଯାତ୍ରା ତାଙ୍କପାଇଁ ଅବିସ୍ମରଣୀୟ ହୋଇ ରହିଗଲା । ବୋଧହୁଏ ଏହାର ଅନୁଭୂତି ଯେ କୌଣସି ସୁନ୍ଦର ବିଦେଶୀ ଭୂ-ଖଣ୍ଡର ସୌନ୍ଦର୍ଯ୍ୟ ଅପେକ୍ଷା ଅଧିକ ହୃଦୟଗ୍ରାହୀ ଥିଲା ।

୧୯୦୭ ଓ ୧୯୦୮ ମସିହାର ଏହି ଅବକାଶଗୁଡ଼ିକରେ ସେ ଗୋଟିଏ କଥା ଆବିଷ୍କାର କଲେ—ତାହା ହେଉଛି, ପିଲା ଓ ପ୍ରକୃତି ଭିତରେ ଏକ ବିଚିତ୍ର ଆଦର୍ଶଗତ ନିବିଡ଼ତା । ଏହି ଆବିଷ୍କାର ଡାକ୍ତରଙ୍କ ହୃଦୟର ଗଭୀର ପ୍ରଦେଶରେ ଗୁମ୍ପି ହୋଇ ରହିଗଲା । "ପିଲାଟିକୁ କିପରି ଭଲପାଇବ" (How to love a child) ବହିରେ ସେ ଲେଖିଥିଲେ, "ଯେ କୌଣସି ବ୍ୟକ୍ତି ପିଲାଙ୍କ ଭିତରେ କିଛି କାମ କରିଥିବ ସେ ନିଶ୍ଚିତ ଭାବରେ ପ୍ରକୃତି ଓ ମଣିଷ ଭିତରେ ଥିବା କୋମଳ ସଂପର୍କକୁ ଆବିଷ୍କାର କରିପାରିବ । ଗୋଟିଏ ପତ୍ର ବା ଡାଳ ସହି ନୀରବରେ କିଛି ସମୟ କଟାଇଲେ କେତେ ଆରାମ ଓ ଶାନ୍ତି ଲାଗେ, ଝରାଦିନେ କେତେ ମଧୁରତାର ସହି ସମୟ କଟିଯାଏ !"

ସେ ପାଓ୍ୱିଆ ଏବଂ ନାଲେଓ୍ୱକି ଗଳି ଓ ଓ୍ୱାର୍ସୋର ଇହୁଦୀ ସହରତଳି ବସ୍ତି-ଗୁଡ଼ିକରୁ ବାଳକମାନଙ୍କୁ ଏବଂ ସହର ଅନ୍ୟ ପାଖରୁ ଖ୍ରୀଷ୍ଟିୟାନ ବାଳକମାନଙ୍କୁ ଗାଁକୁ ନେଇଯାଇଥିଲେ । ଜୀବନରେ ପ୍ରଥମଥର ପାଇଁ ସେମାନେ କ୍ଷେତବାଡ଼ି ଏବଂ ଜଙ୍ଗଲ ଦେଖିବାକୁ ପାଉଥିଲେ । ସବୁକିଛି ତାଙ୍କପାଇଁ ନୂଆ ଚମତ୍କାର ଥିଲା । ଯଥା—ବଗଟିଏ ଗୋଟିଏ ଗୋଡ଼ରେ ଛିଡ଼ାହୋଇଥିବା, କ୍ଷେତରେ ଗାଲିଚା ଉପରେ ଆଳୁ ରଖା ହୋଇଥିବା ଏବଂ ଗୋଟିଏ ଘୋଡ଼ାଛୁଆ ଠିଆ ହୋଇଥିବା ଇତ୍ୟାଦି ଇତ୍ୟାଦି । କୋର୍ଚାକ୍ ଏସବୁ ବିଷୟରେ ପିଲାମାନଙ୍କୁ କହୁଥିଲେ ଆଉ ପିଲାମାନେ ଅତି ଉତ୍ସାହିତ ହୋଇ ଖୁସି ଓ ବିସ୍ମୟଭରା ନୟନରେ ଉଲ୍ଲସିତ ହୋଇପଡୁଥିଲେ ।

ପିଲାମାନଙ୍କର ସରଳତା ଦେଖି କୋର୍ଚାକ୍ ବିହ୍ୱଳ ହୋଇପଡୁଥିଲେ । ସମସ୍ତଙ୍କ ତରଫରୁ ସେ ଏହି ବୈଚିତ୍ର୍ୟମୟ ଜଗତକୁ କୃତଜ୍ଞତା ଜଣାଉଥିଲେ —ହେ ମଙ୍ଗଳମୟ ସୂର୍ଯ୍ୟ, ତୁମକୁ ଧନ୍ୟବାଦ, ତୁମେ ତୁମ କିରଣ ବିତରଣ କରୁଛ, ଛାଇ ପାଇଁ ହେ ସବୁଜ ବନାନୀ, ତୁମକୁ ବି ଧନ୍ୟବାଦ ଏବଂ ସବୁଜ ଘାସ ପଡ଼ିଆ ଧନ୍ୟ ତୁମକୁ ତୁମ ଖୁସିପାଇଁ......

ଅନ୍ୟମାନେ କହୁଥିଲେ, ଡାକ୍ତରଙ୍କର ଚକ୍ଷୁଯୁଗଳ ଖୁବ୍ ଉଜ୍ଜ୍ୱଳ; ମାତ୍ର ତାଙ୍କ ଚାଲି ଓ ଅନ୍ୟାନ୍ୟ ଭଙ୍ଗୀ ଅତି କଦର୍ଯ୍ୟ । ସେ ଭଲ ଖେଳୁନଥିଲେ । ମାତ୍ର ସେ ଭଲ ପୁସ୍ତକ ରଚନା କରୁଥିଲେ । ରାତିରେ ଅଗ୍ନି ଚାରିପାଖରେ ବସି ପିଲାମାନଙ୍କୁ ସୁନ୍ଦର

ସୁନ୍ଦର କୌତୁକିଆ ଗପମାନ କହି ସେ ଭାବନାରାଜ୍ୟକୁ ଟାଣିନେଉଥିଲେ ଏବଂ ଏହାଦ୍ୱାରା ତାଙ୍କର ଅନ୍ୟ ଦୁର୍ବଳତାଗୁଡ଼ିକ ପୂର୍ଣ୍ଣ ହୋଇଯାଉଥିଲା । ଏଥିପାଇଁ ପିଲାମାନେ ଡାକ୍ତରଙ୍କୁ ଏତେ ଭଲ ପାଉଥିଲେ ଏବଂ ତାଙ୍କର ସବୁପ୍ରକାର ଦୁର୍ବଳତାକୁ କ୍ଷମା କରିଦେଉଥିଲେ ।

ପିଲାଙ୍କ ମେଳରେ ରହି ସେ ନିଜକୁ ଭୁଲିଯାଉଥିଲେ । ତାଙ୍କ ଭିତରେ ଅଦ୍ଭୁତ ଶିହରଣ ଜାତହେଉଥିଲା । ବୋଧହୁଏ ପିଲାମାନେ ଡାକ୍ତରଙ୍କୁ ସମ୍ମୋହିତ କରିପକାଉଥିଲେ । ସେ ଗୃହୁଁଥିଲେ, ମୁକ୍ତ ଆକାଶତଳେ ତାଙ୍କ ସହ ରହୁଥିବା ବାରବୁଲା ପିଲାମାନଙ୍କ ସହ ନିବିଡ଼ ଭାବରେ ବସି କିଛି ନୂଆ କଥା ଶିଖନ୍ତେ ଓ ନିଜକୁ ସମୃଦ୍ଧ କରନ୍ତେ ।

ଇହୁଦୀ ପିଲାମାନଙ୍କର ମଳିନ ମୁଖମଣ୍ଡଳ ଦେଖି ସେ ଭାବୁଥିଲେ ପ୍ରକୃତିର ଏହି ପବିତ୍ର କୋଳରେ କେହି ଏଠାରେ କାହାଠାରୁ ଊଣା ନୁହନ୍ତି । ଏଠାରେ ସମସ୍ତେ ସମାନ । ସମସ୍ତଙ୍କର ମୁକ୍ତ ପବନ ଏବଂ ପ୍ରେମକୁ ଉପଭୋଗ କରିବାର ଅଧିକାର ରହିଛି । ସେ ବିଶ୍ୱାସ କରୁଥିଲେ :—

"ପୋଲାଣ୍ଡର ଗ୍ରାମୀଣ ପରିବେଶ, ବୃକ୍ଷରାଜିର ସବୁଜିମା ଏବଂ ସୁନେଲି ଗହମ କ୍ଷେତରେ ଉଜ୍ଜ୍ୱଳ ରଙ୍ଗ ଦ୍ୱାରା ସେମାନଙ୍କ ଆଡ଼କୁ ଲକ୍ଷ୍ୟକରି ସ୍ମିତହାସ୍ୟ ପ୍ରକାଶ କରୁଛି । ଭିପା ବଣୁଆ ଚଢ଼େଇମାନଙ୍କର ସଙ୍ଗୀତ ସହ ତାଳ ମିଳାଇଛି । ଗ୍ରୀଷ୍ମାକାଶରେ ନକ୍ଷତ୍ରରାଜି ଆଖିମିଟିକା ସହ ଦପ୍‌ଦପ୍ ହୋଇଛି । କ୍ଷେତବାଡ଼ିର ସତେଜ ଏବଂ ଧୀର ମଳୟ ସହ ନିଃଶ୍ୱାସ ମାରିଛି ଏବଂ ସବୁକିଛି ଭିତରେ ସଂହତିର ବୀଣା ବାଦନ ହେଉଛି ।

ପୋଲାଣ୍ଡ ଭିପାର ଭିପଣରେ ଥିବା ଶବରାଜି, ସୁନ୍ଦର ପୁଷ୍ପଗୁଚ୍ଛ ସଦୃଶ ଏକତ୍ର ମନୋରମ ଧାସ ଗାଲିଚାରେ ପରିଣତ ହୋଇ ଗୋଲାପୀ ସୂର୍ଯ୍ୟାଲୋକ ସମୁଜ୍ଜ୍ୱଳ ହୋଇ-ଉଠୁଥିଲେ ।

୧୯୦୭ ଓ ୧୯୦୮ ମସିହାର ଗ୍ରୀଷ୍ମାବକାଶରେ ସେ ପାଇଥିବା ଅନୁଭୂତିକୁ ନେଇ ପିଲାଙ୍କ ପାଇଁ ଦୁଇଟି କଉତୁକିଆ ବହି ଲେଖିଥିଲେ । ଗୋଟିଏ ହେଉଛି— "ମୋସ୍କି, ଜୋସ୍କି ଏବଂ ସ୍ରୁଲେ" ଅନ୍ୟଟି ହେଉଛି ଜୋକ୍‌କ, ଜାକ ଏବଂ ଫ୍ରାଙ୍କି । ଏ ମୋସ୍କି, ଜୋସ୍କି ଏବଂ ସୁଲେ ଆଦି ଇହୁଦୀ ନା ଏବଂ ଜୋକ୍‌କ, ଜାକ ଏବଂ ଫ୍ରାଙ୍କି ଆଦି ଖ୍ରୀଷ୍ଟିଆନ ନାଁ ।

ତିନି ସପ୍ତାହ ପରେ ସମସ୍ତେ ଓ୍ୱାର୍ସୋ ଫେରିଆସିଲେ ଏବଂ ସେମାନଙ୍କ ସାଙ୍ଗରେ ଫେରିଲେ ଡାକ୍ତର ଜାନୁସ୍ କୋର୍ଯାକ । ତିନି ସପ୍ତାହ ଧରି ଖୋଲା, ସୁସ୍ଥ

ଜୀବନ ବିଷ୍ଟ ସେମାନେ ଫେରିଆସିଲେ ଗ୍ରାମୀଣ ପରିବେଶରୁ କଳକାରଖାନାର ଧୂମାଚ୍ଛନ୍ନ ସହର ଭିତରକୁ । ସେମାନେ ଓ୍ୱାର୍ସୋର ସେହି ପରିଚିତ ଗଳିଗୁଡ଼ିକୁ ଯଥା—ଗେଦିଆ, ନୋଡ୍‌ମାଲ୍‌ନା, ସ୍ମୋକ୍‌ଜା, ଓ୍ୱାର୍‌ଦା, ସ୍ଲିସ୍କା ଆଦିକୁ ଫେରିଆସିଲେ ।

ଏହା ହେଉଛି କୋର୍ସାକ୍‌ଙ୍କ ନିଜ ସହର ଯେଉଁଠି ସେ ଜନ୍ମଗ୍ରହଣ କରିଛନ୍ତି । ଏହା ପୃଥିବୀର ଏକମାତ୍ର ସହର ଯେଉଁଠି ବଡ଼ବଡ଼ ରାସ୍ତାଗୁଡ଼ିକ ପରିଷ୍ଟରକୁ ଭେଟି ଏକ ହୁଅନ୍ତି । ଏହା ସେହି ସହର ଯେଉଁଠାରେ ତାଙ୍କର ସବୁପ୍ରକାର ଅନୁସନ୍ଧାନ ଆରମ୍ଭ ହୋଇଥିଲି ଏବଂ ଶେଷ ମଧ୍ୟ ହୋଇଥିଲି । ଏହା ସେହି ସହର ଯେଉଁଠି ତାଙ୍କର ସମସ୍ତ ସୃଷ୍ଟି ଏବଂ ଚରିତ୍ର ବିଷ୍ଟରହିଥିଲି ।

କୋର୍ସାକ୍‌ଙ୍କ ପାଇଁ ତାଙ୍କ ଜନ୍ମମାଟିର ସହର ଅତି ଆଦରର ଥିଲି । ପୃଥିବୀର ଅନ୍ୟ ଦେଶମାନଙ୍କରେ ସେ କେତେ କେତେ ସୁନ୍ଦର ଜାଗାମାନ ଦେଖିଛନ୍ତି । ସେମାନଙ୍କର ସୌନ୍ଦର୍ଯ୍ୟରେ ବିମୁଗ୍ଧ ହୋଇଛନ୍ତି । ସେହିପରି ପୋଲାଣ୍ଡର ଅନ୍ୟାନ୍ୟ ସହରମାନଙ୍କର କଳାତ୍ମକ ତଥା ପ୍ରାକୃତିକ ଶୋଭା ଦେଖିଛନ୍ତି; ମାତ୍ର ଓ୍ୱାର୍ସୋର ପ୍ରାକୃତିକ ସୌନ୍ଦର୍ଯ୍ୟ, ପରିବେଷ୍ଟନୀ ତାଙ୍କୁ ଅନ୍ୟ ସମସ୍ତଙ୍କଠାରୁ ଅଧିକ ଭଲ ଲାଗିଛି । ଓ୍ୱାର୍ସୋ ସମ୍ବନ୍ଧରେ ସେ ଲେଖିଛନ୍ତି, "ମୁଁ ଏହି ଉପତ୍ୟକାକୁ ପ୍ରେମକରେ, ଓ୍ୱାର୍ସୋ ଏବଂ ଏହାର ନଦୀକୂଳରୁ ଦୂରକୁ ଗ୍ଲଲିଗଲେ ମୋତେ ବହୁତ ଖରାପ ଲାଗେ । ଏହାର କୋଳକୁ ଫେରିଆସିବା ପାଇଁ ମୋ ଭିତରେ ତୀବ୍ର ଭାବରେ ବାସନା ସୃଷ୍ଟିହୁଏ ।" ଓ୍ୱାର୍ସୋ ସମ୍ବନ୍ଧରେ ସ୍ୱତନ୍ତ୍ର ମନ୍ତବ୍ୟ ଦେବାକୁ ଯାଇ ସେ କହନ୍ତି :—

"ଓ୍ୱାର୍ସୋ ମୋର, ମୁଁ ଓ୍ୱାର୍ସୋର ଅଧିବାସୀ । ଅଧିକ ପାଦେ ଯାଇ ମୁଁ କହିବି, ମୁଁ ହେଉଛି ଓ୍ୱାର୍ସୋ । ଆମେ ଏକତ୍ର ଆନନ୍ଦ ଓ ଦୁଃଖକୁ ନେଇ ବଞ୍ଚିଛୁ । ଓ୍ୱାର୍ସୋର ଜୀବଜନ୍ତୁ, ଏହାର ବର୍ଷା, ଏହାର କାଦୁଅ ଏବଂ ବରଫ ସବୁକିଛି ମୋର । ମୁଁ ଏହା ସହିତ ବଢ଼ିଛି । ନୂଆ ନୂଆ ରାସ୍ତା ଏବଂ ଶ୍ରେଷ୍ଠ ସହର ମୋ ଘରପାଖରେ କେତେ ଗଢ଼ିଉଠିଲି; ମାତ୍ର ମୁଁ ସେମାନଙ୍କୁ କେବେ ବି ଗ୍ରହଣ କରିନାହିଁ । ଶ୍ରେଷ୍ଠ ସହର କୋଲବୋର୍‌ଜ ମୋ ପାଇଁ ଏକ ବିଦେଶୀ ଭୂଇଁ । ଓ୍ୱାର୍ସୋ ମୋର ନିଜ ଭୂଇଁ ଏବଂ ମୋର ପ୍ରଥମ କର୍ମଭୂଇଁ । ଏଠାରେ ମୁଁ ବିଶ୍ରାମ ନିଏ ଏବଂ ଭବିଷ୍ୟତରେ ସବୁଦିନ ପାଇଁ ମୁଁ ଏଠାରେ ବିଶ୍ରାମ ନେବାପାଇଁ ଆଶା ରଖିଛି ।"

ଏଥିରୁ କୋର୍ସାକ୍‌ଙ୍କ ଭାବପ୍ରବଣତା ସ୍ପଷ୍ଟ ଭାବରେ ପ୍ରକାଶିତ ହୁଏ । ବାସ୍ତବରେ କୋର୍ସାକ୍ ହେଉଛନ୍ତି ଜଣେ ଭାବପ୍ରବଣ ବ୍ୟକ୍ତି । ମାତ୍ର ତାଙ୍କର ଏହି ଭାବପ୍ରବଣତାର ରହସ୍ୟ ବହୁତ କମ୍ ସମୟରେ ବାହାରକୁ ଅଭିବ୍ୟକ୍ତ ହୋଇଥାଏ । ସେ ଥିଲେ

ନମ୍ରାହ, ସମ୍ବେଦନଶୀଳ, ଆତ୍ମସଚେତନ ଏବଂ ଅହଙ୍କାରୀ । ସେ ଏଭଳି ନିଜକୁ ସଜାଗ ରଖୁଥିଲେ ଯେ ତାଙ୍କର ଗଭୀରତର ଭାବ କ୍ୱଚିତ୍ ବାହାରକୁ ପ୍ରକାଶ ପାଉଥିଲା । ପିଲାଙ୍କ ସହ ମିଶୁଥିବାବେଳେ ବି ସେ ସେମାନଙ୍କୁ ଏତେ ଭଲ ପାଉଥିଲେ ବୋଲି ପ୍ରକାଶ କରୁନଥିଲେ । ଏହି ଭାବକୁ ଲୁଚାଇବାକୁ ସବୁ ପ୍ରକାର ଉଦ୍ୟମ ଜାରି ରଖୁଥିଲେ । ସେ କାଳେ ବହୁତ ଆବେଗପୂର୍ଣ୍ଣ ହୋଇଉଠିବେ ଏବଂ ଥରେ ଆତ୍ମନିୟନ୍ତ୍ରଣ ହରାଇଲେ ଫେରି ଆସି ପାରିବା କଠିନ ହୋଇଉଠିବ ବୋଲି ତାଙ୍କର ସବୁବେଳେ ଭୟ ରହୁଥିଲା । ସେ ତାଙ୍କର ଅନୁଭବକୁ ହସ କଉତୁକ, ବିଭିନ୍ନ ଭାବଭଙ୍ଗୀ ମାଧ୍ୟମରେ ପରିପ୍ରକାଶ କରିବାରେ ସିଦ୍ଧହସ୍ତ ଥିଲେ । ବାସ୍ତବରେ ସେ ନିଜ ଅନୁଭବକୁ ରହସ୍ୟାବୃତ କରି ରଖିବାକୁ ନିଜକୁ ତାଲିମ ଦେଇଥିଲେ ।

ପ୍ରକୃତି ଏବଂ ନିଜର ପ୍ରିୟ ସହର ପ୍ରତି ତାଙ୍କ ମନୋଭାବ ବହୁତ ଖୋଲା ଥିଲା । ସେ ଯାହା ଏ ସମ୍ବନ୍ଧରେ ଅନୁଭବ କରୁଥିଲେ ତାକୁ ପ୍ରକାଶ କରୁଥିଲେ ।

## (୯) ଦରଦୀ ହୃଦୟ

୧୯୦୬ ମସିହା କଥା । ଓ୍ୱାର୍ସର କୋଲେଓ୍ୱାସ୍କା ଗଳିର ଇହୁଦୀ ଡାକ୍ତର ମାକ୍‌ସମିଲିନଙ୍କ ପ୍ରଶସ୍ତ ବୈଠକ ଘରେ ଏକ ମିଟିଂ ବସିଥିଲା । ଏହି ବୈଠକରେ ଥିଲାବାଲା ଇହୁଦୀ, ନୈଷ୍ଠିକ ପୁରୁଣାକାଳିଆ ଇହୁଦୀ ଓ ନୂଆ ପିଢ଼ିର ଇହୁଦୀ ଯୁବଗୋଷ୍ଠୀଙ୍କ ଭିତରୁ କେତେଜଣ ଉପସ୍ଥିତ ଥିଲେ । ପୋଲାଣ୍ଡ ସୋସାଇଟି ଦ୍ୱାରା ଅନାଥ ପିଲାମାନଙ୍କର ଉପରି ଯତ୍ନ ନିଆଯିବ ସେ ନିବେଦନ କରିବାକୁ ଆଲୋଚନା ହୋଇଥିଲା । ଅବଶ୍ୟ ସହରର ଧନୀକ ଇହୁଦୀମାନଙ୍କୁ ସାହାଯ୍ୟ ସହଯୋଗ ପାଇଁ ଆଗରୁ ଅନୁରୋଧ କରାଯାଇସାରିଥିଲା ।

ବକ୍ତାମାନଙ୍କ ଭିତରେ ଚାରିଜଣ ମୁଖ୍ୟ ଥିଲେ । ସେମାନେ ହେଲେ ପେରେଲ୍‌ଜ, ଭେଇସ୍‌ବ୍ଲାଟ୍, ଡାକ୍ତର ପୋଜ୍‌ନାନସ୍କି ଏବଂ ଡାକ୍ତର ଏଲିଆସ ବର୍ଗ । ଦୀର୍ଘସମୟଧରି ଆଲୋଚନା ଓ ଯୁକ୍ତିତର୍କ ଆଦି ଚାଲିଲା । ପୁରୁଣାକାଳିଆ ନୈଷ୍ଠିକ ଇହୁଦୀ ତଥା ଏବର ଯୁବଗୋଷ୍ଠୀଙ୍କ ଭିତରେ ଭୀଷଣ କଥା କଟାକଟି ।

ବିଭିନ୍ନ ପ୍ରକାର ମତପାର୍ଥକ୍ୟ ସତ୍ତ୍ୱେ ମିଟିଂରେ ଅନେକଗୁଡ଼ିଏ ମୂଲ୍ୟବାନ ନିଷ୍ପତ୍ତି ନିଆଯାଇଥିଲା । ଯୋଜନାର କାର୍ଯ୍ୟସୂଚୀରେ ପ୍ରଥମ କଥା ଥିଲା ଗୋଟିଏ କମିଟି

ତିଆରି ହେବ ଏବଂ ଏହି କମିଟି କେତେଜଣଙ୍କୁ ନେଇ ଏକ କାର୍ଯ୍ୟକାରୀ ଦଳ ନିଯୁକ୍ତ କରିବ । ବରିକସମ୍ୟାନ୍ ନାମକ ଜଣେ ଇହୁଦୀ ଭଦ୍ରବ୍ୟକ୍ତି ଏହି ମିଟିଂରେ ସଭାପତି ହୋଇଥିଲେ । ସଭା ସମାପ୍ତ ହେବା ପରେ ସେ ବାସ୍ତବ ଯୋଜନାଟିକୁ ସମ୍ୟକ୍ ଭାବରେ ଜଣାଇଦେଲେ । ତା'ପରଦିନ କମିଟି ଓ୍ୱାର୍ଶର ଗରିବ ଇହୁଦୀମାନେ ରହୁଥିବା ଗୋଟିଏ ଗଳିକୁ ପରିଦର୍ଶନରେ ଗଲେ । ସେଠାରେ ୫ ନମ୍ବର କ୍ୱାର୍ଟରରେ କାଠଦିନଧରି ଗୋଟିଏ ଅନାଥାଶ୍ରମ ଚାଲୁଥିଲା । ଅନାଥାଶ୍ରମଟିର ଅବସ୍ଥା ବହୁତ ଖରାପ ଥିଲା । ସମ୍ବଳ ଅଭାବରୁ ଏହା ସଂପୂର୍ଣ୍ଣଭାବରେ ଅବହେଳିତ ଅବସ୍ଥାରେ ଥିଲା । କମିଟିରେ ଥିବା ସଦସ୍ୟମାନଙ୍କର ହୃଦ୍‌ବୋଧ ହେଲା ଯେ ଅର୍ଥାଭାବ ହିଁ ଅନାଥାଶ୍ରମର ଏପରି ଦୁରବସ୍ଥା ପାଇଁ ଦାୟୀ । ତା'ପରେ ସେମାନେ ନିଷ୍ପତ୍ତି କଲେ ଯେ ଅନାଥାଶ୍ରମଟିକୁ ଚଳାଉଥିବା ସଙ୍ଗଠନଟିକୁ ଦେଖିବାକୁ ଯିବେ ।

କମିଟିର ସଦସ୍ୟମାନେ କେବେ ବି ଦାରିଦ୍ର୍ୟ କଅଣ ଜାଣିନଥିଲେ । ମାତ୍ର ଅନାଥାଶ୍ରମର ଏପରି ଅବସ୍ଥା ଦେଖି ସେମାନେ ଅବାକ୍ ହୋଇଗଲେ । ଏଭଳି ଦାରିଦ୍ର୍ୟ ଏବଂ ସେବାର ଅବହେଳା କଥା ସେମାନେ କଳ୍ପନା କରିପାରିନଥିଲେ । ଗୋଟିଏ କଥା ପରିଷ୍କାର ଭାବରେ ଅନୁମାନ କରିହେଲା ଯେ କେହିଜଣେ କେଉଁଠି ରହି ଅନାଥାଶ୍ରମର ଅର୍ଥ ଆତ୍ମସାତ୍ କରୁଛି । ଅନାଥ ପିଲାଙ୍କ ପେଟରୁ କାଟି ନିଜର ମେଦ ବୃଦ୍ଧି କରାଇବାରେ ଲାଗିଛି ।

କମିଟିର ସଦସ୍ୟମାନେ ଅନାଥାଶ୍ରମ ଛାଡ଼ି ଚାଲିଆସିବାବେଳେ ଅନାଥାଶ୍ରମର ଶାଗୁଣାଟିକୁ ଠଉରେଇ ପାରିଲେ । ସେମାନେ ଦେଖିଲେ ଅନାଥାଶ୍ରମ ଭିତରକୁ ଜଣେ ମହିଳା ପରିଦର୍ଶକ ପ୍ରବେଶ କରୁଛନ୍ତି । ମହିଳାଜଣକ ଭାରି ଫୁର୍ତ୍ତି ଥିଲେ । ସତେଯେପରି ସେ କୌଣସି ଏକ ବଢ଼ିଆ ପାର୍ଟିରୁ ଫେରୁଛନ୍ତି । ତାଙ୍କ ଆଖି ଉଜ୍ଜ୍ୱଳ ଦିଶୁଥିଲା, ଗାଲଗୁଡ଼ିକ ଲାଲ ଦେଖାଯାଉଥିଲା । ସେ ପିନ୍ଧିଥିଲେ ଏକା ଦାମୀ ଓଭରକୋଟ୍ ଆଉ ତାଙ୍କ ମୁଣ୍ଡରେ ଥିଲା ଓଟପକ୍ଷୀର ପରରେ ତିଆରି ହୋଇଥିବା ଟୋପି । ଅନାଥାଶ୍ରମର ଅବସ୍ଥା ସାଙ୍ଗରେ ମହିଳା ଜଣଙ୍କର ବେଶଭୂଷା ଚାଲିଚଳଣି ବିଲ୍‌କୁଲ ମିଶୁନଥିଲା । ପରିଦର୍ଶିକାଙ୍କ ଘୋଷେଇଘର ଦେଖିଲେ ମନେହେବନି ଏହା ଅନାଥାଶ୍ରମ ଭିତରର ରୋଷେଇଘର ବୋଲି । ଚୁଲି ଉପରେ ବସିଥିଲା ଦାମୀ ଦାମୀ ଖାଦ୍ୟ ସାମଗ୍ରୀ ।

ପରିଦର୍ଶିକା ଜଣକ ଏତେ ବିଳାସବ୍ୟସନରେ ଚଳୁଥିଲାବେଳେ ଏବଂ ରହୁଥିବା ଘରଟିକୁ ଏତେ ସୁନ୍ଦର କରି ସଜାଇଥିବାବେଳେ ଅନାଥାଶ୍ରମର ଅବସ୍ଥା ଏତେ ଖରାପ ଥିଲା ଯେ ତାହା ବର୍ଣ୍ଣନା କରିବା କଷ୍ଟକର । ଘରଆଡ଼ ଥିଲା ଭାରି ଅପରିଷ୍କାର । ପୋର୍‌ସିଲେନ୍ ଲାଗିଥିବା ଷ୍ଟୋଭ ଉପରେ ମଣିଷ ମଳ ଭର୍ତ୍ତି ହୋଇ ରହିଥିଲା ।

ପିଲମାନଙ୍କ ଦେହ ଖାଦ୍ୟବିନା କଙ୍କାଳସାର ହୋଇଯାଇଥିଲା । ପିଲାମାନେ ଚିରା କତଗା ପୋଷାକ ପିନ୍ଧିଥିଲେ । ସେମାନଙ୍କ ମୁଣ୍ଡରୁ ବାଳ ଉପୁଡ଼ିଯାଇଥିଲା । ଆଖି କୋରଡ଼ ଭିତରକୁ ପଶିଯାଇଥିଲା । ସେମାନଙ୍କ ଗୃହାଣି ଅତ୍ୟନ୍ତ ନିସ୍ତେଜ ଥିଲା । ଅନ୍ଧାରୁଆ ଘର ଭିତରେ ପିଲମାନେ ଏ କୋଣରୁ ସେ କୋଣ ଗୁରୁଣ୍ଡି ବୁଲୁଥିଲେ । ମଇଳା ଚଟାଣରୁ ପଚା ଆଳୁ ଉଠାଇ ପାଟିରେ ପୁରାଉଥିଲେ । ସେମାନଙ୍କୁ କୌଣସି ଖାଦ୍ୟ ଦିଆଯାଉନଥିଲା ।

ଅନାଥାଶ୍ରମର ବାହାର ଦରଜାପଟେ ସେମାନେ ଚିରା କୋତଗା ପୋଷାକ ପିନ୍ଧି ଅପେକ୍ଷା କରି ରହୁଥିଲେ । ଭଲ ଭଲ ପୋଷାକ ପିନ୍ଧିଥିବା ମହିଳାମାନେ ଏମାନଙ୍କ ପାଇଁ ସ୍ୱର୍ଗର ପରି ଭଳିଆ ମନେ ହେଉଥିଲେ । ସେମାନଙ୍କ ହାତରୁ ଅଳ୍ପ କେତୋଟି କୋପେକ୍ ପାଇବା ପାଇଁ ସେମାନେ ଦୀର୍ଘ ସମୟ ଧରି ଅପେକ୍ଷା କରି ବସି-ରହୁଥିଲେ ।

ଅନାଥାଶ୍ରମ ଭିତରେ ତର୍କବିତର୍କ କରି କମିଟିର ବହୁ ସମୟ ବିତିଯାଉଥିଲା । ଅନାଥାଶ୍ରମଟିକୁ ପରିଷ୍କାର ପରିଚ୍ଛନ୍ନ କରିବାରେ ବହୁତ ପରିଶ୍ରମ କରିବାକୁ ପଡ଼ୁଥିଲା । ଅନାଥାଶ୍ରମକୁ ସମ୍ପୂର୍ଣ୍ଣ ସଫା କରିବାପାଇଁ ପରଦିନ ସକାଳ ଦୁଇଟା ବାଜିଗଲା ।

ଏକ ବିସ୍ତୃତ କାମର ଏହା ମାତ୍ର ଏକ ମୁଖଶାଳା । 'ଅନାଥାଶ୍ରମ ସୋସାଇଟି'ରେ ଯୋଗଦେଇଥିବା ବହୁଲୋକ ସେମାନଙ୍କର ସମସ୍ତ ସମୟ ଓ ଶକ୍ତି ପ୍ରଦାନ କରି ଅନାଥାଶ୍ରମଗୁଡ଼ିକର ପୁନର୍ବିନ୍ୟାସ ପାଇଁ ଲାଗିପଡ଼ିଲେ ।

ଦୂରଦୃଷ୍ଟିସମ୍ପନ୍ନ ଡାକ୍ତର ଆଇ. ଏଲ୍ଆସ୍ ବର୍ଗ ଏକ ସୁଦୂରପ୍ରସାରୀ ଯୋଜନା ପାଇଁ ବାଟ ଦେଖାଇଲେ । ସେ ଦାବିକଲେ ଯେ ଅନାଥାଶ୍ରମରୁ ସବୁ ବୟସ୍କ ପିଲମାନଙ୍କୁ ବାହାରକୁ ନେଇଯିବା ପାଇଁ । କାରଣ ସେମାନେ ଏଭଳି ଏକ ଅବହେଳିତ ପରିବେଶ ଭିତରେ ରହିବାଦ୍ୱାରା ସେମାନଙ୍କର ନୈତିକ ବଳ ଭାଙ୍ଗି-ଯାଇଥିଲା । ଏହି ପିଲମାନଙ୍କୁ ନିୟନ୍ତ୍ରଣ କରିବା ବହୁତ କଷ୍ଟକର । ତେଣୁ ଡାକ୍ତରଙ୍କ ମତରେ ସେମାନଙ୍କୁ ଅନୁଷ୍ଠାନରୁ ବାହାରକୁ ନେଇଯିବା ହେଉଛି ସର୍ବୋତ୍ତମ ଉପାୟ । ଡାକ୍ତରଙ୍କ ଏହି କଥାଟି କାର୍ଯ୍ୟକାରୀ କରାଗଲା । ପିଲମାନଙ୍କୁ ଏକ ଅସ୍ଥାୟୀ ଜାଗାକୁ ନେଇ ରଖାଗଲା ଏବଂ ଆଉ ଏକ ଅନାଥାଶ୍ରମର ବ୍ୟବସ୍ଥା ହେବା ପର୍ଯ୍ୟନ୍ତ ସେମାନଙ୍କୁ ସେଠାରେ ରଖାଯାଇଥିଲା ।

୧୯୦୭ ମସିହାର ଶରତ ଋତୁରେ 'ଅନାଥାଶ୍ରମ ସୋସାଇଟି' ଆଉ ଗୋଟିଏ ନୂଆ କୋଠାକୁ ଅନାଥାଶ୍ରମ ପାଇଁ ଲିଜ୍ ନେଲା । ଏହା ୨-ଫ୍ରାନ୍ସିସ୍ କାନ୍ସ ଗଳିରେ ଅବସ୍ଥିତ ଥିଲା । ଆଗରୁ ଏଥିରେ ନନ୍‌ମାନେ ରହୁଥିଲେ । ଏହା ସହିତ ସଂଲଗ୍ନ ଥିଲା

ଗୋଟିଏ ନନେଗ୍ଲି ଏବଂ ଷ୍ଟେଟ୍ ଫ୍ରାନ୍‌ସିସ୍‌ର ଚର୍ଚ୍ଚ, ଓ୍ୱାର୍ସର ଉତ୍ତର ସୀମାରେ ଅବସ୍ଥିତ ଥିଲା । ଏହି ଅନାଥାଶ୍ରମରେ ୫୦ ଜଣ ପିଲା ଆଶ୍ରମରେ ଆଶ୍ରୟ ନେଇପାରିଲେ । ପାର୍କରେ ଯୁଦ୍ଧାଭ୍ୟାସ ପାଇଁ ପଡ଼ିଆଟିଏ ଥିଲା, ଯେଉଁଠି ପିଲାମାନେ ମୁକ୍ତଭାବରେ ଖେଳିପାରୁଥିଲେ । ଏହି ଅନାଥାଶ୍ରମ ପାଇଁ ଶିକ୍ଷକମାନଙ୍କୁ ବହୁତ ଯତ୍ନର ସହ ବଛାଯାଇଥିଲା । ସେମାନେ ଅନାଥାଶ୍ରମକୁ ଭଲଭାବରେ ପରିଚାଳନା କରୁଥିଲେ । ପିଲାମାନଙ୍କୁ ସଙ୍ଗେ ସଙ୍ଗେ ଡାକ୍ତରୀ ପରୀକ୍ଷା କରାଗଲା । ରୋଗିଣା ପିଲାମାନଙ୍କ ପାଇଁ ଚିକିତ୍ସା ବ୍ୟବସ୍ଥା କରାଗଲା । ଭଲ ଦିଶୁଥିବା ପୋଷାକ ସବୁ ପିଲାମାନଙ୍କୁ ଦିଆଗଲା ।

ପିଲାମାନଙ୍କ ଦେହରେ ଉକୁଣୀ ଭର୍ତ୍ତି ହୋଇ ରହିଥିଲେ । ଉକୁଣୀଙ୍କ ପାଇଁ ପିଲାମାନଙ୍କୁ ନାନା ପ୍ରକାର ଚର୍ମରୋଗ ହେଉଥିଲା । ଏଥିରୁ ସ୍ପଷ୍ଟ ଜଣାପଡ଼ୁଥିଲା ସେମାନେ କିଭଳି ଅବହେଳାର ଶିକାର ହୋଇଥିଲେ । ଭାଗ୍ୟବଶତଃ ଏହି ସମୟରେ ଏକ ନୂଆ ବିଦ୍ୟୁତ୍ ଯନ୍ତ୍ର ମିଳୁଥିଲା । ଏହି ଯନ୍ତ୍ର ସାହାଯ୍ୟରେ କେତେକ ଚର୍ମ ରୋଗର ଚିକିତ୍ସା କରାଯାଉଥିଲା । ଯନ୍ତ୍ରଟି ପିଲାମାନଙ୍କ ଚିକିତ୍ସା ପାଇଁ ବ୍ୟବହାର କରାଗଲା ।

"ଅନାଥାଶ୍ରମ ସୋସାଇଟି" ପିଲାମାନଙ୍କ ପାଇଁ ଅର୍ଥ ଯୋଗାଡ଼ କରିବାସକାଶେ ଏକ ଜାତୀୟ ନିବେଦନ କରିବାକୁ ଅଭିଯାନ ଆରମ୍ଭ କଲେ । ଅନେକ ବ୍ୟକ୍ତି ଏହି ନିବେଦନ ଶୁଣି ସାହାଯ୍ୟ କରିବାକୁ ଆଗେଇ ଆସିଲେ । ସମ୍ବଳ ଯୋଗାଡ଼ ପାଇଁ ଯେତେ ପ୍ରକାର କାର୍ଯ୍ୟକ୍ରମ କରିବା ଦରକାର ସେସବୁ କରାଯାଇଥିଲା । ଦେଶସାରା ଯାତ୍ରା, ନାଚ, ଗୀତ, ବାଦ୍ୟ, କନ୍‌ସର୍ଟ, ଲଟେରୀ ଏହିପରି ନାନା ପ୍ରକାର କାର୍ଯ୍ୟକ୍ରମ କରାଯାଇ ଅନୁଦାନ ସଂଗ୍ରହ କରାଗଲା । ଏହାବାଦ୍ ଅନେକ ବଦାନ୍ୟ ବ୍ୟକ୍ତିଙ୍କଠାରୁ ବହୁ ଅର୍ଥ ମିଳୁଥିଲା । କେବଳ ଡାକ୍ତର ହର୍ଜ ଏବଂ ଏଲଥାସ୍‌ବର୍ଗ ଏକାକୀ ଅନାଥାଶ୍ରମର ନୂଆ କୋଠା ନିର୍ମାଣ ପାଇଁ ୧୧୦,୦୦ ରୁବ୍‌ଲରୁ ଅଧିକ ଅର୍ଥ ସଂଗ୍ରହ କରିଥିଲେ ।

ଏହି ସମୟରେ ଦେଶ ତରଫରୁ କୌଣସି ପ୍ରକାର ସଙ୍ଗଠିତ ତଥା ସରକାରୀ ସାହାଯ୍ୟ ଏହି ପିଲାମାନଙ୍କ ପାଇଁ ଯୋଗାଇ ଦିଆଯାଉନଥିଲା । ସୋସାଇଟି ତରଫରୁ ଏହି ଯେଉଁ ଉଦ୍ୟମ ଆରମ୍ଭ କରାଗଲା, ତାହା ଅନାଥ ପିଲାମାନଙ୍କ ସମସ୍ୟା ସମାଧାନ ଦିଗରେ ଏକ ମହତ୍ତ୍ୱପୂର୍ଣ୍ଣ ପଦକ୍ଷେପ ଥିଲା । ବଣିକ ବ୍ୟବସାୟୀମାନେ ସେତେବେଳେ ଭଲ ରୋଜଗାର କରୁଥିଲେ । ସେମାନଙ୍କୁ ଅନାଥାଶ୍ରମ ପାଇଁ ସୋସାଇଟି ତରଫରୁ କରାଯାଇଥିବା ନିବେଦନ ଚମତ୍କାର ଭାବରେ ସଫଳତା ଲାଭକରିଥିଲା ।

ଅଧିକୃତ ପୋଲାଣ୍ଡରେ ସେତେବେଳେ ସର୍ବସାଧାରଣଙ୍କ ପାଇଁ ସବୁ ପ୍ରକାର ଅନୁଷ୍ଠାନ ଏପରିକି ମ୍ୟୁନସିପାଲିଟି ଆମ୍ବୁଲାନ୍‌ସ ବ ସ୍ୱେଚ୍ଛାସେବୀ ସଙ୍ଗଠନ ଏବଂ

ସ୍ୱେଚ୍ଛାସେବୀମାନଙ୍କ ଦ୍ୱାରା ପରିଚାଳିତ ହେଉଥିଲା । ସ୍କୁଲ, ଡାକ୍ତରଖାନା ଆଦି ମଧ୍ୟ ବିଭିନ୍ନ ସ୍ୱେଚ୍ଛାସେବୀ ଦଳ ବା ସଙ୍ଗଠନମାନଙ୍କ ଦ୍ୱାରା ପରିଚାଳିତ ହେଉଥିଲା ।

ମୁଷ୍ଟିମେୟ କେତେକ ନାଗରିକଙ୍କର ଆପ୍ରାଣ ଉଦ୍ୟମ ଓ ନିଷ୍ଠା ଅନେକଙ୍କ ଭିତରେ ସ୍ୱେଚ୍ଛାସେବୀ ମନୋଭାବର ଏକ ବିଦ୍ୟୁତ ତରଙ୍ଗ ସୃଷ୍ଟି କରିଥିଲା ଏବଂ ଅନେକ ସ୍ୱେଚ୍ଛାସେବୀ ଦଳ ଦେଶର ବିଭିନ୍ନ କୋଣରେ ମୁଣ୍ଡଟେକି ଉଠିଲେ । ଏକ ନୂଆ ଯୁବପୀଢ଼ି ଦେଶାତ୍ମବୋଧ ଚିନ୍ତାଧାରାରେ ଗଢ଼ିଉଠିଲେ । ଏମାନଙ୍କ ଉଦ୍ୟମରେ ଥାକ ଥାକ ବହିରେ ଭରା ପାଠାଗାର ସୃଷ୍ଟିହେଲା । ପୋଲଣ୍ଡର ଦେଶପ୍ରେମୀ ବନ୍ଧୁ-ମାନଙ୍କ ଦ୍ୱାରା ଅନେକ ଅନାଥାଶ୍ରମ ଗଢ଼ିଉଠିଲା । ଏପରିକି ଇହୁଦୀ ଅନାଥାଶ୍ରମ-ଗୁଡ଼ିକର ଆଧୁନିକୀକରଣ ପଦକ୍ଷେପ ଓ୍ୱାର୍ସ ସହରର ଅନେକ ଇହୁଦୀଙ୍କ ମନକୁ ଦେଶାତ୍ମବୋଧ ଭାବନାରେ ଉଜ୍ଜୀବିତ କଲା ।

ରୁଷୀୟମାନଙ୍କ ଆଡ଼କୁ ଅବଦମିତ ପାରମ୍ପରିକ ନୈଷ୍ଠିକ ଭାବ ପଶ୍ଚାତ୍ ଦୃଷ୍ଟି, ରକ୍ଷଣଶୀଳ ସମ୍ପନ୍ନ ଲୋକମାନଙ୍କର ବିରୋଧଭାବ ଏହି ଅଭିଯାନକୁ ଅଧିକ ପ୍ରତିବନ୍ଧସ୍ଥା-ଶୀଳ କରାଇ ଶକ୍ତିସମ୍ପନ୍ନ କରାଇ ପାରିଥିଲା ।

ସେତେବେଳେ ସ୍ଲିସ୍କା ଗଳିରେ ବରମାନ୍ ଓ ବର୍ସୋନମାନଙ୍କ ଅଧୀନରେ ଥିବା ଡାକ୍ତରଖାନାରେ ହେନେରିକ୍ ଗୋଲଡ୍‌ସ୍ମିଥ୍ ଜଣେ ରେସିଡେଣ୍ଟ ଡାକ୍ତର ଭାବରେ କାମ କରୁଥିଲେ । ଏତିକବେଳକୁ ଡାକ୍ତରଙ୍କର ସୁନାମ ବଢ଼ିଯାଇଥିଲା । କାରଣ ଜଣେ ଲେଖକ ଭାବରେ ସମାଜରେ ସେ ପ୍ରତିଷ୍ଠା ଅର୍ଜନ କରିସାରିଥିଲେ । ସାମାଜିକ ସଂସ୍କାର ଏବଂ ସାମାଜିକ ପ୍ରଗତି ପାଇଁ ସେ ତାଙ୍କ କଲମ ଚାଲୁରଖି-ଥିବାରୁ ବିଭିନ୍ନ ଜାଗାରେ ସମ୍ମାନିତ ହେଉଥିଲେ । ଗ୍ରୀଷ୍ମାବକାଶ ଶିବିରରେ ଶ୍ରମିକ ମାନଙ୍କର ପିଲାମାନଙ୍କ ପାଇଁ ପରିଦର୍ଶକର କାମ କରିବା ଦାୟିତ୍ୱ ହାତକୁ ନେବା ସାଙ୍ଗକୁ ସେ ସେତେବେଳେ ମାଗଣା ପାଠାଗାର ଏବଂ ସମାଜମଙ୍ଗଳ ସୋସାଇଟି-ମାନଙ୍କରେ ସ୍ୱେଚ୍ଛାସେବୀର ଭୂମିକା ଗ୍ରହଣ କରୁଥିଲେ ।

ବୋଧହୁଏ ଏହି ସମୟରେ ସେ ତାଙ୍କ ଜୀବନରେ ପ୍ରକୃତ ଆଭିମୁଖ୍ୟ ଓ କାର୍ଯ୍ୟର ଦିଗ ସମ୍ପର୍କରେ ଠିକ୍ ଭାବରେ ନିଷ୍ପତ୍ତି ଗ୍ରହଣ କରିପାରିଥିଲେ । ଏବେ ଯଦି ଆମେ ଅନୁଧ୍ୟାନ କରିବା, ତେବେ ବୁଝିପାରିବା ଯେ ସେ ଏପର୍ଯ୍ୟନ୍ତ କରିଆସିଥିବା ସମସ୍ତ କାର୍ଯ୍ୟକଳାପ ତାଙ୍କ ଅବଶିଷ୍ଟ ଜୀବନର ପ୍ରକୃତ କାମ ପାଇଁ ଏକ ପ୍ରସ୍ତୁତିପର୍ବ ଥିଲା । ସାରାଜୀବନ ଏକ ଉତ୍ସର୍ଗୀକୃତ ଜୀବନ ବଞ୍ଚିବା ପାଇଁ ସେ ଠିକ୍ କରିଦେଇ ଥିଲେ । ଧନ ରୋଜଗାର ଓ ନାଁ କମେଇବା ପାଇଁ ସେ ଚେଷ୍ଟିତ ନଥିଲେ । ଅତ୍ୟା-ଚାରିତ ଅବହେଳିତମାନଙ୍କ ପାଇଁ ତାଙ୍କ ହୃଦୟ ସବୁବେଳ ପାଇଁ କୋମଳ ଥିଲା ।

ସର୍ବୋପରି କୋର୍ଜାକଙ୍କର ପିଲମାନଙ୍କ ପ୍ରତି ଥିବା ପ୍ରେମ, ସହାନୁଭୂତି ଓ ମମତା ତାଙ୍କୁ ଯେ କୌଣସି ମହତ୍ କାମର ଦାୟିତ୍ୱକୁ ମୁଣ୍ଡାଇବାକୁ ପ୍ରସ୍ତୁତକରି ରଖିଥିଲା ।

୨—ଫ୍ରାନ୍‌ସିସ୍‌କାନ୍‌ସ୍କା ଗଳିରେ ନୂଆକରି ଖୋଲିଥିବା ଅନାଥାଶ୍ରମର ସର୍ବ ଆଲୋଚନାରେ ଯୋଗଦେବାପାଇଁ ଡାକ୍ତର ଏଲିଆସ୍ ବର୍ଗଙ୍କ ସ୍ତ୍ରୀ କୋର୍ଜାକ୍‌ଙ୍କୁ ପ୍ରବର୍ତ୍ତାଇଲେ । ବିଖ୍ୟାତ ପୋଲଣ୍ଡର ଜଣେ ସୁନାମଧନ୍ୟ ଲେଖକ ତଥା କବି ମାରିଆ କୋନୋପ୍‌ନିକାଙ୍କ ନାମାନୁସାରେ ଅନାଥାଶ୍ରମଟିକୁ ସମର୍ପିତ କରାଯାଇଥିଲା । ଏହି ମହିଳାଜଣକ ପ୍ରକୃତରେ ପୋଲଣ୍ଡର ଦୁଇଟି ଜାତୀୟ ସଙ୍ଗୀତର ରଚୟିତା ।

ଯେତେବେଳେ କୋର୍ଜାକ ଅନାଥାଶ୍ରମରେ ପହଞ୍ଚିଲେ, ସେତେବେଳେ ଅନାଥାଶ୍ରମର ପିଲାମାନେ ଏହାର ଅତିଥିମାନଙ୍କୁ ଗୀତ ଗାଇ ଏବଂ କବିତା ଆବୃତ୍ତି କରି ସ୍ୱାଗତ ଜଣାଉଥିଲେ । ଡାକ୍ତର ଏକୁଟିଆ ଦ୍ୱାର ପାଖରେ ଛିଡ଼ାହୋଇ ପିଲ-ମାନଙ୍କ ଗୀତ ଓ କବିତା ଆବୃତ୍ତି ଆଦି ଶୁଣୁଥିଲେ ଏବଂ ସେ ପିଲମାନଙ୍କର କାର୍ଯ୍ୟକଳାପରେ ସମ୍ପୂର୍ଣ୍ଣ ବିହ୍ୱଳ ହୋଇଯାଇଥିଲେ । ଅବଶ୍ୟ କୋର୍ଜାକ ବହୁତ ଭାବପ୍ରବଣ ଏବଂ ସମ୍ବେଦନଶୀଳ ବ୍ୟକ୍ତି । ସେ ଗୀତ ଗାଉଥିବା ଗୋଟିଏ ସାନ ପିଲାଟିର ଲଣ୍ଡାମୁଣ୍ଡ ଦେଖି କାନ୍ଦି କାନ୍ଦି ହୋଇଗଲେ । ମାତ୍ର ଅନାଥ ପିଲମାନଙ୍କର ଶସ୍ତା ସୁନ୍ଦର, ପରିଷ୍କାର ପରିଛନ୍ନ ପୋଷାକ ଦେଖି ତାଙ୍କର ଆଖିରୁ ଆନନ୍ଦାଶ୍ରୁ ଝରି-ପଡ଼ିଲା ।

ଏ ପିଲମାନଙ୍କର ଘର ନାହିଁ । ସମସ୍ତେ ବହୁତ କଷ୍ଟ ସହିଛନ୍ତି । ଜୀବନରେ ଆରାମ କଅଣ, ବିଳାସବ୍ୟସନ କଅଣ ସେମାନେ ଜାଣି ନାହାନ୍ତି । କିନ୍ତୁ ସେମାନଙ୍କର ମୁହଁରେ ହସ ଖୁସି ଭରିରହିଥିଲା । ସେମାନେ ଭଲ ଜାଗାରେ ରହିବାକୁ ସୁଯୋଗ ପାଇଥିଲେ । ସେମାନଙ୍କର ପୋଷାକ ବହୁତ ଭଲ ଥିଲା । ସବୁଠାରୁ ବଡ଼ କଥା ହେଲା ସେମାନେ ଏକେଲା ରହୁ ନଥିଲେ । ଏ ସଂସାରରେ ସ୍ନେହ, ଶ୍ରଦ୍ଧା, ଦୟା ଯେ ରହିଛି ଏକଥା ସେମାନେ ଅନୁଭବ କରିପାରିଥିଲେ ।

କୋର୍ଜାକ ସେଇଠାରେ ଛିଡ଼ାହୋଇ ନିଜ ପାଇଁ ନିଷ୍ପତ୍ତି ଗ୍ରହଣ କଲେ । ତାଙ୍କ ହୃଦୟ ଅନାଥାଶ୍ରମଟିକୁ ଆଦରିନେଲା । ୧୯୧୧ ମସିହାରେ ସେ ୯୨-କ୍ରୋଡ଼୍-ମାଲ୍‌ନା ଗଳିର ଅନାଥାଶ୍ରମରେ ସବୁଦିନ ପାଇଁ ରହିଗଲେ ।

ସ୍ୱଇଚ୍ଛାରେ ନିଜ ଜୀବନର ପ୍ରତିଟି ମୁହୂର୍ତ୍ତକୁ ସେଇ ଗୃହହୀନ, ଅଭାଗା ପିଲମାନଙ୍କ ଜୀବନ ସହ ଯୋଡ଼ିଦେବା ପାଇଁ ନିଷ୍ପତ୍ତି ନେଇଥିଲେ । ସେ ଅନାଥ ପିଲମାନଙ୍କ ସହ ବଞ୍ଚିବା ପାଇଁ ଜୀବନର ପଥ ବାଛିନେଲେ । ଜଣେ ପ୍ରତିଷ୍ଠିତ ଡାକ୍ତର ହିସାବରେ ସେ ବିଳାସବ୍ୟସନପୂର୍ଣ୍ଣ ଆରାମଦାୟକ ଜୀବନ ବଞ୍ଚି ପାରିଥାନ୍ତେ; ମାତ୍ର ସେ ଏହି ପ୍ରକାର ଜୀବନ ବଞ୍ଚିବାର ଧାରାକୁ ପ୍ରତ୍ୟାଖ୍ୟାନ କଲେ ।

ଏତେ ବଡ଼ ଡାକ୍ତରୀ ଡିଗ୍ରୀ ଧାରଣ କରିଥିବା, ସମାଜର ଉଚ୍ଚ ପଦରେ ଅଧିଷ୍ଠିତ ଥିବା ଜଣେ ଡାକ୍ତର ବାସ୍ତବ କ୍ଷେତ୍ରରେ ଜଣେ ଭିକାରୀର ଜୀବନ ବିତାଇଲେ । ସେତେବେଳେ ଦେଶର ଅବସ୍ଥା ଓ ପରିସ୍ଥିତି ଯେପରି ଥିଲା ସେଥିରେ ତାଙ୍କର ଜୀବନ ବଞ୍ଚିବାର ପ୍ରଣାଳୀ ସତରେ ଏକ ଭିକାରୀର ଜୀବନଯାପନ ପ୍ରଣାଳୀ ସହ ସମାନ ଥିଲା ।

ବାସ୍ତବରେ ଗୋଡ଼ ହାତ ଧରି ଅନୁନୟ କରି ସେ ଭିକ୍ଷା ମାଗୁ ନଥିଲେ ସତ; ମାତ୍ର ସେ ଥିଲେ ଏକ ବୃହତ୍ତର ଉଦ୍ଦେଶ୍ୟ ସାଧନ ପାଇଁ ଜଣେ ଭିନ୍ନଧରଣର ଭିକ୍ଷୁକ ।

ବିଳାସବ୍ୟସନରେ ବଞ୍ଚୁଥିବା ଲୋକମାନେ କିପରି ଭାବରେ ସେମାନଙ୍କର ଧନ ସମ୍ପତ୍ତି ଖର୍ଚ୍ଚ କରିବା ଆବଶ୍ୟକ ସେ ସମ୍ପର୍କରେ କୋର୍ସାକ୍ ନିଜର ଜୋର ମନ୍ତବ୍ୟ ପ୍ରଦାନ କରୁଥିଲେ । ଗୋଟିଏ ସମ୍ବାଦପତ୍ରରେ ଦାନ କରୁଥିବା ବ୍ୟକ୍ତିମାନଙ୍କର ନାଁ ଯେଉଁଭଳି ଭାବରେ ପ୍ରକାଶ ପାଉଥିଲା, ସେ ତାକୁ ଚୁଟୁକିଲେଇ କରି ସମାଲୋଚନା କରୁଥିଲେ । ଅସହାୟ ଦରିଦ୍ରମାନଙ୍କ ପାଖରେ ସେମାନଙ୍କର ଅତ୍ୟାବଶ୍ୟକ ଗୁରୁତ୍ୱପୂର୍ଣ ମେଣ୍ଟାଇବା ପାଇଁ ଅର୍ଥର ଅଭାବ ଥିଲାବେଳେ ବିଳାସବ୍ୟସନ ଆଦିରେ କରାଯାଉଥିବା ଖର୍ଚ୍ଚ ଆଦିକୁ ସେ ତୀବ୍ର ନିନ୍ଦା କରୁଥିଲେ । ଭଲ ଭଲ ପୋଷାକ, ସିଗାରେଟ୍, ମଦ୍ୟପାନ, ତାସ ଖେଳ ଆଦିରେ ଏତେ ପରିମାଣରେ ଅର୍ଥ ଖର୍ଚ୍ଚକୁ ଗରିବ ପିଲାମାନଙ୍କ ଜୀବନ ସହ ତୁଳନା କରି ସେ ବହୁତ ମନଦୁଃଖ କରୁଥିଲେ ଏବଂ ପ୍ରତିକ୍ରିୟା ପ୍ରକାଶ କରୁଥିଲେ । ଅନୁଦାନ କମ୍ ମିଳୁଥିଲା ବୋଲି ଯେତିକି ସେ ବିରକ୍ତ ହେଉନଥିଲେ, ତା'ଠାରୁ ଅଧିକ ବିରକ୍ତ ହେଉଥିଲେ, ଯେଉଁ ଉପାୟରେ ଅନୁଦାନକୁ ଖର୍ଚ୍ଚ କରାଯାଉଥିଲା । ସାମାଜିକ ରୀତି ଅନୁସାରେ ବାପା ମାଆମାନେ ମନୋରମ ପୋଷାକ ପରିହିତ ସେମାନଙ୍କ ପିଲାଙ୍କ ହାତରେ ପଙ୍ଗୁ ଭିକ୍ଷୁକକୁ ଦାନ କରିବାକୁ ଦେଉଥିଲେ । ରବିବାର ସକାଳ ସମୟଟିକୁ ଏହି ଦାନ କାର୍ଯ୍ୟପାଇଁ ବଛା-ଯାଇଥିଲା ଏବଂ ଚର୍ଚ୍ଚ ପାଖରେ ଏ ଦିନ ବହୁସଂଖ୍ୟାରେ ଲୋକ ଦାନ କରିବାପାଇଁ ରୁଣ୍ଡ ହେଉଥିଲେ ।

ଅନାଥାଶ୍ରମ ପାଇଁ ଆସୁଥିବା ଅନୁଦାନଗୁଡ଼ିକ ଯେଉଁଭଳି ଭାବରେ ସଂଗ୍ରହ କରାଯାଉଥିଲା, ସେଥିରେ କୋର୍ସାକ ଆଦୌ ଖୁସିନଥିଲେ । ମାତ୍ର ଏହା ଏପରି ଏକ କଣ୍ଟା ଥିଲା, ଯାହାକୁ ସେ ନୀରବରେ ସହିଯାଉଥିଲେ । କାରଣ ଜୀବନଧାରା ଏହିଭଳି ଅନୁଦାନ ଉପରେ ନିର୍ଭର କରି ତାଙ୍କୁ ବଞ୍ଚିବାକୁ ହୋଇଥିଲା ।

ପ୍ରଥମେ ଅନାଥାଶ୍ରମ 'ହୋମ୍'ରେ ଏବଂ ପରେ 'ଆମ ଘର' ଅନାଥାଶ୍ରମରେ, ଯାହାକି ମହିଳା କମିଟି ଦ୍ୱାରା ପରିଚାଳିତ ହେଉଥିଲା, ସେ ଫାଦର୍ ବୌଦୋଇନ୍

ଏବଂ ଆଲବର୍ଟଙ୍କ ପରି ଭିକ୍ଷା ମାଗିବାକୁ ବାଧ୍ୟ ହୋଇଥିଲେ । ଫାଦର ବୌଦୋଇନ୍ ଏବଂ ଆଲବର୍ଟ ଦୁଇଜଣ ରୋମାନ୍ କାଥଲିକ୍ ସାଧୁ । ସେମାନେ ପୋଲାଣ୍ଡରେ ଅନେକ ଯୁବଛାତ୍ରାବାସ ଓ ଅନାଥାଶ୍ରମ ଚଳାଉଥିଲେ । ଅନାଥାଶ୍ରମଗୁଡ଼ିକ ପାଇଁ ମିଳୁଥିବା ଅନୁଦାନର ପ୍ରଣାଳୀକୁ ସମାଲୋଚନା କରିବାକୁ କୋର୍ଚାକ ପଛାଉ-ନଥିଲେ ।

"ପିଲାଟିକୁ ଭଲ ପାଇବ କିପରି" ବହିରେ କୌଣସି ପ୍ରକାର ବ୍ୟବସ୍ଥା ନଥାଇ ଅନୁଦାନ ଗ୍ରହଣ ଉପରେ ସେ ଭାଷଣ ଯୁକ୍ତି କରିଥିଲେ । ଅନୁଦାନକୁ ବାଦ୍‌ଦେଲେ ଅନ୍ୟ କୌଣସି ନିୟମିତ ରୋଜଗାର ଉପରେ ନିର୍ଭର କରିହେଉନଥିଲା । ଯେଉଁ ଅନୁଦାନ ମିଳୁଥିଲା ତାହାର କିଛି ଠିକ୍ ଠିକଣା ରହୁନଥିଲା । କେତେବେଳେ ଆବଶ୍ୟକ ମୁତାବକ ମିଳିଯାଉଥିଲା ତ ଆଉ କେତେବେଳେ କମିଯାଉଥିଲା । ଏସବୁ ଅସୁବିଧା ଯୋଗୁଁ କୋର୍ଚାକ ଅନାଥାଶ୍ରମ ବିକାଶ ତଥା ସଗଠନ ପାଇଁ ନିଜସ୍ୱ ସୃଜନଶୀଳତାକୁ ପ୍ରୟୋଗ କରିବାକୁ ସମର୍ଥ ହୋଇପାରୁ-ନଥିଲେ । ପରେ ସ୍ୱାଧୀନ ପୋଲାଣ୍ଡରେ ସେ ପ୍ରତି ମାସରେ ନିୟମିତ ସରକାରୀ ଅନୁଦାନ ପାଇଁ ଦାବିକଲେ । ଏହାଦ୍ୱାରା କିଅଣ କିପରି ଲାଭ ହେବ ସେ ବିଷୟରେ ସ୍ୱେଚ୍ଛାସେବୀମାନଙ୍କୁ ବୁଝାଇଲେ ।

ସରକାରୀ ଅନୁଦାନ ମିଳିଲାପରେ ବି ଅନାଥାଶ୍ରମର ଆହୁରି ଅନେକ ଖର୍ଚ୍ଚ ପାଇଁ ଘରୋଇ ଅନୁଦାନ ଉପରେ ନିର୍ଭର କରିବାକୁ ପଡୁଥିଲା । ପ୍ରକୃତରେ ଘରୋଇ ଭାବରେ ପରିଚାଳିତ ହେଉଥିବା ଅନେକ ଅନାଥାଶ୍ରମଗୁଡ଼ିକର ଅବସ୍ଥା ସରକାରୀ ଅନୁଦାନପ୍ରାପ୍ତ ଅନାଥାଶ୍ରମଗୁଡ଼ିକଠାରୁ ଭଲ ଥିଲା । ଘରୋଇ ପରିଚାଳିତ ଅନାଥାଶ୍ରମ-ଗୁଡ଼ିକ ଅନ୍ତତଃପକ୍ଷେ ଭଲ କୋଠାରେ ଅବସ୍ଥାପିତ ହୋଇପାରିଥିଲା । ବାସ୍ତବରେ ଅନେକ ଧନୀଲୋକ ଏଭଳି ଘରମାନ ଦାନକରିଦେଇଥିଲେ । ସରକାରୀ ପୃଷ୍ଠ-ପୋଷକତାରେ ପରିଚାଳିତ ହେଉଥିବା ଅନାଥାଶ୍ରମଗୁଡ଼ିକ ଅପେକ୍ଷା ଏସବୁ ଅନାଥାଶ୍ରମରେ ଖାଦ୍ୟ, ସମ୍ବଳ ଆଦି ଅନେକ ଭଲ ଅବସ୍ଥାରେ ଥିଲେ ଏବଂ ପରିଚାଳନା ବ୍ୟବସ୍ଥା ଉତ୍ତମ ଥିଲା; କିନ୍ତୁ, କୋର୍ଚାକ ଘରୋଇ ଅନାଥାଶ୍ରମରେ ବଦାନ୍ୟତା ଆଦି ଆଳରେ ପ୍ରଭାବ ପକାଉଥିବା ଖିଆଲି ମନୋଭାବ ଅପେକ୍ଷା ସୁଶୃଙ୍ଖଳା, କଡ଼ା ବ୍ୟବସ୍ଥାକୁ ଅଧିକ ପସନ୍ଦ କରୁଥିଲେ ।

ସୁଖର କଥା ଯେ, ଅନାଥାଶ୍ରମ 'ହୋମ୍'ର ପରିସ୍ଥିତି ବହୁତ ଭଲ ଥିଲା । କ୍ରୋଗ୍-ମାଲନା ଗଳିର ଏକ ବଡ଼ କୋଠାରେ ଅନାଥାଶ୍ରମ ଚାଲୁଥିଲା । କୋର୍ଚାକଙ୍କ ଯତ୍ନ ଓ ପରିଦର୍ଶନ ଦ୍ୱାରା ଅନାଥାଶ୍ରମର ଅନ୍ତେବାସୀ, ଅନାଥ ପିଲାମାନେ ଗଭୀର ଭାବରେ ଉପକୃତ ହେଉଥିଲେ । କୋର୍ଚାକଙ୍କ ସାଙ୍ଗକୁ ଜୁଟିଥିଲେ ଷ୍ଟିଫାନିଆ ଓ୍ୱିଲଜିନ୍‌ସ୍କା । ତାଙ୍କ ପରିଚାଳନା ଦକ୍ଷତା ଏବଂ ବୁଦ୍ଧି ତଥା ଅନୁଭୂତି ଅନେକ ସାହାଯ୍ୟ କରିଥିଲା ।

କୋର୍ଜାକ ପିଲମାନଙ୍କ ପାଇଁ ଯେଭଳି ଚିନ୍ତାଧାରାରେ ଚିନ୍ତାକରୁଥିଲେ ଓ୍ୱିଲିକଜିନସ୍କା ସେହିଭଳି ଭାବରେ ଚିନ୍ତା କରୁଥିଲେ ଏବଂ ବାସ୍ତବ କ୍ଷେତ୍ରରେ କାର୍ଯ୍ୟକାରୀ କରାଉଥିଲେ ।

କିନ୍ତୁ ବର୍ଷ କୋର୍ଜାକ ଅନାଥାଶ୍ରମ ପାଇଁ ଭିକ୍ଷୁକର ଭୂମିକା ଗ୍ରହଣ କଲେ ମାତ୍ର ପରେ ପରେ ଅନାଥାଶ୍ରମର ଉପକାରୀ ବନ୍ଧୁଙ୍କ ପାରେ ଆଉ ହାତପତାଇ ଛୁଡ଼ା-ହେଲେ ନାହିଁ । ଏହାଦ୍ୱାରା ତାଙ୍କୁ ପ୍ରଥମେ ପ୍ରଥମେ କୌଣସି ପ୍ରକାର ଅଡ଼ୁଆ ଲାଗିନଥିଲା । 'ହୋମ୍' ଅନାଥାଶ୍ରମରେ ସେ ପିଲାମାନଙ୍କ ଗହଣରେ ରହିଲେ । ମାତ୍ର ଅନାଥାଶ୍ରମର ଉପକାରୀ ବ୍ୟକ୍ତିମାନଙ୍କ ସହ ସମ୍ପର୍କ ରଖିବାକୁ ପସନ୍ଦ କଲେନାହିଁ କିମ୍ବା ବଦାନ୍ୟ ବ୍ୟକ୍ତିମାନଙ୍କ ପାଖରେ ଗୁହାରି ଜଣାଇବା ପାଇଁ ଇଚ୍ଛା କଲେନାହିଁ । ପନ୍ଦରଦିନକୁ ଥରେ ଅନାଥାଶ୍ରମକୁ ଦେଖଣାହାରୀମାନେ ବୁଲିଆସିବାକୁ ସେ ମନାକରିଦେଲେ । ଅବଶ୍ୟ ଏହି ବଦାନ୍ୟ ଦେଖଣାହାରୀମାନେ ଆଗରୁ ଧରି-ନେଇଥିଲେ ଯେ ଏମିତ ଯେସବୁ ବୁଲିଆସିବାପାଇଁ ସେମାନଙ୍କର ସବୁପ୍ରକାର ଅଧିକାର ରହିଛି । କାରଣ ସେମାନେ ଅନାଥାଶ୍ରମକୁ ଅର୍ଥ ଦାନ କରୁଛନ୍ତି ବା ଦାନ କରିବାର କ୍ଷମତା ସେମାନଙ୍କର ରହିଛି ।

ଆତ୍ମଖ୍ୟାତି ପାଇଁ ସେ ସଂପୂର୍ଣ୍ଣ ଉଦାସୀନ ଥିଲେ । କୋର୍ଜାକ ଗୋଟିଏ ନୀଳ ଆପ୍ରନ୍ ପିନ୍ଧୁଥିଲେ, ପରେ ନୀଳ ବଦଳରେ ସବୁଜ ରଙ୍ଗର ଆପ୍ରନ ପରିଧାନ କଲେ । ଏହି ଆପ୍ରନ ପିନ୍ଧି ସେ ଦେଖଣାହାରୀମାନଙ୍କୁ ଅନାଥାଶ୍ରମର ବାରଣ୍ଡାରେ ବହୁତ ନମ୍ରତାର ସହିତ ବୁଲାଇଆଣୁଥିଲେ । ଶ୍ରେଣୀ ଗୃହଗୁଡ଼ିକୁ ଦେଖାଉଥିଲେ, ବାରଣ୍ଡାରେ ଗଲାବେଳେ ବେଳେବେଳେ ପିଲାଙ୍କ ସଙ୍ଗରେ ମିଶାଉଥିଲେ ଏବଂ ସାଧାରଣ ଭାବରେ ସେ ବାହାରକୁ ଧରାଯା ଦେଉଥିଲେ ଯେ ସେ ଅନାଥାଶ୍ରମର ନିର୍ଦ୍ଦେଶକ ନୁହନ୍ତି ବରଂ ଦ୍ୱାରପାଳ ବା ପରିଚାରକ ଅଟନ୍ତି । ଏ ସମ୍ବନ୍ଧରେ ସେ ଏକ ମଜା ଘଟଣା କହନ୍ତି—ଥରେ ଏମିତ ବୁଲାଉଥିଲାବେଳେ ଜଣେ ଧନୀଲୋକ କୋର୍ଜାକଙ୍କ ହାତରେ ତାଙ୍କର ପର ଢଆର କୋଟ୍ଟି ଧରାଇଦେଇ ଯାଇଥିଲେ । ବିଦାୟ ନେଲାବେଳେ ପୁରସ୍କାର ସ୍ୱରୂପ କୋର୍ଜାକଙ୍କ ହାତରେ ଗୋଟିଏ ମୁଦ୍ରା ଗୁଞ୍ଜିଦେଇଗଲେ । ଏମିତ ଛୋଟ ଛୋଟ ଅନେକ ମଜାଳିଆ ଘଟଣାରେ କୋର୍ଜାକଙ୍କୁ ବହୁତ ଖୁସି ଲାଗୁଥିଲା ।

କୋର୍ଜାକ୍ ନିଜ ରାଜ୍ୟରେ ଥିଲେ ଜଣେ ଶାନ୍ତ, ଭଦ୍ର, ନିର୍ବିକାର କ୍ଷମା-ପୁରୁଷ ।

ଅନେକ ବଦାନ୍ୟ, ଦୟାଳୁ ବ୍ୟକ୍ତି କୋର୍ଜାକ୍‌ଙ୍କର ଉତ୍ସର୍ଗୀକୃତ କାର୍ଯ୍ୟରେ ନିଜକୁ ସମ୍ପୃକ୍ତ କରିବାପାଇଁ ଅର୍ଥ ଦାନ କରୁଥିଲେ ଏବଂ ବହୁତ ମୋଟା ଅଙ୍କରେ ମଧ୍ୟ ଦାନ କରୁଥିଲେ ।

ଯେତେବେଳେ ଅନାଥାଶ୍ରମ 'ହୋମ୍' ପାଇଁ କୋଠା ତିଆରି ଚାଲିଥିଲା, ଡାକ୍ତର କୋର୍ଯାକ୍ ସେତେବେଳେ ତାଙ୍କର ଗୁପ୍ତଚରମାନଙ୍କୁ ଘରଆଡ଼େ ପଠାଇ ଦେଇଥିଲେ । ସେମାନେ ହାତରେ ଟୋପି ଧରି ଭଦ୍ରଭାବରେ ଦସ୍ୟାଳୁ, ଉପକାରୀ ଧନୀକ ଗୋଷ୍ଠୀର ଲୋକମାନଙ୍କୁ କିଛି ଇଟା, ଗୋଡ଼ି, ସିମେଣ୍ଟ, କାଠ ଆଦି ଦାନ କରିବା ପାଇଁ ପ୍ରବର୍ତ୍ତାଇଥିଲେ । ଯେହେତୁ କୋର୍ଯାକ୍‌ଙ୍କ ପ୍ରେରଣାରେ ସେମାନେ ଏ କାମ କରୁଥିଲେ ସେମାନଙ୍କ ଭିତରେ ସାମାନ୍ୟ ଖେଦ ବା ଭୟ ନଥିଲା ।

କୋର୍ଯାକ୍‌ଙ୍କ କଥାରେ ଅନେକ ଚମତ୍କାରୀ ପ୍ରଭାବ ରହୁଥିଲା । ଅନେକ ବିରୋଧ, କଳହ, ଅବୁଝାମଣାକୁ ସେ ସହଜରେ ମୀମାଂସା କରିଦେଇପାରୁଥିଲେ । ଧନୀକ, ବଣିକ, ଶିଳ୍ପପତି, ବ୍ୟବସାୟୀ ଆଦିଙ୍କୁ କୋର୍ଯାକ୍‌ଙ୍କ ଟାଣୁଆ ବ୍ୟବହାର ବାଧୁଥିଲା ତଥାପି ସେମାନେ ବାରମ୍ବାର ଅନାଥାଶ୍ରମକୁ ସହୃଦୟତାର ସହ ଦାନ କରିବାକୁ ପଛାଉନଥିଲେ । କୋର୍ଯାକ୍ ଅନୁଦାନ ଯୋଗାଡ଼ କରିବାରେ ବଡ଼ ଜିଦ୍‌ଖୋର ତଥା ସିଦ୍ଧହସ୍ତ ଥିଲେ ।

ଥରେ ଦଳେ ସହୃଦୟ ଉପକାରୀ ବନ୍ଧୁ "କୁନି ଗୋଲାପ" (Little Rose) ଗ୍ରୀଷ୍ମ ଅବକାଶ କେନ୍ଦ୍ରରେ ପହଞ୍ଚିଲେ । ସେମାନେ ପିଲାଙ୍କ ପାଇଁ ମିଠା, କମଳା, କେକ୍ ଆଦି ଆଣିଥିଲେ । ଅନାଥାଶ୍ରମ 'ହୋମ୍'ର ନିୟମ ଅନୁସାରେ ଯାହାକିଛି ପିଲାମାନଙ୍କୁ ଦିଆଯିବ ସମସ୍ତଙ୍କ ପାଇଁ ସମାନଭାବରେ ଦିଆଯିବ । ତେଣୁ ଜଣେ ଜଣେ ପିଲାକୁ ମିଠା ଆଦି ବାଣ୍ଟିବାକୁ ନିରୁତ୍ସାହିତ କରାହୋଇଥିଲା ।

କୋର୍ଯାକ୍‌ଙ୍କ ପ୍ରତି ପିଲାଙ୍କ ଭକ୍ତି, ଶ୍ରଦ୍ଧା, ମମତା ଏତେ ବଢ଼ିଯାଇଥିଲା ଯେ ଅନାଥାଶ୍ରମର ପରିଚାଳନା କ୍ଷେତ୍ରରେ ପିଲାମାନେ କୋର୍ଯାକ୍‌ଙ୍କ ସହ ଘନିଷ୍ଠ ଭାବରେ ସହଯୋଗ କରୁଥିଲେ । ସେମାନଙ୍କ ହାତକୁ କିଏ ମିଠାଟିଏ ବା ଆଉ କଅଣ ଭଲ ଜିନିଷଟିଏ ଖାଇବାକୁ ଦେଲେ, ସେମାନେ ଏକୁଟିଆ ଖାଉନଥିଲେ । ସେମାନେ ତାକୁ ସବୁ ପିଲାଙ୍କ ଭିତରେ ବାଣ୍ଟିଦିଆଯିବା ପାଇଁ ସେ ସବୁକୁ ସାଇତି ରଖିଦେଉଥିଲେ । ବାହାରୁ ଆସୁଥିବା ଲୋକମାନେ ପିଲାମାନେ ଖାଦ୍ୟଜିନିଷକୁ ଖାଉନଥିବା ଦେଖି ବିସ୍ମିତ ହୋଇପଡ଼ୁଥିଲେ ଏବଂ ଅନାଥାଶ୍ରମର କୌଣସି ବନ୍ଧୁ ସେମାନଙ୍କୁ ନିୟମଟି ବୁଝାଇ ଦେଉଥିଲେ ।

'ହୋମ୍'ରେ ବିଶୃଙ୍ଖଳତା କୋର୍ଯାକଙ୍କ ନିୟମ ଭିତରୁ ଗୋଟିଏ ମୁଖ୍ୟ ନିୟମ ଥିଲା । ମାନବିକତା ଦୃଷ୍ଟିରୁ କୋର୍ଯାକ ନିୟମଗୁଡ଼ିକୁ ଆବଶ୍ୟକତା ଅନୁସାରେ ହୁଗୁଳା କରିଦେଉଥିଲେ । କୋର୍ଯାକଙ୍କ ମନ, ହୃଦୟ, ଆତ୍ମା ସବୁକିଛି ପିଲାଙ୍କ ସାଙ୍ଗରେ ହିଁ ରହିଥିଲା । ଥରେ ପାଲେଷ୍ଟାଇନ୍ ଗଲାବେଳେ ସେ ଗୋଟିଏ କୁନିଝିଅର ତଥାକଥିତ ଖରାପ ବ୍ୟବହାରକୁ ପ୍ରଶଂସା କରି ଉତ୍ସାହିତ କରୁଥିଲେ । କୁନି ଝିଅଟି ଜଣେ

ଭଦ୍ରବ୍ୟକ୍ତିଙ୍କ ଆଡ଼କୁ ଜଭ ବାହାର କରି ଅପମାନିତ କରୁଥିଲି । ସାଧାରଣ ଲୋକେ ଧରିନେଇଥିଲେ ଏହା ଡାକ୍ତରଙ୍କର ଏକ ପ୍ରକାର ବିକୃତ ସ୍ୱଭାବ ।

ଅନାଥାଶ୍ରମରେ ବେଳେବେଳେ ଅନେକ ଦେଖଣାହାରି ଧାଡ଼ି ଲଗେଇଥାନ୍ତି । ତାଙ୍କ ମନଇଚ୍ଛା ସମସ୍ତ ବାଟରୁ ହାଜର ହୋଇଯାଆନ୍ତି । ସେମାନଙ୍କର ଉପସ୍ଥିତ ଅନାଥାଶ୍ରମର କାର୍ଯ୍ୟସୂଚୀରେ ବ୍ୟାଘାତ ଘଟାଏ । ଅନାଥାଶ୍ରମର କର୍ମଗୁରୁମାନେ ମିଛଟାରେ ହଇରାଣ ହୁଅନ୍ତି । କାରଣ ଏମିତରେ ତ ସେମାନଙ୍କର ଅନେକ କାମ ଥାଏ । କୋର୍ଯାକ ସ୍ପଷ୍ଟଭାବରେ ଜଣାଇଦେଲେ ଯେ ଆଉ କୌଣସି ବାହାର ଲୋକଙ୍କୁ ଅନାଥାଶ୍ରମ ପରିଦର୍ଶନ ପାଇଁ ଅନୁମତି ମିଳିବ ନାହିଁ । ସେ ଅନାଥାଶ୍ରମର ଅନ୍ତେବାସୀ, କର୍ମଗୁରୁଙ୍କ ପ୍ରତି ସଂପୂର୍ଣ୍ଣ ଅନୁଗତ ଥିଲେ ।

ଯେଉଁ ଉପକାରୀ ଦୟାଳୁ ବନ୍ଧୁମାନେ ଅନାଥାଶ୍ରମକୁ ହୃଦୟର ସହ ଦାନ କରୁଥିଲେ, ସେମାନଙ୍କ ପ୍ରତି ବି କୋର୍ଯାକଙ୍କର କୌଣସି ଖୋସାମତିଆ ଭାବ ପ୍ରକାଶ ପାଉନଥିଲା । କୋର୍ଯାକଙ୍କର ନୈତିକ ବଳ ଯଥେଷ୍ଟ ଥିବାରୁ ସେ ଏପରି ନିର୍ଭୀକ ଆଚରଣ କରିପାରୁଥିଲେ । 'ହୋମ୍'ରେ ସେ ଯେତେପ୍ରକାର ନୀତିନିୟମ ପ୍ରଣୟନ କରୁଥିଲେ, ସେସବୁ ଏକ ନିର୍ଦ୍ଦିଷ୍ଟ ମହତ ଉଦ୍ଦେଶ୍ୟ ସାଧନ ପାଇଁ କରାଯାଇଥିଲା । ତାହା ହେଉଛି ପିଲାମାନଙ୍କର ମଙ୍ଗଳବିଧାନ । ପରିସ୍ଥିତିକୁ ଅଧିକ ଗଣ୍ଡଗୋଳିଆ କରିବାଭଳି, ଏପରିକି ପରିଦର୍ଶକମାନଙ୍କ ଉଦ୍ଦେଶ୍ୟରେ ବି ସେ କୌଣସି ନିୟମ ପ୍ରଣୟନ କରୁନଥିଲେ ।

କୋର୍ଯାକ ବାହାରକୁ ଗମ୍ଭୀର ଜଣାପଡ଼ୁଥିଲେ ବି ତାଙ୍କ ଭିତରଟା କୋମଳ ଥିଲା । ସେ ତାଙ୍କର ବ୍ୟବହାର ଓ ବ୍ୟକ୍ତିତ୍ୱ ବଳରେ ଅନେକ ଲୋକଙ୍କୁ ପ୍ରଭାବିତ କରି ରଖିପାରୁଥିଲେ । ତାଙ୍କ ସ୍ୱପ୍ନ ଓ ଆଦର୍ଶରେ ଅନୁପ୍ରାଣିତ ହୋଇ ଆପେ ଆପେ ଅନେକ ଶିଷ୍ୟ ଓ କର୍ମୀ ସୃଷ୍ଟି ହୋଇପାରିଥିଲେ ।

କୋର୍ଯାକ ଏଭଳି ସହକର୍ମୀମାନଙ୍କୁ ବାଛୁଥିଲେ, ଯେଉଁମାନଙ୍କ ଭିତରେ ଜୀବନକୁ ପାଣିଛଡ଼େଇ ଲକ୍ଷ୍ୟସାଧନ ଦିଗରେ ଆଗେଇବାକୁ ପ୍ରସ୍ତୁତ ହେବାର ସମ୍ଭାବନା ରହିଥିଲା । ତାଙ୍କ ପ୍ରଭାବରେ ଅନେକ ନିଃସ୍ୱାର୍ଥପର, ଆଦର୍ଶବାଦୀ କର୍ମୀ, ଯେଉଁମାନଙ୍କ ଭିତରେ ସୃଜନଶୀଳତା ଭରି ରହିଥିଲା ତଥା ପାର୍ଥିବ ଜଗତର ଆକର୍ଷଣରେ ନଷ୍ଟ ହେବାର ପ୍ରବୃତ୍ତି ନଥିଲା, ସେମାନେ ପ୍ରଭାବିତ ହୋଇ କୋର୍ଯାକଙ୍କର ଚତୁଃପାର୍ଶ୍ୱରେ ସବୁବେଳେ ରୁଣ୍ଡ ହେଉଥିଲେ । ଏଭଳି ସହକର୍ମୀମାନଙ୍କ ଆନ୍ତରିକ ସହଯୋଗ ତଥା ଯେଉଁମାନେ କୋର୍ଯାକଙ୍କ ଉପରେ ଅଖଣ୍ଡ ବିଶ୍ୱାସ ରଖି ନିଃସର୍ତ୍ତ ଦାନ କରୁଥିଲେ, ସେମାନଙ୍କ ଉପରେ ନିର୍ଭରକରି କୋର୍ଯାକ ଅନୁଷ୍ଠାନମାନ ଗଢ଼ିତୋଳିଲେ ଯାହା ସାଧାରଣ ଅନାଥାଶ୍ରମ ଅପେକ୍ଷା ବହୁଗୁଣରେ

ଉର୍ଦ୍ଧ୍ୱରେ ଥିଲା । ସେଗୁଡ଼ିକ ପ୍ରକୃତରେ ଥିଲେ ମାନବ ପରୀକ୍ଷାଗାର । ଏହି ପରୀକ୍ଷାଗାରଗୁଡ଼ିକ ମଧ୍ୟରେ ସେ ପରୀକ୍ଷା ନିରୀକ୍ଷା କରିଥିଲେ, ପର୍ଯ୍ୟବେକ୍ଷଣ କରିଥିଲେ ଓ ସିଦ୍ଧାନ୍ତରେ ଉପନୀତ ହୋଇଥିଲେ । ତାଙ୍କର ଯତ୍ନ, ସ୍ନେହ ମମତା ନପାଇଥିଲେ ଯେଉଁ ପିଲମାନେ ନଷ୍ଟ ହୋଇଯାଇଥାନ୍ତେ ବା ଚିରଦିନ ପାଇଁ ବିଲୀନ ହୋଇଯାଇଥାନ୍ତେ ସେହି ପିଲାମାନଙ୍କର ପୁନଃସ୍ଥାନ ଉପରି କରାଯାଇପାରିବ, ସେମାନଙ୍କ ଭିତରେ ଜୀବନପାଇଁ ଏକ ଆସ୍ଥା ଓ ଭରସା ଉପରି ଯୋଗାଇହେବ, ସେକଥା କୋର୍ଯାକ ତାଙ୍କର ଏହି ମାନବ ପରୀକ୍ଷାଗାର ଭିତରେ କାମ କରୁ କରୁ ଶିକ୍ଷାଲାଭ କରିଥିଲେ ।

ପରିଶେଷରେ ଅନୁଦାନର ଉପକାରିତା ସେ ହୃଦୟଙ୍ଗମ କରିଥିଲେ । ବଦାନ୍ୟ ବ୍ୟକ୍ତିମାନଙ୍କର ନିଃସର୍ତ୍ତ ଅନୁଦାନ ପାଇଁ ସେ ତାଙ୍କର ଅନେକ ଅଭିଳଷିତ ସ୍ୱପ୍ନଗୁଡ଼ିକୁ ସାକାର କରିବାରେ ସଫଳ ହୋଇ ପାରିଥିଲେ । ତାଙ୍କର ଚିର ଅନୁସନ୍ଧିତ୍ସୁ ମନ ଜୀବନର ନୂତନ ମାର୍ଗମାନ ଉନ୍ମୋଚନ କରିବାରେ ସକ୍ଷମ ହୋଇଥିଲା ।

## (୧୦) ଅନାଥାଶ୍ରମ-ହୋମ୍

ଓଲସ୍କା ଥିଲା ଓ୍ୱାର୍ସୋ ସହରର ସବୁଠାରୁ ଲମ୍ବାଗଳି । ଏଠିକାର ବସ୍ତି ଅଞ୍ଚଳ ସବୁଠାରୁ ଦୁଃସ୍ଥ ଅବସ୍ଥାରେ ଥିଲା । କଳକାରଖାନାର ଶ୍ରମିକମାନେ ଏଠାରେ ରହୁଥିଲେ ।

ସହରର ଟ୍ରାମ୍‌ଗୁଡ଼ିକର ଶେଷ ଷ୍ଟେସନ୍ ଥିଲା ଓଲସ୍କା । ଏଠାରୁ ପ୍ରଥମେ ବାମ ପାଖକୁ ବୁଲିବାକୁ ହେଉଥିଲା । ତା'ପରେ ପୁଣି ଆଉଥରେ ବାମପାଖକୁ ବୁଲିପଡ଼ିଲେ ଯାଇ ପଡ଼ୁଥିଲା ଅନାଥାଶ୍ରମ । କଳକାରଖାନାର ଠନ୍‌ଠାନ୍ ଶବ୍ଦ, ଚିମ୍‌ନିର ଧୂଆଁ ଏବଂ ଶ୍ରମିକମାନଙ୍କର କୋଳାହଳ ଭିତରେ ଅନାଥାଶ୍ରମଟି ବାରି ହୋଇଯାଉଥିଲା । ମରୁଭୂମିରେ ଏକ ମରୁଦ୍ୟାନ ସଦୃଶ ଅନାଥାଶ୍ରମଟି ଚତୁଃପାର୍ଶ୍ୱର ଶୋଭା ବର୍ଦ୍ଧନ କରୁଥିଲା । ଅନାଥାଶ୍ରମର କାନ୍ଥଗୁଡ଼ିକ ଚୂନରେ ଧଉଳା ଯାଇଥିଲା, ଦିଆଯାଇଥିବା ରଙ୍ଗ ଖୁବ ପରିଷ୍କାର ଓ ଉଜ୍ଜ୍ୱଳ ଦିଶୁଥିଲା । ଝରକାଗୁଡ଼ିକ ଚକ୍‌ଚକ୍ ଦିଶୁଥିଲେ । ଅନାଥାଶ୍ରମର ଅଗଣାକୁ ବଡ଼ ଫାଟକ ଦେଇ ପଶିବାକୁ ହେଉଥିଲା । ଅଗଣାଟି ବହୁତ ପ୍ରଶସ୍ତ ଥିଲା ଓ ତା ଉପରେ ସୁନ୍ଦର ଭାବରେ ଗୋଡ଼ି ବିଛାଯାଇଥିଲା ।

ଛୁଟି ସମୟରେ ଅନାଥାଶ୍ରମର ଅଗଣାରେ ପିଲାମାନେ ଭର୍ତ୍ତି ହୋଇଯାଉଥିଲେ । ବିଭିନ୍ନ ରୁଚି ଅନୁସାରେ ସେମାନେ ଖେଳ ବାଛିନେଉଥିଲେ ଏବଂ ଅଗଣାଟି ହର୍ଷ-

ହିଲ୍ଲାସରେ ନାଚଉଠୁଥିଲା । ପିଲାମାନେ ଦୌଡ଼ୁଥିଲେ, ଗୋଇଠାମାରି ଫୁଟବଲ ଖେଳୁଥିଲେ, ହାତରେ ବଲ୍ ଫିଙ୍ଗୁଥିଲେ । ଶୀତଦିନେ ସ୍ଲେଜ୍ ଗାଡ଼ି ଉପରେ ଚଢ଼ୁଥିଲେ, ସ୍ଲେଜ୍‌ଗୁଡ଼ିକୁ ବରଫ ଉପରେ ଟାଣୁଥିଲେ । ଏମିତି କିଛି ବର୍ଷ ପରେ ଅଗଣାରେ ଗୁଡ଼ିଏ ଠେକୁଆଙ୍କୁ ଠେକୁଆ ଘରଡ଼ ଭିତରେ ରଖାଗଲା । କୋର୍ଯାକଙ୍କର ଜଣେ ବନ୍ଧୁ ପିଟର କାଲେସ୍କି ସିଏକ ଅନାଥାଶ୍ରମରେ ପରିଚାଳକ ଭାବରେ କାମ କରୁଥିଲେ, ଠେକୁଆଗୁଡ଼ିକ ତାଙ୍କର ଥିଲା । ଜର୍ମାନମାନେ ପରେ ଯେତେବେଳେ ଅନାଥାଶ୍ରମରୁ ସମସ୍ତଙ୍କୁ ବାହାର କରିଦେଲେ ପିଟର କାଲେସ୍କି ଏକାକୀ ସେଠାରେ ରହି ଅନାଥାଶ୍ରମର କୋଠାଟିର ରକ୍ଷଣାବେକ୍ଷଣ ଦାୟିତ୍ୱ ବହନ କରିଥିଲେ ।

'ହୋମ୍'ର ଆଗପାଖରେ ଫାଟକ ଆଡ଼କୁ ଦେଖାଇ ଅନାଥାଶ୍ରମ ସ୍ଥାପିତ ହୋଇଥିବା ତାରିଖ ଓ ବର୍ଷ ଲେଖାହୋଇଥିଲା । ଅନାଥାଶ୍ରମଟି ୧୯୧୧ ମସିହାରେ ସ୍ଥାପନ କରାଯାଇଥିଲା । ସେହିବର୍ଷ ଶରତ ଋତୁରେ ୨-ଫ୍ରାନ୍‌ସିସ୍‌କାନ୍‌ସ୍କା ଗଳିରୁ ୨୦୦ ଅନାଥ ପିଲାଙ୍କୁ ପ୍ରଥମକରି ଏହି 'ହୋମ୍'କୁ ସ୍ଥାନାନ୍ତରିତ କରାଯାଇଥିଲା । ଜାନୁସ୍ କୋର୍ଯାକ୍‌ଙ୍କ ଯୋଜନା ଅନୁସାରେ ଶିଳ୍ପୀ ହେନ୍‌ରିକ୍ ଷ୍ଟିଫେନ୍‌ମାନ୍ 'ହୋମ୍'ର ନିର୍ମାଣ କାର୍ଯ୍ୟ ସଂପାଦନ କରିଥିଲେ । ପରେ କୋର୍ଯାକ ନିଜ ଯୋଜନାରେ ଅସନ୍ତୋଷ ପ୍ରକାଶ କରିଥିଲେ ।

କୋର୍ଯାକ ଅଭିଯୋଗ କରୁଥିଲେ ଯେ ଉପରେ ତିଆରି ହୋଇଥିବା ଦୁଇ-ମହଲା ବିଶିଷ୍ଟ ବଡ଼ ହଲ୍‌ଟି ଉଭୟ ଭୋଜନାଳୟ ଏବଂ ଅବସର ବିନୋଦନ ପାଇଁ ବ୍ୟବହୃତ ହେଉଛି । ଚାରିପାଖରେ ସୁସଜ୍ଜିତ ଗ୍ୟାଲେରୀ ରହିଛି । ମନେହେଉଛି ସତେଯେପରି ଏହା ଅନାଥମାନଙ୍କ ଉଦ୍ଦେଶ୍ୟରେ ନହୋଇ ଅପରାଧୀମାନଙ୍କୁ ଜଗି ବାଟକୁ ଆଣିବା ଉଦ୍ଦେଶ୍ୟରେ ତିଆରି ହୋଇଛି । ସେ କହୁଥିଲେ ଯଦି ଜଣେ ବାଲ୍‌କୋନୀରେ ଚାଲୁଥିବ ପିଲାମାନେ କୌଣସି ଗୁପ୍ତଦ୍ରବ୍ୟକୁ ଚୋରି କରୁଥିବାରୁ ସେ ଗୋଇନ୍ଦାଗିରି କରୁଛନ୍ତି ବୋଲି ମନେହେବ । ସେ ଭାବୁଥିଲେ ଏହାଦ୍ୱାରା ପିଲାମାନଙ୍କ ଉପରେ ବିଶ୍ୱାସ ଓ ଭରସା ନଥିଲା ଭଳି ପ୍ରତୀତ ହେଉଛି ।

କୋର୍ଯାକ୍ ଡରମିଟୋରୀଗୁଡ଼ିକୁ 'ବାରକ୍‌ରୁମ୍' ଭଳି ବର୍ଣ୍ଣନା କରି କହୁଥିଲେ ପିଲାଟିଏ କଅଣ ସବୁ କରୁଛି ତାହା ସଦାକୁ ଖୋଲା ଦେଖାଯାଉଥିଲା । ପିଲାଟିଏ ତା'ର ନିଜର ବୋଲି କିଛି ଲୁଚାଇ ରଖିପାରୁନଥିଲା । ତେଣୁ ଅତି ବ୍ୟସ୍ତ ହୋଇ ସେ କଅଣ ତାକୁ ଲୁଚାଇ ରଖିପାରିବ ସେଥିପାଇଁ ଚିନ୍ତାରେ ପଡ଼ିଯାଉଥିଲା । ଏଭଳି ଭାବରେ ଜୀବନ ବିତାଇବା ଦ୍ୱାରା ପିଲାମାନଙ୍କ ଭିତରେ ସାଂପ୍ରଦାୟିକ ମନୋଭାବର ଉଦ୍ଭବ ହେବ ବୋଲି କୋର୍ଯାକ୍ ଅନୁଭବ କରୁଥିଲେ । ଅଭଳି ଏକ ଅବସ୍ଥାରେ

ସର୍ବସାଧାରଣଙ୍କ ଆଗରେ ପିଲାମାନେ ବାସ କରିବା ଦ୍ୱାରା ସେମାନଙ୍କୁ ଆଶ୍ରୟ ମିଳିବ ନାହିଁ କି ଶାନ୍ତି ମିଳିବ ନାହିଁ । ସେମାନେ ନିଜ ଭିତରେ ଏକୁଟିଆ ଅନୁଭବ କରିବେ । ପ୍ରତ୍ୟେକ ପିଲାପାଇଁ କଅଣ ଆବଶ୍ୟକ, ସେ ସମ୍ବନ୍ଧରେ କୋର୍ଚାକ୍ ଲେଖିଛନ୍ତି—"ଯଦି ଭବିଷ୍ୟତରେ କେବେ ବି ସମ୍ଭାବନା ଦେଖାଯାଏ, ତେବେ ଉପର ମହଲାଟିକୁ ମୁଁ ହୋଟେଲ ଭଳି କରିବା ପାଇଁ ଯୁକ୍ତି ବାଢ଼ିବି ଯେଉଁଥିରେ, ମଝିରେ ଗୋଟିଏ ବାରଣ୍ଡା ଥିବ ଏବଂ ଏହାର ଉଭୟ ପାଖରେ ପ୍ରତି ପିଲାପାଇଁ ଛୋଟ ଛୋଟ ଅଲଗା ଅଲଗା ଘର ଥିବ ।"

କୋର୍ଚାକ୍ ଯେତେବେଳେ ଭୁଲଗୁଡ଼ିକୁ ଚିହ୍ନଟ କଲେ, ସେତେବେଳକୁ ଆଉ ସେଗୁଡ଼ିକୁ ତାଙ୍କ କଥା ଅନୁସାରେ ଠିକ୍ କରିବା ପାଇଁ କୌଣସି ଉପାୟ ନଥିଲା । ତଥାପି ସେ ସମୟରେ ପୋଲାଣ୍ଡ ବା ବାହାରେ ବିଦେଶରେ ଥିବା ଯେକୌଣସି ଆଧୁନିକ ଅନାଥାଶ୍ରମ ବା ଏହିପରି ଅନୁଷ୍ଠାନ ପାଇଁ ଉଦ୍ଦିଷ୍ଟ କୋଠାମାନଙ୍କ ଭିତରେ ଏହା ଥିଲା ସର୍ବୋତ୍ତମ । ଅନାଥାଶ୍ରମଟି ଖୁବ୍ ମନୋରମ ଲାଗୁଥିଲା ।

ପିଲାମାନଙ୍କ ପାଇଁ ନିଶ୍ଚିତ ଭାବରେ ଅନାଥାଶ୍ରମଟି ଅତି ପ୍ରିୟ ହୋଇପାରିଥିଲା । ଜଣେ ଅନାଥାଶ୍ରମର ଫାଟକ ପାଖରେ ଛିଡ଼ାହୋଇ ପିଲାମାନଙ୍କ ଆନନ୍ଦ ଉଲ୍ଲାସର କଳରବକୁ ଅନାୟାସରେ ଶୁଣିପାରୁଥିଲା ଯାହାକି ପିଲାମାନଙ୍କର ଖୁସିକୁ ନିଶ୍ଚିତ ଭାବରେ ସୂଚେଇ ଦେଇପାରୁଥିଲା । ଲମ୍ବା ଟେବୁଲର ପ୍ରତି କୋଣରେ ପିଲାମାନଙ୍କର ପିଆନୋ ବାଦନ, ପରିବେଶଟିକୁ ଅତ୍ୟନ୍ତ ମନୋଜ୍ଞ କରି ରଖୁଥିଲା । ଅନାଥାଶ୍ରମକୁ ନୂଆକରି ଆସୁଥିବା ପିଲାଙ୍କର ମୁଣ୍ଡ ଲଣ୍ଡା କରିଦିଆଯାଉଥିଲା । କାରଣ ଏହି ଅବହେଳିତ ପିଲାମାନଙ୍କ ମୁଣ୍ଡବାଳରେ ଉକୁଣି ଭର୍ତ୍ତିହୋଇ ବସା ବାନ୍ଧିଥିଲେ । ଅନ୍ୟମାନଙ୍କର କେଶ ବିନ୍ୟାସ ଅତ୍ୟନ୍ତ ସୁନ୍ଦର ଭାବରେ କରାଯାଉଥିଲା । କାହାର କେଶ କୁଞ୍ଚୁକୁଞ୍ଚିଆ ଥିଲା ତ ଆଉ କାହାର ସିଧା କଳଙ୍କ ରଙ୍ଗର । ଆଉ କାହାର ଥିଲା ତମ୍ବାଳିଆ ରଙ୍ଗର କେଶ ।

ଯେହେତୁ ପିଲାମାନେ ଖେଳ କସରତ କାମଦାମରେ ପୁରା ବ୍ୟସ୍ତ ରହୁଥିଲେ, ସେମାନେ ବାହାରୁ ଆସୁଥିବା ପରିଦର୍ଶକମାନଙ୍କ ଆଡ଼କୁ ଆଦୌ ନଜର ରଖୁ-ନଥିଲେ । କେବଳ ଷ୍ଟିଫାର୍ଓ୍ୱିଲିନ୍ସ୍କା ଦିଦୀ ଯେତେବେଳେ ପାଖକୁ ଆସି ଧୀରେ ଧୀରେ ତାଙ୍କୁ ଅନାଥାଶ୍ରମର କୌଣସି କାମରେ ସାହାଯ୍ୟ ମାଗୁଥିଲେ, ସେତେ-ବେଳେ ଯାଇ ପିଲାମାନଙ୍କ ଦୃଷ୍ଟି ଅନ୍ୟଆଡ଼କୁ ଫେରୁଥିଲା । ଡାକ୍ତର କୋର୍ଚାକ୍ ତାଙ୍କର କୋଟ୍ ବା ସବୁଜ ଆପ୍ରନ ପିନ୍ଧି ଯେତେବେଳେ ହାଜର ହେଉଥିଲେ, ସେତେବେଳେ ବି ପିଲାମାନେ ନୀରବ ଧ୍ୟାନମଗ୍ନ । କାମରୁ ଅନ୍ୟମନସ୍କ ହେଉନଥିଲେ । ପିଲାମାନଙ୍କର ଏହି ନୀରବତା ଡାକ୍ତରଙ୍କ ପ୍ରତି ଭୟ ଯୋଗୁଁ ହେଉନଥିଲା । ମାତ୍ର

ଏହାଥିଲା ତାଙ୍କ ପ୍ରତି ସେମାନଙ୍କର ସ୍ନେହଭରା ସମ୍ମାନ । ସବୁ ପିଲାଙ୍କ ଆଡ଼କୁ ଅନାଇ ସେ ଠିକେ ସ୍ମିତହାସ ହସିଦେଉଥିଲେ ଏବଂ ପ୍ରତ୍ୟେକ ପିଲା ଏ କଥାକୁ ଆଶା କରି ରହୁଥିଲେ ଯେ ଡାକ୍ତର କୋର୍ଚ୍ଚାକ କିମ୍ବା ଷ୍ଟିଫାହାଙ୍କ ତା ଆଡ଼କୁ ଠିକେ ଅଲଗା ଭାବରେ ଅନାଇ ଉତ୍ସାହିତ କରିବେ । ଅନାଥାଶ୍ରମର ବୃହତ୍ ହଲ୍‌ଟିରେ ଅନାଥାଶ୍ରମର ଦୈନନ୍ଦିନ ଜୀବନ କେନ୍ଦ୍ରୀଭୂତ ହୋଇ ରହୁଥିଲା ।

ଉପର ମିଟ୍ଟୋଷ୍ଟଗୁଡ଼ିକ ଅନାଥାଶ୍ରମ କୋଠାର ଗୋଟିଏ ପାଖକୁ ରହିଥିଲେ । ଉପରମିଟ୍ଟୋଷ୍ଟର ସମସ୍ତ ଶେଯ ଏତେ ଧଳା ଥିଲା ଯେ ସେ ସବୁ ଚକ୍‌ଚକ୍ ଦିଶୁଥିଲେ । ଶେଯ ପାଖରେ ଲକରଗୁଡ଼ିକ ଏତେ ବଢ଼ିଆ ଭାବରେ ସଜାଇ ରଖାଯାଇଥିଲା ଯେ ସେଗୁଡ଼ିକ ଝଲସି ଉଠୁଥିଲେ । ପୁଅପିଲାଙ୍କ ଉପରମିଟ୍ଟୋଷ୍ଟ ମଝିରେ ବଗିଚାର ଭଳି ଗୋଟିଏ କାଚଘର ଥିଲା । ପ୍ରଥମେ ପ୍ରଥମେ କୋର୍ଚ୍ଚାକ ଏହି ଘରେ ରହୁଥିଲେ ।

ଅନାଥାଶ୍ରମର ତଳ ମହଲାରେ ରୋଷେଇଘର, ଲଣ୍ଡ୍ରୀ, ଗାଧୁଆଘର ଏବଂ ଜିନିଷପତ୍ର ରଖିବା ପାଇଁ ଅଲଗା ଅଲଗା ଘର ଥିଲା । ବୁଟ୍ ଓ ଜୋତା ସଫା କରିବା ପାଇଁ ମଧ୍ୟ ଅଲଗା କରି ଆଉ ଗୋଟିଏ ବଖରା ଥିଲା । ତଳ ମହଲାରେ ଅନାଥାଶ୍ରମର ଜଗୁଆଳି, ରୋଷେୟା, ପରିଚାରକ ଆଦି ରହୁଥିଲେ । ଯେଉଁ ସବୁ କାମ ଏହି ତିନି ଜଣଙ୍କ ଦ୍ୱାରା କରାଯାଇ ନଥିଲା; ଯଥା—ଧୂଳି ଝାଡ଼ିବା, ସଫାକରିବା, ଓଲେଇବା, ଧୋଇବା ଆଦି କାମ ପିଲାମାନେ ପାଳିକରି କରୁଥିଲେ । ପିଲାମାନେ ଏସବୁ କାମ ଆଗ୍ରହର ସହ ବହୁତ ଭଲଭାବରେ କରୁଥିଲେ ।

୧୯୧୨ ମସିହା ଜୁଲାଇ ମାସ ସୁଦ୍ଧା ଅନାଥାଶ୍ରମ ନିର୍ମାଣ କାମ ଶେଷ କରିବା ପାଇଁ ସମୟଧାର୍ଯ୍ୟ କରାଯାଇଥିଲା । ମାତ୍ର ଶରତ ଋତୁ ପର୍ଯ୍ୟନ୍ତ ସବୁକାମ ଶେଷ ହୋଇ ପାରିନଥିଲା । ଅନାଥାଶ୍ରମକୁ ଲାଗିଥିବା ଘରଗୁଡ଼ିକୁ ବି ଅଧିକାର କରିବା ପାଇଁ ଅନୁମତି ଦିଆଯାଇ ପାରିନଥିଲା । ଗ୍ରୀଷ୍ମ ଶିବିରରୁ ପିଲାମାନେ ସତେଜ ହୋଇ ଆନନ୍ଦ ଉତ୍ସାହ ଧରି ଫେରିଥିଲେ । ସେମାନେ ଅନାଥାଶ୍ରମର ଅଗଣା ଭିତରେ କାମକରୁଥିବା ଶ୍ରମିକମାନଙ୍କ ଗହଣକୁ ପଶିଗଲେ । ଶ୍ରମିକମାନେ ସେତେବେଳେ ସଫାସୁତୁରା କାମରେ ଲାଗିଥିଲେ । ଯେତେଜଣ ପିଲା ରହିବେ ବୋଲି ଆଗରୁ ଯୋଜନା କରାଯାଇଥିଲା, ତା ଅପେକ୍ଷା ୫୦ ଜଣ ଅଧିକ ଥିଲେ । ସମସ୍ତେ ଫ୍ରାନ୍‌ସିସ୍‌କାନ୍‌ସ୍କା ଗଳିରେ ଥିବା ମାତାମଠ (nursery)ରୁ ଆସିଥିଲେ । ସବୁ ମିଶି ଥିଲେ ୨୦୦ ଜଣ ପିଲା ।

ଅନାଥାଶ୍ରମରେ ଆଉ ଠିକଏ ବି ଜାଗା ବଳିଲା ନାହିଁ । ନୂଆ ଅନୁଷ୍ଠାନକୁ କିପରି ଠିକ୍ ଭାବରେ ସଙ୍ଗଠିତ ଏବଂ ଶୃଙ୍ଖଳାର ସହ ପରିଚାଳନା କରିବାକୁ ହେବ ତାହା ହେଲା ଚିନ୍ତାର ବିଷୟ । କୋର୍ଚ୍ଚାକ ଏବଂ ତାଙ୍କ ସହଯୋଗୀମାନେ

ସେମାନଙ୍କର ସମସ୍ତ ବୁଦ୍ଧି ଖଟାଇ ଅନାଥାଶ୍ରମର ସମସ୍ତ ଜାଗାକୁ କପରି ଭାବରେ ବ୍ୟବହାର କରିପାରିବେ ସେଥିପାଇଁ ପ୍ରାଣପଣେ ଚେଷ୍ଟା କରିଥିଲେ ।

ଏହି ଅନାଥାଶ୍ରମରେ ପ୍ରତିବର୍ଷ ଅବଶ୍ୟ କିଛି ନା କିଛି ପରିବର୍ତ୍ତନ ଲକ୍ଷ୍ୟ କରା-ଯାଇଥିଲା । ପୁରୁଣା ପିଲାମାନେ ବିଦାୟ ନେଉଥିଲେ, ନୂଆ ପିଲାମାନେ ପ୍ରବେଶ କରୁଥିଲେ । ୧୪ ବର୍ଷ ପରେ କୌଣସି ପିଲା ଅନାଥାଶ୍ରମରେ ରହିବେ ନାହିଁ ବୋଲି ନିଷ୍ପତ୍ତି ନିଆଯାଇଥିଲା । ସେମାନଙ୍କୁ କାମଧନ୍ଦା ଶିଖିବା ପାଇଁ, କଳକାରଖାନା, ବ୍ୟବସାୟିକ ଫାର୍ମ ଏବଂ ବ୍ୟକ୍ତିବିଶେଷଙ୍କ ପାଖରେ ରଖାଇ ଦିଆଯାଉଥିଲା । କେତେକ ପିଲା କୋର୍ଯାକଙ୍କ ଗ୍ରୀଷ୍ମ ଶିବିର ବା ଫାର୍ମକୁ ଯାଉଥିଲେ ।

ଡାକ୍ତରବାବୁ ଅନାଥାଶ୍ରମକୁ ଆସୁଥିବା ସବୁ ନୂଆ ପିଲାଙ୍କୁ ସ୍ୱାଗତ କରୁଥିଲେ । ତାଙ୍କର ସ୍ୱତନ୍ତ୍ର ଧରଣର ବ୍ୟବହାର ଓ କୌଶଳରେ ସବୁ ପିଲା ଅଳ୍ପ ସମୟ ଭିତରେ ଅନାଥାଶ୍ରମକୁ ନିଜର ବୋଲି ଆଦରି ନେଉଥିଲେ । ଅନାଥାଶ୍ରମକୁ ପ୍ରବେଶ କରିବା ପ୍ରତି ପିଲାର ଜୀବନ ପାଇଁ ଏକ ମହତ୍ତ୍ୱପୂର୍ଣ୍ଣ ଘଟଣା ।

ପିଲାଟିଏ ପ୍ରଥମେ ଯେତେବେଳେ ଅନାଥାଶ୍ରମକୁ ଆସୁଥିଲା ସେ ପିନ୍ଧିଥିବା ସମସ୍ତ ପୋଷାକ କାଢ଼ି ଦିଆଯାଉଥିଲା । କାରଣ ସେମାନେ ଯାହା ସବୁ ପିନ୍ଧିଆସନ୍ତି ସେସବୁ ଛିଣ୍ଡା କନ୍ତରା, ମଇଳା ଦୁର୍ଗନ୍ଧପୂର୍ଣ୍ଣ ଥାଏ । ସେ ସବୁକୁ ପୋଡ଼ିଦିଆଯାଉଥିଲା ଏବଂ ପିଲାଙ୍କୁ ନୂଆ ପୋଷାକ ପିନ୍ଧାଇ ଦିଆଯାଉଥିଲା । ଅଧିକାଂଶ ପିଲା ସିଧା ରାସ୍ତାରୁ ଧରା ହୋଇ ଅନାଥାଶ୍ରମକୁ ଆସିଥିଲେ । ସେମାନେ ଏତେ ଅବହେଳିତ ଓ ଭୋକିଲା ଥିଲେ ଯେ ସେମାନଙ୍କ ପାଇଁ ଡାକ୍ତରୀ ପରୀକ୍ଷା ଅତ୍ୟନ୍ତ ଜରୁରୀ ଥିଲା । ଏହି ପରିସ୍ଥିତିରେ କୋର୍ଯାକ ନିଜ ଦୟାର୍ଦ୍ର ହୃଦୟ ଏବଂ ଡାକ୍ତରୀ ତାଲିମ ଯୋଗୁଁ ଜଣେ ଆଦର୍ଶ ମନିଷର ଭୂମିକା ନେଇଥିଲେ ।

ପ୍ରଥମେ ପ୍ରଥମେ ପିଲାମାନେ ମୋଟା ଚଷମାତଳୁ କୋର୍ଯାକଙ୍କର ଗମ୍ଭୀର ଚାହାଣି ଦେଖି ଶଙ୍କି ଯାଉଥିଲେ । ମାତ୍ର ଅତି ଅଳ୍ପ ସମୟ ଭିତରେ ସେମାନେ ଡାକ୍ତରଙ୍କର ସ୍ନେହ ଓ ପ୍ରେମଭରା ସମ୍ବେଦନଶୀଳ ହୃଦୟର ସ୍ପର୍ଶକୁ ହୃଦୟଙ୍ଗମ କରିପାରୁଥିଲେ । ଜୀବନରେ ଆଉ କେଉଁଠି ଏପରି ଜଣେ ଆଶ୍ରୟଦାତା ଯେ ମିଳିପାରିବେ ଏକଥା ସେମାନେ ସ୍ୱପ୍ନରେ ବି ଭାବିପାରୁନଥିଲେ । ସେମାନଙ୍କର ଡରଭୟ, ଦୁଶ୍ଚିନ୍ତା ସବୁକିଛି କୁଆଡ଼େ ଉଭେଇଯାଉଥିଲା ।

କୋର୍ଯାକ ତାଙ୍କ ଚଷମା ତଥା ଅଣ୍ଟା କପାଳଟିକୁ ପିଲାର ଛାତି ବା ପିଠିରେ ଲଗାଇ ଶ୍ୱାସନିଶ୍ୱାର ସ୍ପନ୍ଦନ ଶୁଣୁଥିଲେ ଏବଂ ଥଟ୍ଟା କରି କହୁଥିଲେ, "ମୁଁ ଭଲ ଭାବରେ ଜାଣିଛି ତୁ ସବୁଠାରୁ ବଡ଼ ଦୁଷ୍ଟ ଅଟୁ ।" ପିଲାଟି ପ୍ରତିବାଦ କରି କହେ, "ଭଗବାନଙ୍କ ରାଣ, ମୁଁ ଆଦୌ ଦୁଷ୍ଟ ନୁହେଁ ।"

କୋର୍ଯାକ ହସି ହସି ଓ ଷ୍ଟିଫାଦଦୀଙ୍କ ଆଡ଼କୁ ମୁହଁ ବୁଲାଇ ଉତ୍ତର ଦଅନ୍ତି, "ହଉ ହେଲା, କିନ୍ତୁ ତୋ ଆଖି ଭଳିଆ ଆଖି ଯେଉଁମାନଙ୍କର ସେମାନେ ତ ସାଧାରଣତଃ ଦୁଷ୍ଟ ହୋଇଥାନ୍ତି ।"

"ସତରେ ତୁ ତ ପୁରାପୁରି ଝଚଡାହାଏ ।" ଏପରି କହି ଉଭୟ କୋର୍ଯାକ ଓ ଷ୍ଟିଫାଦଦୀ ପିଲାଟିର ମନରୁ ସବୁ ପ୍ରକାର ଭୟ ଦୂର କରିଦଅନ୍ତି ଓ ଠୋ ଠୋ ହୋଇ ହସନ୍ତି ।

କୋର୍ଯାକ ବେଳେବେଳେ ଯେଉଁ ପିଲାଟିକୁ ପଚାରୁଥିଲେ, "ତୁମେ ତୃତୀୟ ପାହାଚରୁ ତଳକୁ ଡେଇଁ ଶିଖିଛ ? କିମ୍ବା ତଳୁ ଏକାଥରକେ ତୃତୀୟ ପାହାଚକୁ ଡେଇଁପାରିବ ?" ଏଭଳି ପ୍ରଶ୍ନ ପଚାରିବା ମାଧ୍ୟମରେ ସେ ପିଲାଟିର ଶାରୀରିକ ସକ୍ଷିପ୍ରତା ସମ୍ବନ୍ଧରେ ଜାଣିବାକୁ ପ୍ରୟାସ କରୁଥିଲେ । ତା'ପରେ ସେ ପଚାରୁଥିଲେ, "ତୁମେ ଶିଡ଼ି ଚଢ଼ିପାରିବ ?"

ଏକଥା ନିଶ୍ଚିତ ଯେ ପିଲାମାନେ ଶିଡ଼ି ଚଢ଼ିପାରିବେ ଏବଂ ଅନାଥାଶ୍ରମରେ ପିଲାଙ୍କ ପାଇଁ ଶିଡ଼ିଟିଏ ଥିଲା । ଯେତେବେଳେ ଶିଡ଼ିରେ ଚଢ଼ି ପିଲାମାନଙ୍କର ଏକପ୍ରକାର ବ୍ୟାୟାମ ହୋଇଯାଉଥିଲା କୋର୍ଯାକ୍ ସେତେବେଳେ ସେମାନେ ସୁସ୍ଥରେ ଅଛନ୍ତି କି ନାହାନ୍ତି ଜାଣିବା ସକାଶେ ସେମାନଙ୍କର ହୃତ୍‌ସ୍ପନ୍ଦନ ଶୁଣୁଥିଲେ ।

ଏହି ପ୍ରାରମ୍ଭିକ ପ୍ରଶ୍ନ ଉତ୍ତର ଭିତରେ ପିଲାମନରେ କୋର୍ଯାକ୍‌ଙ୍କ ପ୍ରତି ବିଶ୍ୱାସ ଓ ଭରସା ସୃଷ୍ଟିହେଉଥିଲା ଏବଂ ସେ ସାଙ୍ଗହୋଇ ଯାଉଥିଲେ, ଯାହାକି ପରେ ପ୍ରେମର ବନ୍ଧନରେ ଯୋଡ଼ି ହୋଇଯାଉଥିଲା ।

ଏତେଦିନ ଧରି ସାମାଜିକ ସୁଖସୁବିଧାରୁ ବଞ୍ଚିତ ଓ ଅବହେଳିତ ନୂଆ ଶିକ୍ଷାର୍ଥୀ କୁନି ପିଲାଟି ଯେତେବେଳେ ଲଣ୍ଡିତ ମୁଣ୍ଡରେ ପରିଷ୍କାର ଭାବରେ ଗାଧୁଆପାଧୁଆ ସାରି ସଫା ପୋଷାକ ପିନ୍ଧି ରାତିରେ ସୁନ୍ଦର ସୁସଜ୍ଜିତ ଖଟିଆଟିରେ ଶୋଇବାକୁ ଯାଏ, ତା'ପାଇଁ ଏହା ସ୍ୱର୍ଗସୁଖ ଆଣିଦିଏ । କାରଣ ଜୀବନରେ କେବେ ବି ସେ ଏପରି ସୁଯୋଗ ପାଇନଥିଲା ବା ପାଇବାର ସ୍ୱପ୍ନ ବି ଦେଖିନଥିଲା । ପୁଣି ସେ ଶୋଉଥିବା ଖଟଟି ଯେ ତା' ନିଜର ଏକଥା ସେ କେବେ ବି କଳ୍ପନା କରି ପାରିନଥିଲା । ଏହା ପିଲାଟି ପାଇଁ ଅତ୍ୟନ୍ତ ଚମତ୍କାର ଏକ ମୁହୂର୍ତ୍ତ ଯେ ସେ ନିଜ ଶେଯରେ ଶୋଇବାର ସୁଯୋଗ ଲାଭକରିଛି । କେହି ଭାଇ ବା ଭଉଣୀ ସେଥିରେ ଭାଗ ବସାଇବାକୁ ମାଡ଼ଗୋଳ କରୁନାହାନ୍ତି । ଉଜ୍ଜ୍ୱଳ ଆଲୋକ, ସଜ୍ଜିତ ପରିଷ୍କାର ପରିଚ୍ଛନ୍ନ ଆନନ୍ଦମୁଖର ଡର୍ମିଟୋରୀ ଭିତରେ ଅଜଣା ମାତ୍ର ଅତି ଆତ୍ମୀୟ ମନେହେଉଥିବା ଏତେ ପିଲାଙ୍କ ସାଙ୍ଗରେ ସେ ଶୋଇବାକୁ ଯାଉଛି । ଏହି ପରିବେଶଟି ପିଲାପାଇଁ ପରୀ ରାଜ୍ୟରେ ବିଚରଣ କଲାଭଳି ମନେହେଉଥିଲା ।

ସକାଳେ ଘଣ୍ଟାର ଠନ୍ ଠନ୍ ଶବ୍ଦ ଶୁଣି ପିଲମାନେ ଶଯ୍ୟାତ୍ୟାଗ କରୁଥିଲେ । ପ୍ରଥମ ସକାଳର ସୂର୍ଯ୍ୟକିରଣର ଉଷ୍ମତା ଭିତରେ ପ୍ରଥମକରି ଏପରି ଆରାମଦାୟକ ଶୟନ ଲାଭ କରିଥିବା କୁନି ଝିଅଟି ନିଜକୁ ନିଜେ ପ୍ରଶ୍ନ କରେ, ସତରେ କଅଣ ସବୁଦିନ ସେ ଏହି ଶେଯରେ ଏକାକୀ ଶୋଇପାରିବ ? ପିଲମାନଙ୍କୁ କେହି ଜଣେ ପାଖରେ ଆଶ୍ୱାସନା ଦେଇ କହିଦେଉଥାଏ, "ହଁ, ଏ ଶେଯଟି ତୁମର, ତୁମେ ସବୁଦିନ ଏକୁଟିଆ ଏଥିରେ ଶୋଇପାରିବ ।" ସବୁବେଳେ ଷ୍ଟିଫାଦଦୀଙ୍କ ସୁନେଲି ହସ କୋମଳ ଚୁମ୍ବନ ଓ କୋଳ ଦ୍ୱାରା ପିଲିଙ୍କ ସଂଶୟୀ ମନ ଭିତରେ ପଶିଯାଉଥିଲି ପ୍ରେମ ଓ ସ୍ନେହର ଅମୃତ ।

ପିଲମାନେ ଶେଯରୁ ଉଠି ମୁହଁହାତ ଧୋଇବା ପାଇଁ ଧାଇଁଯାଉଥିଲେ । ତା'ପରେ ସେମାନେ ନିଜକୁ ସେ ଦିନଟି ପାଇଁ ପ୍ରସ୍ତୁତ କରିନେଉଥିଲେ । ଜଣେ ଶିକ୍ଷକଙ୍କ ତତ୍ତ୍ୱାବଧାନରେ ଅତି ମାନବିକ ବାତାବରଣ ଭିତରେ ସେମାନେ ସବୁକାର୍ଯ୍ୟ ସମ୍ପାଦନ କରୁଥିଲେ । ଜୀବନରେ ପ୍ରଥମଥର ପାଇଁ ବୋଧହୁଏ ସେମାନେ ମାନବୋଚିତ ପରିଷ୍କାର ଭାଷା ଶୁଣିପାରିଲେ ସେମାନଙ୍କୁ ମଣିଷପିଲିଭଳି ସମ୍ବୋଧନ କରାଗଲି । ସେମାନଙ୍କୁ ଗୀତ, ସ୍ୱରତାଳ, ବ୍ୟାକରଣ ଆଦି ଶିକ୍ଷା ଦିଆଗଲି । କୌଣସି ପ୍ରକାର ବାଧାବିଘ୍ନ, ମାନସିକ ଅଶାନ୍ତି ନଥାଇ ସେମାନେ ଅନାଥାଶ୍ରମରେ ଅତି ଆରାମ ଓ ଖୁସିରେ ଜୀବନ ବଞ୍ଚିବାକୁ ଲାଗିଲେ । ଏହି ନୂଆ ବ୍ୟବସ୍ଥାଟି ସେମାନଙ୍କର ଅତି ପ୍ରିୟ ହୋଇଉଠିଲି । ସେମାନେ ସେମାନଙ୍କର ପୂର୍ବସ୍ମୃତି ଏବଂ ଦୁଃଖ ନିର୍ଯାତନାକୁ ସଂପୂର୍ଣ୍ଣ ଭାବରେ ପାସୋରି ପକାଇଲେ । ଅନାଥାଶ୍ରମଟି କୋର୍ଜାକଙ୍କର ଦୀର୍ଘଦିନର ଉତ୍ସର୍ଗୀକୃତ ଜୀବନର ଏକ ଫଳ ସଦୃଶ ମୁଣ୍ଡ ଟେକିଉଠିଲି । ଅନାଥାଶ୍ରମର ବାତାବରଣ ପରିଷ୍କାର ପରିଚ୍ଛନ୍ନ ଏବଂ ଅତ୍ୟନ୍ତ ସ୍ୱଚ୍ଛ ଥିଲି । ପିଲମାନଙ୍କ ଭିତରେ ତଥା ସେମାନଙ୍କ ଦାୟିତ୍ୱରେ ଥିବା ବ୍ୟକ୍ତିଙ୍କ ମଧ୍ୟରେ ସ୍ନେହ, ଶ୍ରଦ୍ଧା, ବିଶ୍ୱାସ ଓ ଭରସାର ଏକ ସୁବର୍ଣ୍ଣ ସେତୁ ବିରାଜମାନ କଲି । ଯେଉଁ ପିଲମାନେ ସେମାନଙ୍କ ବାପା, ମାଆ ତଥା ସମାଜର ଅନ୍ୟମାନଙ୍କ ଆଗରେ ଅତ୍ୟନ୍ତ ନଗଣ୍ୟ ଥିଲେ, ସେମାନେ କୋର୍ଜାକଙ୍କ ସାଙ୍ଗରେ ରହି ଏକ ବିରଳ ତୃପ୍ତି ଆସ୍ୱାଦନ କରି-ପାରୁଥିଲେ ।

ଅନାଥାଶ୍ରମର ଶୃଙ୍ଖଳା ରକ୍ଷାପାଇଁ ପିଲମାନଙ୍କୁ କୌଣସି ପ୍ରକାର ସମରାଭ୍ୟାସ ଭଳି ବ୍ୟାୟାମ କରିବାକୁ କୁହାଯାଉନଥିଲି । ସେମାନଙ୍କ ଉପରେ କୌଣସି ପ୍ରକାର ବଳ ପ୍ରୟୋଗ କରାଯାଉନଥିଲି ବା କୌଣସି ପ୍ରକାର ଗ୍ରୁପ ଦ୍ୱାରା ପିଲିର ବ୍ୟକ୍ତିତ୍ୱ ଗଢ଼ିବାର ପ୍ରୟାସ କରାଯାଉନଥିଲି । ଅନାଥାଶ୍ରମକୁ ଆସିଲିବେଳେ ପିଲମାନେ ସାଙ୍ଗରେ ଆଣିଥିବା କଣ୍ଢେଇ ତଥା ଅନ୍ୟାନ୍ୟ ଜିନିଷକୁ ସେମାନଙ୍କ ନିଜ ପାଖରେ

ରଖିବାକୁ ଅନୁମତି ଦିଆଯାଉଥିଲା ଏବଂ ସେମାନଙ୍କ ବ୍ୟକ୍ତିଗତ ରୁଚି ଓ ଅରୁଚିକୁ ସମ୍ମାନ ଦିଆଯାଉଥିଲା ।

ପିଲମାନେ ବ୍ୟବହାର କରୁଥିବା ସବୁ ଜିନିଷ ପରିଷ୍କାର ପରିଚ୍ଛନ୍ନ ଥିଲା ତଥା ରୁଚିକର ଥିଲା । ଖାଦ୍ୟ ବହୁତ ଭଲଥିଲା । ସବୁଠାରୁ ବଡ଼ କଥା ଥିଲା ଯେ ପିଲମାନଙ୍କୁ ପ୍ରତି ମୁହୂର୍ତ୍ତରେ ମନେପକାଇ ଦିଆଯାଉଥିଲା । ଏଠାରେ ସେମାନଙ୍କୁ ସମସ୍ତେ ଭଲପାଉଛନ୍ତି । ସେମାନଙ୍କ ପିଠିରେ, କାନ୍ଧରେ ଥାପୁଡ଼େଇ ଦିଆଯାଉଥିଲା । ସେମାନଙ୍କୁ ବାପା ମାଆଙ୍କ ପରି କୋମଳ ସ୍ପର୍ଶ ଓ କଥା କହି ଗେଲ କରାଯାଉଥିଲା । ଜଣେ ମଧ୍ୟବିତ୍ତ ପରିବାରରେ ଜନ୍ମ ହୋଇଥିଲେ, ତା'ର ବଞ୍ଚିବାର ମାନ ଯେପରି ହୋଇଥାନ୍ତା, ଅନାଥାଶ୍ରମରେ ସେମାନଙ୍କ ଜୀବନ ତାଠାରୁ କୌଣସି ଗୁଣରେ କମ୍ ନଥିଲା ।

ଜଣେ ପିତାର ଭୂମିକା ଅପେକ୍ଷା ଡାକ୍ତର ପିଲମାନଙ୍କ ପାଇଁ ଅଧିକ କରୁଥିଲେ । ଯେଉଁ ପିଲଟି ତାଙ୍କର ଘରର ବଳୟ ଭିତରକୁ ଆସୁଥିଲା ସେ ପ୍ରତ୍ୟେକ ଦିଗରୁ ପୂର୍ଣ୍ଣ ଆଦର ପାଇ ଘରର ସହିତ ଲଳିତ ପାଳିତ ହେଉଥିଲା । ବଢ଼ିଲା ପିଲଟି ପାଇଁ ଯାହା କରିବା କଥା ତାହା କରାଯାଉଥିଲା । ଜଣେ ପିତା ହିସାବରେ ଯାହା କରିବା କଥା କୋର୍ଜାକ ତାହା ଅତି ସୁନ୍ଦର ଭାବରେ କରୁଥିଲେ । ସେ ଅତ୍ୟନ୍ତ ହୃଦୟବାନ ଥିଲେ । ପିଲଙ୍କ ପାଇଁ ଥିବା ଅସଂଖ୍ୟ କର୍ତ୍ତବ୍ୟ ସମ୍ପାଦନ ପାଇଁ ସେ ତାଙ୍କର ସମସ୍ତ ଶକ୍ତିକୁ ବିନିଯୋଗ କରୁଥିଲେ । ସେ ଯେ କିଛି ଉତ୍ସର୍ଗ କରୁଛନ୍ତି, ଏପରି ମନୋଭାବ ତାଙ୍କ ଭିତରେ ଆଦୌ ଅଙ୍କୁରିତ ହେଉନଥିଲା । ଅତି ସ୍ୱାଭାବିକ ଭାବରେ ସେ ନିଜର କର୍ତ୍ତବ୍ୟ କରିଯାଉଥିଲେ ।

ଅନାଥାଶ୍ରମର ଏପରି କୌଣସି କାମ ନଥିଲା ଯେଉଁଥିରେ ହାତ ଲଗାଇବାକୁ କୋର୍ଜାକ୍ ପଛାଉଥିଲେ । ସେ ପିଲମାନଙ୍କ ମୁଣ୍ଡବାଳ କାଟୁଥିଲେ । ବାଳ କାଟିଲା-ବେଳେ ଏପରି ମଜାଳିଆ କଥା କହୁଥିଲେ ଯେ ଡରୁଆ ପିଲର ମଧ୍ୟ ଭୟ ଛାଡ଼ି-ଯାଉଥିଲା । ବାଳ କାଟିଲାବେଳେ ପିଲଙ୍କୁ ଖୁସି କରିବାପାଇଁ କେତେବେଳେ ପିଲଙ୍କ ପରିଚିତ ଗପ୍ପର ଗଳି ଭଳିଆ ତ ଆଉ କେତେବେଳେ କୌଣସି ଜିନିଷ ଆକୃତିର କେଶ କ୍ଲପ୍ ଲଗାଇ କାଟି ଦେଖାଉଥିଲେ । ତା'ଛଡ଼ା ସେ ପିଲଙ୍କ ହାତ ଓ ପାଦର ନଖ ବି କାଟିଦେଉଥିଲେ । ଠିକ୍ ସମୟ ବ୍ୟବଧାନରେ ସେ ପିଲମାନଙ୍କର ଓଜନ ଓ ଉଚ୍ଚତା ମାପୁଥିଲେ ଏବଂ ସେମାନଙ୍କ ଅଭିବୃଦ୍ଧିର ଏକ ରେକର୍ଡ଼ ରଖୁଥିଲେ । ଏଥିରୁ ମିଳୁଥିବା ଅନେକ ତଥ୍ୟ ଉପରେ ତାଙ୍କର ଅନେକ ଡାକ୍ତରୀ ଗବେଷଣା ପର୍ଯ୍ୟବସିତ ହୋଇଥିଲା ।

ବଡ଼ ବଡ଼ କାଚ ବୋତଲରୁ 'କଡ୍‌ଲିଭର ତେଲ' ବାହାର କରି ସେ ପିଲଙ୍କୁ ଖାଇବାକୁ ଦେଉଥିଲେ । ତାଙ୍କ ଜୀବନୀରେ ସେ ଲେଖିଥିଲେ, ମୁଁ ଏସବୁ କାମ କରି

ମୋ ଚଶମାଭିତରୁ ଝରି ପଳାଇଯାଉଥିଲା । "ମୁଁ ପିଲାଙ୍କ ନଖ ବାଳ ଆଦି କାଟି ଓ ସେସବୁକୁ ଧୋଇ, ଘଣ୍ଟାକରି ଅନେକ ଆତ୍ମତୃପ୍ତି ଲାଭ କରୁଥିଲି ।" ପାଲେଷ୍ଟାଇନ୍‌ରେ ଥିବା ତାଙ୍କର ଜଣେ ଘନିଷ୍ଠବନ୍ଧୁ ଜୋସେଫ୍ ହେଲଙ୍କ ପାଖକୁ ସେ ସମ୍ବନ୍ଧରେ ବର୍ଣ୍ଣନା କରି ଏକ ଲମ୍ବା ଚିଠି ପଠାଇଥିଲେ ।

ପିଲାଙ୍କ ସାଙ୍ଗରେ ସେ ପିଲାଙ୍କ ପରି ଖେଳୁଥିଲେ । ଶୀତ ସନ୍ଧ୍ୟାଗୁଡ଼ିକରେ ସେ ପିଲାମାନଙ୍କ ସାଙ୍ଗରେ 'ଛକାପଂଝା' ଖେଳ ଖେଳୁଥିଲେ । ମୁହଁକୁ ବିଭିନ୍ନ ବିକୃତ ଢଙ୍ଗରେ ଦେଖାଇ ସେ ପିଲାମାନଙ୍କୁ ଖୁସି କରାଉଥିଲେ । କେତେବେଳେ ସେ ଏକ-ଗୋଡ଼ିଆ ହୋଇ ପିଲାଙ୍କ ସାଙ୍ଗରେ ଅଗଣାସାରା ଡେଉଁଥିଲେ ।

ମଧ୍ୟାହ୍ନଭୋଜନ ପରେ ସେ ଖୁସିରେ କହୁଥିଲେ, "ଖାଇବାଟା କେଡ଼େ ବଢ଼ିଆ ଥିଲା ମ ।" ସତେ ଯେପରି ସେ ବି ଥିଲେ ଜଣେ ଅନାଥ ପିଲା । ଷ୍ଟିଫାଓ୍ୱିଲିକ୍ ଜନସ୍କା ଅନାଥାଶ୍ରମ ବାହାରକୁ ଯାଇଥିଲାବେଳେ କୋରାକ୍ ଉହରହିକା ନାଚ-ଛାମରାରେ ମାଡଯାଉଥିଲେ । ପିଲାମାନେ ଠୋ ଠୋ ହସିଉଠୁଥିଲେ । ତା'ପରେ ଡାକ୍ତର କୋର୍ଚ୍ଚାକ ପିଲାମାନଙ୍କୁ ମଜାରେ କହୁଥିଲେ, "ଏଇଟା ଆମର ବଡ଼ ଭାଗ୍ୟ ନୁହେଁ କି ? ସେ ଏତେବେଳେ ଏଠାରେ ନାହାନ୍ତି ।"

ଷ୍ଟିଫା ଓ୍ୱିଲସକଜନସ୍କାକୁ କୋର୍ଚ୍ଚାକ ସବୁବେଳେ ସମ୍ମାନର ସହ ସମ୍ଭୋଧନ କରୁଥିଲେ । କୋର୍ଚ୍ଚାକ ଯେପରି ପିଲାମାନଙ୍କ ପାଇଁ ବାପା ଥିଲେ, ଷ୍ଟିଫା ସେହିପରି ପିଲାମାନଙ୍କ ପାଇଁ ମାଆ ଥିଲେ । ଷ୍ଟିଫାଙ୍କର ଶରୀର ଆକୃତି ଯେମିତି ବଡ଼ ତାଙ୍କର ମନ ଓ ହୃଦୟ ସେମିତି ପ୍ରଶସ୍ତ ଥିଲା । ଜଣେ ମା' ଯେପରି ନିଜ ସନ୍ତାନସନ୍ତତିଙ୍କର ଆଶା ଅଭିଳାଷକୁ ପୂରଣକରେ ବା ନାସ୍ତି କରିଦିଏ ସେହିପରି ଷ୍ଟିଫା ବିଦା କରିଥାନ୍ତି । ସେ ଅନାଥାଶ୍ରମ ଭିତରେ ସବୁଆଡ଼େ ବୁଲି ବୁଲି ଦେଖନ୍ତି ଏବଂ ପିଲାମାନେ ତାଙ୍କୁ ଯେଉଁ ଅନୁରୋଧ ସବୁ କରନ୍ତି, ତାହାକୁ ସେ ପୂରଣ କରିଥାନ୍ତି କିମ୍ବା ମନା କରି-ଦିଅନ୍ତି ।

ଅନାଥାଶ୍ରମଟି ଯେମିତି ବଡ଼, ଅନାଥାଶ୍ରମ ପରିବାରର ଲୋକସଂଖ୍ୟା ସେହିପରି ବହୁତ ବେଶି । ମାତ୍ର ଷ୍ଟିଫାଓ୍ୱିଲିକ୍‌ଜନସ୍କାଙ୍କ ପାଇଁ ଏହା ଆଦୌ ବଳାଇ ଯାଉନଥିଲା । ବର୍ଷ ପରେ ବର୍ଷ ଏହିପରି ତିରିଶଟି ବର୍ଷ ବିତିଯାଇଥିଲା ତାଙ୍କର ଅନାଥାଶ୍ରମର ପରିବେଶ ଭିତରେ । କେତେ କେତେ ଅନାଥ ପିଲା ଆସିଛନ୍ତି, ମଣିଷ ହୋଇ ଏଠାରୁ ବାହାରିଯାଇ ସଂସାରରେ ପ୍ରତିଷ୍ଠିତ ହୋଇଛନ୍ତି । ଏମାନଙ୍କ ପଛରେ ଯେଉଁ 'ସ୍ତ୍ରୀ' ଲୋକଟିର ମହାନ୍ ଭୂମିକା ରହିଥିଲା ସେ ହେଉଛନ୍ତି ଷ୍ଟିଫାଓ୍ୱିଲସ୍‌କଜନସ୍କା । ତାଙ୍କର ଇହୁଦୀ ସ୍ୱଭାବ ଏବଂ ପିଲାମାନଙ୍କ ପାଇଁ ଥିବା ସ୍ନେହ ଶ୍ରଦ୍ଧାର ଗୁଣ ତାଙ୍କୁ ଦରିଦ୍ର ଅନାଥ ଇହୁଦୀ ପିଲାଙ୍କ ପାଇଁ ଏକ ଉତ୍ସର୍ଗୀକୃତ ଜୀବନ

ବଞ୍ଚିବା ପାଇଁ ପ୍ରବୃତ୍ତ କରିଥାନ୍ତି । ଉଦ୍‌ବାସ୍ତୁ ପିଲାମାନଙ୍କୁ ସେମାନଙ୍କ ଦୁଃଖ ଯନ୍ତ୍ରଣାରୁ ଉଦ୍ଧାର କରି ମଣିଷ ଭାବରେ ବିକଶିତ କରିବା ପାଇଁ ସେ ନିଜର ସମସ୍ତ ଶକ୍ତିଦେଇ କାର୍ଯ୍ୟ କରିବାକୁ ନିଷ୍ପତ୍ତି ନେଇଗଲେ । ପୋଲାଣ୍ଡରେ ଚାଲିଥିବା ସାଂପ୍ରଦାୟିକ ଶକ୍ତିର ଅତ୍ୟାଚାର ଓ ବିଭାଜନ ରଣକୌଶଳକୁ ପ୍ରତିରୋଧ କରିବାର ସାମର୍ଥ୍ୟ ପିଲାମାନଙ୍କ ଭିତରେ ଜାଗ୍ରତ କରାଇବା ତାଙ୍କ ଜୀବନର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ହୋଇ ରହିଲା ।

ନିଜ ନିଷ୍ପତ୍ତିରେ ଅଟଳ ରହି ସେ ଉଦ୍‌ବାସ୍ତୁ ଅନାଥ ପିଲାମାନଙ୍କ ପାଇଁ କୋର୍ଚ୍ଚାକଙ୍କ ପରି କାମ କରିଚାଲିଲେ । ସେ ଏଥିପାଇଁ ନିଜକୁ କିମ୍ବା ନିଜ ବଂଶାନୁଗତ ପରମ୍ପରାକୁ ବଦଳାଇ ଦେଇ ପାରିନଥିଲେ । ସେ ଅନାଥାଶ୍ରମ 'ହୋମ୍'କୁ ନିଜ ସହ ନେଇ ଆସିଥିଲେ ପୋଲାଣ୍ଡର ଭାଷା ଏବଂ ପୋଲାଣ୍ଡୀୟ ସଂସ୍କୃତିର ବାତାବରଣ । କୋର୍ଚ୍ଚାକଙ୍କ ପରି ସେ ପୋଲାଣ୍ଡର ଭାଷାକୁ ମାତୃଭାଷା ଭାବରେ ଆଦର କରୁଥିଲେ ଏବଂ ଭାବୁଥିଲେ, ପୋଲାଣ୍ଡ ହେଉଛି ଏକମାତ୍ର ଦେଶ ଯାହା ତାଙ୍କର ଦେଶ । ତାଙ୍କ ନାଁଟି ବି ଥିଲା ପୋଲାଣ୍ଡର ଦେଶୀୟ ନାଁ ଏବଂ ସେ ଏହା ଅନ୍ୟ କିଅଣ ହେଉ ବୋଲି ଚାହୁଁ ନଥାଲେ । ବାସ୍ତବରେ ସେ ଥିଲେ ପୋଲାଣ୍ଡ ଦେଶର ମାଟିସହ ନିଜକୁ ମିଶାଇ ଦେଇଥିବା ଏକ ବ୍ୟକ୍ତିତ୍ୱ ।

କୋର୍ଚ୍ଚାକଙ୍କ ସଙ୍ଗଠନରେ ଯୋଗ ଦେଲାବେଳେ, ସେ ଧାର୍ମିକ ପରମ୍ପରାଗତ ନୈଷ୍ଠିକ ନିୟମକୁ ନମାନି କାମ କରିବାକୁ ସମର୍ଥ ହୋଇପାରୁଥିଲେ । ଏଭଳି ଜଟିଳ ନିୟମ ବନ୍ଧନରେ ବାନ୍ଧିହୋଇ ରହିବା ତାଙ୍କ ସ୍ୱଭାବ ବାହାରେ ଥିଲା । ପିଲାଙ୍କ ପାଇଁ ତାଙ୍କ ଭିତରେ ଆବେଗ ଭରିରହିଥିଲା ଏବଂ ଏହା ତାଙ୍କର ବିଗ୍ରହଠାରୁ ବହୁ ଊର୍ଦ୍ଧ୍ୱରେ ରହୁଥିଲା । ତାଙ୍କ ଭିତରେ ଗୋଟିଏ ମାତ୍ର ଦୃଢ଼ ନିୟମ ଥିଲା । ତାହା ହେଉଛି ସବୁ ପିଲାଙ୍କ ଭିତରେ ଆଗ ମଣିଷ ପିଲା, ତା'ପରେ ଯାଇ ଉଦ୍‌ବାସ୍ତୁ । ପିଲା-ମାନଙ୍କର ପ୍ରଥମ ଆବଶ୍ୟକତା ହେଉଛି ସେମାନଙ୍କର ଅଭାବ ପୂରଣ କରିବା । ସେମାନଙ୍କର ଅଭାବ ପୂରଣ କରି ସେମାନଙ୍କ ମୁହଁରେ ହସ ଭରିଦେବା ପାଇଁ ଷ୍ଟିଫା ମାଆ ଭଳି କର୍ତ୍ତବ୍ୟପରାୟଣା ହୋଇ ନିଜକୁ କାମ ଭିତରେ ବୁଡ଼ାଇ ରଖୁଥିଲେ । ଷ୍ଟିଫାଙ୍କ ପାଇଁ ଏହା ଅତ୍ୟନ୍ତ ସ୍ୱାଭାବିକ ଥିଲା । ସତେଯେପରି ଏଇଥିପାଇଁ ହିଁ ତାଙ୍କର ଜୀବନ ଉଦ୍ଦିଷ୍ଟ ଥିଲା ।

ଷ୍ଟିଫାଙ୍କ ତାଲିମ, ଶିକ୍ଷା, ସଙ୍ଗଠନ କରିବାର ଦକ୍ଷତା, ଜାଗ୍ରତି, ମାନ୍ଦ୍ରତା, ବାସ୍ତବତାକୁ ସରଳ ଭାବରେ ସାମନା କରିବା ଆଦି ଗୁଣ ତାଙ୍କୁ ତଥା କୋର୍ଚ୍ଚାକଙ୍କୁ 'ହୋମ୍'ର ପରିଚାଳନା ପାଇଁ ଯୋଜନା କରିବା ଓ 'ହୋମ୍'ର ବିକାଶ ଦିଗରେ ପଦକ୍ଷେପ ନେବାପାଇଁ ଏକ ଦୃଢ଼ ଭିତ୍ତି ଯୋଗାଇ ଦେଇଥିଲା ।

ଅନାଥାଶ୍ରମର ଏତେବଡ଼ ପରିବାର ପଛରେ ଯେଉଁ ବିରାଟ ସୃଜନୀଶକ୍ତି କାମ କରୁଥିଲା, ତାହା ହେଉଛି 'ମିଷ୍ଟର ଡକ୍ଟର'ଙ୍କର ସୃଜନୀଶକ୍ତି । ପିଲା ତଥା ଅନ୍ୟମାନେ

କୋର୍ଜାକଙ୍କୁ 'ମିଷ୍ଟର ଡକ୍ଟର' ନାମରେ ସମ୍ବୋଧନ କରୁଥିଲେ । ଜଣେ ବାପାଙ୍କ ପାଖରେ ପିଲାମାନେ ଯେପରି ଅଳି ଅର୍ଦ୍ଦଳି କରନ୍ତି, କୋର୍ଜାକଙ୍କ ପାଖରେ ବି ପିଲାମାନେ ସେହିପରି ଅଳି ଅର୍ଦ୍ଦଳି କରୁଥିଲେ । କହିବାକୁ ଗଲେ କୋର୍ଜାକଙ୍କ ପ୍ରେରଣା ଅନାଥାଶ୍ରମ ପାଇଁ ଆଲୋକର ଶିଖାଭଳି କାମକରୁଥିଲା ।

ଷ୍ଟିଫାଦିଦୀ ସବୁବେଳେ ଅନାଥ'ଶ୍ରମରେ ରହୁଥିଲେ । ଛୋଟ ବଡ଼ ସବୁ ପ୍ରକାର ସମସ୍ୟା ନେଇ ପିଲାମାନେ ଦିଦୀଙ୍କ ପାଖରେ ହାଜର ହୋଇ ଯାଇପାରୁଥିଲେ । ସେ ସବୁପିଲାଙ୍କର ଜୀବନ ସହ ଭଲ ଭାବରେ ପରିଚିତ ହୋଇଯାଇଥିଲେ । ସମସ୍ତଙ୍କ ସୁଖ ଦୁଃଖରେ ସେ ଅଂଶୀଦାର ହୋଇଥିଲେ । ସମସ୍ୟା ଯାହା ହେଉନା କାହିଁକି ସବୁ କିଛିକୁ ସେ ମା' ଭଳି ସମାନ ସ୍ନେହ ମମତାର ଉଷ୍ମତା ଦେଇ ସ୍ୱାଗତ କରୁଥିଲେ । କୁନି ଝିଅମାନଙ୍କ ପାଇଁ ସେ ବହୁତ ବଡ଼ ଓ କଡ଼ା ଜଣାପଡ଼ୁଥିଲେ । ସମସ୍ତଙ୍କୁ ସେ ଭଲପାଉଥିଲେ ଏକଥା ସମସ୍ତେ ଜାଣିଥିଲେ । ମାତ୍ର ବେଳେବେଳେ ସେ ଖୁବ୍ ରାଗିଯାଉଥିଲେ ଏବଂ ଭୁଲପାଇଁ କଠୋର ଦଣ୍ଡ ଦେଉଥିଲେ । ତାଙ୍କର ଦଣ୍ଡ ଅନେକ ସମୟରେ ଅସ୍ୱାଭାବିକ ହୋଇପଡ଼ୁଥିଲା । ଏସବୁ ସତ୍ତ୍ୱେ ସେ ପିଲା-ମାନଙ୍କୁ ଚୁମ୍ବନ ଦେଉଥିଲେ ତଥା ଗେଲ କରୁଥିଲେ । ଷ୍ଟିଫାଦିଦୀ ଭଲ ଭାବରେ ବୁଝିଥିଲେ ଯେ ପିଲାମାନଙ୍କ ପାଇଁ ସ୍ନେହ ଶ୍ରଦ୍ଧା ହେଉଛି ସବୁଠାରୁ ବଡ଼ କଥା ।

ପ୍ରଥମ କେଇବର୍ଷ 'ହୋମ୍'ରେ ତାଙ୍କୁ 'କୁମାରୀ ଷ୍ଟିଫା' (Miss Steefa) ବୋଲି ସମସ୍ତେ ଡାକୁଥିଲେ । ଷ୍ଟିଫା ଥିଲେ ଜଣେ ଯୁବା ମହିଳା । ସ୍ନେହ, ମମତା, ପ୍ରେମ ଆଦି ମହନୀୟ ଗୁଣାବଳୀରେ ଭରପୁର ଥିଲା ତାଙ୍କ ହୃଦୟ । ମନସ୍ତାତ୍ତ୍ୱିକ ଜ୍ଞାନରେ ସେ ଅନେକ ବାସ୍ତବଧର୍ମୀ ଥିଲେ । ପ୍ରକୃତି ପ୍ରତି ତାଙ୍କର ପ୍ରେମ ଥିଲା ଅପାର । କଠିନ କାମ ଭିତରୁ ବି ସେ ଆନନ୍ଦଲାଭ କରୁଥିଲେ ।

ଦିନେ କୁମାରୀ ଷ୍ଟିଫା ନୋଟିସ୍ ବୋର୍ଡ଼ରେ ଖଣ୍ଡେ କାଗଜ ଲଗାଇଦେଇ ଲେଖିଦେଲେ, ଏଣିକି ତାଙ୍କୁ ଶ୍ରୀମତୀ (Mrs) ଷ୍ଟିଫା ଭାବରେ ଡାକିବାକୁ ଅନୁରୋଧ, କାରଣ ସେ ଏତେ ବୁଢ଼ୀ ହୋଇଗଲେଣି ଯେ ମିସ୍ ଭାବରେ ସମ୍ବୋଧନ କରାଯିବାରୁ ତାଙ୍କୁ ଅଡୁଆ ଲାଗୁଛି । ସେହିଦିନଠାରୁ ସ୍ୱାମୀ ନଥାଇ ବି ସେ ଗୋଟିଏ ବିରାଟ ପରିବାରରେ 'ଶ୍ରୀମତୀ' ଭାବେ ପରିଚିତା ହେଲେ । ଏହାଛଡ଼ା ତାଙ୍କର ଆଉ କୌଣସି ପରିବର୍ତ୍ତନ ହୋଇନଥିଲା । ଆଗଭଳି ପୋଷାକ, ପୁରୁଷମାନଙ୍କ ପରି କେଶ ବିନ୍ୟାସ ସବୁକିଛି ସମାନ ରହିଲା । ଜୀବନସାରା ସେ ନିଜକୁ ତଥା ନିଜ ଜ୍ଞାନକୁ ପିଲାଙ୍କ ଉଦ୍ଦେଶ୍ୟରେ ସମର୍ପିତ କରିଥିଲେ ।

ପ୍ରଥମ ବିଶ୍ୱଯୁଦ୍ଧ ପୂର୍ବରୁ ଏହି ଯୁବା ମହିଳାଙ୍କ ପାଖରେ ଅନେକ ଉତ୍ସାହ ଭରିରହିଥିଲା । ପିଲାମାନେ ତାଙ୍କୁ ଭକ୍ତି କରୁଥିଲେ, ତାଙ୍କୁ ବିରକ୍ତ କରିବାକୁ ଭୟ

କରୁଥିଲେ । ଏହାଦ୍ୱାରା ଷ୍ଟିଫାଦଙ୍କର କ୍ଷତି ହେବ ବୋଲି ସେମାନେ ବୁଝିପାରୁ-ଥିଲେ । କୋର୍ଶାକ ଏହି ସମସ୍ତରେ ବାହାରେ ଥିଲେ; ମାତ୍ର ଷ୍ଟିଫା ନିଜର ସମସ୍ତ ସମୟ ଓ ଶକ୍ତି ଦେଇ 'ହୋମ୍'କୁ ଅତି ଶୃଙ୍ଖଳାର ସହ ସମ୍ଭାଳି ନେଇ ପାରିଥିଲେ ।

ସବୁ ପିଲାଙ୍କୁ ରାସ୍ତାରୁ ସଂଗ୍ରହ କରି ଅଣାଯାଇଥିଲା । ତେଣୁ ରାତିରେ ବେଳେବେଳେ ସେମାନେ ଭୟଙ୍କର ସ୍ୱପ୍ନ ଦେଖି ଉଠିପଡ଼ୁଥିଲେ ଏବଂ ଏକ ବିଚିତ୍ର ପରିବେଶରେ ନିଜକୁ ଠାବକରୁଥିଲେ । ମାତ୍ର ସେମାନେ ଅନୁଭବ କରିପାରୁଥିଲେ ଯେ ସେମାନେ ବର୍ତ୍ତମାନ ଯେଉଁଠି ଶୋଇଛନ୍ତି ତାହା ପରିଷ୍କାର ପରିଚ୍ଛନ୍ନ, ଶାନ୍ତ ଏବଂ କୋଳାହଳଶୂନ୍ୟ ଜାଗା । ତେଣୁ ନିଶ୍ଚିନ୍ତ ହୋଇ ପୁଣିଥରେ ଆରାମରେ ଶୋଇ ହେବ ବୋଲି ସେମାନଙ୍କର ହୃଦ୍‌ବୋଧ ହେଉଥିଲା ।

ଅନେକ ଥର ରାତିରେ ଉଭୟ ଷ୍ଟିଫାଦଙ୍କ ଏବଂ ଡାକ୍ତର କୋର୍ଶାକ୍ ପିଲାଙ୍କ ତଦାରଖ ପରିଦର୍ଶନ କରୁଥିଲେ । ପିଲାଙ୍କ ଖଟିଆ ମଝିରେ ଥିବା ଫାଙ୍କା ଜାଗା-ମାନଙ୍କରେ ଟିପେଇ ଟିପେଇ ବୁଲୁଥିଲେ ଯେପରି ଶବ୍ଦ ହେବନି । ଶୋଇଥିବା ପିଲାଙ୍କ ପାଖରେ ନଇଁପଡ଼ି ସେମାନଙ୍କ ମୁଣ୍ଡକୁ ଆସ୍ତେକରି ଆଉଁସିଦେଇ ଦେଉଥିଲେ । ଖଟତଳକୁ ଝୁଲିପଡ଼ିଥିବା ପିଲାଟିର ହାତକୁ ଉଠାଇ ଆଣି କମ୍ବଳ ଭିତରେ ରଖି-ଦେଉଥିଲେ । ପ୍ରତି ପିଲାର ଶ୍ୱାସପ୍ରଶ୍ୱାସକୁ କାନଡେରି ଶୁଣୁଥିଲେ । ବ୍ୟତିବ୍ୟସ୍ତ ହେଉଥିବା ପିଲାଙ୍କୁ ଚୁମ୍ବନ ଦେଇ ଶୁଆଇଦେଉଥିଲେ ।

କୋର୍ଶାକ୍ ତାଙ୍କ 'ଜୀବନୀ ସ୍ମୃତି'ରେ ସେହି ସମୟର ଘଟଣାକୁ ବର୍ଣ୍ଣନା କରି ଲେଖିଛନ୍ତି, ଏଇ ଅନାଥାଶ୍ରମ 'ହୋମ' ଯଦି ନଥାନ୍ତା, ତେବେ ଏଇ ପିଲାମାନେ ପୃଥିବୀରେ ଭଲଲୋକମାନେ ଅର୍ଥାତ୍ ଯେଉଁମାନେ ଘୃଣା କରନ୍ତି ନାହିଁ କିମ୍ବା ଅଭଦ୍ର ଭାଷାରେ ଗାଳିଦିଅନ୍ତି ନାହିଁ କିମ୍ବା ଗ୍ରେଟ ପିଲାଙ୍କୁ ପିଟନ୍ତି ନାହିଁ—ଆଦି ଅଛନ୍ତି ବୋଲି କେବେ ବି ଜାଣିପାରି ନଥାନ୍ତେ । ସତ କହିବା ଭଲ କିମ୍ବା ଏ ସଂସାରରେ ଭଲ ଭଲ ଆଇନ ଅଛି, କୋମଳତା ଏବଂ ପ୍ରେମ ରହିଛି ଆଦି ସମ୍ବନ୍ଧରେ ସେମାନେ ବିଶ୍ୱାସ କରିପାରି ନଥାନ୍ତେ ।

ପୃଥିବୀର ବାତାବରଣକୁ ଆଚ୍ଛାଦିତ କରି ରହିଥିବା ଅନ୍ଧକାରକୁ ଦୂର କରିବା ପାଇଁ କୋର୍ଶାକ୍ ଏବଂ ତାଙ୍କର ସହକର୍ମୀମାନେ ଯେଉଁ ପ୍ରକାର ଉତ୍ସର୍ଗ କରିଯାଇଛନ୍ତି ତାହାକୁ ମୂଲ୍ୟାୟନ କରିବା ଆଦୌ ସମ୍ଭବ ନୁହେଁ ।

# (୧୧) ବୈରାଗୀର ସଂସାର

କୋର୍ଯାକ୍ ସାରା ଜୀବନ ଅବିବାହିତ ରହିଥିଲେ । ନିଜ ପାଇଁ ପରିବାର କଲେ ନାହିଁ । ବିବାହ ନକରି ମଧ୍ୟ ଅନାଥ ପିଲାମାନଙ୍କ ପାଇଁ ପିତାର ଦାୟିତ୍ୱ ବହନ କଲେ । ମାତ୍ର ଏପରି ଭାବରେ ଏକ ଜୀବନ ବଞ୍ଚିବାକୁ ସେ କାହିଁକି ମନକଲେ ? ଜନୈକ ବନ୍ଧୁଙ୍କ ନିକଟକୁ ସେ ଚିଠିରେ ଏ ସମ୍ବନ୍ଧରେ ଯାହା ଲେଖିଥିଲେ ସେଥିରେ ତାଙ୍କର ଯୁକ୍ତି ଥିଲା—କ୍ରୀତଦାସର ପିଲା ଜନ୍ମ କରିବା ପାଇଁ କୌଣସି ଅଧିକାର ନାହିଁ । ପୋଲାଣ୍ଡର ଜଣେ ଇହୁଦୀ ଭାବରେ ସେ ରୁଷିଆ ଲୋକମାନଙ୍କ ବୁଟତଳେ ନିଷ୍ପେଷିତ ହୋଇ ରହିଥିବା ଜଣେ କ୍ରୀତଦାସ । ତେଣୁ ସେ ନିଜ ପରିବାର ନ କରିବା ପାଇଁ ନିଷ୍ପତ୍ତି ଗ୍ରହଣ କରିଛନ୍ତି । ଜୀବନସାରା ପିଲାମାନଙ୍କର ସେବା କରିବା ପାଇଁ ସେ ଶପଥ ଗ୍ରହଣ କରିଛନ୍ତି । ଲଣ୍ଡନରେ ଥିଲାବେଳେ ସେ ଏ ପ୍ରକାର ନିଷ୍ପତ୍ତି ଗ୍ରହଣ କରିଥିଲେ । ମାତ୍ର ନିଜ ସହର ଓ୍ୱାର୍ସରେ ଘେରିରହିଥିବା ଅତ୍ୟାଚାର ତଥା ନିର୍ଯାତନାର ବାତାବରଣ ଭିତରେ ସେ କୌଣସି ସୃଜନଶୀଳ ଚିନ୍ତାକରିବା ପାଇଁ ସକ୍ଷମ ହୋଇନଥିଲେ ।

ତାଙ୍କର ବାହା ନହେବା ପଛରେ ଅନ୍ୟ କାରଣ ବି ଥାଇପାରେ । କୋର୍ଯାକ୍‌ଙ୍କ ପିତାଙ୍କର ମସ୍ତିଷ୍କ ବିକୃତ ଥିଲା । କାଳେ ଭବିଷ୍ୟତରେ ତାଙ୍କ ଔରସରୁ ଜାତ କୌଣସି ସନ୍ତାନ ପିତାଙ୍କ ପରି ବିକୃତ ମସ୍ତିଷ୍କ ହୋଇଯିବେ, ସେଥିପାଇଁ କୋର୍ଯାକ୍‌ଙ୍କ ମନ ଭିତରେ ଆଶଙ୍କା ଥିଲା ।

ଶିଶୁମାନଙ୍କ ପାଇଁ ତଥା ଶିଶୁରାଜ୍ୟରେ ନିଜକୁ ଉତ୍ସର୍ଗୀକୃତ କରି ରଖିବାର ନିଷ୍ପତ୍ତି, କୋର୍ଯାକ୍‌ଙ୍କୁ ସାଧାରଣ ସାଂସାରିକ ଜୀବନଠାରୁ ଦୂରେଇ ଦେଇଥିଲା । ସାଧାରଣତଃ ତାଙ୍କ ବୟସର ଶିକ୍ଷିତ ଯୁବକମାନେ ଶିକ୍ଷାଦୀକ୍ଷା ଓ ଅଧ୍ୟବସାୟ ବଳରେ ସମାଜର ଶୀର୍ଷସ୍ଥାନକୁ ମଣ୍ଡନ କରି ପ୍ରତିଷ୍ଠିତ ହେବାକୁ ଇଚ୍ଛା କରୁଥିଲେ । ସମାଜର ସମସ୍ତ ସୁବିଧା ସୁଯୋଗକୁ ହାସଲକରି ନିଜର କରିନେବାପାଇଁ ଏହି ବୟସର ଯୁବକମାନେ ଲାଳାୟିତ ହୋଇଥିଲେ ।

କୋର୍ଯାକ୍ ଜାଣିଶୁଣି ନିଜର ଉଚ୍ଚାକାଂକ୍ଷା, ଅଭିଳାଷ ଏବଂ କାର୍ଯ୍ୟ ପରିସରକୁ ସଙ୍କୀର୍ଣ୍ଣ କରି ରଖିଥିଲେ । ଦୁଇଟି ମୁଖ୍ୟ ଦିଗରେ ସେ ଅତି ପ୍ରଭୂତ ସମ୍ମାନ ଲାଭ କରିଥିଲେ । ଜଣେ ପ୍ରତିଷ୍ଠିତ ଡାକ୍ତର ଭାବରେ ତାଙ୍କର ଖ୍ୟାତି ଥିଲା । ସମାଜର ଉଚ୍ଚବର୍ଗର ଲୋକମାନେ ଚିକିତ୍ସା ପାଇଁ ତାଙ୍କ ପାଖରେ ହାଜର ହେଉଥିଲେ । ଜଣେ ବିଶେଷଜ୍ଞ ଡାକ୍ତର ହିସାବରେ ତାଙ୍କର ସୁନାମ ବ୍ୟାପିଯାଇଥିଲା । ତାଙ୍କର

ନାଁ ସମାଜର ଯେଉଁ ସ୍ତରରେ ଆଦୃତ ଥିଲା ଯେକୌଣସି ଡାକ୍ତର ତାହାକୁ ବ୍ୟବହାର କରି ନିଜର ବ୍ୟାବସାୟିକ ଜୀବନର ଶୀର୍ଷ ସ୍ଥାନରେ ଅଧିଷ୍ଠିତ ହେବାର ସୁଯୋଗ ଲାଭ କରିପାରିଥାନ୍ତା ।

ଏହା ସାଙ୍ଗକୁ କୋର୍ଜାକ୍‌ଙ୍କ ଲେଖନୀ ବହୁତ ଶକ୍ତିଶାଳୀ ଥିଲା । ଜଣେ ବିଦ୍ରୋହୀ ଲେଖକ ଭାବରେ ତାଙ୍କ ସୁନାମ ଯଥେଷ୍ଟ ବଢ଼ିଯାଇଥିଲା । ମଜାଳିଆ ସ୍ୱଭାବ ପାଇଁ ସେ ବହୁତ ଆଦୃତ ହେଉଥିଲେ । ଏସବୁ ଗୁଣ, ସାମର୍ଥ୍ୟ ଓ ଖ୍ୟାତି ଥିବା ସତ୍ତ୍ୱେ ଅର୍ଥ ରୋଜଗାର କରିବାକୁ ସେ ପସନ୍ଦ କରିନଥିଲେ । ନିଜପାଇଁ ଧନ ବା ସୁଖ ହାସଲ କରିବା ତାଙ୍କ ଚରିତ୍ରର ବାହାରେ ଥିଲା । ଏସବୁକୁ ବର୍ଜନ କରିବା ମୂଳରେ ତାଙ୍କ ପାଖରେ ଗୋଟିଏ ସତ୍ୟ ଜ୍ୱଳମାନ ହୋଇ ରହିଥିଲା—ତାହା ହେଉଛି ସେ ତାଙ୍କର ଚିନ୍ତା, ଚେତନା ଏବଂ ସାମଗ୍ରିକ ଭାବରେ ନିଜ ଜୀବନର ସବୁକିଛିକୁ ଇହୁଦୀ ଅନାଥ ପିଲାମାନଙ୍କ ପାଇଁ ସମର୍ପଣ କରିଦେବାର ନିଷ୍ପତ୍ତି ନେଇସାରିଥିଲେ ।

ଏଭଳି ଏକ ପଦକ୍ଷେପ ଗ୍ରହଣ କରିବା ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା । କୋର୍ଜାକ୍‌ଙ୍କ ମସ୍ତିଷ୍କ ଅସାଧାରଣ ଭାବରେ ଉର୍ବର ଥିଲା । ତାଙ୍କ ଭିତରେ ଭରିରହିଥିଲା ସୃଜନଶୀଳ ଚିନ୍ତାଚେତନା । ଏସବୁର ପରିପ୍ରକାଶ ପାଇଁ ସେ ସବୁବେଳେ ବ୍ୟଗ୍ର ହୋଇଉଠୁଥିଲେ । ତାଙ୍କର ସ୍ୱାସ୍ଥ୍ୟବିକ ଶକ୍ତି ବି କିଛି କମ୍ ନଥିଲା । ଏସବୁ ସତ୍ତ୍ୱେ ସେ ପାର୍ଥିବ ଭୋଗ-ବିଳାସର ଜୀବନ ପ୍ରତି ବୈରାଗ୍ୟ ପ୍ରଦର୍ଶନ କଲେ । ଏପରିକି ନିଜର ସୁନାମ ବା ଲେଖକ ହିସାବରେ ନିଜର ଭବିଷ୍ୟତକୁ ଉଜ୍ଜ୍ୱଳ କରିବାର ଅଭିଳାଷ ତ୍ୟାଗ କରିଥିଲେ । ବହିର୍ଜଗତ ସହ ନିଜର ସମସ୍ତ ବନ୍ଧନକୁ ସେ ଛିନ୍ନ କରିଦେଇଥିଲେ । ମାତ୍ର ସେ ଏପରି ପଦକ୍ଷେପ କାହିଁକି ଗ୍ରହଣ କଲେ, ସେସବୁର କାରଣ ସମ୍ବନ୍ଧରେ ନିଜ ଜୀବନ ସ୍ମୃତିରେ ସ୍ପଷ୍ଟଭାବରେ ଲେଖିଛନ୍ତି—

"ମୋ ନିର୍ଦ୍ଧାରିତ କାମ ଭିତରେ ମୁଁ ନିଜକୁ ସୀମିତ ରଖିବା ପାଇଁ ଇଚ୍ଛା କରୁଛି । ମୁଁ ଜଣେ ଭଲ ଡାକ୍ତର ହେବା ସକାଶେ ସିଧା ଚାଲିବା, ଝୁଣ୍ଟିନପଡ଼ିବା କଥା ଶିଖିବାକୁ ଚାହୁଁଛି । ମୁଁ ନିଜର ପଦ୍ଧତି ଓ କୌଶଳକୁ ଉଦ୍ଭାବନ କରିବାକୁ ଇଚ୍ଛା କରୁଛି, ଯାହାକି ଏପର୍ଯ୍ୟନ୍ତ ଅନ୍ୟମାନଙ୍କ କାର୍ଯ୍ୟ ଉପରେ ଆଧାରିତ ହୋଇନାହିଁ ।

ମୁଁ ବେଳେବେଳେ ମୋ ଜୀବନର ଓଜନକୁ ଅନୁଭବ କରୁଛି—ପିଲାଦିନର ଗୁରୁଙ୍କର କଥା ମୋର ମନେପଡ଼ିଯାଉଛି । କେଡେ ଶ୍ରେଷ୍ଠ କଥାଟିଏ ! ପ୍ରକୃତରେ ଜୀବନଟା ଥିଲା ଅଗ୍ନି ସଦୃଶ । କେତେବେଳେ ଏହାର ଲେଲିହାନ ଶିଖା ମଉଳି-ପଡ଼ୁଥିଲା, ପୁଣି କେତେବେଳେ ହଠାତ୍ ଅଗ୍ନି ସ୍ଫୁଲିଙ୍ଗ ଉଦ୍‌ଗୀରଣ ହୋଇ ଉଜ୍ଜ୍ୱଳ ଲେଲିହାନ ଶିଖା ଊର୍ଦ୍ଧ୍ୱମୁଖୀ ହୋଇଉଠୁଥିଲା । ଆଉ କେତେବେଳେ ଏହା ସମ୍ପୂର୍ଣ୍ଣ ପାଉଁଶ ହୋଇ ନିର୍ବାପିତ ହୋଇଯାଉଥିଲା ।

ଅନ୍ୟମାନଙ୍କ ସିଦ୍ଧାନ୍ତକୁ ଅନୁସରଣ କରି ଯେଉଁ ଚିକିତ୍ସା ପଦ୍ଧତି ପ୍ରଚଳିତ ହେଉଥିଲା, ସେ ତା' ମାଧ୍ୟମରେ ଡାକ୍ତର ଭାବରେ ପରିଚୟ ଦେବାକୁ ପସନ୍ଦ କରୁନଥିଲେ । ବୋଧହୁଏ ଡାକ୍ତରୀ ବ୍ୟବସାୟ ବର୍ଜନ କରିବାର ନିଷ୍ପତ୍ତି ମୂଳରେ ଏହା କିଛି ଅଂଶରେ ଦାୟୀ । ଏହାକୁ "ଜୀବନର ଅଗ୍ନି ମଣ୍ଡଳୀଗଲି" ବୋଲି କହୁଥିଲେ ।

କୋର୍ଚ୍ଚାକ୍‌ଙ୍କ ଜୀବନ ନାନାବିଧ ଯୋଜନା, ସ୍ୱପ୍ନ ଓ ଅଭିଳାଷରେ ଋଦ୍ଧ ହୋଇ ରହିଥିଲା । ଏଭଳି ଏକ ବୃଦ୍ଧି ହେଉଥିବା ଉଦ୍‌ଗ୍ରାନ୍ତ ବିସ୍ତାରୀ କାର୍ଯ୍ୟବ୍ୟସ୍ତତା ଭିତରୁ ସେ ପଳାଇ-ଯିବାକୁ ନିଜ ଭିତରେ ଅନୁଭବ କଲେ । ତାଙ୍କର ମନ ବହୁତଗୁଡ଼ିଏ ବିଷୟକୁ ନେଇ ବ୍ୟସ୍ତ ହୋଇ ରହିଥିଲା ଏବଂ ଅବିଶ୍ରାନ୍ତ ଧାଦଉଡ଼ ଭିତରେ ତାଙ୍କ ଯୌବନଟି ବିତିଗଲା । ବର୍ତ୍ତମାନ ଜଡ଼ତାର ଏକ ମୁହୂର୍ତ୍ତ ଆସି ତାଙ୍କ ନିକଟରେ ଉପନୀତ ହେଲା । ପର୍ବତାରୋହୀ ଯେପରି ଜୀବନର ପର୍ବତ ଆରୋହଣ କଲାଭଳି ସେ ଗୋଟିଏ ଜାଗାରେ ଥକାମାରି ନିଃଶ୍ୱାସ ମାରିଲେ ଯଦ୍ଦ୍ୱାରା ସେ ପର୍ବତର ଶୀର୍ଷଦେଶରେ ପହଞ୍ଚିବା ପାଇଁ ଶକ୍ତି ସଞ୍ଚୟ କରିପାରିବେ । ଏହି ସନ୍ଧିସନ୍ଧ ମୁହୂର୍ତ୍ତରେ ସାଧାରଣ ପରିସ୍ଥିତି ତଥା ତାଙ୍କର ବିଶେଷ ଆବଶ୍ୟକତା ଯୋଗୁଁ ସେ ସ୍ୱଳ୍ପ କାର୍ଯ୍ୟକ୍ରମ ଭିତରେ ନିଜକୁ ସୀମିତ ରହିବାକୁ ଅନୁକୂଳ ଅନୁଭବ କଲେ । ସମସ୍ୟାର ପାହାଡ଼ ଭିତରେ ଗୃପି ହୋଇଯାଇ କ୍ଳାନ୍ତ ତଥା ଭୟଭୀତ ହୋଇ ସେ ସବୁ ଦୃଷ୍ଟିରୁ ପଛକୁ ପାଦ ପକାଇବା ସକାଶେ ନିଷ୍ପତ୍ତି ଗ୍ରହଣ କଲେ ।

ପୋଲଣ୍ଡର ରାଜନୈତିକ ସ୍ଥିତି, କୋର୍ଚ୍ଚାକଙ୍କର ଏହି ନିଷ୍ପତ୍ତି ପାଇଁ ଅନୁକୂଳ ଥିଲା । ଏହା ଏଭଳି ଏକ ସମୟ ଥିଲା, ଯେଉଁଥିରେ ଆଶାର ମରୀଚିକାଗୁଡ଼ିକ ଜଳଜଳ ହୋଇ ଦିଶୁଥିଲା; ମାତ୍ର ତାହା ସହଜରେ ଠିକ ଦେଇ ନୈରାଶ୍ୟର ଅନ୍ଧକାର ଭିତରକୁ ଟାଣିନେଉଥିଲା । ପୋଲଣ୍ଡର ସ୍ୱାଧୀନ ମତକୁ ବିଭିନ୍ନ ଭାବରେ ଗୃପି ଦିଆଯାଉଥିଲା । ରୁଷିଆ ଅଧିକୃତ ପୋଲଣ୍ଡରେ ଓ୍ୱାର୍ସୋ ଭିଏନା ରେଳପଥକୁ ଜାତୀୟକରଣ କରି ଅନେକ ପ୍ରକାର କଟକଣା ଭିତରେ ରଖାଗଲା । ଅନେକ ଦେଶଭକ୍ତଙ୍କୁ ଗିରଫ କରାଗଲା ।

ଏଭଳି ଏକ ପରିସ୍ଥିତି ଯୋଗୁଁ ଇହୁଦୀ ଓ ପୋଲଣ୍ଡର ଲୋକମାନଙ୍କ ଭିତରେ ଥିବା ସମ୍ପର୍କର ଅଧଃପତନ ଘଟିବାକୁ ଲାଗିଲା । ମାତ୍ର ଇହୁଦୀମାନଙ୍କର ସୃଜନଶୀଳ ଉଦ୍ୟମଗୁଡ଼ିକ ପାଇଁ ଉଭୟ ଜାତି ଭିତରେ ସୁସମ୍ପର୍କ ରହିବା ଅପରିହାର୍ଯ୍ୟ ଥିଲା ।

୧୯୦୫ ମସିହାର ବିପ୍ଳବର ବିଫଳତା ପରେ ପୋଲଣ୍ଡର ଆଭ୍ୟନ୍ତରୀଣ ରାଜନୀତିରେ ଅନେକ ଜଟିଳ ସମସ୍ୟା ଦେଖାଗଲା । କୋର୍ଚ୍ଚାକଙ୍କ ଭଳି ବ୍ୟକ୍ତିବିଶେଷଙ୍କ ଭିତରେ ନୈରାଶ୍ୟଜନକ ପରିବର୍ତ୍ତନମାନ ଆସିଲା । ଜାତୀୟ ଗଣତନ୍ତ୍ରବାଦୀମାନେ ପୋଲାଣ୍ଡର ରାଜନୈତିକ କ୍ଷେତ୍ରଟି ଉପରେ ପ୍ରଭୁତ୍ୱ ବିସ୍ତାର

କରିବାକୁ ଲାଗିଲେ । ଏଥିପାଇଁ ସେମାନେ ସଂଖ୍ୟାଗରିଷ୍ଠ ମଧ୍ୟବିତ୍ତ ଶ୍ରେଣୀର ଲୋକମାନଙ୍କ ଉପରେ ପ୍ରଭାବ ବିସ୍ତାର କଲେ । ପ୍ରଥମ ବିଶ୍ୱଯୁଦ୍ଧ ପୂର୍ବରୁ ପୋଲାଣ୍ଡରେ ଜନପ୍ରିୟ ହୋଇଉଠିଥିବା ଇହୁଦୀ ବିରୋଧୀ ଚିନ୍ତାଧାରା ଓ ପଦକ୍ଷେପ ସମ୍ପର୍କରେ ଲୋକମାନଙ୍କୁ ସେମାନେ ପ୍ରବର୍ତ୍ତାଇଲେ । ଗଠନମୂଳକ ରାଜନୈତିକ ଚିନ୍ତା ଓ କାର୍ଯ୍ୟ ବଦଳରେ ସେମାନେ ଉତ୍ତେଜନାମୂଳକ ଚିନ୍ତାଧାରା ଓ କାର୍ଯ୍ୟକ୍ରମ-ଗୁଡ଼ିକୁ ସ୍ଥାନ ଦେଲେ । ଯେହେତୁ ପ୍ରକୃତ ଶତ୍ରୁ ରୁଷୀୟମାନଙ୍କୁ ମୁକାବିଲା କରିବା ପାଇଁ ସେମାନଙ୍କ ପାଖରେ ଶକ୍ତି ନଥିଲା, ସେଥିପାଇଁ ସେମାନେ ଯେଉଁ ଇହୁଦୀମାନଙ୍କୁ ସ୍ନେହ ଓ ମମତାର ବନ୍ଧନରେ ବାନ୍ଧି ରଖିପାରିବେ, ସେମାନଙ୍କୁ ଘୃଣା କରିବାକୁ ତଥା ସେମାନଙ୍କର କ୍ଷତି କରିବାକୁ ଶିଖାଇଲେ ।

୧୯୧୬ ମସିହାରେ ଜାତୀୟ ଗଣତନ୍ତ୍ରବାଦୀମାନଙ୍କର ନେତା ଡ୍ମୋସ୍କି ଇହୁଦୀମାନଙ୍କୁ ବାସନ୍ଦ କରିବାକୁ ଦଳର କାର୍ଯ୍ୟସୂଚୀରେ ଅନ୍ତର୍ଭୁକ୍ତ କରିଥିଲେ । ଦଳର ସଦସ୍ୟମାନେ ଅତି ଉତ୍ସାହର ସହ ପ୍ରସ୍ତାବଟିକୁ ଗ୍ରହଣ କରିଥିଲେ । ସାରାଦେଶ ଏହି ବାସନ୍ଦକୁ ସ୍ୱତଃସ୍ଫୁର୍ତ୍ତି ଭାବରେ ଗ୍ରହଣ କରିନେଲା । ଏଭଳି ଏକ ଘୃଣ୍ୟ ମନୋଭାବର ସୃଷ୍ଟି ପାଇଁ ଶିକ୍ଷା ପ୍ରଦାନ କରିବା, କୋର୍ଯାକଙ୍କ ଭଳି ମାନବବାଦୀମାନଙ୍କୁ ଅନେକ ବିବ୍ରତ କରି-ପକାଇଥିଲା । ତାଙ୍କଭଳି ଉଚ୍ଚ ମାନ ତଥା ସମ୍ମାନର ଅଧିକାରୀ ଓ ମର୍ଯ୍ୟାଦାସମ୍ପନ୍ନ ବ୍ୟକ୍ତିଙ୍କୁ ଶତ୍ରୁତା ତଥା ବିଭେଦ ଭାବନା ଅନେକ ଆଘାତ ଦେଇଥିଲା । କୋର୍ଯାକ ସିଏକ ନିଜକୁ ଜଣେ ଇହୁଦୀ ଲେଖକ ଭାବରେ ପରିଚୟ ନଦେଇ ଜଣେ ପୋଲାଣ୍ଡୀୟ ଲେଖକ ବୋଲି ପରିଚୟ ଦେଉଥିଲେ ଏବଂ ଜଣେ ସମ୍ବେଦନଶୀଳ ବ୍ୟକ୍ତି ଥିଲେ ତାଙ୍କ ପ୍ରତି ଏହା ଥିଲା ଏକ ପ୍ରକାଶ୍ୟ ଅପମାନ । ଜଣେ ଯୁବ ଡାକ୍ତର ତଥା ସମାଜ-ସେବୀଙ୍କ ପ୍ରତି ଏହା ଥିଲା ସଂପୂର୍ଣ୍ଣ ନୈରାଶ୍ୟଜନକ ।

ନୈତିକତା ତଥା ଆଧ୍ୟାତ୍ମିକତା ଦୃଷ୍ଟିରୁ ସେ ନିଜ ଭିତରେ ନିକ୍ଷେପିତ ହୋଇ ଯାଉଥିବାର କଥା ଅନୁଭବ କଲେ । ବୃହତ୍ତ ପରିସର ଭିତରେ ତାଙ୍କର ଅନେକ ନିବିଡ଼ ବନ୍ଧୁ ଥିଲେ । ସେମାନେ ସଦାସର୍ବଦା ଡାକ୍ତରଙ୍କୁ ସହଯୋଗ କରି ଆସୁଥିଲେ ଏବଂ ସର୍ବଦା ସହଯୋଗ କରିବାକୁ ପ୍ରସ୍ତୁତ ଥିଲେ । ମାତ୍ର ଏଭଳି ନୈରାଶ୍ୟଜନକ ପ୍ରତିକୂଳ ପରିସ୍ଥିତିରେ ସେ ସମସ୍ତଙ୍କ ଠାରୁ ନିଜକୁ ଓହରାଇ ଆଣିଲେ । ଅନ୍ତତଃ କିଛି ବନ୍ଧୁ ଏ ସମୟରେ ଶତ୍ରୁ ପାଲଟିଗଲେ । ନିଜକୁ ସେମାନଙ୍କ ପାଖରୁ ଓହରାଇ ଆଣି ସେ ନିର୍ଯାତିତମାନଙ୍କ ସପକ୍ଷରେ ଅଛନ୍ତି ବୋଲି ପ୍ରତିପାଦନ କରିଥିଲେ ।

ବହୁ ବର୍ଷପରେ ନିଜ ଜୀବନସ୍ମୃତିରେ କୋର୍ଯାକ ଲେଖିଥିଲେ, "ଯେଉଁ ଇହୁଦୀମାନେ ସେମାନଙ୍କ ଜାତିର ଅନ୍ୟସାଥୀମାନଙ୍କ ଠାରୁ ପଳାଇଯାଇ ହଠାତ୍ କେଉଁଆଡ଼େ ଲୁଚିଗଲେ, ମୁଁ ସେହି ଇହୁଦୀମାନଙ୍କର ଆତ୍ମସମ୍ମାନବୋଧକୁ ଲକ୍ଷ୍ୟ କରୁଥିଲି ।" ୧୯୧୦ ମସିହାରେ 'ସୋସାଇଟି' ପତ୍ରିକାର ୪୬ ତମ ସଂଖ୍ୟା ପ୍ରକାଶିତ

ହୋଇଥିଲା । ଏଥିରେ କୋର୍ଜାକଙ୍କର ସେହି ସମୟର ଅନୁଭୂତ ଉପରେ ଲିଖିତ ପ୍ରବନ୍ଧମାନ ପ୍ରକାଶ ପାଇଥିଲା । ପ୍ରବନ୍ଧଗୁଡ଼ିକର ନାମକରଣ ସେ କରିଥିଲେ, ତିନୋଟି ଜୁଆର । ପ୍ରଥମ ପ୍ରବନ୍ଧଟି ସେସମୟର ସାମାଜିକ ଦୃଷ୍ଟିଭଙ୍ଗୀ ଓ ବିଚାରଧାରାକୁ ପ୍ରତିଫଳିତ କରୁଥିଲା । ଏହି ଚିନ୍ତାଧାରାକୁ କୋର୍ଜାକ ପ୍ରତ୍ୟାଖ୍ୟାନ କରୁଥିଲେ । ଏହି ଲେଖାରେ କୋର୍ଜାକ ଅତି ସୁଚିନ୍ତିତ ଭାବରେ ମନ୍ତବ୍ୟ ପ୍ରଦାନ କରି କହିଥିଲେ, "ପ୍ରଗତିଶୀଳ, ଜାତୀୟ ଗଣତନ୍ତ୍ରବାଦୀ ମାନେ ଯାହାସବୁ ଯୁକ୍ତି ବାଢ଼ୁଛନ୍ତି, ସେସବୁକୁ ଆମେ ବୁଝିପାରୁନୁ ।"

ସେ ଲେଖିଥିଲେ, "ଅତି ନାଟକୀୟ ଭାବରେ ଏପରି ବିଭାଜନ ହୋଇଗଲା, ଦେଶର ସର୍ବୋଚ୍ଚ ଲୋକମାନେ ବର୍ତ୍ତମାନ ବିରୋଧୀ ଶିବିରରେ ।" ସେ ସର୍ତ୍ତ ରଖିଥିଲେ ଯେ, ଏହି ବିବାଦର ମୀମାଂସା ପାଇଁ ବିଚାରକମାନେ ନିଜର ବ୍ୟକ୍ତିଗତ ଅନୁଭବଗୁଡ଼ିକୁ ବାଦ୍‌ଦେବେ । ସେ ସମସ୍ୟାଟିକୁ ନିରପେକ୍ଷ ତଥା ବାସ୍ତବ ଭାବରେ ଏବଂ ଏହାର ସଂକ୍ଷିପ୍ତ ସାରମର୍ମ ବାହାରକରି ସମାଧାନ କରିବେ । ସେ ତିନୋଟି ଅଲଗା ରକମର ଜୁଆରକୁ ଚିହ୍ନଟ କରିଛନ୍ତି ବୋଲି କହୁଥିଲେ ।

ପ୍ରଥମ ଜୁଆରଟି ପୋଲାଣ୍ଡର କ୍ୟାଥୋଲିକ୍‌ମାନଙ୍କର । ଏମାନଙ୍କର ନାମ ପଛରେ 'ସ୍କି' ଏବଂ 'ଇକ୍‌ଜ' ଲଗୁଥିଲା । ଏମାନେ କହୁଥିଲେ ଯେଉଁ ଫ୍ରାନ୍‌ସିସ୍‌କାନ୍‌ସ୍କା ଗଳିରେ ଓ୍ୱାର୍ସର ବହୁ ଇହୁଦୀ ବାସକରୁଛନ୍ତି ଏବଂ ସେମାନଙ୍କର ଘରଗୁଡ଼ିକ ବସ୍ତି ଅଞ୍ଚଳର ଇହୁଦୀମାନଙ୍କ ଘରଭଳି । ସେଠାକୁ 'ବର୍ଗ' 'ସୋହନ୍' ଓ 'ଷ୍ଟେନ୍' ଆଦି ଇହୁଦୀମାନେ ଚାଲିଯାଆନ୍ତୁ । ସେମାନେ ମୁକ୍ତିର ଆଲୋକ ତାଙ୍କ ସାଙ୍ଗରେ ନେଇଯାଆନ୍ତୁ । ସେମାନେ ଆମକୁ କିଛି ନ ଦିଅନ୍ତୁ । ସେମାନେ ଆମଠାରୁ ବରଂ କିଛି ନିଅନ୍ତୁ···ଆମେ ଚାହୁଁନାହୁଁ ସେମାନଙ୍କର ଉଦ୍ୟମ ଆମ ଉଦ୍ୟମ ସହ ମିଶାଇବାକୁ । ସେମାନେ ନାଲେ ଓ୍ୱିକରେ ଥିବା ଇହୁଦୀ ଗଳିକୁ ଚାଲିଯାଆନ୍ତୁ । ସେଠାରେ ଭଲ ନକ୍ଷତ୍ରମାନେ ସେମାନଙ୍କୁ ବାଟ ଦେଖାଇବେ । ଆମକୁ ଅଲଗା କରିଦିଅ । ଫଳରେ ଆମେ ଅଧିକ ସଫଳତାର ସହ କାମ କରିପାରିବୁ ।

ଦ୍ୱିତୀୟ ଜୁଆରଟି ଥିଲା ସୋଲୋମୋନ, ଡାଭିଡ଼୍‌ ଆଭ୍ରନାକ୍, ମାକାବିଅସ୍ ଏବଂ ଫ୍ରିନୋଜାଙ୍କ ବଂଶଧରମାନଙ୍କର ମତାମତ । ଏମାନେ ହେଉଛନ୍ତି ଇଉରୋପର ସବୁ ପୁରାତନ ସମ୍ଭ୍ରାନ୍ତ ସମ୍ପ୍ରଦାୟର ବଂଶଧର । ହଠାତ୍ ଧନର ମାଲିକ ହୋଇ ଔଦ୍ଧତ୍ୟ ପ୍ରକାଶ କରିବା—ଏମାନେ ସହ୍ୟ କରନ୍ତି ନାହିଁ କିମ୍ବା ମଧ୍ୟଯୁଗୀୟ ଭାଇମାନଙ୍କୁ ବର୍ଜନ କରିବାକୁ ଇଚ୍ଛାକରନ୍ତି ନାହିଁ । ଏହି ଦ୍ୱିତୀୟ ଜୁଆରର ମତ ହେଉଛି, "ବସ୍ତିକୁ 'ସ୍କି' ଏବଂ 'ଇକ୍‌ଜ'ମାନେ ଚାଲିଯାଆନ୍ତୁ ।" ଆମେ ନୋଗ୍‌ମାଲିନା ଗଳିକୁ ଯାଉଛୁ । ଆମେ ଗୋଟେ ବା ଦି'ଟା କଥା ଆମ ବଡ଼ଭାଇମାନଙ୍କ ଠାରୁ ଶିଖି-

ପାରନ୍ତି; ମାତ୍ର ସେଠାରେ ଏପରି କିଛି ନାହିଁ ଯାହାକୁ ତୁମେ ଆମକୁ ଦେଇ ପାରିବ ।"

କୋର୍ଜାକ୍ ତୃତୀୟ ଦୁଆର ସମ୍ବନ୍ଧରେ ଲେଖିଥିଲେ, "ଯେଉଁମାନେ ତୃତୀୟ ଦୁଆରର ଅନ୍ତର୍ଭୁକ୍ତ ସେମାନେ କହନ୍ତି । ଆମେମାନେ ସମାନ ମାଟି ମାଆର ସନ୍ତାନ । ବର୍ଷ ବର୍ଷର ପାରସ୍ପରିକ ଯନ୍ତ୍ରଣା ଓ ଆକାଂକ୍ଷାମାନ ସଫଳତା ଆମକୁ ସମାନ ଗ୍ରନ୍ଥିର ଶୃଙ୍ଖଳ ଭିତରେ ବାନ୍ଧିରଖିଛି । ସମାନ ସୂର୍ଯ୍ୟ ଆମ ଉପରେ ଦେଦୀପ୍ୟମାନ, ସେହି ସମାନ ବରଫଝଡ଼ ଆମ କ୍ଷେତକୁ ନଷ୍ଟ କରିଦେଉଛି । ଏକା ମାଟିତଳେ ଆମ ପୂର୍ବ-ପୁରୁଷମାନଙ୍କର—ଅସ୍ଥିକଙ୍କାଳ ଆଦି ଲୁଚି ରହିଛି । ଆମ ଇତିହାସରେ ହସ ଅପେକ୍ଷା ଅଧିକ ଲୋତକ ଝରିଛି; ମାତ୍ର ତାହା ଆମର ଭୁଲ ନୁହେଁ କି ତୁମର ଭୁଲ ନୁହେଁ । ଆସ ଆମେ ସମସ୍ତେ ଏକାଠି ଗୁନ୍ଥି ହୋଇଯିବା ।"

ପୋଲାଣ୍ଡର ଜଣେ ଇହୁଦୀ ଭାବରେ ମୋର ମତାମତ ତୁମ ସମସ୍ତଙ୍କ ହୃଦୟର ଅତି ନିକଟତମ । ମୁଁ ତୃତୀୟ ଦୁଆରର ସବୁଠାରୁ ପାଖରେ ରହିଛି । ମୁଁ ହେଉଛି ତୃତୀୟ ଦୁଆର ।"

କୋର୍ଜାକଙ୍କ ମତାମତ ଏକ ସୁସ୍ଥ ମାନସିକତାର ମତାମତ ଥିଲା । ମାତ୍ର ସାରା ବାତାବରଣରେ ଘୃଣା ଭାବ ଭରିରହିଥିଲା । ଅମାନବିକ ଚିତ୍କାର ବହୁ ଉପରକୁ ଉଠିଯାଇଥିଲା । "ଇହୁଦୀମାନଙ୍କ ପଛରେ କୁକୁର ଲଗାଇ ଦିଅ ।" ଏପରି ଆଚରଣକୁ କୋର୍ଜାକ ସହଜରେ ହଜମ କରିପାରୁନଥିଲେ । ସେ ଏକ ଜଟିଳ ସମସ୍ୟା ଭିତରେ ଧନ୍ଦିଚୁନ୍ଦି ହେଉଥିଲେ ଓ ପ୍ରଥମ ଦୁଇ ଦୁଆରର ଗୃହ ଭିତରେ ନିକ୍ଷେପିତ ହୋଇ-ପଡ଼ୁଥିଲେ । ବସ୍ତିକୁ ଯିବାପାଇଁ ସେ ନିଜ ଭିତରେ ନିଷ୍ପତ୍ତି ନେଇଯାଇଥିଲେ । ଏହା ତାଙ୍କ ପାଇଁ ଏକମାତ୍ର ପଥ ନଥିଲା । ଫ୍ରାନ୍ସିସ୍ ଜକାନସ୍କା ଗଳିରୁ ୯୨-କ୍ରୋଚ୍‌ମାଲ୍‌ନା ଗଳିକୁ ଯିବାର ରାସ୍ତାଟି ମଧ୍ୟ ରହିଥିଲା । ପୋଲାଣ୍ଡର ଇହୁଦୀମାନଙ୍କ ପାଇଁ । ଆଉ କୌଣସି ପନ୍ଥା ନଥିଲା ବୋଲି ସେ ନିଶ୍ଚିତ ଥିଲେ । ଯନ୍ତ୍ରଣା ଓ ଦାରିଦ୍ର୍ୟର କଷା-ଘାତରେ ଯେଉଁ ପିଲାମାନେ ରାସ୍ତା ଉପରେ ପଡ଼ୁଥିଲେ ସେହି ଅନାଥ ଇହୁଦୀ ପିଲାମାନଙ୍କ ପାଇଁ ନିଜକୁ ସମ୍ପୂର୍ଣ୍ଣ ରୂପେ ଦେଇଦେବାକୁ ହେବ—ଏହା ଥିଲା ତାଙ୍କର ଚରମ ସିଦ୍ଧାନ୍ତ ।

ଅନାଥାଶ୍ରମର ସୀମିତତାକୁ ଦୃଷ୍ଟିରେ ରଖି ତାଙ୍କର ବାଛିବାର ପରିସର ବହୁତ କ୍ଷୁଦ୍ର ଥିଲା । ମାତ୍ର ସ୍ଥାନଟିଏ ନିର୍ବାଚନ କରିବା ପାଇଁ ସେ ସମ୍ପୂର୍ଣ୍ଣ ସ୍ୱାଧୀନ ଥିଲେ । ଯେଉଁ ପୋଲାଣ୍ଡ ଦେଶକୁ ସେ ନିଜର ବୋଲି ଗ୍ରହଣ କରିନେଇଥିଲେ, ସେହି ଦେଶର ଭାଷାରେ ପଢ଼ାଇବା ପାଇଁ ବି ତାଙ୍କର ସ୍ୱାଧୀନତା ରହିଥିଲା । ବିପ୍ଳବ ଓ ସ୍କୁଲ ଧର୍ମଘଟରେ ଲାଭ କରାଯାଇଥିବା ବିଶେଷ ସୁବିଧାଗୁଡ଼ିକ ଭିତରେ ପାଠପଢ଼ାଇବା ଗୋଟିଏ ମୁଖ୍ୟ ବିଷୟ ଥିଲା ଏବଂ ଏଥିରେ କୋର୍ଜାକଙ୍କର ଭୂମିକା ଉଲ୍ଲେଖନୀୟ ।

ଜନସମୂହକୁ ସମ୍ପୂର୍ଣ୍ଣ ଅଜ୍ଞାନତା ଏବଂ ସଂସ୍କୃତି ଶୂନ୍ୟତା ଭିତରୁ ଏକ ଉଚ୍ଚତର ସ୍ତରକୁ ଉତ୍ତୋଳିତ କରିନେବା ପାଇଁ କୋର୍ଜାକ ଏକ ମହତ୍ତ୍ୱପୂର୍ଣ୍ଣ କର୍ତ୍ତବ୍ୟ ଓ ଦାୟିତ୍ୱକୁ ନିଜ ଉପରେ ନ୍ୟସ୍ତ କରିଥିଲେ । ସେ ଦେଖିପାରୁଥିଲେ ଯେ ଏହାଦ୍ୱାରା ପ୍ରଗତିଶୀଳ ଇହୁଦୀଗୋଷ୍ଠୀ, ଇହୁଦୀ ବିରୋଧୀ ଉଦ୍ୟମ ବିରୋଧରେ ସଂଗ୍ରାମ କରିବା ପାଇଁ ନିଜକୁ ଉପଯୁକ୍ତ ଭାବରେ ସଜ୍ଜିତ କରିବେ ।

ନିଜକୁ ବାହାରର ବିଳାସପୂର୍ଣ୍ଣ ଜୀବନଧାରାଠାରୁ ଦୂରେଇ ନେବାର ନିଷ୍ପତ୍ତି ଦ୍ୱାରା କୋର୍ଜାକ କଅଣ ନିଜ ଉପରେ ବିଜୟ ହାସଲ କରିଥିଲେ ଓ ହତାଶାର ବାତାବରଣ ଭିତରେ ଆଶ୍ରୟ ଲାଭ କରିଥିଲେ ? କିମ୍ବା ଏହା କଅଣ କୋର୍ଜାକଙ୍କ ପାଇଁ ପରିସ୍ଥିତି ଅନୁସାରେ ନିଜର ସୃଜନଶୀଳତାର ପରିପ୍ରକାଶ ପାଇଁ ସର୍ବୋତ୍ତମ ଉପାୟ ଥିଲା ?

'ଜୀବନ ସ୍ମୃତି'ରେ ସେ ଏ ସମ୍ବନ୍ଧରେ ଉଲ୍ଲେଖ କରିଛନ୍ତି—ମୁଁ ଜୀବନର ଭାଗ୍ୟ ପରୀକ୍ଷା ଖେଳର ଲଟେରୀ ଟିକଟଟିଏ ଉଠାଇଲି, ବେଶୀ ନୁହେଁ । ମାତ୍ର ମୂଳ ଦାମ୍‌ଟି ।

ଏହାର ଅର୍ଥ ଯଦି ଆଉଥରେ ମୁଁ ବାଜିପକାଏ, ତେବେ ବେଶୀ କିଛି ହାରିଇ-ବାକୁ ପଡ଼ିବ ନାହିଁ । ବୋଧହୁଏ ପ୍ରଥମ ପୁରସ୍କାର ଜିତିବା ପାଇଁ ମୁଁ ସୁଯୋଗ ହରାଇଲି । ବୋଧହୁଏ···ମୂଳ ଦାମ୍‌ଟି ମୋ ପାଖକୁ ଫେରିଆସିଛି ଏବଂ ଏହାର ଦ୍ୱାରା ମୁଁ ପୁଣି ବାଜିଲଗାଇ ପାରିବି ।

ଗ୍ରେଟିଆ ଦୁଃଖଟିଏ ଥିଲା । ନିର୍ଜନତା ଅତି ଯନ୍ତ୍ରଣାଦାୟକ; କିନ୍ତୁ ମୋର ଏ ସମ୍ବନ୍ଧରେ ଅନେକ ସ୍ମୃତି ରହିଛି । ସ୍କୁଲ ସାଙ୍ଗ, ଗୋଟିଏ ଗ୍ରେଟିଆ କଫି ଦୋକାନରେ କପେ କପେ କଫି ଖାଉ ଖାଉ ମଜାଳିଆ ଗପ ସପ—ଇତ୍ୟାଦି । ମୁଁ ଆଉ ଅଧିକ ବନ୍ଧୁ ଖୋଜୁନାହିଁ । ମୁଁ ମୋ ଜୀବନ ସହ କଣାବକାର ଏକ ସର୍ତ୍ତ ରଖିପାରିଛି ଯେ ଆମେ ପରସ୍ପର କ୍ଷେତ୍ରରେ ହସ୍ତକ୍ଷେପ କରିବୁ ନାହିଁ । ମୁଁ ଯେତେ-ବେଳେ ଗ୍ଲାଡ଼ ଗ୍ଲିଲଯାଇଛି ଯେତେବେଳେ, ମୁଁ ଅନୁଭବ କରିଛି ମୋର ଅଧିକ ଦିନ ରହିବାଦ୍ୱାରା ଅଧିକ କ୍ଷତି ହେବ । ରାଜନୀତିରେ ଏହାକୁ ପ୍ରଭାବଶକ୍ତିର ବିଚ୍ଛେଦ କୁହାଯାଏ (Separation of influences) । ନିଜର ବ୍ୟକ୍ତିଗତ ଆକାଂକ୍ଷାରୁ ମୁକ୍ତ ହୋଇ ତଥା ଆପାତତଃ ଜୀବନ ସହ ଶାନ୍ତିରେ ସମୟ କଟାଇବା ପାଇଁ ସେ ଅନାଥାଶ୍ରମର କାଚ ଭିତରେ ଆଶ୍ରୟ ନେଲେ । କାଚଘରର ଝରକାଗୁଡ଼ିକରେ ପିଲମାନେ ସବୁକିଛି ଦେଖିପାରୁଥିଲେ । କୋର୍ଜାକଙ୍କର ବ୍ୟକ୍ତିଗତ ହୋଇ ଆଉ କିଛି ରହୁନଥିଲା । ନିଜ ଅନାଥାଶ୍ରମ ଭିତରେ ଜଗୁଆଳୀର ସବୁଜ ଆପ୍ରନ ପିନ୍ଧି ସେ ଜଣେ ସନ୍ନ୍ୟାସୀର ଜୀବନ ବଞ୍ଚୁଥିଲେ ।

ସେ ନିର୍ଜନତା ଭିତରକୁ ଚାଲିଯାଇ ନଥିଲେ; ମାତ୍ର ପିଲାଙ୍କ ରାଜ୍ୟରେ ପ୍ରବେଶ କରିଥିଲେ । ସେଠାରେ ତାଙ୍କୁ ଅସୀମ ଶକ୍ତି ମିଳିଥିଲା ଏବଂ ସେ ଆଧ୍ୟାତ୍ମିକ ଜୀବନ ପ୍ରତି ସହିତ ସଂପର୍କ ସ୍ଥାପନ କରିପାରିଥିଲେ । ତାଙ୍କ ଭିତରେ ସୃଜନଶୀଳ ହୋଇ-ଉଠିବାର ପ୍ରବୃତ୍ତି ପୁନର୍ବାର ଜାଗ୍ରତ ହୋଇଉଠିଲା । ଅନାଥାଶ୍ରମରେ ତାଙ୍କ ଜୀବନର ଏହି ଆଦ୍ୟ ଅବସ୍ଥାରେ ସେ ପୃଷ୍ଟତର କାମ କରିବାପାଇଁ ପ୍ରେରଣା ଲାଭ କରିଥିଲେ ।

ତାଙ୍କ କଲମରୁ ଯେଉଁ ପ୍ରଥମ ବହିଟି ନିଃସୃତ ହୋଇଥିଲା, ତାହା ହେଲା 'ଅଶୁଭ ସପ୍ତାହ' (The Ominous week) । ଚର୍ଚ୍ଚୀସ୍କୁ ବିଦ୍ୟାଳୟରେ ପାଠ-ପଢ଼ୁଥିବା ତଥା ମଧ୍ୟବିତ୍ତ ପରିବାରରେ ଜନ୍ମଗ୍ରହଣ କରିଥିବା ଜଣେ ହତାଶ, ଦୁଃଖୀ ତଥା ସାଧାରଣ ପିଲାର ନୀରସ ଜୀବନର କାହାଣୀ ପୁସ୍ତକଟିରେ ସନ୍ନିବେଶିତ ହୋଇଥିଲା ।

ତାପର ବହିଟି ଥିଲା ଖ୍ୟାତି । ଓ୍ୱାର୍ସର ବସ୍ତି ଅଞ୍ଚଳର ଛଅୋଟି ପିଲାଙ୍କ ବିଷୟରେ ଏଥିରେ ଲେଖାଯାଇଥିଲା । ଏହି ପିଲାମାନଙ୍କୁ ବଡ଼ଲୋକଙ୍କ ଜୀବନଧାରା ସହ ମିଶି ରହିବାକୁ ଦିଆଯାଇଥିଲା । ଏହା ସେମାନଙ୍କୁ ଆଦୌ ସୁହାଇ ନଥିଲା । ପିଲାମାନେ ଧନପାଇଁ ସ୍ୱପ୍ନ ଦେଖିଲେ ଏବଂ ଏଥିପାଇଁ ଚେଷ୍ଟା ଚଳାଇଲେ । ଆତ୍ମ-ପରିଚୟ ଏବଂ ସୁନାମ ପାଇଁ ମଧ୍ୟ ସ୍ୱପ୍ନ ଦେଖିଲେ । କୁନ ବ୍ଲାକେକ୍ ଜଣେ ନାମଜାଦା ଡାକ୍ତର ହେବାପାଇଁ ମଧ୍ୟ ଇଚ୍ଛା କରିଥିଲା । ମାତ୍ର ସେ ଏଥିରେ ବିଫଳ ହେଲା । ପରିଶେଷରେ ସେ ଜଣେ ପୁରୁଷ ନର୍ସ ହୋଇ ସନ୍ତୁଷ୍ଟ ହୋଇ ରହିବାକୁ ବାଧ୍ୟହେଲା । ଯେଉଁମାନେ ତାକୁ ଆଗରୁ ଜାଣିଥିଲେ ସେମାନଙ୍କ ଆଗରେ ସେ ନିଜକୁ ଗୌଣ ମନେକଲା । ମ ନିଆ ଚାହୁଁଥିଲା ସେ ଜଣେ ସୁନାମଧନ୍ୟ ଲେଖିକା ହେବ । ମାତ୍ର ସେ ସବୁଠୁଁ ତଳେ ପଡ଼ିରହିଲା । କାରଖାନାରେ ଶ୍ରମିକଟିଏ ହେଲା । ତା'ପାଇଁ ଗୋଟିଏ ମାତ୍ର ସାନ୍ତ୍ୱନା ଥିଲା, ତାହା ହେଉଛି ତା'ର ଛଅନାଲିପି ଗୋଟିଏ ଆଞ୍ଚଳିକ ଖବରକାଗଜରେ ପ୍ରକାଶିତ ହୋଇଥିଲା ଓ ଲେକ୍ ଭାବୁଥିଲା ପୁରୁଷମାନଙ୍କ ଭିତରେ ସେ ଜଣେ ବଡ଼ ନେତା ହେବ । ଶେଷରେ ସେ ସ୍ଥାନୀୟ ଶ୍ରମିକ ସଙ୍ଗଠନର ଗୋଟିଏ ଗ୍ରେଟିଆ ପଦରେ ସନ୍ତୁଷ୍ଟ ହୋଇରହିଲା । ବାସ୍ତବ ଜୀବନ କ୍ଷେତ୍ରଟି ସହ ସମ୍ମୁଖୀନ ହେବାଦ୍ୱାରା ସେମାନଙ୍କର ଉଚ୍ଚ ଅଭିଳାଷ ଠିକ୍ ମାର୍ଗରେ ପରିଚାଳିତ ହେଲା । ସେମାନେ ଯେତେ ବଡ଼ ବଡ଼ ଆଶା ବାନ୍ଧିଥିଲେ, ତା ତୁଳନାରେ ବହୁତ ତଳ ସ୍ତରରେ ରହିଲେ । ତଥାପି ସେମାନଙ୍କର ଏହି ସାଧାରଣ ସଫଳତା ଆଦୌ ମୂଲ୍ୟହୀନ ନଥିଲା ।

ଏହି ଦୁଇଟି ବହିରେ କୋର୍ଯାକ ଜୀବନରେ ଉଚ୍ଚାକାଂକ୍ଷା ପୋଷଣ କରିବା ଦ୍ୱାରା କପରି ନୈରାଶ୍ୟ ଜାତ ହୁଏ ସେ ସମ୍ବନ୍ଧରେ ଜଣାଇଥିଲେ । 'ଖ୍ୟାତି'

(The Fame) ପୁସ୍ତକରେ ସେ ଯାହା ବର୍ଣ୍ଣନା କରିଛନ୍ତି, ତାହା ତାଙ୍କର ବ୍ୟକ୍ତିଗତ ଜୀବନର ଏକ ପ୍ରତିଫଳନ ମାତ୍ର । ପରିସ୍ଥିତି ତାଙ୍କୁ ଯେପରି ହେବାକୁ ନିର୍ଦ୍ଦେଶ ଦେଇଥିଲା, ସେ ଜାଣିଶୁଣି ସେପରି କରୁଥିଲେ । ମାତ୍ର ସେ ଏକଥା ଜଣାଇ ଦେବାକୁ ଚାହୁଁଥିଲେ ଯେ ଏହିଭଳି ସଙ୍କୁଚିତ ସଫଳତାଗୁଡ଼ିକର ମଧ୍ୟ ଅନେକ ମୂଲ୍ୟ ରହିଛି । ନୀତିଶିକ୍ଷା ମାଧ୍ୟମରେ କେବଳ ଶିକ୍ଷା ନଦେଇ ସେ ନିଜ ଜୀବନ ଭିତରୁ ଉଦାହରଣମାନ ଆଣି ଉପସ୍ଥାପନ କରୁଥିଲେ ।

କୋର୍ଚ୍ଚାକ୍ "ଅନାଥାଶ୍ରମର ଗେଜେଟ୍" ନାମକ ଏକ ପତ୍ରିକା ପ୍ରକାଶ କରୁଥିଲେ । ଏଥିରେ ସପ୍ତାହକୁ ଥରେ ତାଙ୍କର ଲେଖା ବାହାରୁଥିଲା । ତାଙ୍କର ଏହି ଲେଖାଗୁଡ଼ିକ କେବଳ ସୃଜନାତ୍ମକ ଥିଲା ।

ବହୁ ଧୈର୍ଯ୍ୟର ସହ ସେ ପିଲାଙ୍କ ତତ୍ତ୍ୱାବଧାରକ ଭାବରେ ସପ୍ତାହକୁ ଥରେ ପିଲାମାନଙ୍କ ଓଜନ ଓ ଉଚ୍ଚତା ମାପୁଥିଲେ । ପିଲାଙ୍କ ମୁଣ୍ଡ ବାଳ କାଟି ଦେଉଥିଲେ, ହାତ ଓ ଗୋଡ଼ର ନଖ ମଧ୍ୟ କାଟି ଦେଉଥିଲେ ।

ଜଣେ ପିଲାକୁ "କପରି ଭଲପାଇବାକୁ ହେବ" ବହିରେ ସେ ଯେଉଁମାନେ ପିଲାଙ୍କୁ ଭଲପାଆନ୍ତି ବୋଲି ଦାବି କରନ୍ତି; ସେମାନଙ୍କର କର୍ତ୍ତବ୍ୟ ସଂପର୍କରେ ଉତ୍ତର ଦେଇ ଲେଖିଛନ୍ତି—"ତୁମେ ଯଦି ସେମାନଙ୍କୁ ଶିକ୍ଷିତ କରିବାକୁ ଚାହୁଁଥାଅ, ତୁମେ ଯଦି ସେମାନଙ୍କୁ ଗଢ଼ିବାକୁ ଚାହୁଁଥାଅ, ତାହାହେଲେ ନିରବଚ୍ଛିନ୍ନ ଭାବରେ ଦିନକୁ ୧୬ ଘଣ୍ଟା ସେମାନଙ୍କ ପିଛାରେ ଲାଗିରହିବାକୁ ପଡ଼ିବ । ଏଥିପାଇଁ କୌଣସି ଛୁଟିଦିନ ରହିବ ନାହିଁ କି କୌଣସି ରବିବାର ରହିବ ନାହିଁ । ପ୍ରତିଟି ଦିନପାଇଁ ହଜାର ରକମର କାମ ଏପରି ଭର୍ତ୍ତି ହୋଇଥିବ ଯେ କେଉଁ ଦିନ ପ୍ରକୃତରେ କଅଣ କରିବାକୁ ହେବ ସେକଥା ସଠିକ ଭାବରେ କହିବା ମୁସ୍କିଲ ହୋଇପଡ଼ିବ ।

କୋର୍ଚ୍ଚାକ ନିଜ ମନକୁ ବୋଧହୁଏ ସ୍ଥିର ଓ ଦୃଢ଼ କରିଦେଇଥିଲେ ଯେ ଯେତେ ଯାହା ବାଧା ବିପତ୍ତି, ଝଡ଼ଝଞ୍ଜା ଆସୁ ପଛକେ ସେ ତାଙ୍କ କର୍ତ୍ତବ୍ୟରୁ ନିବୃତ୍ତ ହେବେ ନାହିଁ ।

୧୯୧୪ ମସିହାରେ ପ୍ରଥମ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଗଲା । କୋର୍ଚ୍ଚାକଙ୍କୁ ଡାକ୍ତର ଭାବରେ ଋଷୀୟ ସେନାଶ୍ରେଣୀରେ କାମକରିବା ପାଇଁ ଆଦେଶ ଆସିଲା । ଆପ୍ରନ୍ ପରିଧାନ କରି କୋର୍ଚ୍ଚାକ ନିଜ ମା', ଭଉଣୀ ଆଉ ଅନାଥାଶ୍ରମଠାରୁ ବିଦାୟ ନେଇ ବାହାରିଲେ ଯୁଦ୍ଧକ୍ଷେତ୍ରକୁ ।

ଯିବାପୂର୍ବରୁ ତାଙ୍କର ପ୍ରଥମ ଲକ୍ଷ୍ୟ ଥିଲା ନିଜଘର ପାଇଁ ତଥା ଅନାଥାଶ୍ରମ ପାଇଁ ଅର୍ଥ ରଖିଦେଇ ଯିବେ । ଓ୍ୱାର୍ସର ସବୁଠାରୁ ବଡ଼ ବ୍ୟାଙ୍କରେ ଅନାଥାଶ୍ରମ ନାଁରେ ୫୦୦୦ ରୁବଲ ଗଚ୍ଛିତ ଥିଲା । କୋର୍ଚ୍ଚାକ ବ୍ୟାଙ୍କ ମାନେଜରଙ୍କୁ ଅଧିକ ପରିମାଣର ଅର୍ଥ

ଉଠାଇବା ପାଇଁ ଦରଖାସ୍ତ କଲେ । ମାନେଜର ମାତ୍ର ୨୫ରୁବଲ ଦେଇପାରିବେ ବୋଲି ଜଣାଇଲେ । କୋର୍ଯାକ ମାନେଜରଙ୍କ ଉପରେ ଭୀଷଣ ରାଗିଗଲେ ଏବଂ ପ୍ରତିବାଦ କଲେ । ସେ କହିଲେ ସେ ସେନାବାହିନୀକୁ ମେଡ଼ିକାଲ ଅଫିସର ଭାବରେ ଯାଉଛନ୍ତି । ଏହି ସମୟରେ ଅନାଥାଶ୍ରମକୁ ଚଳାଇବା ପାଇଁ ଅର୍ଥ ଦରକାର । ମାନେଜର କୋର୍ଯାକଙ୍କ ପ୍ରତିବାଦରେ ଓଲଟା ରାଗିଯାଇ ୨୫ ରୁବଲ ବି ଦେଲେ ନାହିଁ ଏବଂ ଚିତ୍କାର କରିଉଠିଲେ, "କାଣ୍ଡଜ୍ଞାନଶୂନ୍ୟ ଡାକ୍ତରଟା କଅଣ ବୁଝିପାରୁନି ଯେ ସେଆଡ଼େ ଯୁଦ୍ଧ ଲାଗିଗଲାଣି ।"

ମାନେଜର ମନାକରିଦେବାରୁ କୋର୍ଯାକ ବିବ୍ରତ ହୋଇପଡ଼ିଲେ ଏବଂ ନିଜ ପ୍ରକାଶକ ଜାକୁବ୍ ମୋରଡକୋଓ୍ୱିକ୍‌ଜଙ୍କ ପାଖକୁ ଗଲେ । ଏହି ପ୍ରକାଶକଙ୍କ ପାଖରେ ସବୁଠାରୁ ଖରାପ ସମୟ ପାଇଁ ସେ ୧୦୦ ରୁବ୍‌ଲ ରଖିଥିଲେ ।

ପ୍ରକାଶକ ଡାକ୍ତରଙ୍କୁ ୧୦୦ ରୁବ୍‌ଲରୁ ଅଧିକ ଅର୍ଥ ଅଗ୍ରୀମ ଦେଇଥିଲେ । ଏହି ଅର୍ଥ ସେ ସମୟରେ କୋଯାକଙ୍କ ମା'ଙ୍କର ଜରୁରୀ ଆବଶ୍ୟକତା ମେଣ୍ଟାଇ ଦେଇଥିଲା । କୋଯାକ ଅନାଥାଶ୍ରମ ପାଇଁ ବଡ଼ ଚିନ୍ତାରେ ପଡ଼ିଯାଇଥିଲେ; ମାତ୍ର ଷ୍ଟିଫା ଓ୍ୱିଲ୍‌କଯ୍‌ଜନ୍‌ସ୍କାଙ୍କ ଯୋଗୁଁ ଅନାଥାଶ୍ରମରେ କୌଣସି ପ୍ରକାର ଅସୁବିଧା ହୋଇନଥିଲା ।

## (୧୨) ଯୁଦ୍ଧର ବିଭୀଷିକା ଭିତରେ ଏକ ସୃଜନଶୀଳ ମାନବ

### ପ୍ରଥମ ବିଶ୍ୱଯୁଦ୍ଧର ବିଭୀଷିକା —

୧୯୧୪ରୁ ୧୯୧୮ ପ୍ରଥମ ବିଶ୍ୱଯୁଦ୍ଧର ବିଭୀଷିକା ସମୟରେ ସବୁଆଡ଼େ ଭୀତିତ୍ରସ୍ତତା ଭରିରହିଥିଲା । ପ୍ରତି ମୁହୂର୍ତ୍ତରେ ଅଘଟଣ ଘଟିବାର ସମ୍ଭାବନାରେ ପୃଥିବୀ ଥରିଉଠୁଥିଲା । ଏ ସମୟରେ ଡାକ୍ତର କୋର୍ଯାକ୍ ନିଜ ଉପରେ ଲଗାଇଥିବା ଆତ୍ମନିବାସନରୁ ନିବୃତ୍ତ ହେବାକୁ ବାଧ୍ୟ ହେଲେ । ପ୍ରତିଦିନ ଡାକ୍ତରଖାନାରେ ଯୁଦ୍ଧ କ୍ଷେତ୍ରରେ କ୍ଷତବିକ୍ଷତ ହୋଇଥିବା ରୋଗୀମାନଙ୍କର ଆର୍ତ୍ତନାଦ ସାଙ୍ଗକୁ ଶବମାନଙ୍କର ସଂଖ୍ୟା ବଢ଼ିଚାଲିଥିଲା । ମଣିଷକୃତ ଏହି ନିଚ୍ଛକ ବାସ୍ତବତା ଡାକ୍ତର କୋର୍ଯାକ୍‌ଙ୍କ ହୃଦୟକୁ ବିଦୀର୍ଣ୍ଣ କରିଦେଉଥିଲା ଏବଂ ତାଙ୍କ ଶରୀରରେ କ୍ଳାନ୍ତ ଓ ଅବସନ୍ନତା ଭରି ଦେଉଥିଲା ।

ଡାକ୍ତରଖାନାରେ ଜଣେ ଡାକ୍ତରର କର୍ତ୍ତବ୍ୟ ଭାବରେ ସେ ରୋଗୀ ଚିକିତ୍ସା କରୁଥିଲେ । କ୍ଷତ ଜାଗାକୁ ଡ୍ରେସିଂ କରୁଥିଲେ । କଟିଯାଇଥିବା ମାଂସକୁ ସିଲାଇ କରି

ବ୍ୟାଣ୍ଡେଜ୍ କରୁଥିଲେ । ଆବଶ୍ୟକହେଲେ ଅସ୍ତ୍ରୋପଚାରକରି ନଷ୍ଟ ହୋଇଯାଇଥିବା ଶରୀରର କୌଣସି ଅଙ୍ଗକୁ କାଟି ବାହାର କରିଦେଉଥିଲେ । ରିଠାରେ ଔଷଧ ଲେଖୁଥିଲେ । କିନ୍ତୁ ନିଜ ଅନ୍ତର ଭିତରେ କୋଉ ଏକ ନିଭୃତ ସ୍ଥାନରେ ନିଜ କର୍ତ୍ତବ୍ୟକୁ ସାଇତି ରଖିଥିଲେ । ତାହା ହେଲା, ଶିକ୍ଷା ପଦ୍ଧତି, ପିଲାଙ୍କ ଲାଳନପାଳନ ବିଧି, ପିଲାଙ୍କ ପାଇଁ ସୃଜନଶୀଳ ରଚନା ସୃଷ୍ଟି କରିବା ।

ଡାକ୍ତର କୋର୍ଜାକ୍ ପିଲାଙ୍କ ଶିକ୍ଷା ପଦ୍ଧତିକୁ ନେଇ ଏକ ଗବେଷଣାତ୍ମକ ପ୍ରବନ୍ଧ ଲେଖିଥିଲେ । ଏହି ଲେଖାଟି ଗବେଷଣାତ୍ମକ ହେଲେ ମଧ୍ୟ ପ୍ରେରଣାଦାୟକ ତଥା ହୃଦୟସ୍ପର୍ଶୀ ଥିଲା ।

ଯୁଦ୍ଧ ଆରମ୍ଭ ହେବା ପରେ ପରେ ଡାକ୍ତର କୋର୍ଜାକ୍ ସୃଜନଶୀଳ କାର୍ଯ୍ୟ ଭିତରେ ସମ୍ପୂର୍ଣ୍ଣ ରୂପେ ନିବିଷ୍ଟ ରହୁଥିଲେ । ଯେତେବେଳେ ଗୁଳିବାରୁଦର ଦାରୁଣ ଗର୍ଜନ ଗଗନ ପବନକୁ ପ୍ରକମ୍ପିତ କରିଦେଉଥିଲା ଏବଂ ବାୟୁମଣ୍ଡଳରେ ମୃତ ସୈନିକ-ମାନଙ୍କର ରକ୍ତର ଗନ୍ଧ ଭାସିଆସୁଥିଲା, ଯେତେବେଳେ ମଧ୍ୟ କୋର୍ଜାକ୍ଙ୍କର ସ୍ଥିର ପ୍ରଶାନ୍ତ ଚିତ୍ତ ଭିତରେ ଶିକ୍ଷାପାଇଁ ଆଭାସମାନ ଉଙ୍କି ମାରୁଥିଲେ । ଯୁଦ୍ଧକ୍ଷେତ୍ରର ଡାକ୍ତରଖାନାରେ କର୍ମରତ ଥାଇ ମଧ୍ୟ ସେ ଶିକ୍ଷା ସମ୍ବନ୍ଧରେ ଅନେକ ବିଷୟ ଚିନ୍ତା କରୁଥିଲେ ଏବଂ ପିଲାର ଅଧିକାର ଉପରେ ପ୍ରବନ୍ଧମାନ ରଚନା କରିଥିଲେ ।

ପିଲାଙ୍କ ପାଇଁ ସେ କେଉଁ ପ୍ରକାରର ମତ ପୋଷଣ କରୁଥିଲେ ତାହା ତାଙ୍କ ଆତ୍ମଜୀବନୀରେ ଲେଖାହୋଇଥିବା ଏକ ବକ୍ତବ୍ୟରୁ ସ୍ପଷ୍ଟଭାବରେ ଅନୁମିତ ହୁଏ । ସେହି ବକ୍ତବ୍ୟଟି ଏହିପରି—"ମୁଁ ତିନୋଟି ଯୁଦ୍ଧ ଭିତର ଦେଇ ଜୀବନ ବିତାଇଛି । ମୁଁ ଦେଖିଛି ପେଟ ଚିରିହୋଇଯାଇଥିବା ମଣିଷମାନଙ୍କୁ, ମୁଣ୍ଡମଣ୍ଡଳ ଓ ମୁଣ୍ଡମାନଙ୍କରେ ଭୟଙ୍କର ଖଣ୍ଡିଆଖାବରା ହୋଇଥିବା ମଣିଷମାନଙ୍କୁ । ମୁଁ ଦେଖିଛି କ୍ଷତବିକ୍ଷତ ସୈନିକମାନଙ୍କୁ, ସାଧାରଣ ଜନତାଙ୍କୁ ଏବଂ ଶିଶୁମାନଙ୍କୁ । କିନ୍ତୁ ମୋ ପାଇଁ ସବୁଠାରୁ ନିର୍ଦ୍ଦୟ ଓ ନିଷ୍ଠୁର ଘଟଣା ହେଉଛି ମଦ୍ୟପାନଗ୍ରସ୍ତ ବ୍ୟକ୍ତିଦ୍ୱାରା ନିରୀହ ଶିଶୁଟିଏ ମାଡ଼ ଖାଇଥିବାର ଦୃଶ୍ୟ ।"

ଯୁଦ୍ଧକ୍ଷେତ୍ରର ଡାକ୍ତରଖାନାରେ ଡାକ୍ତର ଭାବେ କାମ କରୁଥିବାବେଳେ, ସେ ଅନାଥାଶ୍ରମ ପାଇଁ ପ୍ରତ୍ୟକ୍ଷଭାବେ କିଛି କରିପାରୁ ନଥିଲେ । ମାତ୍ର ସମସ୍ତ ପାଗଳ ମାନଙ୍କେ ଅନାଥାଶ୍ରମପାଇଁ ଯୋଜନାମାନ ପ୍ରସ୍ତୁତ କରୁଥିଲେ ଏବଂ ତା' ପାଇଁ ସ୍ୱପ୍ନ ଦେଖୁଥିଲେ । ସେ ଏହି ସମୟରେ ଅନାଥାଶ୍ରମର 'ନ୍ୟାୟ କୋର୍ଟ' ପାଇଁ ନିୟମମାନ ଲେଖିଥିଲେ । 'ନ୍ୟାୟକୋର୍ଟ'ଟି ପିଲାମାନଙ୍କଦ୍ୱାରା ତିଆରି ହେବ ଏବଂ ପିଲାମାନେ ଏଥିପାଇଁ ନିର୍ବାଚନ କରିବେ ବୋଲି ସେ କରିଥିବା ନିୟମ ଭିତରେ ଉଲ୍ଲେଖ କରିଥିଲେ ।

ଯୁଦ୍ଧକ୍ଷେତ୍ର ସାମନାରେ ଛୁଡ଼ାହୋଇଥିବାବେଳେ ଡାକ୍ତର କୋର୍ଝାକ୍ ନିଜ ଭିତରେ ଦେଖୁଥିବା ଦୁଇପ୍ରକାରର ଜୀବନଧାରାକୁ ଅତି ପରିଷ୍କାର ଭାବେ ଉଲ୍ଲେଖ କରିଛନ୍ତି । ଗୋଟିଏ ଦିଗରେ ପ୍ରତିଦିନ ଯୁଦ୍ଧରେ ଘଟୁଥିବା ନିର୍ଦ୍ଦୟ ଘଟଣା ପ୍ରବାହ ଏବଂ ଅନ୍ୟ ଦିଗରେ ନୂଆ ମଣିଷଟି ପାଇଁ ତାଙ୍କ ଭିତରେ ଅଙ୍କୁରିତ ହୋଇଉଠୁଥିବା ଚିନ୍ତା ଓ ସ୍ୱପ୍ନର ଉଦ୍‌ବେଳନ । କୋର୍ଝାକ୍ ଏକାଧାରରେ ଥିଲେ ଜଣେ ଶିକ୍ଷକ, ଦାର୍ଶନିକ ଏବଂ ଡିଭିଜନାଲ ଡାକ୍ତରଖାନାରେ ଜଣେ ଜୁନିଅର ଅଫିସର୍ । ଯୁଦ୍ଧର ବର୍ବରତା ଭିତରେ ସେ ଭବିଷ୍ୟତ ବଂଶଧରଙ୍କ ପାଇଁ ଏକ ସୁନ୍ଦର ଜୀବନର ଯୋଜନାରେ ନିଜକୁ ହଜାଇ ଦେଇଥିଲେ । ତାଙ୍କ ଚାରିପାଖରେ ଯେତେବେଳେ ଯୁଦ୍ଧର କରାଳଗ୍ରାସ ଘେରିରହିଥିଲା, ସେତେବେଳେ ସେ ଲେଖୁଥିଲେ ପୁସ୍ତକ ପରେ ପୁସ୍ତକ । ଯଦି ସେ ସାଧାରଣ ମଣିଷ ଚେତନାରୁ ନିଜକୁ ଊର୍ଦ୍ଧ୍ୱରେ ଅବସ୍ଥାପିତ କରିପାରୁ ନଥା'ନ୍ତେ, ତେବେ ଏହା ଆଦୌ ସମ୍ଭବ ହୋଇପାରୁ ନଥା'ନ୍ତା ।

'ପିଲାଟିକୁ କିପରି ଭଲପାଇବ' (How to love a child) ପୁସ୍ତକଟିକୁ ସେ ମିଲିଟାରି ଡାକ୍ତରଖାନାରେ କାମ କରୁଥିଲାବେଳେ ଲେଖିଥିଲେ । ଯୁଦ୍ଧକ୍ଷେତ୍ରରେ କର୍ମରତ ସମୟରେ ଅବସର ଟିକେ ପାଇଲେ ସେ କାଗଜ କଲମ ଧରି ବସିପଡ଼ୁଥିଲେ ଏବଂ ତାଙ୍କ ଲେଖନୀ ମୁନରୁ ନିଃସୃତ ହେଉଥିଲା ଅନ୍ତରର ବେଦନାସିକ୍ତ ଭାବନା-ଗୁଡ଼ିକ । ଶିଶୁପାଇଁ ଆବଶ୍ୟକ ହେଉଥିବା ସମ୍ବେଦନଶୀଳତା, ଶିଶୁର ଅଧିକାର, ପିତାମାତା ଏବଂ ସମାଜର ଶିଶୁପାଇଁ ଥିବା ଦାୟିତ୍ୱ ଓ କର୍ତ୍ତବ୍ୟ ତଥା ସେମାନଙ୍କର ନିଜର କାର୍ଯ୍ୟ ଖସଡ଼ା ଇତ୍ୟାଦି ଇତ୍ୟାଦି ସମ୍ପର୍କରେ ସେ ଲେଖୁଥିଲେ । କୋର୍ଝାକ ଲେଖିଛନ୍ତି—"ମୁଁ କିଭ୍‌ରେ ଥିବାବେଳେ ନିୟମିତ ଲେଖୁଥିଲି । ଲେଖିବାପାଇଁ ସତେ ଯେପରି ମୁଁ ପାଗଳ ହୋଇଯାଉଥିଲି । ଲେଖିବା ଦ୍ୱାରା ମୁଁ ଅବସନ୍ନତାରୁ ରକ୍ଷାପାଇ ଅନେକ ସତେଜ ହୋଇପାରୁଥିଲି । ଲେଖିବା ମୋ ପାଇଁ ସବୁଠାରୁ ବାସ୍ତବ ଥିଲା ।"

ତାଙ୍କ ପରିବାରକୁ ଲେଖିଥିବା ଗୋଟିଏ ଚିଠିରେ ସେ ଲେଖିଛନ୍ତି— "ସୈନ୍ୟବାହିନୀ ଆଗକୁ ମାଡ଼ିଚାଲିଲେ ଏବଂ ତା'ପରେ ଅଟକିଗଲେ । ଆମେ ଫେରି-ଆସିଲୁ । କ୍ଷତବିକ୍ଷତ ରୋଗୀମାନେ ଡାକ୍ତରଖାନାକୁ ବୁହାହୋଇ ଆସିଲେ । ସେମାନଙ୍କର ସେବା ଶୁଶ୍ରୂଷା କରାଯାଇ ଗ୍ଲାନ୍ତିଦିଆଗଲା । କେତେକ ମରିଗଲେ । ମୁଁ ମୋର ଲେଖାଲେଖି କଲି ।" ଏଥିରୁ ସ୍ପଷ୍ଟ ଅନୁଭୂତ ହେଉଛି ଯେ ଜୀବନର କାରୁଣ୍ୟ ଭିତରେ ମଧ୍ୟ କୋର୍ଝାକ୍‌ଙ୍କର ଅନ୍ତର ମଣିଷଟି ଅବିଚଳିତ ହୋଇ ରହିଥିଲା ଏବଂ କଳ୍ପନାର ଭବିଷ୍ୟତ ପାଇଁ ଅପେକ୍ଷାରତ ଥିଲା । ସେହି ଭବିଷ୍ୟତର ଆଶୁ ଆଗମନ ପାଇଁ ଯୋଜନା ପ୍ରସ୍ତୁତ କରିଚାଲିଥିଲେ ଏବଂ ଘନ କୁହେଳିକାପୂର୍ଣ୍ଣ ସାମାଜିକ ବାତାବରଣଟିକୁ ଅନୁକୂଳଧର୍ମୀ କରାଇବା ପାଇଁ ନିଜର ସୃଜନଶୀଳ ଲେଖନୀର ପ୍ରଭାବକୁ ବିସ୍ତାରିତ କରୁଥିଲେ ।

ନିଜ ଗୃହପାଖରେ ଘଟୁଥିବା ହୃଦୟ ବିଦାରକ ଘଟଣାସମୂହ ଭିତରେ ରହି ମଧ୍ୟ ସେ ନିଜ ସ୍ୱପ୍ନ ଓ ସାଧନା ଭିତରେ ଅନ୍ତର୍ମୁଖୀ ହୋଇ ରହୁଥିଲେ । ଏହାର ପ୍ରଭାବରେ ସେ ରୋଗୀ ଶଯ୍ୟାରୁ ଔଷଧାଳୟ ଓ ଔଷଧାଳୟରୁ ନିଜ ଲେଖା କାଗଜ ଉପରକୁ ଦୌଡ଼ି ଚାଲିଯାଉଥିଲେ ଏବଂ ପିଲାଙ୍କ ଶିକ୍ଷାପାଇଁ ତାଙ୍କର ଭାବନା ପ୍ରକାଶ କରିଚାଲିଥିଲେ ।

ତାଙ୍କ ସୈନ୍ୟବାହିନୀ କିଭ୍‌ରେ ପହଞ୍ଚିଲା । ସେଠାରେ ଥିବା ପୋଲାଣ୍ଡ ଲୋକଙ୍କ ଭିତରେ ଖବର ପ୍ରଚାର ହୋଇଗଲା ଯେ ରୁଷିଆ ଫୌଜରେ ଜଣେ ବିଚିତ୍ର ଡାକ୍ତର ଅଛନ୍ତି । ତାଙ୍କ ନାଁ ହେନେରିକ୍ ଗୋଲ୍‌ଡସ୍ମିଥ୍ । କେହି ଜଣେ କହିଲେ, ଏହି ବିଚିତ୍ର ଡାକ୍ତର ଜଣଙ୍କ ଜଣେ ଲେଖକ ମଧ୍ୟ । ଅର୍ଥାତ୍ ଆଗରୁ ଗୋଲ୍‌ଡସ୍ମିଥଙ୍କ ଲେଖା ସମ୍ବନ୍ଧରେ ଲୋକମାନେ ଜାଣିଥିଲେ ରୁଷିଆର ଶାସନକଳ ଭିତରେ ଥିବା ଜଣେ କିଛିଣି ଅନେକ ସମ୍ଭ୍ରାନ୍ତ ବ୍ୟକ୍ତି ଥିଲେ । ସେ ଅନେକ ବହି ପଢ଼ାପଢ଼ି କରୁଥିଲେ । ବ୍ୟକ୍ତି ହିସାବରେ କିଭ୍‌ର ପୁରୁଣା ବିପ୍ଳବୀ ଗୋଷ୍ଠୀ ଭିତରେ ତାଙ୍କର ଅନେକ ପ୍ରତିଷ୍ଠା ଥିଲା । ସେ ଆଗରୁ କୋର୍ଚାକ୍‌ଙ୍କ ଲିଖିତ ଅନେକ ବହି ପଢ଼ାପଢ଼ି କରିଥିଲେ । ସେ ନିଃସନ୍ଦେହ ଥିଲେ ଯେ ଏହି ବିଚିତ୍ର ବ୍ୟକ୍ତି ଜଣଙ୍କ ହିଁ ଏକାଧାରରେ ଜଣେ ଡାକ୍ତର, ବିଶିଷ୍ଟ ଲେଖକ ତଥା ଇହୁଦୀ ସଂପ୍ରଦାୟର ଲୋକ । କିଛିଣି ଜଣଙ୍କ କୋର୍ଚାକ୍‌ଙ୍କୁ ନିମନ୍ତ୍ରଣ କରି ଡକାଇଲେ । ଉଭୟଙ୍କ ଭିତରେ ପ୍ରଥମେ ରୁଷିଆ ଭାଷାରେ ପୂରାପୂରି ଅଫିସ୍ କାଇଦାରେ କଥାବାର୍ତ୍ତା ଆରମ୍ଭ ହେଲା; କିନ୍ତୁ ଶେଷ ହେଲା ପୋଲାଣ୍ଡ ଭାଷାରେ ଏବଂ ସେମାନେ ବନ୍ଧୁତ୍ୱ ପ୍ରେମରେ ହାତ ମିଳାଇ ପରସ୍ପରଠାରୁ ବିଦାୟ ନେଲେ ।

ଏହାଦ୍ୱାରା ଡାକ୍ତର କୋର୍ଚାକ୍‌ଙ୍କର ଅନେକ ଲାଭ ହେଲା । ସେ ରୁଷିଆରେ ସୈନ୍ୟ ରହିବା ଜାଗାରୁ କିଭ୍‌ରେ ସୈନ୍ୟ ରହୁଥିବା ଜାଗାକୁ ସ୍ଥାନାନ୍ତରିତ ହେଲେ । ଏଠାରେ ସେ ୟୁକ୍ରେନ୍‌ର ପିଲାମାନଙ୍କ ପାଇଁ ଥିବା ଅନାଥାଶ୍ରମରେ ଜଣେ ଶିଶୁ ବିଶେଷଜ୍ଞଙ୍କ ଅଧୀନରେ ସହଯୋଗୀ ଡାକ୍ତର ଭାବରେ କାମ କଲେ । ଶିଶୁବିଶେଷଜ୍ଞଙ୍କ ନାଁ ଡାକ୍ତର ସାଲେଜକିଉର । କିଭ୍‌ରେ ଡାକ୍ତର କୋର୍ଚାକ୍‌ଙ୍କୁ ଛଅମାସ ରହିବାକୁ-ପଡ଼ିଲା ।

ପୋଲାଣ୍ଡ ଛାଡ଼ି ବାହାରେ ଏତେଦିନ ରହିବା କୋର୍ଚାକ୍‌ଙ୍କ ପାଇଁ ପ୍ରକୃତରେ ସମସ୍ୟାବହୁଳ ଥିଲା । ତାଙ୍କ ଜୀବନରେ ଏହା ଥିଲା ଏକ ଘଡ଼ିସନ୍ଧି ସମୟ । ପରେ ସେ ଏ ସମ୍ବନ୍ଧରେ ଲେଖିଛନ୍ତି—"କିଭ୍ ବଡ଼ ଗୋଳମାଳିଆ ଅବସ୍ଥାରେ ଅଛି । ଗତକାଲି ବୋଲ୍‌ସେଭିକ୍‌ସ ଓ ଆଜି ୟୁକ୍ରେନୀୟ ଜର୍ମନମାନେ ପାଖେଇ ଆସିଲେଣି । ସାରା ରୁଷିଆ ଅଫିସ୍ କାଗଜପତ୍ରରେ ଜାର୍‌ଙ୍କ ଅଧୀନରେ ଥିଲା; ମାତ୍ର ପୁରା

ବିପଦସଙ୍କୁଳ ଅବସ୍ଥାରେ ରହିଛି ବୋଲି ଜଣାପଡ଼ୁଥିଲା । ଏହି ଛଅମାସକାଳ ମୁଁ ଲଭ୍ ପାଖରେ ଥିବା ଓଟୋକି ଅନାଥାଶ୍ରମରେ ଡାକ୍ତର ଦାୟିତ୍ୱରେ ଥିଲି । ହତ୍ୟା ଏଭଳି ଏକ ନୈତିକମିଆ ଘଟଣା ହୋଇପଡ଼ିଥିଲା ଯେ କେହି ହତ୍ୟା ସମ୍ବାଦ ଶୁଣିଲେ ଚକିତ ହୋଇପଡ଼ୁନଥିଲେ । ଏହି ବର୍ଷଗୁଡ଼ିକର ସମ୍ଭାବ୍ୟ ଆଭିମୁଖ୍ୟଗୁଡ଼ିକୁ ମୋର ହୃଦ୍ୟମଗୁଡ଼ିକ ସହ ତୁଳନା କଲାବେଳେ ମୋର ପ୍ରଚେଷ୍ଟା ଅତି ନ୍ୟୂନ ମନେ-ହେଉଥିଲା । ମୁଁ ନିଜକୁ ସଙ୍ଗଠିତ ଓ ସଂପ୍ରସାରିତ କରିବା ପାଇଁ ଚେଷ୍ଟା କଲି । ଏକ ଉଦାର କର୍ତ୍ତବ୍ୟବୋଧର ଦୃଷ୍ଟିକୋଣରୁ ମୁଁ ପିଲାମାନଙ୍କୁ ରକ୍ଷାକରିବା ପାଇଁ ପ୍ରାଣପଣେ ଉଦ୍ୟମ କରିଥିଲି ।''

ପିଲଙ୍କ ପାଇଁ ଏକ ଦରଦୀ ଡାକ୍ତର ହିସାବରେ ଏବଂ ଜଣେ ସମ୍ବେଦନଶୀଳ ସମାଜସେବୀ ହିସାବରେ କର୍ଚ୍ଚକ ଏହି ହୃଦୟବିଦାରକ ଶଙ୍କାକୁଳ ପରିସ୍ଥିତି ବିଷୟରେ ତାଙ୍କର ଜୀବନ ବ୍ୟଥାଟିକୁ ସେ ଆଉ ଅଧିକ ବର୍ଣ୍ଣନା କରିନଥିଲେ । ମାତ୍ର ପିଲଙ୍କ ବିଷୟରେ ବର୍ଣ୍ଣନା କରି ସେ ଲେଖିଛନ୍ତି—ପିଲଙ୍କ ଦେହସାରା ଘଣ୍ଡିଆ ଘାବରା ଓ ପୂଜପାଣି ଭରି ରହିଥିଲା । ଆଖିଗୁଡ଼ିକରେ ଲେଞ୍ଜରା ପୂରି ରହିଥିଲା । ପୁଷ୍ଟିକର ଖାଦ୍ୟର ଅଭାବ ସାଙ୍ଗକୁ ଉପଯୁକ୍ତ ଚିକିତ୍ସାର ଅଭାବ । ଏହାଦ୍ୱାରା ପିଲମାନେ ଅସୁସ୍ଥ ହୋଇପଡୁଥିଲେ । ସେମାନଙ୍କର ଯତ୍ନନେବାପାଇଁ କେହି ନଥିଲେ । ସେମାନେ ଭୋକରେ ଆଉଟୁ ପାଉଟୁ ହୋଇପଡୁଥିଲେ । କିନ୍ତୁ ଏହି ସମୟରେ ପରିଚାଳନା କର୍ତ୍ତୃପକ୍ଷଙ୍କ ତରଫରୁ ଅନାଥାଶ୍ରମରେ ଜଣେ ମହିଳା ସିଲେଇ ଶିକ୍ଷକଙ୍କୁ ନିଯୁକ୍ତ ଦିଆଯାଇଥିଲା ।

ଏସବୁକୁ ନୀରବରେ ସହିଯିବା ପାଇଁ ମୋ ପାଖରେ ଧୈର୍ଯ୍ୟ ନଥିଲା । ଏଥିପାଇଁ ମୁଁ ଅଭିଯୋଗ କଲି, ବିରୋଧ କଲି, ଯାହାକି ପରିଚାଳନା କର୍ତ୍ତୃପକ୍ଷଙ୍କୁ ଅରୁଆ ଲଗିଲା । ମୁମୂର୍ଷୁ ଘୋଡ଼ାକୁ ହତ୍ୟା କରିବା ପାଇଁ ଯେଉଁ ବନ୍ଧୁକ ନଳୀରୁ ଗୁଳି ଫୁଟାଯାଉଥିଲା, ସେହି ବନ୍ଧୁକର ନଳୀକୁ ମୋତେ ଦେଖାଇ ସତର୍କ କରିଦିଆଗଲା ଯେ ମୁଁ ଭୁଲ୍ ଜାଗାରେ ଭୁଲ ସମୟରେ ରହିଯାଇଛି । ଏ ସମୟରେ ସେଠିକାର ଅବସ୍ଥା ଏତେ ତଳକୁ ଖସିଯାଇଥିଲା ଯେ ତାକୁ କୌଣସି ମାନବୋଚିତ ଭାଷାରେ ବର୍ଣ୍ଣନା କରିବା ସମ୍ଭବ ନୁହେଁ ।

ଚତୁଃପାର୍ଶ୍ୱରେ ଯୁଦ୍ଧ ଏବଂ ବିପ୍ଳବର ଗଣ୍ଡଗୋଳିଆ ବାତାବରଣ । ଏହି ସମୟରେ ସୋଭିଏତ୍ ସୋସିଆଲିଷ୍ଟ ରିପବ୍ଲିକ୍‌ର ନୂଆଅନ୍ ମୁଣ୍ଡ ଟେକି ଉଠୁଥିଲା । ଏହା ଯେତେ ସୁଦୃଢ଼ ନଥିଲା । ସେତେବେଳେ ନିଜର ଅସ୍ତିତ୍ୱଟିକୁ ବଜାୟ ରଖିବା ପାଇଁ ସବଦା ସଂଗ୍ରାମରତ ଥିଲା । ଏହାରି ଭିତରେ କୋର୍ଚ୍ଚାକ୍ ତାଙ୍କର ଶିକ୍ଷାପଦ୍ଧତିର ପରୀକ୍ଷାମୂଳକ ଫଳାଫଳକୁ ଅଧ୍ୟୟନ କରୁଥିଲେ । ବଉରେ କଟାଇଥିବା ସମୟଟିକୁ

ସେ ଅତି ଘୃଣାର ସହ ବର୍ଣ୍ଣନା କରିଛନ୍ତି । ଏହା ଥିଲା ଉତ୍ପୀଡ଼ନ ଓ ଅତ୍ୟାଚାରର ସମୟ ଏବଂ ଜଅନ୍ତା ପିଲଙ୍କ ଉପରେ ଛୁରି ଚଲାଇ ପରୀକ୍ଷା କରିବାର ସମୟ ।

ମାତ୍ର ଏହି ସମୟରେ କୋର୍ଚ୍ଚାକ୍‌ଙ୍କ ପାଇଁ ଏକ ଅପ୍ରତ୍ୟାଶିତ ଅନୁକୂଳ ଘଟଣାଟିଏ ଘଟିଲା । କ୍ରଭ୍‌ର ବୋର୍‌ଟ ଷ୍ଟ୍ରିଟ୍‌ରେ ୬୦ ଜଣ ପୋଲାଣ୍ଡ ପିଲାଙ୍କୁ ନେଇ ଏକ ଆବାସିକ ସ୍କୁଲ୍ ଖୋଲିଥିଲା । ଦଲେ ଗ୍ରୁଡ ଓ୍ୱାସୋରୁ ଏହି ସ୍କୁଲକୁ ଆସିଥିଲେ । ମାରିନା ଫାଲ୍‌ସ୍କା ଏହାର ଦାୟିତ୍ୱରେ ଥିଲେ । ସେ ଜଣେ ଅତି ଉଦାର ସମ୍ଭ୍ରାନ୍ତ-ସମ୍ପନ୍ନ ଏବଂ ନିଷ୍ଠାପର ମହିଳା । ନିଜ ଜୀବନ ଓ ପରିବାରର ଅନେକ ଦୁଃଖଦ ଘଟଣାକୁ ଭୁଲିଯିବା ସକାଶେ ପିଲାମାନଙ୍କ ଶିକ୍ଷାପାଇଁ ସମ୍ପୂର୍ଣ୍ଣ ଭାବେ ଜୀବନ ବିତାଇ ଦେବାପାଇଁ ସେ ନିଷ୍ପତ୍ତି ନେଇସାରିଥିଲେ ।

ଡେିବାକ୍ତ କୋର୍ଚ୍ଚାକ୍ ଏହି ସ୍କୁଲ୍ ବିଷୟରେ ଅବଗତ ହେଲେ । କୌଣସିମତେ ମାରିନା ଫାଲ୍‌ସ୍କାଙ୍କ ସହ ଦେଖା କରିବାପାଇଁ ସେ ସବୁପ୍ରକାର ଉଦ୍ୟମ କଲେ । ଶେଷରେ ସେ ସଫଳ ହେଲେ । ସ୍କୁଲରେ ପୋଲାଣ୍ଡ ଅଧିବାସୀଙ୍କ ପରିବେଷ୍ଟନୀକୁ ଦେଖି ସେ ଅଭିଭୂତ ହୋଇପଡ଼ିଥିଲେ । ଏହି ସ୍କୁଲ୍ ପ୍ରତି ତାଙ୍କ ହୃଦୟ ସମ୍ପୂର୍ଣ୍ଣ ରୂପେ ଢଳିଗଲା । କ୍ରଭ୍‌ରେ ଏତେଦିନର ଯନ୍ତ୍ରଣାଦାୟକ ଜୀବନ ଭିତରେ ଏହି ସ୍କୁଲ୍ ହିଁ ତାଙ୍କ ପାଇଁ ପ୍ରଥମ ମହୋଷଧି ଭଳି କାମକଲା ।

ଏହି ସ୍କୁଲ୍‌ରେ ପିଲାମାନେ ଭାରି ବିଶୃଙ୍ଖଳ ଥିଲେ । ବାହ୍ୟ ଅସ୍ଥିରତା, ଯୁଦ୍ଧ ଆଦିର ପ୍ରଭାବ ପିଲାଙ୍କ ଉପରେ ପଡ଼ିଥିଲା । ପିଲାମାନେ ଦିଦୀ ମାରିନା ଫାଲ୍‌ସ୍କାଙ୍କୁ ମାନିବାକୁ ପ୍ରସ୍ତୁତ ନଥିଲେ । ସେମାନେ ବହୁତ ଜିଦ୍‌ଖୋର ତଥା ଅମାନିଆ ଥିଲେ । କ୍ଷୁଧା ଯନ୍ତ୍ରଣାରେ ସେମାନେ ଜର୍ଜରିତ ଥିଲେ ।

କୋର୍ଚ୍ଚାକ୍ ଡ.କ୍ରରି ୟୁନିଫର୍ମ ପିନ୍ଧି ସିଧା ଡାକ୍ତରଖାନାରୁ ସ୍କୁଲ୍‌କୁ ଯାଉଥିଲେ ଏବଂ ସ୍କୁଲ୍‌ରେ ଠିକ୍ ସମୟରେ ପହଞ୍ଚିଯାଉଥିଲେ । ପିଲାମାନେ ଏଭଳି ଜଣେ ବ୍ୟକ୍ତିଙ୍କୁ ଲୋଡ଼ୁଥିଲେ, 'ଯାହାକୁ ସେମାନେ ସମ୍ମାନ ଦେବେ ଏବଂ ସେ ବ୍ୟକ୍ତିଟି ମହିଳା ନ ହୋଇ ପୁରୁଷ ହୋଇଥିବ । ସୈନ୍ୟବାହିନୀର ଏହି ଡାକ୍ତର ଜଣଙ୍କଠାରୁ ସେମାନେ ଅନେକ କିଛି ଆଶା କରିବାକୁ ଲାଗିଲେ ।

ଡାକ୍ତର କୋର୍ଚ୍ଚାକ୍‌ଙ୍କର ପିଲାମାନଙ୍କ ସାଙ୍ଗରେ ମିଶିବାର ଅନୁଭୂତି ପୋଖତ ଥିଲା । ପିଲାମାନଙ୍କୁ କପରି ବାଟ ଚଲାଇବାକୁ ହେବ, ସେ ସମ୍ବନ୍ଧରେ ସେ ଥିଲେ ଅଭିଜ୍ଞ ତଥା ଦକ୍ଷ । ତେଣୁ ଏହି ବିଶୃଙ୍ଖଳିତ, ଅମାନିଆ, ଜିଦ୍‌ଖୋର୍ ପିଲାମାନଙ୍କର କଳ୍ପନାକୁ ଛୁଇଁ ହୃଦୟକୁ ଜୟକରିବାକୁ କୋର୍ଚ୍ଚାକ୍‌ଙ୍କୁ ବେଶିଦିନ ଲାଗିନଥିଲା । ଅଫିସ୍ କାଗଜପତ୍ରରେ ସେ ଥିଲେ ଜଣେ ସରକାରୀ ଅଫିସର । ମାତ୍ର ତାଙ୍କର ଅଧିକାଂଶ ସମୟ ସ୍କୁଲ୍‌ରେ କଟିବାକୁ ଲାଗିଲା । ପ୍ରଥମେ ସ୍କୁଲକୁ ସେ ଜଣେ ଅତିଥି ଭାବରେ ପାଦ ପକାଉଥିଲେ । ଅତିଥି ଭାବରେ ପରିଚିତ ହେଉ ହେଉ ସେ ପିଲାଙ୍କ

ମନକୁ କିଣି ନେଇପାରିଥିଲେ । ପିଲାଙ୍କର ଉତ୍କଣ୍ଠା ଓ ଆଗ୍ରହ ବଢ଼ିବାକୁ ଲାଗିଲା । କ୍ରମେ ପାଖଆଖରୁ କେତେଜଣ ଝିଅ ସ୍କୁଲକୁ ଆସିଲେ । ସେମାନେ ସାହାଯ୍ୟ କରିବା ପାଇଁ ସୁଯୋଗ ଉଣ୍ଡୁଥିଲେ । ସେମାନଙ୍କର ଉପସ୍ଥିତି ସ୍କୁଲ୍‌ର ପରିବେଶକୁ ଅଧିକ ଉନ୍ନତ କରିପାରିଥିଲା ।

ସ୍କୁଲ୍‌ରେ ପିଲାମାନଙ୍କ ପାଇଁ ବିଭିନ୍ନ କାମ ବଣ୍ଟି ଦିଆଗଲା । ଜୋତା ତିଆରି, ସିଲାଇ, ବହି ବନ୍ଧାଇ ଏବଂ ସୀସା କାରିଗରି ଆଦି ବ୍ୟବସ୍ଥା କରିବା ଏବଂ କର୍ମଶାଳା ଖୋଲାଗଲା । ଝିଅମାନଙ୍କ ଭିତରୁ କେତେଜଣ ସ୍ୱେଚ୍ଛାକୃତ ଭାବରେ ଭାଷା ଶିକ୍ଷା ପାଇଁ କ୍ଲାସ୍ ନେବାକୁ ଆଗେଇ ଆସିଲେ । ପିଲାମାନେ ନିଜେ କିପରି ସ୍କୁଲକୁ ପରିଚାଳନା କରିବେ, ସେଥିପାଇଁ ତାଙ୍କର ନିଜ ପଦ୍ଧତିଗୁଡ଼ିକୁ ଏହି ସ୍କୁଲ୍‌ରେ ଆରମ୍ଭ କରାଇଲେ । କିଛି ଦିନ ପରେ ସ୍କୁଲ୍ ପିଲାଙ୍କ ଦ୍ୱାରା ପରିଚାଳିତ ହେଲା । କୋର୍ଚାକ୍ ପିଲାଙ୍କ ନ୍ୟାୟାଳୟ ଆରମ୍ଭ କରାଇଲେ । ନ୍ୟାୟାଳୟର ଜଜ୍‌ମାନଙ୍କୁ ପିଲାମାନେ ନିଜ ଭିତରୁ ବାଛୁଥିଲେ । ଏହି ପିଲା ଜଜ୍‌ମାନେ ନ୍ୟାୟାଳୟରେ ବିଚାର କରି ନିଷ୍ପତ୍ତି ପ୍ରଦାନ କରୁଥିଲେ । ତା'ପରେ କୋର୍ଚାକ୍ ସ୍କୁଲରେ ଗୋଟିଏ ଗେଜେଟ୍ ବାହାର କରାଇଲେ ।

ପ୍ରଥମେ ପ୍ରଥମେ ମିସେସ ଫାଲ୍‌ସ୍କା କୋର୍ଚାକଙ୍କର ଏପରି କାର୍ଯ୍ୟକଳାପ ଦେଖି ଶଙ୍କି ଯାଉଥିଲେ । କାଳେ କଅଣ ଅସୁବିଧା ହେବ ବୋଲି ଆଶଙ୍କା ଲାଗୁଥିଲା । ମାତ୍ର ଅଳ୍ପଦିନ ଭିତରେ ସେ କୋର୍ଚାକ୍‌ଙ୍କ କାର୍ଯ୍ୟଧାରାକୁ ଅତି ଉତ୍ସାହର ସହ ଗ୍ରହଣ କରିନେଲେ । ସବୁ ଭଲରେ ଚାଲିଲା । ଯୁଦ୍ଧ ଏବଂ ଯୁଦ୍ଧପରର ସମସ୍ତ ଅସୁବିଧା ଓ ବାଧାବିଘ୍ନ ସତ୍ତ୍ୱେ ସ୍କୁଲ ବିକଶିତ ହେବାକୁ ଲାଗିଲା । ଯୁଦ୍ଧର ବିଭୀଷିକା ଭିତରେ ମୃତ୍ୟୁର ସମ୍ବାଦ ଥିଲା ଅତି ସ୍ୱାଭାବିକ କଥା । କୋର୍ଚାକଙ୍କର ଏହି ନୂଆ ସ୍କୁଲରେ କେହି ଜଣେହେଲେ ମୃତ୍ୟୁର ଶିକାର ହୋଇନଥିଲେ । ସ୍କୁଲର କର୍ତ୍ତୃପକ୍ଷଙ୍କୁ କେବେ ବି ବିରୋଧ କରାଯାଇନଥିଲା କିମ୍ବା କର୍ତ୍ତବ୍ୟରେ କୌଣସି ପ୍ରକାର ଅବହେଳା ପ୍ରଦର୍ଶନ କରାଯାଇନଥିଲା । ସ୍କୁଲରେ ନିଜକୁ ସଂଶ୍ଳିଷ୍ଟ କରାଇବା ଦ୍ୱାରା କୋର୍ଚାକଙ୍କର ଗ୍ଲାନି ଦୂର ହୋଇଯାଇଥିଲା । ମନରେ ଉନ୍ମୁକ୍ତତା ଏବଂ ଉତ୍ସାହ ଭରିଯାଇଥିଲା । ଯୁଦ୍ଧପରେ ପିଲାଙ୍କୁ ରକ୍ଷା କରିବାର ସ୍ୱପ୍ନଟିକୁ ସେ ଏଠାରେ ହୃଦୟଙ୍ଗମ କରିପାରିଥିଲେ ।

ବୋଗୋଟ୍ ଷ୍ଟ୍ରିଟ୍‌ର ସବୁଜ ବଗିଚାମାନଙ୍କରେ ପିଲାମାନେ ଖୁସିରେ ସମୟ କଟାଉଥିଲେ । ଛୁଟି ସମୟରେ ପିଲାମାନେ ଖେଳସାମଗ୍ରୀ ତିଆରି କରୁଥିଲେ । ଚେକର, ଚେସ୍ ଗେମ୍ ଆଦି ପିଲାମାନଙ୍କ ଦ୍ୱାରା ତିଆରି ହେଉଥିଲା । ଦିନଗୁଡ଼ିକ ଯେତେବେଳେ ବଡ଼ ହେବାକୁ ଲାଗିଲା କୋର୍ଚାକ ପାଠପଢ଼ା କ୍ଲାସ ଆରମ୍ଭ କରି-ଦେଲେ ଓ ନିଜେ ପିଲାମାନଙ୍କୁ ପାଠ ପଢ଼ାଇଲେ । ତାଙ୍କୁ ଯେଉଁ ବିଷୟଗୁଡ଼ିକ

ସବୁଠାରୁ ଭଲ ଲାଗୁଥିଲା, ସେ ସେହି ବିଷୟଗୁଡ଼ିକୁ ପିଲାମାନଙ୍କୁ ପଢ଼ାଇଲେ । ଯୌବନକୁ ସୁନ୍ଦର ଭାବରେ ଗଢ଼ିବା, ଯୁବକର ସାମାଜିକ ଅଧିକାର ଏବଂ ପ୍ରତ୍ୟେକ ସାମାଜିକ କ୍ଷେତ୍ରରେ ଯୁବକ ଉପଯୋଗିତା ଆଦି ସମ୍ବନ୍ଧରେ ସେ ପିଲାଙ୍କ କ୍ଲାସ ନେଉଥିଲେ । ତାଙ୍କ ପଢ଼ାଇବା ପ୍ରଣାଳୀ ଅତ୍ୟନ୍ତ ଆଗ୍ରହୋଦ୍ଦୀପକ ହୋଇପାରୁଥିଲା । ପ୍ରେମ ଏବଂ ତ୍ୟାଗ ଏ ଦୁଇଟି ଗୁଣ ସବୁ କିଛି ଉପରେ ଅଧିକ ପ୍ରାଧାନ୍ୟ ଆଣି ଦେଇଥିଲା ।

ପିଲାମାନେ ଡାକ୍ତରବାବୁଙ୍କୁ ମିଷ୍ଟର ଡକ୍ଟର ବୋଲି ଡାକିବାକୁ ଆରମ୍ଭକଲେ ଏବଂ କୋର୍ଜାକ ଏହି ନାମରେ ବେଶ୍ ପରିଚିତ ହେବାକୁ ଲାଗିଲେ । ଦିନକୁ ପ୍ରାୟ ଦୁଇ ତିନିଥର ସେ ସ୍କୁଲକୁ ଆସୁଥିଲେ । ପିଲାଙ୍କ ସାଙ୍ଗରେ ଥଟ୍ଟା ପରିହାସରେ ଯୋଗ ଦେଉଥିଲେ । ପିଲାଙ୍କୁ ଗପ କହୁଥିଲେ । ମଜାଳିଆ ବ୍ୟବହାର କରି ସେ ପିଲାଙ୍କ ସାଙ୍ଗରେ ଖୁବ୍ ମିଶିଯାଉଥିଲେ । ଉଦାହରଣ ସ୍ୱରୂପ ନିଜ ଚନ୍ଦାମୁଣ୍ଡରୁ ବାଳ ଉପାଡ଼ିବାର ଅଭିନୟ କରିବା, କାଗଜରେ ନାନା ରକମର ମୁଖା ତିଆରି କରି ପିଲାଙ୍କ ସାଙ୍ଗରେ ଖେଳିବା ଆଦି କରି ସେ ପିଲାଙ୍କୁ ଖୁସି କରାଉଥିଲେ । ଏହାର ମାଧ୍ୟମରେ କୋର୍ଜାକ୍ ଦୁଃଖ ଓ ନିଃସଙ୍ଗତାକୁ ଭୁଲିଯାଉଥିଲେ । ଯେତେବେଳେ ଏକୁଟିଆ ହୋଇ ନିଜ କୋଠରି ଭିତରେ ସମୟ ବିତାଇବାକୁ ପଡ଼ୁଥିଲା, ସେତେବେଳେ ତାଙ୍କୁ ବହୁତ ଖରାପ ଲାଗୁଥିଲା । ସେ ଚଟାଣରେ ଏପଟ ସେପଟ ହୋଇ ପଦଚାରଣ କରୁଥିଲେ । ମୁଣ୍ଡମଣ୍ଡଳରେ ଅନେକ କଳ୍ପନାଜଳ୍ପନା ତଥା ଦୁଃଖର ସ୍ତୂପ ଉଙ୍କିମାରୁଥିଲା । କୋର୍ଜାକଙ୍କର ଘରକଥା ମନେପଡ଼ୁଥିଲା । ନିଜ ଟାଉନ୍ ଏବଂ ସେଠିକାର ଯାବତୀୟ ଜୀବନଧାରା ପ୍ରତି ତାଙ୍କ ଭିତରେ ପ୍ରବଳ ଆକର୍ଷଣ ଜାତ ହେଉଥିଲା । ତାଙ୍କର ଆବଶ୍ୟକତା ବହୁତ କମ୍ ଥିଲା । ନିଜର ଯତ୍ନ ପାଇଁ ସେ ଏତେ ଟିକିଏ ନଜର ଦେଉନଥିଲେ । କିଭ୍‌ରେ ସବୁ ପ୍ରକାର ଅତ୍ୟାବଶ୍ୟକ ଦ୍ରବ୍ୟ ବି ସହଜରେ ମିଳୁନଥିଲା । ସେ ଶସ୍ତା ହୋଟେଲକୁ ଖାଇବାକୁ ଯାଉଥିଲେ । ମାଂସ ବଦଳରେ ମାଛର ପେଟ ଅଂଶ ଖଣ୍ଡେ ମଗାଉଥିଲେ । ଖାଇଲାବେଳେ ତାଙ୍କ ଆଖିରୁ ଲୋତକ ଧାର ଧାର ହୋଇ ବହିଯାଉଥିଲା । କାରଣ ଏହା ତାଙ୍କୁ ତାଙ୍କ ଘରକଥା ମନେପକାଇଦେଉଥିଲା । ସେ ଘରକୁ ଫେରିଯିବା ପାଇଁ ଅତ୍ୟନ୍ତ ବ୍ୟାକୁଳ ହୋଇ-ପଡ଼ୁଥିଲେ । ଏଥିପାଇଁ ସେ ସୈନ୍ୟବାହିନୀ ଦାୟିତ୍ୱରୁ ମୁକୁଳିବା ପାଇଁ ଇଚ୍ଛା କରୁଥିଲେ । ଏସବୁ କଥା ସେ ଆଦୌ ଲୁଚାଇ ରଖିପାରୁନଥିଲେ ।

କୋର୍ଜାକ କହନ୍ତି, "ଅଭିଳାଷ ଯେତେ ଗଭୀରତର ହୁଏ, ଆତ୍ମା ସେତେ ଅଧିକ ସୁଦୃଢ଼ ଓ ଶକ୍ତିମନ୍ତ ହୁଏ । ଆମେମାନେ ଆମ ନିଜ ଅନୁଭୂତିଗୁଡ଼ିକୁ କଷ୍ଟକର ବୋଲି ଭାବି ଖରାପ କହିବା ଆଦୌ ସମୀଚୀନ ନୁହଁ ।" ପରିଶେଷରେ କୋର୍ଜାକ ନିଜ ଭିତରେ ସାହସ ସଂଗ୍ରହକରି ସୈନ୍ୟବାହିନୀର ମୁଖ୍ୟଙ୍କୁ ନିଜ ଅନୁରୋଧଟି

ଜଣାଇଲେ । ଏଥିପାଇଁ ସେ ଦ୍ୱିଧା ଓ ଶଙ୍କିତ ମନରେ ଦରଖାସ୍ତଟି ଦେଲେ । ତାଙ୍କ ଦରଖାସ୍ତଟି ଯେ ସଫଳ ହେବ ସେକଥା ତାଙ୍କର ବିଶ୍ୱାସ ନଥିଲା । ଘରକୁ ଫେରିଯିବା ପାଇଁ ତାଙ୍କ ଭିତରେ ପ୍ରବଳ ଆବେଗ ସୃଷ୍ଟି ହୋଇଥିଲା । ସେଥିପାଇଁ ସେ କହିଥିଲେ, "ମୁଁ ପ୍ରକୃତରେ ଡରିଯାଇଥିଲି । କାରଣ ମୋ ଜୀବନରେ ଅନେକ କ୍ଷେତ୍ରରେ ମୁଁ ବିଫଳ ହୋଇଆସିଛି । ଅନେକ ଥର ମୁଁ ଧୋକା ଖାଇଛି । ମୁଁ ଏତେ ଭୟଭୀତ ହୋଇପଡ଼ିବାର କାରଣଟି ବୋଧହୁଏ ମୋର ଇଚ୍ଛାଟି ଅତ୍ୟନ୍ତ ତୀବ୍ର ହୋଇ-ପଡ଼ିଛି ।

ବନ୍ଧୁମାନଙ୍କର ସାହାଯ୍ୟ ସହଯୋଗ ଲାଭ କରି କୋର୍ଚାକଙ୍କ ମନରେ ଆଶାର ଝଲକ ଖେଳିଗଲା । ସ୍ୱଗୃହ ପ୍ରତ୍ୟାବର୍ତ୍ତନ ପାଇଁ ସବୁପ୍ରକାର କାଗଜପତ୍ରର ବନ୍ଦୋବସ୍ତ ହୋଇଗଲା । ପୁଲକଭରା ବିଶ୍ୱାସ ମନରେ ଡାକ୍ତର କୋର୍ଚାକ ପୋଲଣ୍ଡକୁ ଫେରି-ଆସିଲେ । ସେ ଓ୍ୱାର୍ସୋକୁ ଫେରିଲାବେଳକୁ ତାଙ୍କ ପାଖରେ "ପିଲାଟିକୁ ଭଲପାଇବ କିପରି" ନାମକ ଏକ ତିନିଭାଗ ବିଶିଷ୍ଟ ବିରାଟ ପୁସ୍ତକର ପାଣ୍ଡୁଲିପି ଥିଲା । ଏଥିରୁ ସ୍ପଷ୍ଟ ଭାବରେ ଅନୁମାନ କରିହୁଏ ଯେ ଏହି ଅନନ୍ୟସାଧାରଣ ବ୍ୟକ୍ତିଜଣଙ୍କ ବିଷାଦଗ୍ରସ୍ତ ମାନସିକତାରେ ଥାଇ ମଧ୍ୟ ଏତେ ବଡ଼ ସୃଜନଶୀଳ କାର୍ଯ୍ୟଟିଏ କରି-ପାରିଥିଲେ ।

କୋର୍ଚାକ ଓ୍ୱାର୍ସୋ ତଥା ନିଜ ଘରକୁ ଫେରିଲେ । ମା'ଙ୍କର ସ୍ନେହଭରା ଅଭ୍ୟର୍ଥନା ପାଇଁ ସେ ପରମ ସନ୍ତୋଷ ଲାଭକଲେ । ଏତେଦିନଧରି ଘରେ ଅନୁପସ୍ଥିତ ଥିବାବେଳେ ସେ ନିୟମିତ ଭାବରେ ମା'ଙ୍କ ପାଖକୁ ସୁନ୍ଦର ସୁନ୍ଦର ଚିଠି ପଠାଉଥିଲେ । ମାଆ ଚିଠି ପାଉଥିଲେ ସତ; ମାତ୍ର ଏହା ପୁତ୍ରର ଅନୁପସ୍ଥିତିକୁ ପୂରଣ କରିପାରୁନଥିଲେ । ମା'ଙ୍କର ଗୋଟିଏ ମାତ୍ର ଅଭିଳାଷ ବାକି ଥିଲା—ତାହା ହେଉଛି ପୁଅ ଫେରିଆସିବା ପର୍ଯ୍ୟନ୍ତ ସେ ବଞ୍ଚି ରହିବେ ।

୯୬—କ୍ରୋଚମାଲ୍ନା ଗଳିର ଅନାଥାଶ୍ରମର ଅଗଣା କୋର୍ଚାକଙ୍କ ଅଭ୍ୟର୍ଥନା ପାଇଁ ଅପେକ୍ଷାରତ ଥିଲା । ଷ୍ଟିଫା ଓ୍ୱିଲଜିନସ୍କା । ପିଲାମାନଙ୍କୁ ମିଲିଟାରୀ ଢଙ୍ଗରେ ସଜାଇ ଧାଡ଼ିରେ ଛିଡ଼ା କରାଇଦେଇଥିଲେ । ଏତେଦିନପରେ ବି ଅନେକ ପିଲା ଡାକ୍ତରଙ୍କ ଥଟ୍ଟା, ରହସିଆ, ମଜା କଥାକୁ ଭୁଲିପାରିନଥିଲେ । ପୋଲଣ୍ଡ ଛାଡ଼ିଗଲା ପରେ ଯେଉଁ ପିଲାମାନେ ଅନାଥାଶ୍ରମରେ ପହଞ୍ଚିଥିଲେ, ସେମାନଙ୍କପାଇଁ ଡାକ୍ତର ଜାନୁସ୍ କୋର୍ଚାକ୍ ଥିଲେ ଜଣେ କିମ୍ବଦନ୍ତୀର ବ୍ୟକ୍ତିବିଶେଷ । ଯେତେବେଳେ ସେମାନେ ପ୍ରଥମକରି ଡାକ୍ତର କୋର୍ଚାକଙ୍କୁ ଦେଖିଲେ ସେମାନେ ଜାଣିଗଲେ ଯେ ଏଇ ହେଉଛନ୍ତି ସେଇ ମଣିଷ ଜଣକ ଯାହାପାଇଁ ତାଙ୍କ ଅନାଥାଶ୍ରମ ଏପର୍ଯ୍ୟନ୍ତ ସ୍ଥିର ହେଉଥିଲା ।

କୋର୍ଯାକଙ୍କ ଶରୀର ସାମାନ୍ୟ ନଇଁପଡ଼ିଥିଲା । ସେ ଅନାଥାଶ୍ରମର ବଡ଼ ଫାଟକ ଦେଇ ପ୍ରବେଶକଲେ । ତାଙ୍କ ପାଖେ ପାଖେ ଚାଲୁଥିଲେ ଡାକ୍ତର ଏଲ୍‌ସାବର୍ଗ । ଏଲ୍‌ସାବର୍ଗ ଅନାଥାଶ୍ରମରେ ପ୍ରଥମେ ପ୍ରବେଶ କରି ଷ୍ଟିଫାଦଦୀଙ୍କ ଦୁଇ ଗାଲରେ ଚୁମାଦେଲେ । କେହି ଜାଣିଲା ପରି କୋର୍ଯାକ ତାଙ୍କ ପଛେ ପଛେ ପ୍ରବେଶ କଲେ । କୋର୍ଯାକ ଦେଖିବାକୁ ଶ୍ରେଷ୍ଠ, ତାଙ୍କ ମୁଣ୍ଡ ଚନ୍ଦା, ଦାଢି କଳା, ବ୍ୟବହାର ଅତ୍ୟନ୍ତ ନମ୍ର ।

କୋର୍ଯାକଙ୍କୁ ଦେଖି ପିଲାମାନେ ପାଟିକରି କହିବାକୁ ଲାଗିଲେ, "ହେଇ ସେ ଆସିଲେ । ସେ ଆମ ପାଖକୁ ଫେରିଆସିଲେ ।" କୋର୍ଯାକ ପିଲାମାନଙ୍କ ଧାଡ଼ି ଆଗରେ ଅଟକିଗଲେ । ଷ୍ଟିଫାଦଦୀଙ୍କ ସହ ହାତ ମିଳାଇଲେ । ଚଷମାଟିକୁ ନାକ ଉପରେ ରଖି ଚାରିଆଡ଼କୁ ନିରୀକ୍ଷଣ କଲେ । ମୁରୁକି ମୁରୁକି ହସିଲେ । ତାଙ୍କ ମୁହଁ ଭିତରେ ଲୁଚିରହିଥିବା ଦୁଃଖ ଆଦୌ ଜଣାପଡ଼ୁଲା ନାହିଁ । ତା'ପରେ ସେ ସେଇ ବଡ଼ କୋଠାଘର ଭିତରକୁ ଗଲେ । ଏହି କୋଠାଟିକୁ ସେ ନାଁ ଦେଇଥିଲେ "ଘର" (Home) ।

## (୧୩) ଜୀବନ—ଏକ ବିସ୍ତୃତ ଦିଗନ୍ତ

ନୀରବ ପରିବେଶ ଓ ପ୍ରକୃତିର କୋଳ କୋର୍ଯାକଙ୍କୁ ଭାରି ଭଲ ଲାଗୁଥିଲା । ପ୍ରକୃତିର ଦିଗନ୍ତବିସ୍ତାରୀ ବକ୍ଷ ଉପରେ ଲେଟେଇ ହୋଇ ପଡ଼ିସିବାର ସ୍ୱତଃସ୍ଫୂର୍ତ୍ତିତା ତାଙ୍କ ଭିତରେ ଭରିରହିଥିଲା । ଯେତେବେଳେ ନିଜ ଭିତରେ ନିଷ୍ପତ୍ତି ନେଲେ ଯେ ସେ ଅନାଥାଶ୍ରମରେ ସମ୍ପୂର୍ଣ୍ଣ ଭାବରେ ରହିବେ, ସେତେବେଳେ ସେ ରହିବା ଜାଗାଟିକୁ ପରିବର୍ତ୍ତନ କଲେ । ସେ ଆଗରୁ ଦୁଇ ଡର୍ମିଟୋରୀ ମଧ୍ୟଭାଗରେ ଥିବା କାଚ ଘେର ଭିତରେ ରହୁଥିଲେ । ଏଇ କାଚଘେର କକ୍ଷଟି ବହୁତ ଶ୍ରେଷ୍ଠ ଥିଲା । ନୂଆ ଜାଗାଟି ମଧ୍ୟ ସେପରି ବଡ଼ ନଥିଲା । ମାତ୍ର ଏଠାରେ ଥିଲା ନୀରବତା । ପିଲାମାନଙ୍କ କୋଳାହଳ ଶୁଭୁନଥିଲା । ଫଳରେ ସେ ଲେଖାଲେଖି କରିବା ପାଇଁ ମନ ନିବେଶ କରିପାରୁଥିଲେ ।

ଏଇ ନୂଆ ଘରଟିରେ ଗୋଟିଏ ଝରକା ଥିଲା । ଘର ଭିତରକୁ ଘରଚଟିଆ-ମାନେ ଆସି ବସା ବାନ୍ଧୁଥିଲେ । କୋର୍ଯାକ ଘରଚଟିଆମାନଙ୍କୁ ଭାରି ପସନ୍ଦ କରୁଥିଲେ । ସେ କହୁଥିଲେ, ଘରଚଟିଆଗୁଡ଼ିକ ଗୃହକ ପକ୍ଷୀ କିମ୍ବା କପୋତମାନଙ୍କ

ଅପେକ୍ଷା ଢେର୍ ଭଲ । ସେ ଅଙ୍ଗୀ କରି କହୁଥିଲେ ଯେ ଘୃଣକ ପକ୍ଷୀମାନେ ବିଦେଶୀ ଅଟନ୍ତି, ସେମାନେ ଉଡ଼ିଆସନ୍ତି ପୁଣି ଉଡ଼ିପଳାନ୍ତି । କିନ୍ତୁ ଘରଚଟିଆମାନେ ଆମ ନିଜ ମାଟିର । ଠିକ୍ ଆମ ଗୃହୀଶ୍ରମମାନଙ୍କ ପରି ।

ଝରକାବାଟେ କୋର୍ଜାକ ଜଗନ୍ତିକୁ ସାଧାରଣ ବଳସ୍ତକୁ ଦେଖିପାରୁଥିଲେ । ଏହି ଦୃଶ୍ୟପଟରେ ସେ ଆତ୍ମବିଭୋର ହୋଇପଡ଼ୁଥିଲେ । ଏକ ତ୍ରୈମାସିକ ପତ୍ରିକା "ସ୍ୱତନ୍ତ୍ର ସ୍କୁଲ"ରେ ସେ କୌଣସି ଏକ ଲେଖାରେ ଲେଖିଛନ୍ତି , "ଜଣେ ପିଲାର ଆବଶ୍ୟକତା ଏବଂ ଇଚ୍ଛା ହେଉଛି ମୁକ୍ତଜଗତକୁ ମୁକ୍ତ ବାତାୟନ ଓ ମୁକ୍ତ ଫାଟକ ଦେଇ ଅବଲୋକନ କରିବା । କୁନି କୁଆଟିଏ ଗୁରୁଣ୍ଡି ଗୁରୁଣ୍ଡି ଝରକା ପାଖକୁ ଚାଲିଯାଏ । ତା ଭିତରେ ଅଦମ୍ୟ ଇଚ୍ଛା ଥାଏ ଝରକା ଦେଇ ମୁକ୍ତ ଆଲୋକ ଦେଖିବ । ମୁକ୍ତ ପବନ ସଂସ୍ପର୍ଶରେ ଆସିବ । ଝରକା ବାଟଦେଇ ସେ ମୁକ୍ତ ଜଗତ ଭିତରେ ସୂର୍ଯ୍ୟାଲୋକ ବର୍ଷିହୋଇ ପଡ଼ୁଥିବାର ମନୋହର ଦୃଶ୍ୟଟିକୁ ଉପଭୋଗ କରିଥାଏ । ଏସବୁ ପିଲାଟିର ମାନସ ଜଗତକୁ ପରିବ୍ୟାପ୍ତ କରିଦିଏ ଏବଂ ତା ଜୀବନର ନୂତନ ଆଭିମୁଖ୍ୟକୁ ନିକଟତର କରାଇଦିଏ ।

କୋର୍ଜାକଙ୍କ ଭିତରେ ଶିଶୁସୁଲଭ ଗୁଣଗୁଡ଼ିକ ଫୁଟିଉଠୁଥିଲା । ସେ ସତେ-ଯେପରି ପିଲାଟିଏ ପାଲଟିଯାଉଥିଲେ । ଝରକା ପାଖରେ ବସିଲେ ତାଙ୍କ ସମସ୍ୟାଗୁଡ଼ିକୁ ସମାଧାନ କରିବା ସକାଶେ ନୂଆ ନୂଆ ସ୍ୱପ୍ନ ଓ ଆଭିମୁଖ୍ୟର ଅନୁଭୂତି ମନକୁ ଆସି-ଯାଉଥିଲା ସେ ଆଗରୁ ନିଷ୍ପତ୍ତି ନେଇଥିଲେ ଯେ ନିଜକୁ ଏକାନ୍ତକୁ ନେଇଯିବେ । ଅନ୍ୟମାନଙ୍କ ଗହଳରୁ ନିଜକୁ ମୁକ୍ତ କରିଦେବେ । ମାତ୍ର ବର୍ତ୍ତମାନର ଅନୁଭୂତି ତାଙ୍କ ନିଷ୍ପତ୍ତିକୁ ଦୋହଲାଇଦେଲା । ସେ ନିଜର ଅଟଳ ନିଷ୍ପତ୍ତିକୁ ଅବାସ୍ତବ ବୋଲି ଅନୁଭବ କଲେ । ଯୁଦ୍ଧ ପରେ ପୋଲାଣ୍ଡର ନୂତନ ସ୍ଥିତି ନିଜର ନୂତନ ଭାଗ୍ୟ ନିର୍ଣ୍ଣୟ କରିବାପାଇଁ ତତ୍ପର ଥିଲା । ଏ ସମୟରେ ପ୍ରତ୍ୟେକ ନାଗରିକଠାରୁ ପୋଲାଣ୍ଡ, କର୍ତ୍ତବ୍ୟପରାୟଣତା ଏବଂ ଜୀବନ୍ତ ସହଯୋଗ ଦାବି କରୁଥିଲା । ପୋଲାଣ୍ଡକୁ ସୁନ୍ଦର କରି ଗଢ଼ିବା ପାଇଁ ଡାକ୍ତର କୋର୍ଜାକ ମଧ୍ୟ ଅଣ୍ଟା ଭିଡ଼ିଲେ ।

ନୂଆ ପୋଲାଣ୍ଡରେ କର୍ମଚଞ୍ଚଳତା ପୂରିଯାଇଥିଲା । ଅନେକ ନୂଆ ନୂଆ କଥା ଘଟିବାକୁ ଆରମ୍ଭକଲା । ପ୍ରଗତିର ନିଦାନ ପ୍ରତିଧ୍ୱନିତ ହେଲା । କୋର୍ଜାକଙ୍କ ସ୍ୱପ୍ନ ସମ୍ଭାର ବଢ଼ିଚାଲିଲା । ଗରିବ ପିଲାମାନଙ୍କ ପାଇଁ ନୂଆ ପ୍ରକାରର ଏକ ଗ୍ରୀଷ୍ମାବକାଶର ବ୍ୟବସ୍ଥା କଥା ସେ ଚିନ୍ତାକଲେ । ଓ୍ୱେଲ୍‌ଫେୟାର ସୋସାଇଟିର ଲକ୍ଷ୍ୟ ଓ ଉଦ୍ଦେଶ୍ୟ-ଠାରୁ ଆହୁରି ଅଧିକ କଥା ସେ ନିଜ ବିଚାରକୁ ଆଣିଲେ । ଗ୍ରୀଷ୍ମାବକାଶରେ ସବୁ ପିଲାଙ୍କପାଇଁ ଏକ ନୂଆ ରଙ୍ଗର କାର୍ଯ୍ୟକ୍ରମ ପାଇଁ ତାଙ୍କ ମୁଣ୍ଡରେ ନୂଆ ଯୋଜନାମାନ ପଶିଲା । ସବୁ ପିଲାଙ୍କୁ ସେ ଫଳପ୍ରଦ କାମ ସକାଶେ ପ୍ରଶିକ୍ଷଣ କଥା ଚିନ୍ତାକଲେ, ଯାହାକି ପିଲାଙ୍କ ସ୍ୱାସ୍ଥ୍ୟକୁ ହାନି କରିବନି ।

ଗୋଲ୍ଲାଓ୍ବେକ୍‌ରେ ସେ ନିଜ ଅନାଥାଶ୍ରମପାଇଁ ଗୋଟିଏ ଫାର୍ମ ଆରମ୍ଭ କଲେ । ଏହି ଫାର୍ମଟି ଶ୍ରୀମୂନିବାସ ଭାବରେ ଅତି ଅଳ୍ପଦିନରେ ଖ୍ୟାତି ଲାଭ କରିଥିଲା । ଗୋଟିଏ ଅନାଥାଶ୍ରମ ଚଳାଇବା ପାଇଁ କୋର୍ଜାକ୍ କୋଠାଟିଏ ଭଡ଼ା ନେଇଥିଲେ । ପରେ ମାକ୍‌ସମିଲିନ୍ କୋନ ଏହି କୋଠାଟିକୁ ଅନାଥାଶ୍ରମ ନାଁରେ ଉଇଲ୍ କରି-ଦେଇଥିଲେ । ଏହି ସମୟରେ ମିସେସ୍ ମାରିନା ଫାଲ୍‌ସ୍କା କଭ୍‌ରୁ ପୋଲାଣ୍ଡ ଫେରି-ଆସିଥିଲେ । ଏଥିରୁ କୋର୍ଜାକଙ୍କ ପାଇଁ ଅନେକ ସହାୟକ ହୋଇପାରିଥିଲା । କୋର୍ଜାକ୍ ଗୋଟିଏ ନୂଆ ଆବାସିକ ବିଦ୍ୟାଳୟ ଗଢ଼ିବାରେ ଲାଗିଯାଇଥିଲେ । ସେ ଏହାର ନାଁ ଦେଇଥିଲେ "ନାସଜ ଡୋମ" ବା ଆମଘର । ପୋଲାଣ୍ଡର ଗରିବ ଶ୍ରମିକମାନଙ୍କ ପିଲାମାନଙ୍କୁ ରଖିବା ପାଇଁ ଏହି ଆବାସିକ ବିଦ୍ୟାଳୟ "ଆମଘର" ଉଦ୍ଦିଷ୍ଟ ଥିଲା । ୧୯୧୯ ମସିହାର ଶେଷଆଡ଼କୁ ପ୍ରଥମ ୫୦ ଜଣ ପିଲାଙ୍କୁ ଓ୍ବାର୍ସୋର ପ୍ରୁସ୍କୋକଭ୍ ଲଜଂରେ କିଛିଦିନ ପାଇଁ ରଖାଯାଇଥିଲା । ଏହି ପିଲାମାନେ ଖ୍ରୀଷ୍ଟିୟାନ ଶ୍ରମିକ ଘର ତଥା ଯୁଦ୍ଧରେ ମୃତ୍ୟୁବରଣ କରିଥିବା ସୈନିକମାନଙ୍କର ପିଲା ଥିଲେ । ନିଜେ ଡାକ୍ତର କୋର୍ଜାକ୍ ଏବଂ ଶ୍ରୀମତୀ ଫାଲ୍‌ସ୍କା ଅନୁଷ୍ଠାନର ଦାୟିତ୍ୱ ଭାଗକରି ବୁଝୁଥିଲେ ।

ଏସବୁ ଦାୟିତ୍ୱ ବ୍ୟତୀତ କୋର୍ଜାକ୍ ଆହୁରି ଅନେକ କଥାକୁ ଆଦରି-ନେଇଥିଲେ । ପିଲାମାନଙ୍କ ମଙ୍ଗଳ ବିଧାନ ସକାଶେ ଯେଉଁସବୁ କାର୍ଯ୍ୟକୁ ବିଭିନ୍ନ ଜାଗାରେ ନିଆଯାଉଥିଲା, ସେଥିରେ କୋର୍ଜାକ୍ ଭାଗ ନେଉଥିଲେ । ତା'ଛଡ଼ା, "ଆମଘର" ଓ ଅନ୍ୟାନ୍ୟ ଯୋଜନାଗୁଡ଼ିକ ପାଇଁ ସେ ଅର୍ଥ ଯୋଗାଡ଼ କରିବାରେ ମଧ୍ୟ ବ୍ୟସ୍ତ ରହୁଥିଲେ ।

"ପିଲାଟିକୁ କପରି ଭଲ ପାଇବ" ପୁସ୍ତକର ଦ୍ୱିତୀୟ ସଂସ୍କରଣର ମୁଖବନ୍ଧରେ ସେ ବହୁତ ଉତ୍ସାହର ସହ ଲେଖିଛନ୍ତି ଯେ ଅନାଥ ପିଲାଙ୍କର ଯତ୍ନନେବାଦ୍ୱାରା ଅନେକ ବିକାଶ ଘଟିଛି । ନୂଆ ପୋଲାଣ୍ଡରେ ସ୍କାଉଟ୍ ଆନ୍ଦୋଳନ ଆରମ୍ଭ ହେବା ଦେଖି ସେ ବହୁତ ଖୁସିହୋଇପଡ଼ିଥିଲେ । ଏହାଛଡ଼ା ପିଲାଙ୍କ ଖେଳ, ଶରୀର ଚର୍ଚ୍ଚା ତଥା ଅନ୍ୟାନ୍ୟ ବାହ୍ୟ କାର୍ଯ୍ୟପାଇଁ କରାଯାଇଥିବା ବ୍ୟବସ୍ଥା ଆହ ଡାକ୍ତରଙ୍କ ମନରେ ଅନେକ ଖୁସି ଆଣି ଦେଉଥିଲା । ବାସ୍ତବିକ ଏହି ସମୟଟି ଡାକ୍ତର କୋର୍ଜାକଙ୍କପାଇଁ ଥିଲା ଖୁବ୍ ଆନନ୍ଦମୟ ।

"ପିଲାକୁ କପରି ଭଲ ପାଇବୁଏ"ର ଦ୍ୱିତୀୟ ସଂସ୍କରଣର ମୁଖବନ୍ଧରେ ଡାକ୍ତର ଲେଖିଛନ୍ତି, "ଦେଶରେ ନାଗରିକ ନହୋଇ, ବିଦେଶୀ ବନ୍ଦୀ ଭାବରେ ମୁଁ ଦେଖିପାରୁ ନଥିଲି ଯେ ପିଲାଙ୍କ ସାଙ୍ଗକୁ, ପିଲାଙ୍କପାଇଁ ସ୍କୁଲ ଗଢ଼ିଉଠିବା ଆବଶ୍ୟକ । କାମପାଇଁ କଲକାରଖାନା, ସ୍ୱାସ୍ଥ୍ୟପାଇଁ ଡାକ୍ତରଖାନା ଏବଂ ରହିବା

ଜାଗାର ନିରନ୍ତର ଉନ୍ନତି ଆବଶ୍ୟକ । ବର୍ତ୍ତମାନ ଆମେ ନୂଆ ବୃହଦାକାରସ୍ଥ ବିକାଶ-ଧାରାର ଦ୍ୱାରଦେଶରେ ଉପନୀତ । ଏହି ବିକାଶଧାରାଟି ସୁସ୍ଥ ସୁନ୍ଦର ଶିଶୁ ଉତ୍ପାଦନର ବିଜ୍ଞାନ ଓ ଲୋକସଂଖ୍ୟା ବୃଦ୍ଧିର ଗୁପଦ୍ୱାରା ପ୍ରଭାବିତ ।

ସେ ସମୟରେ ପୋଲଣ୍ଡରେ ଥିବା ସମସ୍ୟା ଓ ସମ୍ଭାବନାଗୁଡ଼ିକୁ ଡାକ୍ତର କୋର୍ଚ୍ଚାକ୍ ସ୍ପଷ୍ଟ ଭାବରେ ପର୍ଯ୍ୟବେକ୍ଷଣ କରିପାରୁଥିଲେ । ଶତାଧିକ ବର୍ଷଧରି ପୋଲଣ୍ଡରେ ଗରିବ ଜନତା ଅବହେଳିତ, ଅତ୍ୟାଚାରିତ ଏବଂ ଲୁଣ୍ଠିତ ହୋଇ ରହିଥିଲା । ବର୍ତ୍ତମାନ ଏହି ଜନସମାଜର ଦୈନନ୍ଦିନ ସମସ୍ୟାର ସମାଧାନ ପାଇଁ ବ୍ୟାବହାରିକ ଅନୁଷ୍ଠାନ ନିର୍ମାଣ କରିବା ଏବଂ ନୂଆ ଶିକ୍ଷା ପ୍ରଣାଳୀ ପ୍ରବର୍ତ୍ତନ କରିବା ଏକ ଜାତୀୟ କର୍ତ୍ତବ୍ୟ ଅଟେ । ଡାକ୍ତର କୋର୍ଚ୍ଚାକ୍ ଅନୁଭବ କରୁଥିଲେ ଯେ ଦେଶର ଏଇ ଅବସ୍ଥାଟି ଏକ ସଙ୍କଟମୟ ଅବସ୍ଥା । ଏ ସମୟରେ ପ୍ରତ୍ୟେକ ନାଗରିକ ଦେଶକୁ ଏହି ପରିସ୍ଥିତିରୁ ଉଦ୍ଧାର କରି ବିକାଶପଥକୁ ନେଇଯିବାପାଇଁ ଦାୟିତ୍ୱ ବହନ କରିବା ସାଙ୍ଗକୁ ଭାଗୀଦାର ହେବା ଏକାନ୍ତ ଆବଶ୍ୟକ । କୋର୍ଚ୍ଚାକ୍ ନିଜେ ଏ ଦୃଷ୍ଟିରୁ ହୃଦୟର ସହି କର୍ତ୍ତବ୍ୟ ଓ ଦାୟିତ୍ୱ ତୁଲାଇବାପାଇଁ ଏକନିଷ୍ଠ ସାଧକ ଭାବରେ ଅଗ୍ରଣୀ ଭୂମିକା ଗ୍ରହଣ କରୁଥିଲେ ।

ଯୁଦ୍ଧ ସରିବାର ପ୍ରଥମ କେଇବର୍ଷ ପର୍ଯ୍ୟନ୍ତ ଡାକ୍ତର ଜାନୁସ୍ କୋର୍ଚ୍ଚାକ୍ ପୋଲଣ୍ଡର ସୈନ୍ୟବାହିନୀର ଡାକ୍ତରଖାନାରେ ଡାକ୍ତର ଭାବରେ କର୍ମରତ ଥିଲେ ଏବଂ ଡାକ୍ତରୀ ୟୁନିଫର୍ମ ପିନ୍ଧୁଥିଲେ । ମେଡ଼ିକାଲ ଅଫିସର ଭାବରେ ସେ "ଲଜ୍" ନାମକ ଏକ ସଂକ୍ରାମକ ରୋଗ ବିଭାଗରେ କାମକରୁଥିଲେ । ପରେ ସମାନ ପଦାଧିକାରୀ କରି ଓ୍ୱାର୍ସୋର ଏକ ହାସପାତାଳରେ ଡାକ୍ତର ରହିଥିଲେ । ସରକାରୀ କାମ ସାଙ୍ଗକୁ ସେ ଅନାଥାଶ୍ରମଗୁଡ଼ିକର ଦାୟିତ୍ୱ ବହନ କରୁଥିଲେ । ଗୋଟିକ ପାଇଁ ଅନ୍ୟଟିକୁ ଅବହେଳା କରୁନଥିଲେ । ନିଜେ ଗଢ଼ିଥିବା ଅନାଥାଶ୍ରମ "ଆମଘର" ଓ ଅନ୍ୟ ଅନାଥାଶ୍ରମଗୁଡ଼ିକୁ ଏକାବେଳକେ ଦେଖିବାପାଇଁ ପାଖରେ ସମୟର ଅଭାବ ଥିଲେ ମଧ୍ୟ ତାଙ୍କ ନିକଟରେ ନିଷ୍ଠାର ଅଭାବ ନଥିଲା । ମାତ୍ର ଏତିକି କାମ ଭିତରେ ସେ ସନ୍ତୁଷ୍ଟ ହୋଇ ରହିପାରୁ ନଥିଲେ । ପିଲାଙ୍କ ପାଠପଢ଼ା କେମିତି ହେବ—ସେଥିପାଇଁ ସେ ସ୍ୱତନ୍ତ୍ର ଶିକ୍ଷାନୁଷ୍ଠାନ ମାନଙ୍କରେ ତଥା ଓ୍ୱାର୍ସାର ବିଜ୍ଞାନ ସ୍କୁଲରେ ଅଧ୍ୟାପନା କରୁଥିଲେ । ଏସବୁ ଭିତରେ ସେ ଲେଖାଲେଖିରୁ ଆଦୌ ଓହରି ଯାଇ-ନଥିଲେ । ଏକ କର୍ମଚଞ୍ଚଳ ତଥା କର୍ମନିଷ୍ଠ ମଣିଷ ନିଃସ୍ୱାର୍ଥପର ହେଲେ ଯେ ଅନନ୍ତ ଶକ୍ତିକୁ ନିଜ ଭିତରକୁ ନେଇ ଆଣିପାରେ ଏବଂ ଜୀବନରୁ କ୍ଳାନ୍ତି ଦୂର ହୋଇଯାଏ, ଏକଥା କୋର୍ଚ୍ଚାକ୍ଙ୍କ ଜୀବନକୁ ଅବଲୋକନ କଲେ ସ୍ପଷ୍ଟ ହୋଇଯାଏ ।

"ସ୍କୁଲ ସ୍ପେସିଆଲ" ବା "ସ୍ୱତନ୍ତ୍ର ସ୍କୁଲ" ନାମକ ଏକ ତ୍ରୈମାସିକ ପତ୍ରିକାକୁ କୋର୍ଚ୍ଚାକ୍ ନିୟମିତ ଭାବରେ ଲେଖା ପଠାଉଥିଲେ । ତା ଛଡ଼ା ଓ୍ୱାର୍ସୋର

"ଇନ୍ ଦ-ସନ୍" ବା "ସୂର୍ଯ୍ୟଗର୍ଭରେ" ନାମକ ଏକ ମାସିକ ପତ୍ରିକାରେ ରାଜନୀତି ବିରୋଧୀ ପ୍ରବନ୍ଧ ଏବଂ ଧାରାବାହିକ ଉପନ୍ୟାସ ଲେଖୁଥିଲେ । ଅସମ୍ଭବ ମନେହେଲେ ମଧ୍ୟ ସେ ଏସବୁ ବାଦ୍ କେତେକ ଫ୍ରାନ୍ସ ଏବଂ ଜର୍ମାନ ପ୍ରକାଶନ ପାଇଁ ପୋଲାଣ୍ଡର "ପବ୍ଲିକ୍ ହେଲ୍ଥ" ଫାଉଣ୍ଡେସନ୍ ଏବଂ ଏହାର ସଫଳତା ଉପରେ ମଧ୍ୟ ଲେଖାଲେଖି କରୁଥିଲେ ।

କୋର୍ଚ୍ଚାକଙ୍କ କାର୍ଯ୍ୟଧାରା କେବଳ ଜଣେ ଡାକ୍ତର ବା ଲେଖକ ଭିତରେ ସୀମିତ ନଥିଲା । ଜୀବନ ବା ସମାଜର ଏମିତି କୌଣସି ଗୁଣାତ୍ମକ ଦିଗ ନଥିଲା, ଯାହାକି ତାଙ୍କର ଆଗ୍ରହର ବାହାରେ ଥିଲା । ସେତେବେଳେ ଓ୍ୱାର୍ସୋରେ ସମବାୟ ଆନ୍ଦୋଳନ ପ୍ରଚଳିତ ଥିଲା । ଏହି ଆନ୍ଦୋଳନଟି ପିଲାମାନଙ୍କ କ୍ଷେତ୍ରରେ କିପରି ଲାଗିପାରିବ, ସେଥିପାଇଁ ଆଗ୍ରହର ସହ ସେ ଅନୁଧ୍ୟାନ କରୁଥିଲେ । ସମବାୟ ଆନ୍ଦୋଳନକୁ ନେଇ ସେ ପିଲାଙ୍କପାଇଁ ଏକ କୌତୁକିଆ ଉପନ୍ୟାସ ଲେଖିଥିଲେ । ଉପନ୍ୟାସଟିର ନାଁ ଥିଲା, "କୁନି କୋକିଶିଆଳିଟିର ଦେବାଳିଆ ଅବସ୍ଥା ।" ସେ କହୁଥିଲେ ଗଳ୍ପଟି ଆମେରିକୀୟ ଢଙ୍ଗରେ ଲେଖାଯାଇଛି । ଗଳ୍ପଟି ସମବାୟ ଆନ୍ଦୋଳନ ଆରମ୍ଭ କରିଥିବା ଗୋଟିଏ ପିଲାର କାହାଣୀ ।

ପ୍ରତ୍ୟକ୍ଷ ଭାବରେ ହେଉ ବା ପରୋକ୍ଷ ଭାବରେ ହେଉ କୋର୍ଚ୍ଚାକ୍ ପ୍ରାୟ ପ୍ରତ୍ୟେକ ସମାଜ ମଙ୍ଗଳ କାର୍ଯ୍ୟଗୁଡ଼ିକରେ ଜଡ଼ିତ ହୋଇ ରହୁଥିଲେ । ଏପରିକି ରାଜନୈତିକ ପ୍ରକ୍ରିୟାରେ ମଧ୍ୟ ସେ ସଂଶ୍ଳିଷ୍ଟ ରହୁଥିଲେ । ପରେ ଏସବୁକୁ ନେଇ ସେ ଏକ ବ୍ୟଙ୍ଗ ରଚନା ଲେଖିଥିଲେ । ଏହାର ନା ଥିଲା, "ବେସରମିଆ ବାଣ୍ଟୁ" **(Shamelessly Short)** ।

ଯୁଦ୍ଧୋତ୍ତର ସୃଜନାତ୍ମକ ସମସ୍ତ ଭିତରେ କୋର୍ଚ୍ଚାକ୍ ନୂତନ ପ୍ରଗତିଶୀଳ ଦେଶଟି ବିଷୟରେ ଏବଂ ଏହାର ଦୁଃଖ ଯନ୍ତ୍ରଣା ସମ୍ବନ୍ଧରେ ଦୁଇ ପ୍ରକାରର ଲେଖା ଲେଖୁଥିଲେ । ପ୍ରଥମ ଉଦ୍ୟମଟି ୧୯୨୦ରୁ ୧୯୨୧ ମସିହା ଭିତରେ ମାସିକ ପତ୍ରିକା "ସୂର୍ଯ୍ୟ"ରେ ଧାରାବାହିକ ଭାବରେ ପ୍ରକାଶିତ ହେଉଥିଲା । କୋର୍ଚ୍ଚାକ୍ଙ୍କ ଲେଖାଗୁଡ଼ିକ ଅତି ସରଳ, ସାବଲୀଳ ଓ ପିଲାଙ୍କ ମନଲାଗି ହେଉଥିଲା । ଲେଖାଗୁଡ଼ିକ ମୁଖ୍ୟତଃ ଏଭଳି ବ୍ୟକ୍ତି ଚରିତ୍ରମାନଙ୍କ ଉପରେ ପର୍ଯ୍ୟବେସିତ ହେଉଥିଲା, ଯେଉଁମାନେ ଯୁକ୍ତିତର୍କ ଓ ଆଲୋଚନାଦ୍ୱାରା ଲଢ଼େଇ ବନ୍ଦ କରିଦେଉଥିଲେ । ଲେଖାଗୁଡ଼ିକ ଏପରି ଶୈଳୀରେ ଲେଖାଯାଉଥିଲା ଯେ ପିଲାଙ୍କ ମନରେ ତର୍ଜମା କରି ବୁଝିବା ଏବଂ ବିଚାର କରିବାର ଶକ୍ତି ଜାଗ୍ରତ ହୋଇପାରୁଥିଲା । ଜଣାପଡ଼ୁଥିଲା ଡାକ୍ତର କୋର୍ଚ୍ଚାକ୍ ପିଲାମାନଙ୍କ ମସ୍ତିଷ୍କ ତଥା ସେମାନଙ୍କ ମନସ୍ତତ୍ତ୍ୱର ଗଭୀର ପ୍ରଦେଶରେ ପ୍ରବେଶ କରିପାରିଥିଲେ । ଏହି ଲେଖାଗୁଡ଼ିକରେ ସେ ଶାନ୍ତିସମ୍ମିଳନୀ, ନିର୍ବାଚନ, ଲୋକସଭା, ସାମାଜିକ, ରାଜନୀତିକ ଦଳମାନଙ୍କ ବିଷୟରେ ତଥା ବିଭିନ୍ନ ସମସ୍ୟାଗୁଡ଼ିକ

ସମ୍ବନ୍ଧରେ ସଫଳତାର ସହ ପ୍ରକାଶ କରୁଥିଲେ । ସେ ଏଭଳି ବ୍ୟଙ୍ଗାତ୍ମକ ତଥା ନିଷ୍କପଟ ଭାବରେ ରାଜନୀତିକୁ ବର୍ଣ୍ଣନା କରୁଥିଲେ ଯେ ମନେହେଉଥିଲା, ରାଜନୀତି ହେଉଛି ପିଲାର ଖେଳ ।

କୋର୍ଚ୍ଚାକ୍‌ଙ୍କ ଲେଖାଗୁଡ଼ିକ ପିଲାଙ୍କ ବୁଝିବାଶକ୍ତି ଓ ବିଚାରଶକ୍ତି ଉପରେ ଆଧାରିତ ଥିଲା । ସେ ତାଙ୍କ ଲେଖାଗୁଡ଼ିକ ମାଧ୍ୟମରେ ପ୍ରମାଣ କରିଦେଉଥିଲେ ଯେ ବୟସ୍କମାନେ ବିଚାର କରୁଥିବା ବିଷୟଗୁଡ଼ିକୁ ପିଲାମାନଙ୍କ ଆଗରେ ପିଲାଙ୍କ ଭାଷାରେ ପରିବେଷଣ କରାଯାଇପାରିଲେ ପିଲାମାନେ ସେସବୁକୁ ସହଜରେ ବୁଝିପାରିବେ ଏବଂ ନିଜର ବୁଦ୍ଧି ବିବେକ ଖଟାଇ କଥାଗୁଡ଼ିକୁ ତର୍ଜମା କରିପାରିବେ ଏବଂ ସେସବୁର ଉପଯୁକ୍ତ ବିଚାର କରିପାରିବେ ।

ପ୍ରଥମ ସୃଜନଶୀଳ ଲେଖାମାନଙ୍କ ଭିତରେ ବଡ଼ ପିଲାମାନଙ୍କ ଉଦ୍ଦେଶ୍ୟରେ ଲିଖିତ ଗୋଟିଏ ଉପନ୍ୟାସ ଥିଲା । ଉପନ୍ୟାସଟିର ନା ଥିଲା "କିଙ୍ଗ୍ ମ୍ୟାଟ୍ ଦ ଫାଷ୍ଟ" (King Mat The First) । ଏହି ଉପନ୍ୟାସଟି ଇଂରାଜୀ ସମେତ ଅନେକ ଭାଷାରେ ପ୍ରକାଶିତ ହୋଇଥିଲା । ଏଥିରେ ଅନେକ ଗୁରୁତ୍ୱପୂର୍ଣ୍ଣ ବିଷୟରେ ଚର୍ଚ୍ଚା କରାଯାଇଥିଲା; ଯଥା—ରାଷ୍ଟ୍ର ବ୍ୟାପାର, ସମାଜ ସଂସ୍କାର, ଅନ୍ତର୍ଗତ ଯୁଦ୍ଧ, କ୍ଷମତା ଲାଭ ପାଇଁ ଉଚ୍ଚାକାଙ୍‌କ୍ଷା, ମନ୍ତ୍ରୀମାନଙ୍କ ଭିତରେ ବିବାଦ ଇତ୍ୟାଦି । ଏସବୁ ବିଷୟଗୁଡ଼ିକୁ ସେ ଶ୍ରେଷ୍ଠ ପିଲାଟିଏ ବୁଝିବାପରି ଭାଷାରେ ଲେଖିଥିଲେ । ଉପନ୍ୟାସ-ଟିରେ ନିଷ୍କପଟତା, ସରଳତା ଏବଂ ବ୍ୟଙ୍ଗ୍ୟଭାବ ଫୁଟିଉଠୁଥିଲା । ଏଥିରେ କାଳ୍ପନିକ ଆଦର୍ଶ, ବିଦ୍ରୂପାତ୍ମକ ତଥା ଉପମା ଦିଆହୋଇ ନୀତି କଥାମାନ ଉଲ୍ଲେଖ ଥିଲା ।

ତାହାପରେ ପରେ ନବବର୍ଷର କୌଣସି ଏକ ଏକାନ୍ତ ସନ୍ଧ୍ୟାରେ, ସେ ଏହି ଉପନ୍ୟାସଟିକୁ ଏକ ରୂପ ପ୍ରଦାନ କଲେ । ଏଥିରେ ପୂର୍ବ ଉପନ୍ୟାସରେ ବର୍ଣ୍ଣିତ ସେହି ସମସ୍ତ ଚିରନ୍ତନ ସମସ୍ୟାଗୁଡ଼ିକ ଉପରେ ଲେଖାଯାଇଥିଲା । ସେଥିରେ ସାନପିଲାଙ୍କ ମୁହଁରେ କଥାଟା ବିଦ୍ରୂପ କରି ପ୍ରକାଶ କରାଯାଇଥିଲା ତଥା ବୟସ୍କ ପୁରୁଷ ଓ ମହିଳାଙ୍କ ମୁହଁରେ ବିଦ୍ରୂପର ରୂପ ଥିଲା । ସେ ଉପନ୍ୟାସଟିରେ ସାଧାରଣ ଲୋକଟିର ବାର୍ତ୍ତାଳାପ ମାଧ୍ୟମରେ ସବୁକଥା ପ୍ରକାଶ କରିଥିଲେ । ଯଦ୍ଦ୍ୱାରା ସମାଜରେ ଶଙ୍କିତ ତଥା ପେଷି ହୋଇ ରହିଥିବା ଅତି ସାଧାରଣ ଲୋକଟି ଉପନ୍ୟାସର ମର୍ମଟିକୁ ହୃଦୟଙ୍ଗମ କରିପାରିବ । ଏହି ଉପନ୍ୟାସଟିର ନାଁ ସେ ଦେଇଥିଲେ "ବୋସରମିଆ ବାଣ୍ଡୁ" । ଏଥିରେ ବିଦ୍ରୂପାତ୍ମକ ଭାଷାଗୁଡ଼ିକ ସମାଜର ବିଭିନ୍ନ ପ୍ରକାର ଲୋକଙ୍କ ଚରିତ୍ର ଉପରେ ଆଧାର କରି ପ୍ରକାଶ କରାଯାଇଥିଲା, ଯଥା—ସରକାରୀ କାର୍ଯ୍ୟାଳୟର କର୍ମଚାରୀ, ବାଣିଜ୍ୟ ବ୍ୟବସାୟୀ ଗୋଷ୍ଠୀର ·ଇଚ୍ଛା, କୂଟନୀତିଜ୍ଞ, ସାହିତ୍ୟପ୍ରେମୀ ସମ୍ବେଦନଶୀଳ ବ୍ୟକ୍ତି ଇତ୍ୟାଦି । ବିଭିନ୍ନ ବର୍ଗର ସାଧାରଣ ଜୀବନର ଉପଯୁକ୍ତ

ତଥ୍ୟକୁ ଭିତ୍ତିକରି କୁସଂସ୍କାର, ଅନ୍ଧବିଶ୍ୱାସ, ମତାମତ, ପ୍ରବୃତ୍ତି ଆଦିକୁ କୋର୍ଯାକ୍ ନିଖୁଣଭାବରେ ନିଜ ଲେଖନୀ ମୁନରେ ଅଭିବ୍ୟକ୍ତ କରିଥିଲେ ।

କୋର୍ଯାକ୍‌ଙ୍କ ଲେଖିବା ଶୈଳୀ ଭିନ୍ନ ଥିଲା । ତାଙ୍କ ଲେଖାଗୁଡ଼ିକରେ ଯଦିଓ ସେ ସତ୍ୟ ଘଟଣାକୁ ପ୍ରତିପାଦିତ କରୁଥିଲେ, କାହାକୁ ପ୍ରତ୍ୟକ୍ଷ ଭାବରେ ଆକ୍ରମଣ କରୁନଥିଲେ । ପିଲାଙ୍କ ଜୀବନ ଉପରେ ପ୍ରଭାବ ପକାଇ ପାରିବା ଭଳି ଲେଖା ସେ ଲେଖୁଥିଲେ । କେଉଁଟା ଭଲ ବା କେଉଁଟା ଖରାପ—ଏକଥା ସେ ସିଧାସଳଖ ତାଙ୍କ ଲେଖା ମାଧ୍ୟମରେ ଲଦିଦେଉନଥିଲେ । ପ୍ରତିଟି ଲେଖା ଯେପରି ପିଲାଙ୍କ ମନକୁ ଛୁଇଁପାରିବ ସେଥିପାଇଁ ସେ ଗୁରୁତ୍ୱ ଦେଉଥିଲେ ।

ମେ ୧ ତାରିଖ ହେଉଛି, ଶ୍ରମିକ ଦିବସ । ଶ୍ରମିକମାନଙ୍କର ଏହି ଦିନଟି ଛୁଟିଦିନ । ଏହି ଦିବସଟିକୁ ପାଳନ କରିବା ପୋଲାଣ୍ଡରେ ଏକ ରକମର ବିରୋଧାତ୍ମକ ବିଷୟ ଥିଲା । ଜାନୁସ୍ କୋର୍ଯାକ୍‌ଙ୍କୁ ଏହା ଅଜ୍ଞାତ ନଥିଲା । ମାତ୍ର ଏଥିରେ ଭୟଭୀତ ନହୋଇ ସେ ନିଜର ସ୍ୱାଧୀନ ମନ୍ତବ୍ୟମାନ ଖୋଲାଖୋଲି ଭାବରେ ଏବଂ ଅତ୍ୟନ୍ତ ନିଷ୍ଠାପର ଭାବରେ ସେ ପ୍ରକାଶ କରୁଥିଲେ । ପ୍ରତ୍ୟେକ ପିଲାର ସେହି ସତ୍‌ସାହସ ରହିବା ଆବଶ୍ୟକ, ଯାହାଦ୍ୱାରା ସେ ନିଜେ କଅଣ କରିବ ବା ନକରିବ ସେ କଥା ନିଜପାଇଁ ବାଛିନେଇପାରିବ । କୌଣସି ପ୍ରକାର ଦ୍ୱିଧା ନରଖି ସେ ନିଜ ପିଲାମାନଙ୍କୁ କହିଲେ, "ଏମିତି ସବୁବେଳେ ହୁଏ । ମନେକର ମୋତେ ଜଣେ କହିଲା, ବ୍ୟାନରଟିଏ ଧରିବାପାଇଁ । ବ୍ୟାନର ଧରିବାପାଇଁ ମୋ ଭିତରେ ଇଚ୍ଛା ଥାଇପାରେ ବା ନଥାଇପାରେ । ଯଦି ଇଚ୍ଛା ନଥାଏ, ତେବେ ମୁଁ କଅଣ ମନାକରିଦେଇଥାନ୍ତି ? ଅବଶ୍ୟ ମନାକରିଦେବା ଉଚିତ । ମାତ୍ର ମୁଁ ଯାହା କରିଛି, ତାହା ଅନ୍ୟମାନେ ଅନୁସରଣ କରନ୍ତୁ ବୋଲି ମୁଁ ଆଦୌ ବାଧ୍ୟ କରିପାରିବି ନାହିଁ । ଶ୍ରମିକମାନଙ୍କର ସଙ୍ଗଠନ ତ ବହୁତ ବଡ଼ । ସେମାନଙ୍କର ଯଦି ଇଚ୍ଛା ଥାଏ, ତେବେ ସେମାନେ ମେ ୧କୁ ପାଳନ କରନ୍ତୁ ଏବଂ ବ୍ୟାନର ପ୍ରଦର୍ଶନ କରନ୍ତୁ ।"

ବ୍ୟକ୍ତି ନିଜେ କଅଣ କରିବ ସେଥିପାଇଁ ନିଜେ ନିଷ୍ପତ୍ତି ନେବା ଆବଶ୍ୟକ ବୋଲି କୋର୍ଯାକ୍ ସର୍ବଦା ଗୁରୁତ୍ୱ ଦେଉଥିଲେ । ସମସ୍ତେ ନିଜ ମତଟିକୁ ଉପସ୍ଥାପନ କରି-ପାରିବା ପାଇଁ ସେ ପ୍ରଭୂତ ସୁଯୋଗ ଦେଉଥିଲେ । କାରଣ ସେ ଭଲଭାବରେ ବୁଝିଥିଲେ ଯେ ପ୍ରତ୍ୟେକ ବୁଦ୍ଧିସମ୍ପନ୍ନ ବ୍ୟକ୍ତି ନିଜକୁ ସ୍ୱାଧୀନ ଭାବରେ ପ୍ରକାଶ କରିବା ହେଉଛି ତା'ର ସ୍ୱାଭାବିକ ଅଧିକାର ।

କୋର୍ଯାକ୍ କେବେ ବି କାହା ଉପରେ ବାହାରର କୌଣସି ନିୟମ ବା ନିଜର ମତକୁ ଲଦି ଦେଉନଥିଲେ । ଆଦେଶ ଦେଇ କାମ ହାସଲ କରିବା ବା ଅପରିଶ୍ରେଷ୍ଠ

ଗ୍ରହ ପ୍ରଦାନ କରିବା ଉପରେ କୋର୍ଜାକ୍‌ଙ୍କର କୌଣସି ବିଶ୍ୱାସ ନଥିଲା । ସେ ସବୁ ପ୍ରକାର ପ୍ରଭୁର ଆଦରୁ ଦୂରେଇ ରହିବାକୁ ଚେଷ୍ଟାକରୁଥିଲେ । ବ୍ୟକ୍ତିର ବ୍ୟକ୍ତିତ୍ୱକୁ ସବୁ ପ୍ରକାର ସମ୍ମାନ ଦେଇ ସେ ସମସ୍ୟାଗୁଡ଼ିକର ବିଶ୍ଳେଷଣ କରୁଥିଲେ; କିନ୍ତୁ କେଉଁଟି ଠିକ୍ ଏବଂ କାହାକୁ ଗ୍ରହଣ କରିବା ଉଚିତ, ସେ ସମ୍ବନ୍ଧରେ ବିଚାର କରିବା ପାଇଁ ସେ ପାଠକମାନଙ୍କ ଉପରେ ଛାଡ଼ିଦେଉଥିଲେ ।

ଉପଯୁକ୍ତ ବୟସରେ ଉପନୀତ ହେଲା ପରେ ଏବଂ ଆବଶ୍ୟକ ଶିକ୍ଷା ଗ୍ରହଣ ପରେ ଅନାଥାଶ୍ରମରୁ ପିଲାଟିଏ ରୋଜଗାର ପାଇଁ ବିଦାୟ ନେଉଥିଲା । ବିଦାୟ ସମୟରେ କୋର୍ଜାକ୍ ପ୍ରତ୍ୟେକ ପିଲାକୁ ନିଜର ସନ୍ଦେଶ ପ୍ରଦାନ କରୁଥିଲେ । ଏହି ସନ୍ଦେଶ କୋର୍ଜାକଙ୍କର ଅନ୍ତରତମ ହୃଦୟ, ଆତ୍ମା ଏବଂ ତାଙ୍କର ଗଭୀରତମ ଅନ୍ତର୍ବୋଧଟିକୁ ପ୍ରକାଶ କରୁଥିଲା । ଏହି ସନ୍ଦେଶଟି ଏହିପରି ଥିଲା—

"ଆମେ ତୁମମାନଙ୍କୁ ଈଶ୍ୱର ଦେଇନାହୁଁ । କାରଣ ତୁମକୁ ଈଶ୍ୱର ଅନୁସନ୍ଧାନ କରିବାକୁ ହେବ । ତୁମେ ତୁମ ଈଶ୍ୱର ନିଜ ଭିତରେ ପାଇବ ।"

"ଆମେ ତୁମମାନଙ୍କୁ କୌଣସି ଦେଶ ଦେଇନାହୁଁ । କାରଣ ତୁମେ ତୁମ ଦେଶକୁ ନିଜେ ବାଛିବ । ଏହି ବାଛିବା ହେବ ତୁମ ହୃଦୟ ଓ ବୁଦ୍ଧିର ନିର୍ବାଚନ ।"

"ଆମେ ତୁମକୁ କୌଣସି ମାନବ ପ୍ରେମ ଦେଇନାହୁଁ । କାରଣ କ୍ଷମା ବିନା କୌଣସି ପ୍ରେମ ସମ୍ଭବ ନୁହେଁ । ତୁମକୁ କଠିନ କର୍ମ ମାଧ୍ୟମରେ ଏହି ପ୍ରେମକୁ ଆବିଷ୍କାର କରିବାକୁ ହେବ ।"

"ଆମେ ତୁମମାନଙ୍କୁ ଗୋଟିଏ କଥା ପ୍ରଦାନ କରୁଛୁ ଏବଂ ସେଇଟି ହେଲା, ସତ୍ୟ ଓ ନ୍ୟାୟ ଉପରେ ଅଧିଷ୍ଠିତ ଏକ ସୁନ୍ଦରତର ଜୀବନପାଇଁ ତୁମ ଭିତରେ ଆକାଂକ୍ଷା ଜାଗ୍ରତ କରିବା ଯାହାକି ଜୀବନର ବିକାଶ ପାଇଁ ଉଦ୍ଦିଷ୍ଟ ।"

"ଆମେ ଆଶା କରୁଛୁ ତୁମ ଭିତରର ଏହି ଆକାଂକ୍ଷା ତୁମକୁ ତୁମର ଈଶ୍ୱର, ଦେଶ ଓ ପ୍ରେମ ଆଡ଼କୁ ଆଗେଇ ନେଇ ଯାଇପାରିବ ।"

## (୧୪) ଈଶ୍ୱର ବିଶ୍ୱାସୀ ଡାକ୍ତର କୋର୍ଜାକ୍

ଡାକ୍ତର ଜାନୁସ୍ କୋର୍ଜାକ୍ ନିଜ ଜୀବନର ବାସ୍ତବ ଅନୁଭୂତିକୁ ଆଧାର କରି ଶିକ୍ଷାଦେଉଥିଲେ । କୌଣସି ଅବାସ୍ତବ ବା ତାତ୍ତ୍ୱିକ ଦିଗକୁ ସେ ଶିକ୍ଷାଦାନ କ୍ଷେତ୍ରରେ ଅନ୍ତର୍ଭୁକ୍ତ କରୁନଥିଲେ । କୋର୍ଜାକ୍‌ଙ୍କ ନିଜ ଜୀବନର ଅନୁଭୂତି ଅତ୍ୟନ୍ତ ବିଷାଦପୂର୍ଣ୍ଣ ଥିଲା । ଜୀବନର ପିଚ୍ଛିଳ ପଥ ଉପରେ ଚାଲି ଚାଲି ସେ କେବେ ବି ଦୁର୍ବଳ

ହୋଇ ପଡ଼ିନଥିଲେ । ସାହସୀ ମଣିଷର ହୃଦୟ ଓ ମନନେଇ ସେ ବାଂଚି ରହିଥିଲେ । ତାଙ୍କ ଜୀବନର ଚଲାପଥଟି ଲମ୍ବି ଯାଇଥିଲା ଈଶ୍ୱରଙ୍କ ଆଡ଼କୁ । ଜୀବନର ପ୍ରକୃତ ପଥଟିକୁ ସେ ପିଲାମାନଙ୍କୁ ଶିକ୍ଷାମାଧ୍ୟମରେ ଦେଖାଇ ଦେବାପାଇଁ ସଦାସର୍ବଦା ଉଦ୍ୟମ କରୁଥିଲେ ।

ସେତେବେଳେ ଅଳ୍ପସମୟ ପାଇଁ ହେଲେ ମଧ୍ୟ ପୋଲାଣ୍ଡରେ ସର୍ବତ୍ର ଯୁବଶକ୍ତିର ଔଜ୍ଜ୍ୱଲ୍ୟ ପରିପ୍ରକାଶ ହୋଇଥିଲା । ସୃଜନଶୀଳ ଫଳପ୍ରଦ କାମପାଇଁ ଅନେକ ସୁଯୋଗ ପରିବ୍ୟାପ୍ତ ହୋଇରହିଥିଲା । ମାତ୍ର କୋର୍ଯାକ୍‌ଙ୍କ ପାଇଁ ବାତାବରଣଟି ଥିଲା ହତାଶା ତଥା ନିରାଶମୟ । କାରଣ ପ୍ରଥମ ବିଶ୍ୱଯୁଦ୍ଧ ପରି ସମୟରେ ଇହୁଦୀମାନଙ୍କ ପ୍ରତି ପୋଲାଣ୍ଡରେ ଦୁର୍ବ୍ୟବହାରର ମାତ୍ରା ବଢ଼ିଯାଇଥିଲା । ଇହୁଦୀମାନଙ୍କ ପ୍ରତି ବିଦ୍ୱେଷଭାବ ତଥା ସେମାନଙ୍କ ପ୍ରତି ଅଶ୍ରଦ୍ଧାପୂର୍ଣ୍ଣ ଶତ୍ରୁତାଭାବ ପୁରିଆଡ଼େ ପୂରି ରହିଥିଲା । ୧୯୨୦ ମସିହାରେ ଯେତେବେଳେ ବୋଲ୍‌ସେଭିକ୍‌ସ ବିରୋଧରେ ଯୁଦ୍ଧ ଚାଲିଥିଲା, ସେତେ-ବେଳେ ପୋଲାଣ୍ଡର ନୂଆ ସରକାର ଇହୁଦୀ ସୈନ୍ୟମାନଙ୍କୁ ଅଲଗା ଶିବିରରେ ରଖୁଥିଲେ । ଏହିଭଳି ଏକ ଦୂଷିତ ତଥା ପ୍ରତିକୂଳ ପରିବେଶ ଭିତରେ ଥାଇ ମଧ୍ୟ କୋର୍ଯାକ୍ ନିଜ ମାନସିକ ସ୍ଥିତିରେ ଦୃଢ଼ ତଥା ଅଟଳ ଥିଲେ । ସେ ଉଭୟ ଖ୍ରୀଷ୍ଟିୟାନ ଏବଂ ଇହୁଦୀ ଅନାଥ ପିଲାମାନଙ୍କୁ ସମାନ ଭାବରେ ସ୍ନେହ କରୁଥିଲେ ଓ ସେମାନଙ୍କର ଯତ୍ନ ନେଉଥିଲେ । ମିସେସ୍ ଫାଲ୍‌ସ୍କାଙ୍କ ପ୍ରେରଣା ପାଇ ସେ ଇହୁଦୀ ବିଦ୍ୱେଷନୀତି ବିରୋଧରେ ସଂଗ୍ରାମ ପାଇଁ ନିଷ୍ପତ୍ତି ଗ୍ରହଣ କଲେ ।

ଏଥିପାଇଁ ସେ ଗୋକ୍ଲାଓ୍ୱେକ୍‌ର ଅନାଥାଶ୍ରମ ଫାର୍ମରେ ଉଭୟ ସମ୍ପ୍ରଦାୟର ଅନାଥ ପିଲାମାନଙ୍କ ପାଇଁ ଗୋଟିଏ ଶିବିରର ଆୟୋଜନ କରିଥିଲେ । ତା'ଛଡ଼ା ଝୋରମାଲ୍‌ନା ଓ ପୃସ୍‌କୋକୋ ଗଳିରୁ ଆସିଥିବା ଅଧିବାସୀମାନଙ୍କ ରହିବାପାଇଁ ମଧ୍ୟ ସମାନ ଶିବିର ଆୟୋଜନ କରିଥିଲେ । କୋର୍ଯାକଙ୍କର ବିଶ୍ୱାସ ଥିଲା ଯେ ଯଦି ଉଭୟ ସମ୍ପ୍ରଦାୟର ପିଲାମାନେ ତଥା ଲୋକମାନେ ଏକତ୍ର ରହିବେ ତେବେ ସେମାନଙ୍କ ଭିତରେ ପରସ୍ପରର ସମ୍ପ୍ରଦାୟ ବା ଜାତି ପ୍ରତି ଥିବା ଭ୍ରାନ୍ତଧାରଣା, ଘୃଣା ଓ ବିଦ୍ୱେଷଭାବ ଅଚିରେ ଦୂର ହୋଇଯିବ । ମାନବିକତାର ସମ୍ପର୍କ ଗଢ଼ି-ଉଠିବ ।

କିଛିବର୍ଷ ପରେ କୋର୍ଯାକ୍ ଗୋଟିଏ ଉପନ୍ୟାସ ଲେଖିଥିଲେ । ଉପନ୍ୟାସଟିର ନାଁ ଥିଲା "ଘାଆ" (The Wound) । ଏହି ଉପନ୍ୟାସରେ ସେ ଅତି ଗଭୀର ଭାବରେ ସମ୍ବେଦନଶୀଳ ହୃଦୟ ନେଇ ଜାତିଆଣ ଘୃଣାଭାବ ଏବଂ ତଦ୍‌ଜନିତ ପ୍ରତିବନ୍ଧକକୁ ଭାଙ୍ଗିଦେବା ସକାଶେ ଆପ୍ରାଣ ଉଦ୍ୟମ ଜାରିରଖିଥିଲେ—ସେ ବିଷୟରେ ବର୍ଣ୍ଣନା କରିଥିଲେ । ଏଥିରୁ ସ୍ପଷ୍ଟ ହୁଏ ଯେ କୋର୍ଯାକ୍ ଇହୁଦୀ ଘରେ

ଜନ୍ମ ହୋଇ ମଧ୍ୟ ଇହୁଦୀ ସମ୍ପ୍ରଦାୟରେ ଛନ୍ଦହୋଇ ପଡ଼ିନଥିଲେ । ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ମଣିଷ ଯେ ମଣିଷ ଏବଂ ଈଶ୍ୱରଙ୍କ ସନ୍ତାନ—ଏହି କଥାଟିକୁ ସେ ତାଙ୍କ ଅସ୍ଥି ମଜ୍ଜାଗତ କରିନେଇଥିଲେ । ଏହାକୁ ଜୀବନର ସବୁ ପ୍ରକାର ପ୍ରତିକୂଳ ବାତାବରଣ ଭିତରେ କପରି ବାସ୍ତବରେ ଦେଖାଇହେବ ସେଥିପାଇଁ ସେ ସତତ ପ୍ରଚେଷ୍ଟାରତ ଥିଲେ । ଈଶ୍ୱରଙ୍କ ନିକଟରେ ସମ୍ପୂର୍ଣ୍ଣ ଉନ୍ମୁକ୍ତ ମଣିଷଟି ନିର୍ଭୀକ ଥାଏ ଏବଂ ସେ ଘାତ ପ୍ରତିଘାତ ତଥା ମାନବକୃତ ଅସ୍ୱାଭାବିକ ପରିସ୍ଥିତି ଭିତରେ ଭୀତତ୍ରସ୍ତ ହୋଇଯାଏ ନାହିଁ । ଏହାହିଁ କୋର୍ଚାକ୍‌ଙ୍କ ଜୀବନରେ ଜ୍ୱଳନ୍ତ ଭାବରେ ପ୍ରତିପାଦିତ ।

'ଦି-ସନ୍' (The Sun) ପତ୍ରିକାରେ କୋର୍ଚାକ୍ ଜାତିଆଣ ବିଦ୍ୱେଷଭାବ, ଘୃଣାଭାବ ଆଦି ଦୂର କରିବାପାଇଁ ଅନେକ ବିନୀତ ଅନୁରୋଧମୂଳକ ଲେଖାମାନ ପ୍ରକାଶ କରିଥିଲେ । ମାତ୍ର ସେତେବେଳେ ପରିବେଶଟି ଏଭଳି ବିଷମୟ ହୋଇ-ପଡ଼ିଥିଲା ଯେ ଏହି ଅନୁରୋଧ ଆଦୌ ଫଳପ୍ରଦ ଭାବରେ ପ୍ରଭାବ ପକାଇପାରୁନଥିଲା । ଶଲକଣ୍ଠିରେ ଏହି ଜାତିଆଣ ଘୃଣାଭାବର ଦୃଶ୍ୟ ଅତ୍ୟନ୍ତ ମର୍ମନ୍ତୁଦ ଥିଲା । ଇହୁଦୀ-ମାନେ ଅଛୁଆ ଓ ପରିହାସର ଶିକାର ହେଉଥିଲେ ।

ଇହୁଦୀମାନଙ୍କୁ ଅନ୍ୟମାନେ ଅପମାନ ଦେଉଥିଲେ, ଟେକାପଥର ଫିଙ୍ଗୁଥିଲେ । ଡାକ୍ତରଙ୍କ ନେତୃତ୍ୱରେ ମାର୍ଚ୍ଚପାଷ୍ଟ କଲାବେଳେ ଇହୁଦୀ ଅନାଥପିଲାମାନଙ୍କୁ ମାଡ଼ ଦିଆଯାଉଥିଲା । ଏହା ପ୍ରକୃତରେ ପିଲାମାନଙ୍କ ପ୍ରତି ଅତି ନିର୍ମମ ତଥା ବର୍ବରୋଚିତ ବ୍ୟବହାର ଥିଲା । କେବଳ ପିଲା ଓ ଡାକ୍ତରଙ୍କ ପାଇଁ ଏହା ଅସହନୀୟ ଘଟଣା ନଥିଲା । ଡାକ୍ତର କୋର୍ଚାକ୍‌ଙ୍କର ଅନାଥ ପିଲାମାନଙ୍କ ବିଷୟରେ ଯେଉଁମାନେ ସମ୍ବେଦନଶୀଳ ଥିଲେ, ସେମାନେ ଜାଣନ୍ତି ଯେ ଏହି ଘଟଣାମାନ ଅତ୍ୟନ୍ତ ଅପମାନଜନକ ତଥା ଦୁର୍ବିସହ ଥିଲା ।

କୋର୍ଚାକଙ୍କର ବିଷଣ୍ଣତା ଅଧିକରୁ ଅଧିକ ବଢ଼ିଚାଲିଥିଲା । ତାଙ୍କ ମୁଖମଣ୍ଡଳରେ ହତାଶା ଓ ନିରାଶାର ଛାଇ ଖେଳି ବୁଲୁଥିଲା । ଅନ୍ତରର ଗଭୀରତମ ପ୍ରଦେଶରେ ଥିବା ନିରାଶାର ଏହି ଘାଆଟି ସେବନ ଆଦି ଲୁଚି ରହିପାରିଲା ନାହିଁ । କୋର୍ଚାକ ଜଣେ ମହିଳା ସୁପରଭାଇଜରଙ୍କ ସହାୟତାରେ ପିଲାମାନଙ୍କୁ ନେଇ ସ୍ପିଡ଼ାର ନିକଟବର୍ତ୍ତୀ ଗୋଟିଏ ସହର ତଳି ଗାଁକୁ ବୁଲି ବାହାରିଲେ । ଗ୍ରୀଷ୍ମଋତୁ ଯୋଗୁଁ ଦିନତମାମ ରୌଦ୍ର ତାପରେ ଅସହ୍ୟ ବୋଧହେଉଥିଲା । ବୁଡ଼ିବୁଡ଼ି ଗାଧୋଇବା ପାଇଁ ଏହା ଥିଲା ଏକ ଉତ୍କୃଷ୍ଟ ମଉକା । ଗାଁ ପାଖଦେଇ ବୁଲିପଡ଼ିଥିବା ଝରଣାଟିର ଜଳ କାଚ-କେନ୍ଦୁପରି ନିର୍ମଳ ଦିଶୁଥିଲା । ପିଲାମାନଙ୍କୁ ଏହି ଝରଣାରେ ପହଁରିବା ପାଇଁ ଅନୁମତି ମିଳିଗଲା । ସମସ୍ତେ ଯେତେବେଳେ ପାଣି ଭିତରେ ମନ ଖୁସିରେ ଗାଧୋଉଥିଲେ,

ସେତେବେଳେ ମହଲା ସୁପରଭାଇଜର ଜଣକ ବାହାରେ ଗଣ୍ଡଗୋଳ ହେଉଥିବାର ସୂଚନା ଦେଲେ । କୋହାକ ଯେତେବେଳେ ସୁପରଭାଇଜରଙ୍କ ଉତ୍କଣ୍ଠାର କାରଣ ସମ୍ପର୍କରେ ପଚାରିଲେ, ସେ ଉତ୍ତରଦେଲେ ଯେ କାଲେ କେଉଁ ଛୁଆ କେଉଁଆଡ଼େ ହଜିଯିବ ବା କଏ ପାଣିରେ ବୁଡ଼ିଯିବ, ସେଥିପାଇଁ ତାଙ୍କୁ ଭାରି ଡର ଲାଗୁଛି । କୋର୍ଯାକ ଗମ୍ଭୀର ହୋଇ ପଚାରିଲେ, "ସତରେ ତୁମେ କଅଣ ଏଥିପାଇଁ ଏପରି ବ୍ୟସ୍ତ ହୋଇପଡ଼ିଲ ? ଯଦି ପ୍ରକୃତରେ ତୁମ ଆଶଙ୍କାଟି ସତ୍ୟ ହୁଅନ୍ତା, ତେବେ ତାହା ଇହୁଦୀ ପିଲାମାନଙ୍କ ପାଇଁ ସବୁଠାରୁ ଭଲ କଥାଟିଏ ହୁଅନ୍ତା ।"

ଏଥିରୁ ସ୍ପଷ୍ଟଭାବରେ ଜଣାପଡ଼ୁଛି ଯେ ସେତେବେଳେ ଇହୁଦୀମାନଙ୍କ ଭିତରେ ଏକ କାରୁଣ୍ୟର ମାନସିକତା ଭରିରହିଥିଲା । ପ୍ରକୃତିକୋଳରେ ବଞ୍ଚିବାର ଅଦମ୍ୟ ଇଚ୍ଛାଶକ୍ତିଟି ବୋଧହୁଏ କେଉଁଠି ହଜିଯାଇଥିଲା ଇହୁଦୀ ଜାତି ଭିତରେ ! ଦାନବ ଚରିତର ଖଳ ପ୍ରକୃତି ଦ୍ୱାରା ପ୍ରବୃତ୍ତ ହୋଇ ଘୃଣା ଆଉ ଅତ୍ୟାଚାରରେ ଗୋଟିଏ ମଣିଷ ଜାତିକୁ ଅନ୍ୟମାନେ ଚାପିଦେବାରେ ଲାଗିଥିଲେ । ଏସବୁକୁ କୋର୍ଯାକ ସାହସିକତାର ସହ ସାମନା କରିବାପାଇଁ ଚେଷ୍ଟା କରୁଥିଲେ । ମାତ୍ର ଅନେକ ସମୟରେ ନିଜ ଭିତରେ ହତାଶ ଓ ନିରାଶାର ଘେର ଭିତରେ ବୁଡ଼ିଯାଉଥିଲେ ।

ଡାକ୍ତରଙ୍କର ନୈରାଶ୍ୟ ଏତିକରେ ସମାପ୍ତ ହେଲା ନାହିଁ । ସେତେବେଳେ କୋର୍ଯାକ ପୋଲାଣ୍ଡର ସୈନ୍ୟବାହିନୀ ହାସପାତାଳରେ ଡାକ୍ତର ଥିଲେ । ତାଙ୍କୁ ସଂକ୍ରାମକ ରୋଗ ଓ୍ୱାର୍ଡ଼ର ଦାୟିତ୍ୱ ଦିଆଯାଇଥିଲା । ତାଙ୍କ ଡ଼ାକ୍ତରୀ ଆପ୍ରୋନରେ ଟାଇଫଏଡ଼ ରୋଗର ଜୀବାଣୁ ଲାଗି ଆସିଥିଲେ । ଡାକ୍ତରଙ୍କ ସାଙ୍ଗରେ ତାଙ୍କ ବୃଦ୍ଧା ମା' ବି ରହୁଥିଲେ । କୋହାକ ଟାଇଫଏଡ୍ ରୋଗରେ ପଡ଼ିଥିଲାବେଳେ ମାଆ ତାଙ୍କର ସେବା ଶୁଶ୍ରୂଷାରେ ବ୍ୟସ୍ତ ରହୁଥିଲେ । ଫଳରେ ମା'ଙ୍କୁ ବି ଟାଇଫଏଡ୍ ରୋଗ ହେଲା । ସେତେବେଳକୁ କୋର୍ଯାକ୍ "କୋମା" ଅବସ୍ଥାରେ ଅଚେତ ହୋଇ ପଡ଼ିରହିଥିଲେ । ତାଙ୍କ ଚେତା ଫେରିଆସିବା ପୂର୍ବରୁ ମାଆ ଇହଧାମ ଛାଡ଼ି ଚାଲିଗଲେ । ମୃତ୍ୟୁ ପୂର୍ବରୁ ମା'ଙ୍କ କହିବା ଅନୁସାରେ ତାଙ୍କ ମୃତ ଶରୀରକୁ ଅନ୍ୟବାଟରେ ଏପରି ଭାବରେ ତଳକୁ ଓହ୍ଲାଇ ନିଆଗଲା, ଯଦ୍ୱାରା ଅଚେତ ଅବସ୍ଥାରେ ପଡ଼ିଥିବା ଡାକ୍ତର କୋଯାକ୍ ଆଦୌ ଏକଥା ଜାଣିପାରି ନଥିଲେ ।

ଟାଇଫଏଡ଼ରୁ ଭଲ ହୋଇଗଲାପରେ କୋହାକ୍‌ଙ୍କୁ ବହୁତ ଦୋଷୀ ଦୋଷୀ ଲାଗିଲା । ତାଙ୍କର ଦୃଢ଼ ଧାରଣା ହେଲା ଯେ ତାଙ୍କ ନିଜ ଦୋଷରୁ ମା'ଙ୍କ ପ୍ରାଣ ଗଲା । କାରଣ ଜଣେ ଡାକ୍ତର ହୋଇ ମଧ୍ୟ ସେ ଡାକ୍ତରୀ ନିୟମ କାଇଦା ମାନୁନଥିଲେ । କାର୍ଯ୍ୟବ୍ୟସ୍ତତା ତଥା ରୋଗୀମାନଙ୍କ ସହ ମିଶିବା ଭିତରେ ସେ ରୋଗଜୀବାଣୁ ପ୍ରତି-ରୋଧକ ବ୍ୟବସ୍ଥା ପ୍ରତି ଆଦୌ ସଚେତନ ହେଉ ନଥିଲେ । ଫଳରେ ଆପ୍ରୋନ୍ ଦେଇ

ରୋଗ ଯିବାଣୁ ଘରକୁ ଚାଲିଆସିଲା ଏବଂ ଏଥିରେ ସେ ନିଜେ ଆକ୍ରାନ୍ତ ହେଲେ ଓ ତା ସାଙ୍ଗକୁ ମା' ଟାଇଫଏଡ୍‌ରେ ଶେଷ ନିଃଶ୍ୱାସ ତ୍ୟାଗକଲେ । ଏସବୁ କଥାକୁ ମନେପକାଇ ସେ ଅତ୍ୟନ୍ତ ବ୍ୟତିବ୍ୟସ୍ତ ହୋଇପଡ଼ୁଥିଲେ । ନିଜ ଜୀବନ ପ୍ରତି କୋର୍ଯାକ୍‌ଙ୍କର ହେୟ ଭାବ ଜାତ ହେଲା । ତେଣୁ ସୁଯୋଗ ଉଣ୍ଡି ଆତ୍ମହତ୍ୟା କରିବା ସକାଶେ ସେ ପକେଟରେ କରୋସିଭ ସବ୍ଲିମେଟ ଏବଂ ମର୍ଫିନ ଟାବ୍‌ଲେଟ୍ ଧରି ବୁଲୁଥିଲେ । କୋର୍ଯାକ୍ ନିଜ ଜୀବନୀ ପୁସ୍ତକରେ ଲେଖିଛନ୍ତି, "ମୁଁ ମୋ ଭିତରେ ମୃତ୍ୟୁକୁ ଅନୁଭବ କରୁନାହିଁ, ମାତ୍ର ମୃତ୍ୟୁକୁ ଅତି ନିବିଡ଼ ଭାବରେ ନଭାବି ରହିପାରୁ ନାହିଁ ।"

ଏହିପରି ଚିନ୍ତା ଭିତରେ ସେ ନିମଗ୍ନ ହୋଇ ରହୁଥିଲେ ଏବଂ ଏଗୁଡ଼ିକୁ ନେଇ ଏକ କ୍ଷୁଦ୍ର ପୁସ୍ତିକା ପ୍ରକାଶିତ ହୋଇଥିଲା, ଯାହାର ନାଁ ଥିଲା, "ଈଶ୍ୱରଙ୍କ ସହ ଏକାନ୍ତରେ ।" ପରେ ସେ ଏହି ପୁସ୍ତକ ସମ୍ବନ୍ଧରେ ମନ୍ତବ୍ୟ ଦେଇ କହିଥିଲେ ଯେ, ଏହି ପୁସ୍ତକଟି ପ୍ରାର୍ଥନା କରୁନଥିବା ଲୋକମାନଙ୍କ ପାଇଁ ଏକ ଭିନ୍ନ ପ୍ରକାରର ପ୍ରାର୍ଥନା ବହି । ପୁସ୍ତକରେ ସର୍ବମୋଟ ୧୮ ଟି ପ୍ରାର୍ଥନା ଥିଲା । ପ୍ରାର୍ଥନାଗୁଡ଼ିକୁ ଈଶ୍ୱରଙ୍କ ସହ ତାଙ୍କର ବ୍ୟକ୍ତିଗତ ଆଳାପ ବୋଲି କୋର୍ଯାକ୍ କହୁଥିଲେ । ସେ ଏହି ପ୍ରାର୍ଥନାଗୁଡ଼ିକୁ ତାଙ୍କ ସ୍ୱର୍ଗତ ପିତାମାତାଙ୍କ ଉଦ୍ଦେଶ୍ୟରେ ସମର୍ପଣ କରିଥିଲେ ।

"ଈଶ୍ୱରଙ୍କ ସହ ଏକାକୀ" ପୁସ୍ତକରୁ ଡାକ୍ତର କୋର୍ଯାକ୍‌ଙ୍କ ଜୀବନପଥଟି ଏକ କଳାକାର ଏବଂ ଏକ ବିଶ୍ୱସ୍ତ ଭକ୍ତର ଜୀବନ ବୋଲି ଅନୁଭବ କରିହୁଏ । ଯେଉଁ ଆଧ୍ୟାତ୍ମିକ ମଣିଷମାନେ ଧର୍ମର କୌଣସି ଗୁଳା ବା ଧରାବନ୍ଧା । ଗତାନୁଗତିକତାରେ ପଡ଼ିପାରନ୍ତି ନାହିଁ, ସେହି ବ୍ୟକ୍ତିମାନଙ୍କ ପାଇଁ ଏହି ପୁସ୍ତକଟି ଅତ୍ୟନ୍ତ ଉପାଦେୟ ଅଟେ । କୋର୍ଯାକ ଈଶ୍ୱରଙ୍କ ନିକଟରେ ଅତି ସରଳ ସ୍ୱାଭାବିକ ଭାବରେ ନିଜ ଅନ୍ତରର କଥାକୁ ଜଣାଇବାକୁ ଚେଷ୍ଟା କରୁଥିଲେ । ଏଥିପାଇଁ ପ୍ରାର୍ଥନାଗୁଡ଼ିକରେ ଅତି ସାଧାରଣ ତଥା ସରଳ ଲୋକଙ୍କ ଭାଷା ଓ ସ୍ୱରକୁ ବ୍ୟବହାର କରୁଥିଲେ । ଏହି ଲୋକମାନେ ଡାକ୍ତରଙ୍କ କଳ୍ପନାରେ ଥିଲେ ଏବଂ ଏହି କାଳ୍ପନିକ ବ୍ୟକ୍ତିମାନେ ଥିଲେ, ସେଇମାନଙ୍କର ପ୍ରତିନିଧି ଯେଉଁମାନଙ୍କୁ କୋସାକ୍ ଜାଣିଥିଲେ ଏବଂ ଭଲପାଉଥିଲେ । ସତ କହିବାକୁ ଗଲେ, ଏମାନେ ଥିଲେ ସ୍କୁଲ ପିଲାମାନେ, ମାଆମାନେ ଗରିବ ସ୍ତ୍ରୀ-ଲୋକମାନେ, କେହି ଜଣେ ବୈଜ୍ଞାନିକ ଇତ୍ୟାଦି । ଏମାନଙ୍କୁ ମାଧ୍ୟମ କରି କୋର୍ଯାକ ଈଶ୍ୱରଙ୍କ ନିକଟରେ ହାତ ପତାଇଛନ୍ତି, ଅଭିଯୋଗ କରିଛନ୍ତି, ବିରୋଧ କରିଛନ୍ତି ଏବଂ କୃତଜ୍ଞତା ଜ୍ଞାପନ କରିଛନ୍ତି ।

କେତେବେଳେ କେମିତି ସେ ନିଜର ମନସ୍ତାପର ସ୍ୱରଟିକୁ ଶୁଣି କାନ୍ଦିଉଠନ୍ତି ଏବଂ କହନ୍ତି, "ହେ ଭଗବାନ୍ ! ମୁଁ ତୁମକୁ କିପରି ଅପମାନିତ କଲି !" ତା'ପରେ

ଆନ୍ତର ଦୁଃଖର ସହ କହନ୍ତି, "ହେ ପରମେଶ୍ୱର, ହେ ପରମପିତା ତୁମକୁ ଯେତେବେଳେ ଦରକାର କରୁଛୁ, ସେତେବେଳେ ମୋ ପାଦ ଦୁଇଟି କଣ୍ଟାଳିଆ ବାଲୁଙ୍ଗା ଦ୍ୱାରା ଛିନ୍ନ ହୋଇ ପଡ଼ିଛନ୍ତି । ମୋ ହାତ ଓ ହୃଦୟରୁ ଯେତେବେଳେ ରକ୍ତସ୍ରାବ ହୋଇଛି, ସେତେବେଳେ ମୁଁ ତୁମକୁ ଡାକିଛି । ମାତ୍ର ତୁମେ ମୋ ପାଖରେ ପହଞ୍ଚି ନାହଁ । ମୁଁ ଏକୁଟିଆ ହୋଇ ପଡ଼ିଛି ।"

କୋର୍ଯାକ ଈଶ୍ୱରଙ୍କ ପ୍ରତି ଏହି ପ୍ରକାର ବିଶ୍ୱାସକୁ ଅନେକ ସମ୍ମାନ ଦେଉଥିଲେ, ଯଦ୍ଦ୍ୱାରା ବ୍ୟାବହାରିକ-ଜଗତରେ ସେ ସବୁ ଉପଯୋଗ ହୋଇପାରୁଥିଲା । ସେ ଧର୍ମକୁ ଭଲପାଉନଥିଲେ କାରଣ ଧର୍ମଦ୍ୱାରା କୌଣସି ବାସ୍ତବ କାମ ହୋଇପାରେ ନାହିଁ । ଧର୍ମ କେବଳ ପାପ ଓ ନର୍କ ଉପରେ ଗୁରୁତ୍ୱ ଦେଇ ଆଖିରୁ ପାଣି ଗଡ଼ାଇଥାଏ । ମାତ୍ର ଏହି ପାପ ଓ ନର୍କରୁ ଉଦ୍ଧାର ପାଇବା ପାଇଁ ପୂଜକ ଧର୍ମଗୁରୁ ଓ ଭକ୍ତମାନଙ୍କର କୌଣସି ପ୍ରକାର ଉଦ୍ୟମ ନଥାଏ । କୋର୍ଯାକ ହତାଶା, ସଂଶୟ ଆଦିରୁ ନିଜକୁ ଓହରେଇ ଆଣିପାରିଥିଲେ, କାରଣ ସେ ଭଲଭାବରେ ବୁଝିପାରିଥିଲେ ଯେ ତାଙ୍କ ଅନ୍ତରତମ ସତ୍ତା ବା ଆତ୍ମା ଏପରି ଐଶ୍ୱର୍ଯ୍ୟମୟ ଯେ ଏହା ଈଶ୍ୱର, ମାନବ ତଥା ମାନବ ଜାତି ପାଇଁ ସୃଜନଶୀଳ କାର୍ଯ୍ୟ ସୃଷ୍ଟି କରିପାରିବ । କୋର୍ଯାକ ତାଙ୍କ ସମଗ୍ର ଜୀବନ ଈଶ୍ୱରଙ୍କ ଅନୁସନ୍ଧାନରେ ଥିଲେ ।

୧୯୩୭ ମସିହା ମାର୍ଚ୍ଚ ୩୦ ତାରିଖରେ ସେ ଜଣେ ବନ୍ଧୁଙ୍କ ପାଖକୁ ଚିଠିରେ ଲେଖିଥିଲେ, "ତୁମେ ତୁମର ଉଦାସୀନତା ବିଷୟରେ ଜଣାଇଥିଲ । ଏହା ତୁମ ଭିତରେ ଅଛି ଓ ଆମ ସମସ୍ତଙ୍କ ଭିତରେ ଅଛି । ଆମ ଇତିହାସରେ, ପ୍ରତ୍ୟେକ ଦେଶର କୋଣ ଅନୁକୋଣରେ ଉଦାସୀନତା ଦୃଷ୍ଟି ରହିଥିବାର ନଜିର ଅଛି । ଏହି ଉଦାସୀନତାରୁ ନିଜକୁ ମୁକ୍ତ କରିବାକୁ ହେଲେ, ଈଶ୍ୱରଙ୍କ ଉପରେ ବିଶ୍ୱାସ ତଥା ଈଶ୍ୱର ଅନୁସନ୍ଧାନ ଏକାନ୍ତ ଆବଶ୍ୟକ ।"

ଅନାଥାଶ୍ରମର ପିଲାମାନଙ୍କୁ କୋର୍ଯାକ୍ ବହୁତ ଭଲ ପାଉଥିଲେ । ଅତି ସରଳ, ସହଜ ତଥା ସ୍ୱାଭାବିକତାର ସହ ସେ ପିଲାମାନଙ୍କର ଯତ୍ନ ନେଉଥିଲେ । ଅନାଥ ପିଲାମାନେ ଜୀବନରେ ଅନେକ କିଛିରୁ ବଞ୍ଚିତ ତଥା ସେମାନଙ୍କର ଜୀବନ ପରିଧି ଅତ୍ୟନ୍ତ ସୀମିତ ଥିଲା । ସେମାନଙ୍କର ବଞ୍ଚିତ ଓ ସୀମିତ ଜୀବନକୁ ଅଧିକ ସମୃଦ୍ଧ କରିବା ପାଇଁ କୋର୍ଯାକ୍ କୌଣସି ପ୍ରକାରର ସୁଯୋଗକୁ ହାତଛଡ଼ା କରିବାକୁ ଚାହୁଁ ନଥିଲେ । ପ୍ରାଣଦେଇ ସେ ସବୁକିଛି ସାଉଁଟି ଆଣୁଥିଲେ । ଜୀବନର ହତାଶା ଓ ନୈରାଶ୍ୟପୂର୍ଣ୍ଣ ମୁହୂର୍ତ୍ତଗୁଡ଼ିକରେ ସେ ଆଧ୍ୟାତ୍ମିକ ଆଶ୍ୱାସନା ପାଇବା ପାଇଁ ଈଶ୍ୱରଙ୍କୁ ଖୋଜୁଥିଲେ । ସେ ପିଲାମାନଙ୍କ ପାଇଁ ଈଶ୍ୱରଙ୍କୁ ପାଖେ ପାଖେ ପାଇବା ସକାଶେ ଅତ୍ୟନ୍ତ ବ୍ୟଗ୍ର ହୋଇପଡ଼ୁଥିଲେ । ଏଥିରୁ ସ୍ପଷ୍ଟ ଅନୁମେୟ ଯେ ଜାନୁସ୍ କୋର୍ଯାକ୍

ଗଭୀର ଈଶ୍ୱର ବିଶ୍ୱାସୀ ଥିଲେ ଏବଂ ପ୍ରତି ମୁହୂର୍ତ୍ତରେ ସେ ଈଶ୍ୱରଙ୍କ ଉପରେ ଭରସା କରିଚାଲୁଥିଲେ । କିନ୍ତୁ ଏଠାରେ ଆମକୁ ମନେରଖିବାକୁ ହେବ ଯେ କୋର୍ଜାକ୍‌ଙ୍କ ଈଶ୍ୱର କୌଣସି ପୁତ୍ତଳିକା ଭିତରେ ବା କୌଣସି ଧାର୍ମିକ ସଂକୀର୍ଣ୍ଣତା ଭିତରେ ଆବଦ୍ଧ ନଥିଲେ । କୋର୍ଜାକ୍‌ଙ୍କ ଈଶ୍ୱର ହେଉଛନ୍ତି, ସବୁ ମଣିଷଙ୍କ ଭିତରେ ଥିବା ପରମ ସତ୍ୟ ଯିଏକି ଏ ସଚରାଚର ପ୍ରକୃତିର ସ୍ରଷ୍ଟା ଓ ପଥ ପ୍ରଦର୍ଶକ ।

ଦ୍ୱିତୀୟ ବିଶ୍ୱଯୁଦ୍ଧର ଆଠବର୍ଷ ଆଗରୁ ଓ୍ୱାର୍ସୋରେ କୋର୍ଜାକ୍‌ଙ୍କ ଲିଖିତ ନାଟକ, "ପାଗଳମାନଙ୍କର ପରିଷଦ" ଅଭିନୀତ ହୋଇଥିଲା । ଏହି ନାଟକରେ ଗୋଟିଏ ଉକ୍ତି ଥିଲା, "ଏକୁଟିଆ ଓ ଦୁଃଖୀ ମଣିଷଟି ପାଇଁ ବିଶ୍ୱାସ ହିଁ ଏକାନ୍ତ ଅପରିହାର୍ଯ୍ୟ ଅଟେ ।" କୋର୍ଜାକ୍ ଭଗବତ୍ ବିଶ୍ୱାସୀ ଓ ଈଶ୍ୱରପ୍ରେମୀ ଏକଥା ସତ୍ୟ ମାତ୍ର ଏଥିପାଇଁ ସେ କୌଣସି ଧର୍ମ ବା ସମ୍ପ୍ରଦାୟ ପାଇଁ ପ୍ରଚାର କରିନଥିଲେ । ଅନାଥାଶ୍ରମରେ ଏକ ଶାନ୍ତ ପ୍ରାର୍ଥନା ପରିବେଶ ସୃଷ୍ଟି କରିବାପାଇଁ କୋର୍ଜାକ୍ ଉଦ୍ୟମ-ରତ ଥିଲେ । ମାନବୀୟ ପ୍ରେମରୁ ବଞ୍ଚିତ ତଥା ନାନା ଦୁଃଖଯନ୍ତ୍ରଣାରେ ଜୀବନ ନିର୍ବାହ କରୁଥିବା ଅନାଥ ପିଲାମାନଙ୍କ ପାଇଁ ଏକ ନୂତନ ଆଶାର ସ୍ୱର୍ଗଟିଏ ସୃଷ୍ଟି କରିବା ସକାଶେ ତଥା ସେମାନଙ୍କ ପାଇଁ ମମତାର ଘରଟିଏ ଯୋଗାଇଦେବା ନିମନ୍ତେ କୋର୍ଜାକ୍ ଏହି କାର୍ଯ୍ୟଧାରା ମାଧ୍ୟମରେ କିଛି କରିପାରିବେ ବୋଲି ଆଶା ବାନ୍ଧିଥିଲେ ।

୯୬—କ୍ରୋଚ୍‌ମାଲ୍‌ନା ଗଳିରେ ଥିବା ଅନାଥାଶ୍ରମର ଭଲମନ୍ଦ ସବୁକଥା ଫାମୀ ଷ୍ଟିଫା ଓ୍ୱିଲ୍‌ଜନସ୍କା ବୁଝୁଥିଲେ । ଫାମୀ ଷ୍ଟିଫା ନାସ୍ତିକ ଥିଲେ । ଇହୁଦୀ ଧର୍ମର କୌଣସି ପ୍ରକାର ସଂସ୍କାରଦ୍ୱାରା ସେ ପ୍ରଭାବିତ ହୋଇନଥିଲେ । ଧର୍ମର କୌଣସି ଧାର ଧାରଣା ନକରି ସେ ଅନାଥାଶ୍ରମର ସମସ୍ତ କାର୍ଯ୍ୟ ତୁଲଉଥିଲେ । ଅନାଥାଶ୍ରମକୁ ଶ୍ରୀ ପୁଟ୍‌ମାନ୍ ଧର୍ମ ତଥା ହିବ୍ରୁ ଭାଷା ଶିଖାଇବା ପାଇଁ ନିୟମିତ ଆସୁଥିଲେ । କିନ୍ତୁ ଏହି କ୍ଲାସ୍‌ରେ ଯୋଗଦେବାପାଇଁ କେହି ପିଲାମାନଙ୍କୁ ଉତ୍ସାହିତ କରୁନଥିଲେ ।

ପିଲାମାନଙ୍କର ଆଧ୍ୟାତ୍ମିକ ଜୀବନଧାରାକୁ ସଙ୍ଗଠିତ କରି ଗଢ଼ିତୋଳିବା ପାଇଁ ନିଜେ ଡାକ୍ତର କୋର୍ଜାକ୍ ଦାୟିତ୍ୱ ଗ୍ରହଣ କରିବା ପାଇଁ ନିଷ୍ପତ୍ତି ନେଲେ । ସେ ଧର୍ମର ପ୍ରକୃତ ସତ୍ୟଟି ଜୀବନ ଉପରେ କେତେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାଏ, ସେ କଥା ଭଲଭାବରେ ହୃଦୟଙ୍ଗମ କରିଥିଲେ । ସେ ଏକଥା ମଧ୍ୟ ବୁଝିଥିଲେ ଯେ ଯେଉଁ ଅନାଥ ପିଲାମାନେ ଏ ପୃଥିବୀରେ ଏକୁଟିଆ ତଥା ନିସଙ୍ଗ ଜୀବନ ଯାପନ କରୁଛନ୍ତି ଏବଂ ଯେଉଁମାନେ ପିତାମାତାଙ୍କର ସ୍ନେହଶ୍ରଦ୍ଧାରୁ ବଞ୍ଚିତ ବା ଯେଉଁମାନଙ୍କର ପିତାମାତା ସେମାନଙ୍କର ଜୀବନର ବାଟ ଦେଖାଇବା ପାଇଁ ଆଉ ଇହଧାମରେ ନାହାନ୍ତି, ସେମାନଙ୍କ ପାଇଁ ଧର୍ମର ଆବଶ୍ୟକତା ଅତ୍ୟନ୍ତ ଜରୁରୀ ଅଟେ । କୋର୍ଜାକ୍

ସଦାସର୍ବଦା ସଚେତନ ତଥା ଯତ୍ନବାନ ରହୁଥିଲେ ଯେପରି କୌଣସି ତ୍ରୁଟିହେତୁ ଅନାଥ ପିଲାମାନଙ୍କ ପାଇଁ ଦୁଃଖ ତଥା ନିରାନନ୍ଦରେ ନକଟୁ । ଭାଗ୍ୟବାନ ପିଲା ଜୀବନକୁ ଯେପରି ଖୁସିରେ ଉପଭୋଗ କରିପାରୁଛନ୍ତି, ଏହି ଅଭାଗା ଅନାଥମାନେ ସେପରିକି ଅଭାବ ଅନୁଭବ ନକରନ୍ତୁ ।

କୋର୍ଚାକ୍ ଅନାଥ ପିଲାମାନଙ୍କୁ ପୋଲାଣ୍ଡ ଭାଷାରେ ପାଠ ପଢ଼ାଉଥିଲେ । ପୋଲାଣ୍ଡ ଭାଷାରେ ପାଠ ପଢ଼ାଇବା ଇହୁଦୀ ପରମ୍ପରା ପ୍ରତି ସମ୍ପୂର୍ଣ୍ଣ ବିଦେଶୀ ଥିଲା । ମାତ୍ର ଇହୁଦୀ ପିଲାମାନଙ୍କ ପାଇଁ ସେ ସ୍ୱତନ୍ତ୍ର ପ୍ରାର୍ଥନା ଲେଖି ଶିଖାଉଥିଲେ । କ୍ରୋଚ୍‌ମାଲ୍‌ନା ଗଳିର ଅନାଥାଶ୍ରମରେ କୋର୍ଚାକଙ୍କ ଦାୟିତ୍ୱ ନେବାପରଠାରୁ ପିଲାମାନେ ହିନକୁ ତିନିଥର ପ୍ରାର୍ଥନା ବୋଲୁଥିଲେ । ଯେଉଁ ଶବ୍ଦସମ୍ଭାର ଦେଇ ଏହି ପ୍ରାର୍ଥନାଗୁଡ଼ିକ ବୋଲାଯାଉଥିଲା, ତାହା ଥିଲା ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ପିଲାମାନେ ବୋଲୁଥିବା ପ୍ରାର୍ଥନାଟି ଏହିପରି ଥିଲା :—"ଈଶ୍ୱରଙ୍କ ଆଶୀର୍ବାଦ········ଆମର ଶାଶ୍ୱତ ଭଗବାନ ।" ଏଇ ସମାନ କଥାଟିକୁ କୋର୍ଚାକ୍ ଅନାଥାଶ୍ରମର ଖ୍ରୀଷ୍ଟିୟାନ ପିଲାମାନଙ୍କ ପାଇଁ ଏତେ ସହଜରେ ଲାଗୁ କରାଇ ପାରୁନଥିଲେ । ଶ୍ରୀମତୀ ମାରିନା ଫାଲ୍‌ସ୍କା ଜଣେ ନାସ୍ତିକ ଥିଲେ । ସେ ନିତିଦିନ ସନ୍ଧ୍ୟାରେ ହେଉଥିବା ସାମୂହିକ ପ୍ରାର୍ଥନା ସଭାକୁ ବିରୋଧ କରୁଥିଲେ । କୋର୍ଚାକ୍ ଅତି ସରଳ ଭାବରେ ପଚାରୁଥିଲେ, "ତୁମେ ବିରୋଧ କରୁଛ, କିଛି କଥା ନାହିଁ । ମାତ୍ର ତୁମେ ଏହି ପ୍ରାର୍ଥନା ବଦଳରେ ପିଲାମାନଙ୍କୁ ଆଉ କଅଣ ଦେଇପାରିବ ?"

ତାକ୍ତର କୋର୍ଚାକ୍‌ଙ୍କ ପାଇଁ ଅନାଥାଶ୍ରମରେ ସନ୍ଧ୍ୟାବେଳେ ପ୍ରାର୍ଥନା ସଭା ଆରମ୍ଭ ହେଲା । କୋର୍ଚାକ୍ ସବୁ ପ୍ରାର୍ଥନା ସଭାରେ ଯୋଗଦେଉଥିଲେ । ପିଲାମାନେ ଯେପରି ପ୍ରାର୍ଥନାବେଳେ ଆଣ୍ଠୁ ମାଡ଼ି ବସୁଥିଲେ, କୋର୍ଚାକ୍ ବି ସେପରି ଆଣ୍ଠୁ ମାଡ଼ି ପ୍ରାର୍ଥନା କରୁଥିଲେ । କିନ୍ତୁ; ମାରିନା ଫାଲସ୍କାଙ୍କୁ ଏସବୁ ଆଦୌ ପ୍ରଭାବିତ କରିପାରୁନଥିଲା । କାରଣ ଈଶ୍ୱର ବା ଭଗବତ୍ ବିଶ୍ୱାସ ଉପରେ ତାଙ୍କର ଆସ୍ଥା ତୁଟିଯାଇଥିଲା । ତାଙ୍କ ଜୀବନରେ ଘଟିଥିବା ଦୁଃଖଦ ଘଟଣାକୁ ସେ ଆଦୌ ଭୁଲିପାରୁ ନଥିଲେ । ସେ ତାଙ୍କ ପରିବାରଟି ହରାଇଥିଲେ । ଈଶ୍ୱରଙ୍କୁ ଅବିଶ୍ୱାସ କରିବା ପାଇଁ ତଥା କୌଣସି ପ୍ରକାର ଧର୍ମୀୟ ବାତାବରଣ, ଉପଚାର ଆଦିରେ ଅଂଶ ଗ୍ରହଣ ନକରିବା ପାଇଁ ସେ ଜିଦ୍‌ଧରି ନିଜ ଭିତରେ ଅଟଳ ରହୁଥିଲେ । ସାୟଂକାଳର ସ୍ୱର୍ଣ୍ଣାଭ ସୂର୍ଯ୍ୟରଶ୍ମିର ଆଡ଼ୁଆଳରେ ଯେତେବେଳେ ସମସ୍ତେ ପ୍ରାର୍ଥନା କରିବାପାଇଁ ବସିଯାଉଥିଲେ, ସେତେବେଳେ ଶ୍ରୀମତୀ ଫାଲ୍‌ସ୍କା ଜାଣିଶୁଣି ଗୋଟିଏ କୋଣରେ ଛିଡ଼ାହୋଇ ରହୁଥିଲେ । ତାଙ୍କ ଧଳା ପୋଷାକ ଉପରେ ସୂର୍ଯ୍ୟରଶ୍ମି ପଡ଼ି ଚକ୍ ଚକ୍ କରୁଥିଲା । ଏହା ତାଙ୍କ ଜିଦ୍‌ଖୋର ସ୍ୱଭାବକୁ ସ୍ପଷ୍ଟ ଭାବରେ ଉଦ୍‌ଭାସିତ କରୁଥିଲା ।

ନୂଆ ଅନାଥାଶ୍ରମଟି ତିଆରି କଲାବେଳେ ଅନାଥାଶ୍ରମ ଭିତରେ ଗୋଟିଏ ଉପାସନା ଗୃହ ରହିବ ବୋଲି କୋର୍ଯାକ୍ ଯୋଜନା କରିଥିଲେ । ତାଙ୍କର ଯୁକ୍ତିଥିଲା ଯେ ଯେଉଁ ପିଲାମାନେ ବାପା ମା'ଙ୍କର ସ୍ନେହରୁ ବଞ୍ଚିତ ସେମାନଙ୍କ ପାଇଁ ଏପରି ଏକ ଜାଗା ରହିବା ଆବଶ୍ୟକ ଯେଉଁଠି ସେମାନେ ନିଜର ମନକଥା ତଥା ନିଜର ଅଭିଯୋଗମାନ ଉପସ୍ଥାପନ କରିପାରିବେ । ନିଜେ ଧ୍ୟାନସ୍ଥ ହୋଇପାରିବେ । ଏହି ପିଲାମାନଙ୍କ ପାଇଁ ଏପରି ଏକାନ୍ତ ଜାଗାଟିଏ ନିହାତି ଆବଶ୍ୟକ । ଏଇଠି ସେମାନେ ଈଶ୍ୱରଙ୍କ ପାଖରେ ନିଜ ଦୁଃଖର ଅଶ୍ରୁଟିକକ ଢାଳି ଦେଇପାରିବେ, ଈଶ୍ୱରଙ୍କ ସାଙ୍ଗରେ ଏକାନ୍ତରେ ଆଳାପ କରିପାରିବେ ଏବଂ ଦୁଃଖଭାର ଲଘବ କରିବା ପାଇଁ ସମର୍ଥ ହେବେ ।

ମାତ୍ର ଦଦା ଫାଲ୍‌ସ୍କାଙ୍କୁ ଏକଥାଟି ପସନ୍ଦ ହେଲାନାହିଁ । ସେ ଏହି ପ୍ରସ୍ତାବଟିକୁ ବିରୋଧ କଲେ । ତେଣୁ ଯେତେବେଳେ ବାଲାମିର ଅନାଥାଶ୍ରମଟି ତିଆରି ସରିଲା, ସେଥିରେ ଡାକ୍ତରଙ୍କ ଉପାସନା ଗୃହଟି ନଥିଲା ।

ଯେତେବେଳେ ଅନାଥାଶ୍ରମଟି ଦେଖଣାହାରୀଙ୍କ ପାଇଁ ଉନ୍ମୁକ୍ତ ରହିଲା, ସେତେବେଳେ ନାନା ପ୍ରକାର ଅଭିଯୋଗମାନ ଆସି ପହଞ୍ଚିଲା । ପରିଦର୍ଶକମାନେ ପ୍ରଚାର କଲେ ଯେ ଅନାଥାଶ୍ରମଟି ବିଧର୍ମୀମାନଙ୍କର । ଏଠାରେ ଧର୍ମକୁ ବହୁତ ଗୌଣ କରି ଦିଆଯାଇଛି । ଦଳେ କମ୍ୟୁନିଷ୍ଟ ଆସି ରାଜଧାନୀ ମଝିରେ ମାଡ଼ିବସିଛନ୍ତି । ଏହିଭଳି ଆପତ୍ତିଜନକ ପ୍ରତିକ୍ରିୟାମାନ ୱାର୍ସା ତଥା ସମଗ୍ର ପୋଲାଣ୍ଡରେ ଗର୍ଜିଉଠିଲେ । ସମ୍ବାଦପତ୍ରଗୁଡ଼ିକରେ ଏହି ପ୍ରତିକ୍ରିୟାଗୁଡ଼ିକ ପ୍ରକାଶିତ ହେଲା ।

ଇହୁଦୀ ବିରୋଧୀମାନେ ବ୍ୟଙ୍ଗୋକ୍ତି କଲେ ଯେ ଏସବୁ କୋର୍ଯାକଙ୍କର ବାହା-ଦୁରିଆ କାମ । ଜଣେ ଇହୁଦୀ ଲୋକର କଥା ଅନୁସାରେ ଯଦି ପରିଚାଳନା କମିଟି ଚାଲେ, ତେବେ ସେଠାରୁ ଆଉ ଅଧିକ କଅଣ ଆଶା କରାଯାଇପାରିବ ! —ଏହିପରି ନାନାପ୍ରକାର ଚୁଗୁଲିଆ ମନ୍ତବ୍ୟମାନ ବିଭିନ୍ନ ରୂପରେ ଶୁଣିବାକୁ ମିଳିଲା ।

କୋର୍ଯାକ୍ ଯେ ଈଶ୍ୱର ବିଶ୍ୱାସୀ ଏଥିରେ ସନ୍ଦେହ ନାହିଁ । ମାତ୍ର ନିଜ ବିଶ୍ୱାସଟିକୁ ସେ ସହକର୍ମୀମାନଙ୍କ ଉପରେ ଲଦି ଦେଉନଥିଲେ । ମାତ୍ର ତାଙ୍କ ଅନିଚ୍ଛାକୃତ କୌଣସି କାର୍ଯ୍ୟପାଇଁ ଯେତେବେଳେ ବାହାର ଲୋକମାନେ ତାଙ୍କୁ ନିନ୍ଦା କରୁଥିଲେ ସେ ନିଜର କୌଣସି ଦୋଷ ନଥାଇ ମଧ୍ୟ ସେ ଏହି ଲୋକନିନ୍ଦାକୁ ମୁଣ୍ଡପାତି ସହିଯାଉଥିଲେ ।

## (୧୫) ଆମଘର

ମାଗ୍ରେଟା ଫାଲ୍‌ସ୍ଥା ଜଭ୍‌ରୁ ଡାକ୍ତର କୋର୍ଜାକଙ୍କ ପଦାଙ୍କ ଅନୁସରଣ କରି ପୋଲାଣ୍ଡକୁ ଆସିଥିଲେ । ଏଠାରେ ମହିଳାମଣ୍ଡଳ ଅଧୀନରେ ଥିବା ଏକ ଅନାଥା-ଶ୍ରମରେ କନ୍ଧୁଦକ କାମକଲେ । ମାତ୍ର ଏହା ତାଙ୍କୁ ଆଦୌ ଭଲ ଲାଗିଲା ନାହିଁ । କାରଣ ଏଠାରେ ଯେଉଁସବୁ ଆଦର୍ଶ କଥା କୁହାଯାଉଥିଲା, ସେସବୁ ଥିଲା ଫମ୍ପା, ମିଥ୍ୟା ଏବଂ ଲୋକଦେଖାଣିଆ । ଏଠାରୁ ମାଗ୍ରେଟା ଫାଲ୍‌ସ୍ଥା ଯାଇ କନ୍ଧୁଦକ ସମାଜମଙ୍ଗଳ ମନ୍ତ୍ରାଳୟରେ ପରିଦର୍ଶିକା ଭାବରେ କାମ କଲେ । କଭ୍‌ରେ ମାଗ୍ରେଟାଙ୍କୁ ଡାକ୍ତରଙ୍କ ସବୁକଥା ଭଲ ଲାଗୁ ନଥିଲେ ମଧ୍ୟ ସେ ଡାକ୍ତରଙ୍କର ଅନେକ କଥାକୁ ମାନିନେଉଥିଲେ ଏବଂ ଅନେକ କଥା ତାଙ୍କ ମନକୁ ଛୁଇଁଥିଲା । ପ୍ରୁସ୍କୋରେ ଥିବା ଅନାଥାଶ୍ରମରେ କାମ କରିବାପାଇଁ ଯେତେବେଳେ କୋର୍ଜାକ୍ ମାଗ୍ରେଟାକୁ କହିଲେ, ସେ ଅତି ଆଗ୍ରହର ସହ ପ୍ରସ୍ତାବଟିକୁ ଗ୍ରହଣ କରିନେଲେ ।

ବିଲାନୀ ଏକ ଐତିହାସିକ ଗାଁ । ଓ୍ୱାର୍ସୋର ଉତ୍ତରକୁ ଗାଁଟି ଅବସ୍ଥିତ । ଏହି ବିଲାନୀ ଗାଁରେ "ଆମ ଘରର" ନୂଆ କୋଠାଟି ତିଆରି ହେଉଥିଲା । (ଆମ ଘର-ପୋଲାଣ୍ଡ ଭାଷାରେ ନାସ୍‌କଡୋମ୍) । ଆଗରୁ "ଆମଘର"ରେ ହେବାକୁ ଥିବା ଅନାଥାଶ୍ରମର ସମସ୍ତ କାର୍ଯ୍ୟକ୍ରମ ପ୍ରୁସ୍କୋରେ ଚାଲୁଥିଲା । ନୂଆ କୋଠାଟି ତିଆରିହେବା ଏବଂ ମାଗ୍ରେଟା ଫାଲ୍‌ସ୍ଥାଙ୍କ ଅନାଥାଶ୍ରମ ଦାୟିତ୍ୱରେ ରହିବାକୁ ରାଜିହେବା – ଏ ଦୁଇଟି ଘଟଣା ଡାକ୍ତରଙ୍କୁ ଆହ୍ଲାଦିତ କରିଥିଲା । ମାଗ୍ରେଟା ଫାଲ୍‌ସ୍ଥା ପ୍ରକୃତରେ ଜଣେ ସୁଦକ୍ଷା, ଅନୁଭୂତି ସଂପନ୍ନା ସମାଜ ସେବିକା ଥିଲେ ।

"ଆମଘର" ଅନାଥାଶ୍ରମଟିକୁ ତିଆରି କରିବାପାଇଁ କୋର୍ଜାକ ଏକ ନୂଆ ଆଭିମୁଖ୍ୟକୁ ପାଥେୟ କରି ଯୋଜନା କରୁଥିଲେ । ଅନାଥାଶ୍ରମ ଚଳାଇବାର ଅନୁଭୂତିଗୁଡ଼ିକୁ ନେଇ ସେ ଏହି ନୂତନ ଅନାଥାଶ୍ରମଟିକୁ ଅଲଗା ଭାବରେ ଗଢ଼ିବାପାଇଁ ସ୍ଥିର କରିଥିଲେ । ଅନାଥାଶ୍ରମର କୋଠା ଓ ଅନ୍ୟାନ୍ୟ ବାସ୍ତବ ଦିଗଗୁଡ଼ିକ ଯେପରି ସର୍ବୋତ୍କୃଷ୍ଟ ହୋଇପାରିବ, ସେଥିପାଇଁ ସେ ଯୋଜନା ପ୍ରସ୍ତୁତ କରିଥିଲେ ।

ପ୍ରଥମ ପର୍ଯ୍ୟାୟରେ ଅର୍ଥ ଯୋଗାଡ଼ କରିବା ଏବଂ କୋଠା ନିର୍ମାଣ କରିବା ବହୁତ କଷ୍ଟକର ମନେହେଲା । ଏଥିପାଇଁ ଅଧିକ ପରିଶ୍ରମ କରିବାକୁ ପଡ଼ୁଥିଲା । କ୍ରୋଚ୍‌ମାଲ୍‌ନା ଷ୍ଟ୍ରିଟ୍‌ରେ ଅନାଥାଶ୍ରମ ତିଆରି କଲାବେଳେ ଧନୀଲୋକଙ୍କ ଉପରେ ନିର୍ଭର କରିବାକୁ ପଡ଼ିଥିଲା । କିନ୍ତୁ, "ଆମଘର" ଅନାଥାଶ୍ରମ ତିଆରି କଲାବେଳେ ଡାକ୍ତରବାବୁ ଧନୀଲୋକଙ୍କ ପାଖରେ ହାତ ନ ପତାଇବାପାଇଁ ନିଷ୍ପତ୍ତି ନେଲେ । ସେ

ଶ୍ରମିକ ତଥା ଶ୍ରମିକ ସଙ୍ଗଠନ ଆଡ଼କୁ ଦୃଷ୍ଟି ପକାଇଲେ । ତାଙ୍କର ବିଶ୍ୱାସ ଥିଲା ଯେ ଶ୍ରମିକ ଓ ସଙ୍ଗଠନମାନେ ମୁକ୍ତ ହସ୍ତରେ ଅର୍ଥଦାନ କରିବେ ଏବଂ ଏହି ଦାନ ଉପରେ କୌଣସି ପ୍ରକାର ସର୍ତ୍ତ ଜାହିର କରିବେ ନାହିଁ ।

ଶ୍ରମିକମାନେ ସେମାନଙ୍କର ବଦାନ୍ୟ ହସ୍ତ ବଢ଼ାଇଦେଲେ । ଶ୍ରମିକ ସଙ୍ଗଠନମାନେ ଡାକ୍ତରଙ୍କ ଆହ୍ୱାନଟିକୁ ପୂର୍ଣ୍ଣପ୍ରାଣରେ ସମର୍ଥନ କଲେ । ଅନାଥାଶ୍ରମ ପାଇଁ ବିଭିନ୍ନ ଆଡ଼ୁ ସାହାଯ୍ୟ ସହଯୋଗମାନ ମିଳିଲା । ଅର୍ଥଯୋଗାଡ଼ ପାଇଁ ଗୋଟିଏ ଶ୍ରେଷ୍ଠ ଧରଣର ପ୍ରଚାର କରାଯାଇଥିଲା ଯେ ଶ୍ରମିକମାନଙ୍କ ଦାନରୁ ଗଢ଼ିଉଠିଥିବା ପ୍ରୁସ୍କେକୋ ଅନାଥାଶ୍ରମଟି ଭଲରେ ଚାଲିଛି ଏବଂ ଏହାର ସମସ୍ତ ଖର୍ଚ୍ଚ ଶ୍ରମିକମାନେ ନିଜେ ଯୋଗାଡ଼ କରିଛନ୍ତି । ମାତ୍ର ପ୍ରଚାର ପାଇଁ କୌଣସି ପ୍ରକାର ଅଦରକାରୀ ଖର୍ଚ୍ଚ ପାଇଁ ପ୍ରଶ୍ରୟ ଦିଆଗଲା ନାହିଁ । ଅର୍ଥଦାନ ପାଇଁ ଭାଷଣ, ସଭା ଆଦିକୁ ଉତ୍ସାହିତ କରାଗଲା ନାହିଁ । ଭିତ୍ତିପ୍ରସ୍ତର ସ୍ଥାପନ ପାଇଁ ମଧ୍ୟ କୌଣସି ପ୍ରକାର ଆଡ଼ମ୍ବରପୂର୍ଣ୍ଣ ବ୍ୟବସ୍ଥା ରହିଲା ନାହିଁ । ଅର୍ଥ ସଂଗ୍ରହପାଇଁ ଟିଣ ଡବାରେ କଣା କରି ଶ୍ରମିକମାନଙ୍କ ହାତକୁ ବଢ଼ାଇ ଦିଆଯାଉଥିଲା । ଏହି ଟିଣରେ ଯିଏ ଯାହା ଦେବାକଥା ଦେଉଥିଲେ । ଶିଳ୍ପ କାରଖାନା, ଫାର୍ମ ଆଦି ବିଭିନ୍ନ ଜାଗାମାନଙ୍କରେ ଅର୍ଥ ସଂଗ୍ରହ ଏହି ଉପାୟରେ କରାଯାଉଥିଲା । ତା'ଛଡ଼ା ଦେଖାଗଲା ଯେ ଡାକ୍ତରଖାନାର କର୍ମଚାରୀ, ନର୍ସ ଓ ଅନ୍ୟାନ୍ୟ ଚାକିରିଆମାନେ ଟିଣ ଡବାରେ ଅର୍ଥଦାନ କରିଥିଲେ ।

ତାପରେ ଆରମ୍ଭ ହେଲା ପିଲା ସଂଗ୍ରହ । ସମାଜସେବୀମାନେ ଗରିବ ଅନାଥପିଲାମାନଙ୍କୁ ଠାବ କରିବାକୁ ଲାଗିପଡ଼ିଲେ । କାରଣ ପିଲାମାନଙ୍କୁ ଅନାଥାଶ୍ରମକୁ ଅଣାଯିବ । ଯେତେପିଲାଙ୍କୁ ଠାବ କରାଗଲା ସମସ୍ତଙ୍କୁ ଏହି ନୂଆ ଘରେ ବି ରଖିବା ସମ୍ଭବ ନଥିଲା । ତେଣୁ ଶ୍ରମିକ ୟୁନିଅନଦ୍ୱାରା ଠାବ କରାଯାଇଥିବା ଶହ ଶହ ଅନାଥପିଲାଙ୍କ ଭିତରକୁ ପ୍ରଥମେ ଅଳ୍ପ କେତେକଙ୍କୁ ହାତ ଗଣତି କରି ରହିବାପାଇଁ ବଛାଗଲା ।

ମୁଖ୍ୟତଃ ଓ୍ୱାର୍ସୋରୁ ଦୁଇଟି ଦରିଦ୍ରତମ ଜିଲ୍ଲା, ଓଲା ଓ ପୋଇମ୍ଳେରୁ ଏହି ପିଲାମାନଙ୍କୁ ଅଣାଯାଇଥିଲା । କହିବାକୁ ଗଲେ କାହାକୁ ପୂତି ଗନ୍ଧମୟ ନାଳ କଡ଼ରୁ କାହାକୁ ମଇଳା ଘର ବା ବାରଣ୍ଡାରୁ ସାଉଁଟି ଅଣାଯାଇଥିଲା । ଉତ୍ସାହୀ, ନିଷ୍ଠାପର ସ୍ୱେଚ୍ଛାସେବୀମାନେ ବସ୍ତି ର, ସବୁ କୋଣରେ ପହଞ୍ଚି ଯାଉଥିଲେ । ନିଜେ ଡାକ୍ତରବାବୁ ପୁଅ ଝିଅମାନଙ୍କୁ ପ୍ରଶ୍ନ ପଚାରୁଥିଲେ । ପିଲାଙ୍କର ଭୀତତ୍ରସ୍ତ ଚକ୍ଷୁଯୁଗଳକୁ ନିରେଖି ଚାହୁଁଥିଲେ । ସେମାନଙ୍କୁ ପରୀକ୍ଷା ନିରୀକ୍ଷା କରୁଥିଲେ । ରସରସିକିଆ କଥା କହି ପିଲାଙ୍କ ମନରୁ ଭୟ ଦୂର କରୁଥିଲେ । ସେମାନଙ୍କ ଭିତରେ ବିଶ୍ୱାସ ଜନ୍ମାଉଥିଲେ । ଗରିବ ପିଲାମାନଙ୍କ ବାରି ପଛ ଆଡ଼ର ଖେଳଗୁଡ଼ିକ ବିଷୟରେ ପଚରାଉଚରା କରି ସେ ଏମିତି ସେମାନଙ୍କ ସହ ମିଶିଯାଉଥିଲେ ଯେ ପିଲାମାନେ ବ୍ୟବହାର କରୁଥିବା

ଧ୍ଵଂସାବଶେଷ ଶବ୍ଦାବଳୀ ଭିତରୁ ଅନେକ ଶବ୍ଦ ତାଙ୍କ ପାଟିରୁ ବାହାରିପଡ଼ୁଥିଲା । ଡାକ୍ତର-ବାବୁ ତାଙ୍କ ସବୁଜ ଆପ୍ରୋନ୍ ପକେଟରୁ ଚକୋଲେଟ ବାହାର କରି ପିଲାମାନଙ୍କୁ ଦେଉଥିଲେ । କୌଣସି ନୂଆ ପିଲାଟିଏ ତାଙ୍କ ଆଗକୁ ଆସିଲାମାତ୍ରକେ ସେ ତା'ର ସାଙ୍ଗ ହୋଇପଡ଼ୁଥିଲେ ।

ସବୁ ଅନୁକୂଳତା ସତ୍ତ୍ୱେ ବି ପ୍ରଥମେ ପ୍ରଥମେ ପରିସ୍ଥିତି ଆଦୌ ସହଜ ନଥିଲା । ମୁକ୍ତି ପରେ ସମସ୍ତ ପୋଲାଣ୍ଡ ଅଧିବାସୀଙ୍କ ପାଇଁ ଏବଂ ବିଶେଷକରି ଶ୍ରମିକମାନଙ୍କ ପାଇଁ ଭାରି କଷ୍ଟଦାୟକ ଥିଲା । ଅଭାବ ଲାଗିରହୁଥିଲା । ଡୋମ୍ ମାଲ୍ ନାଞ୍ଜିଚ୍ ର ଅନାଥାଶ୍ରମଟି ବହୁତ ଭଲ ଭାବରେ ସଙ୍ଗଠିତ ତଥା ସୁଦୃଢ଼ ଥିଲା । ସେଠାରେ ଷ୍ଟିଫା ଓ୍ୱିଲିଜ୍‌କଜନ୍‌ସ୍କା ନିଜର ସମସ୍ତ ବୁଦ୍ଧି ଝଟାଇ ନିଷ୍ଠାପର ଭାବରେ ସାହାଯ୍ୟ କରୁଥିଲେ । ପୁନଶ୍ଚ ଏହି ଅନାଥାଶ୍ରମଟି ଧନୀ ଲୋକଙ୍କଦ୍ୱାରା ଗଢ଼ାଯାଇଥିଲା । ଏଠିକାର ପାଟ୍ରନ କମିଟି ଓ ପରିଚାଳନା ସମିତି ବହୁତ ଉଦାରତାର ଭାବ ନେଇ ଅନାଥାଶ୍ରମଟିକୁ ଚଳାଉଥିଲେ । ମାତ୍ର ଏଠାରେ ଥିବା ଅଭାବକଷ୍ଟ ପରିସ୍ଥିତି, କ୍ଷୁଧା ଏବଂ ଶୀତର ଦାରୁଣ କଷାଘାତକୁ କେବେ ବି ଭୁଲି ହେବ ନାହିଁ ।

"ଆମଘର" ଅନାଥାଶ୍ରମରୁ ବାହାରୁଥିବା ଗାଜେଟ୍‌ରେ ଏହି ସମସ୍ୟାର ଏକ ବାସ୍ତବ ଚିତ୍ର ପରିଦୃଷ୍ଟ ହୋଇଛି । ଏହି ସମସ୍ୟାଟି ଉପରେ ବର୍ଣ୍ଣନା କରି କୋର୍ଜାକ ଲେଖିଛନ୍ତି, "ଯେତେବେଳେ "ଆମଘର" ଅନାଥାଶ୍ରମର କୌଣସି ଆସବାବପତ୍ର, ଶେଯ, ଟେବୁଲ, ହାତଧୁଆ ବେସିନ୍ ଏପରିକି ଖାଇବା ଟେବୁଲ ପାଇଁ କପଡ଼ା, କୋର୍ଟ ଓହଳେଇବା ପାଇଁ ହ୍ୟାଙ୍ଗର ଆଦି କିଛି ନଥିଲା, ସେତେବେଳେ ବହୁତ ଲୋକ ସାହାଯ୍ୟ କରିଥିଲେ । ପିମ୍ପୁଡ଼ିମାନେ ବିଭିନ୍ନ ଦିଗରୁ ଖାଦ୍ୟ ସଂଗ୍ରହ କରି ବସାକୁ ଫେରିଲା ପରି ଲୋକମାନେ ସାହାଯ୍ୟ ଯୋଗାଇବା ପାଇଁ ବିଭିନ୍ନ ଦିଗରୁ ଚାଲି-ଆସିଲେ । ଜଣେ ମୋତେ କହିଲେ, "ମୁଁ ସେଠାକୁ ଚିଠିଟିଏ ଲେଖିଦେବି । ମୁଁ ଜାଣିଛି କେଉଁଠି ଜାଳକାଠ ଶସ୍ତାରେ ମିଳିବ ।" ଆଉ ଜଣେ କହିଲେ, "ଦୋକାନକୁ ଯଥାଶୀଘ୍ର ଦୌଡ଼ିଯାଅ । ମୁଁ ସେଠାରେ କିଛି ଅଟା ଛାଡ଼ି ଆସିଛି । ବିକ୍ରି ହୋଇଯିବା ପୂର୍ବରୁ ଅଟାତକ ନେଇଆସ ।" ଏହିପରି ସମସ୍ତେ ଉପଦେଶ ଦେଲେ ଏବଂ ଖୁସିରେ ସହଯୋଗ କଲେ । ବେଳେବେଳେ ଆଳୁପାଇଁ ଆମେ ଘଣ୍ଟା ଘଣ୍ଟା ଧରି ଧାଡ଼ିରେ ଛିଡ଼ା ହେଉଥିଲୁ । ତା'ପରେ ଦେହକୁ ଟିକିଏ ଉଷୁମ କରିବା ପାଇଁ ଘର ଭିତରକୁ ଧାଇଁ ଚାଲିଯାଉଥିଲୁ । ପୁଣି ଫେରିଆସୁଥିଲୁ ଓ କ୍ଷୁଧିତ ଏବଂ ଆଶାୟୀର ଲମ୍ବାଧାଡ଼ିରେ "ଆମଘର" ଅନାଥାଶ୍ରମ ପାଇଁ ସାମାନ୍ୟ କିଛି ପାଇବାର ଆଶା ରଖି ଛିଡ଼ା ହୋଇ-ଯାଉଥିଲୁ ।

ଏହିପରି ଭାବରେ 'ଆମଘର' ଅନାଥାଶ୍ରମର ଜୀବନ ଆରମ୍ଭହେଲା । ସେତେବେଳେ ମିଳୁଥିବା ସାହାଯ୍ୟର ଏକ ନମୁନାକୁ ବର୍ଣ୍ଣନା କରି କୋର୍ଜାକ

କହିଛନ୍ତି, "ଏହିପରି ଭାବରେ ଜୀବନ ତଥା ଜୀବନର ଅସୁବିଧାଗୁଡ଼ିକୁ ପର୍ଯ୍ୟବେକ୍ଷଣ କରି ବାସ୍ତବ ଶିକ୍ଷା ମିଳୁଥିଲା ଏବଂ ପିଲାମାନେ କୃତଜ୍ଞତା ସମ୍ବନ୍ଧରେ ଶିକ୍ଷାଲାଭ କରୁଥିଲେ । ସେମାନେ ସେମାନଙ୍କର କର୍ତ୍ତବ୍ୟ, ସହଯୋଗର ଗୁଣାତ୍ମକ ଲାଭ, ନିସଙ୍ଗତା ଏବଂ କୌଣସି ସର୍ତ୍ତ, ଉଦ୍ଦେଶ୍ୟ ବା ଦାବି ନରଖି ସାହାଯ୍ୟ କରିବା ପାଇଁ ଶିଖୁଥିଲେ ।

ମିସେସ୍ ଫାଲ୍ସ୍କାଙ୍କ ଲେଖାଗୁଡ଼ିକରୁ "ଆମଘର" ଅନାଥାଶ୍ରମରେ ପ୍ରଥମ ପର୍ଯ୍ୟାୟ ଦେଖାଦେଇଥିବା ଅଭାବ ଅସୁବିଧାଗୁଡ଼ିକୁ ଅନୁମାନ କରିହୁଏ । ସେ ଲେଖିଛନ୍ତି, "ସ୍କୁଲରେ ବେଞ୍ଚ ନଥିଲା କି ଖାଇବା ପାଇଁ ବଡ଼ ହଲ୍ ନଥିଲା । ଏସବୁ ସାଙ୍ଗକୁ ବଜୁଳି ନଥିଲା । ଚୁଲ୍ଲୀପାଇଁ ଜାଳି କାଠର ଅଭାବ ଥିଲା ଏବଂ କିଛି ଖାଦ୍ୟ ମଧ୍ୟ ନଥିଲା । ଏ ପ୍ରକାର ଦୁରବସ୍ଥାର ମୁକାବିଲା କରିବା ପାଇଁ ବଡ଼ ବଡ଼ ପିଲାମାନଙ୍କୁ ଅନେକ କଷ୍ଟ ପରିଶ୍ରମ କରିବାକୁ ପଡ଼ୁଥିଲା ।" ଏସବୁ ହୃଦୟଙ୍ଗମ କରି ସେ କହିଥିଲେ, "ତଥାପି ଆମକୁ ଏସବୁ ଅଭାବ ଅସୁବିଧାକୁ ଡେଇଁ ଯିବାକୁ ହିଁ ପଡ଼ିବ । ପ୍ରଥମ ସମସ୍ୟା ଆମେ ଯଥେଷ୍ଟ ପରିମାଣରେ କୋଇଲା କିଣି ପାରିବା ନାହିଁ । ଦ୍ୱିତୀୟ ସମସ୍ୟା ଆମ ପାଇଁ ଆଲୁ ଅଭାବ ହୋଇପଡ଼ୁଛି । ଏଥିପାଇଁ ବହୁତ ଅଧିକ ଖର୍ଚ୍ଚ କରିବା ସତ୍ତ୍ୱେ ଆମକୁ ନିଅଣ୍ଟ ପଡ଼ୁଛି । ଯେତେବେଳେ ବାହାରୁ କୌଣସି ଆସୁନାହିଁ, ସେ ସମସ୍ତ ପାଇଁ ଆମ ପାଖରେ କିଛି ସଂରକ୍ଷିତ ହୋଇ ରହିପାରୁନି । ଏଇ କଥାଟି ଆମକୁ ଅନେକ ଦୁଃଖ ଦେଉଛି । କୋଇଲା ପାଇଁ ରେଲବାଇ ଟ୍ରକ୍ ଉପରେ ନିର୍ଭର କରିବାକୁ ପଡ଼ୁଛି । ଏ ସମୟରେ ନିଆଁ ଆମ ପାଇଁ ନିହାତି ଆବଶ୍ୟକତା ହେଉଛି । ଆମକୁ ସବୁକିଛି ଦେଖିଶୁଣି ଚଳିବାକୁ ପଡ଼ିବ । ଖର୍ଚ୍ଚର ପରିମାଣ ସ୍ଥିର କରିବାକୁ ପଡ଼ିବ । ଅନେକ ବର୍ଷ ହେଲା ଆମ ସେଭିଂସ୍ ଏକାଉଣ୍ଟରେ କିଛି ବି ସଞ୍ଚୟ ହୋଇ ରହିପାରୁନି । ଅବସର ବିନୋଦନ ସକାଶେ ଖର୍ଚ୍ଚ କରିବାକୁ ଆମ ପାଖରେ କିଛି ନାହିଁ । ଖେଳିବା କିଣିବା ପାଇଁ ବା ରଙ୍ଗୀନ କାଗଜ କିଣି ଖେଳନା ତିଆରି କରିବା ସକାଶେ ଆମ ପାଖରେ ଫଟା କଉଡ଼ିଟିଏ ନାହିଁ ।"

ଏହି ଦୁର୍ଦ୍ଦିନ ସମୟରେ କୋର୍ଯାକ ପ୍ରୁସ୍କକୋ ଓ କ୍ରୋଚ୍‌ମାଲ୍‌ନା ଷ୍ଟ୍ରିଟ୍ ମଧ୍ୟରେ ଯାଆଆସ କରି ଅନାଥାଗୁଡ଼ିକର କଥା ବୁଝୁଥିଲେ । ସେଡ଼ାର୍ ଷ୍ଟ୍ରିଟ୍‌ରୁ ଯେଉଁ ପିଲାମାନଙ୍କୁ ପ୍ରୁସ୍କକୋ ଅନାଥାଶ୍ରମକୁ ଅଣାଯାଇଥିଲା ତଥା କ୍ରୋଚ୍‌ମଲନାରୁ ଆସିଥିବା ଇହୁଦୀ ପିଲା ଆଦି ସମସ୍ତଙ୍କର ସେ ସମାନ ଭାବରେ ଯତ୍ନ ନେଉଥିଲେ । କୋର୍ଯାକ ନିଜର ପ୍ରଭାବ ଯେତିକି ଯେତିକି ବିସ୍ତାରିତ ହେଉଥିବାର ଲକ୍ଷ୍ୟ କରୁଥିଲେ ଖୁସିରେ ତାଙ୍କର ସେତିକି ଚିନ୍ତା ବିଭ୍ରମ ହେଉଥିଲା । ସେ ଦୁଇଟି ଶିବିରର ଦୁରବସ୍ଥା ଟିପି ରଖିଥିଲେ—ଗୋଟିଏ ହେଉଛି ପୋଲାଣ୍ଡର ମୂଳ ଅଧିବାସୀ ଏବଂ ଅନ୍ୟଟି ହେଉଛି ଇହୁଦୀ । କିନ୍ତୁ ଉଭୟ ଶିବିରର ଦୁରବସ୍ଥାରେ ସେ କୌଣସି ପାର୍ଥକ୍ୟ ଲକ୍ଷ୍ୟ

କରିନଥିଲେ । ରୋଗ ଏବଂ ଅଭାବର ପ୍ରପୀଡ଼ନ ସମସ୍ତଙ୍କ ପାଇଁ ସମାନ ଆଉ ବିଶେଷ କରି ପିଲମାନଙ୍କ କ୍ଷେତ୍ରରେ ଏହା ଅତ୍ୟନ୍ତ ଦୟନୀୟ ଥିଲା ।

ଲୋକମାନଙ୍କ ଦୁରବସ୍ଥା ଲାଗିରହିଲା ଏବଂ ଏହା ଅଧିକରୁ ଅଧିକ ହେବାକୁ ଲାଗିଲା । କିନ୍ତୁ ଯେତେ କମ୍ ହେଲେ ମଧ୍ୟ ଆଗକୁ ଚାଲିବା ପାଇଁ ଡାକ୍ତରଙ୍କ ଭିତରେ ଆଗ୍ରହ ଉତ୍ସାହ କମିଗଲା ନାହିଁ । କୌଣସିଥିରେ ସେ ସନ୍ତୁଷ୍ଟ ରହିପାରୁନଥିଲେ । ପିଲମାନେ ଯେଉଁ ବୋଝ ମୁଣ୍ଡାଇଥିଲେ ତାହା ପ୍ରକୃତରେ ଅନେକ ବେଶିଥିଲା । ଯେତେବେଳେ କୋର୍ଯାକ ଲକ୍ଷ୍ୟ କରୁଥିଲେ ଯେ କିଛି କିଛି ଜାଗାରେ ଏହି ନିସ୍ୱନ ଅବସ୍ଥା କିଛି ମାତ୍ରାରେ ସୁଧୁରିବାରେ ଲାଗିଛି, ସେତେବେଳେ ତାଙ୍କ ମନରେ ଖୁସି ହର୍କି ମାରୁଥିଲା । ଗୋକ୍ଲାର୍ଓ୍ୱେକ୍‌ରେ ଅବକାଶ ସମୟରେ ହେଉଥିବା ଶିବିରରେ ସେ ଉଭୟ ଶିବିରରୁ ପିଲମାନଙ୍କୁ ଆଣି ଏକାଠି ରଖୁଥିଲେ । ଏହାଦ୍ୱାରା ପାରସ୍ପରିକ ବୁଝାମଣା ଓ ବନ୍ଧୁତ୍ୱର ହାର୍ଦ୍ଦିକ ସମ୍ପର୍କରେ ଉନ୍ନତ ଘଟିପାରିବ ବୋଲି ଡାକ୍ତରଙ୍କର ବିଶ୍ୱାସ ଥିଲା । ଯେତେବେଳେ ତାଙ୍କର ଏହି ପରୀକ୍ଷାଟି ସମ୍ପୂର୍ଣ୍ଣ ସଫଳତା ଲଭକଲା, ସେତେବେଳେ ଡାକ୍ତରଙ୍କ ଆନନ୍ଦ କହିଲେ ନସରେ ।

"ଆମ ଘର"ର ଉଦ୍‌ଘାଟନ ପରେ ପରେ ଏହି ଅନାଥାଶ୍ରମଟି ହୋଇଉଠିଲା ଅନୁଭୂତ ଏବଂ ପର୍ଯ୍ୟବେକ୍ଷଣର ଏକ ପ୍ରକୃତ ପରୀକ୍ଷାଗାର । ମିସେସ୍‌ଫାଲସ୍କାଙ୍କ ଲିଖିତ "ଆମ ଘର" ପୁସ୍ତକର ମୁଖବନ୍ଧରେ କୋର୍ଯାକ୍ ଲେଖିଛନ୍ତି, "ଆମେ ଶିକ୍ଷାର ନୂଆ ପଦ୍ଧତିଗୁଡ଼ିକୁ ଅନୁସନ୍ଧାନ କରୁଛୁ । ପୁରୁଣା ଓ ନୂଆ ଶିକ୍ଷାପଦ୍ଧତି ଭିତରେ ଲଢ଼େଇ ଅବଶ୍ୟମ୍ଭାବୀ । ଉଭୟ ଶିକ୍ଷା ଶିକ୍ଷାପଦ୍ଧତି ଅଧିକ ଫଳପ୍ରଦ ଏବଂ ଶକ୍ତିଶାଳୀ ଆୟୁଧ ଭାବରେ କାମ କରିପାରିବେ ଯଦି ପୁରୁଣାକୁ ସଂରକ୍ଷିତ କରି-ଯାଇପାରିବ ଏବଂ ପରିଣାମ ଯାହା ହେଉନା ପଛକେ କୌଣସି ପ୍ରକାର ବାଛ ବିଚାର ନରଖି ଦୃଢ଼ସଙ୍କଳ୍ପର ସହ ନୂଆକୁ ଆଗକୁ ଯିବାପାଇଁ ପ୍ରେରିତ କରିବାକୁ ପ୍ରଚେଷ୍ଟା କରିଯିବ ।

କୋର୍ଯାକ୍ ଅନ୍ୟ ଏକ ସ୍ଥାନରେ ବସିଛନ୍ତି, "ଯିଏ ତଥ୍ୟ ସଂଗ୍ରହ କରେ ଏବଂ ପ୍ରମାଣପତ୍ର ସବୁକୁ ଏକତ୍ର କରେ ସେ ମଧ୍ୟ ନିରପେକ୍ଷ ଆଲୋଚନା ପାଇଁ ଆବଶ୍ୟକ ବିଷୟବସ୍ତୁ ପାଇଯାଏ । ଏହାଦ୍ୱାରା ଭାବପ୍ରବଣତାର ପ୍ରତିକ୍ରିୟାମାନ ଦୂର ହୋଇ-ଯାଏ ।" ଏହା ଥିଲା ଡାକ୍ତର କୋର୍ଯାକ୍‌ଙ୍କ ନିଜସ୍ୱ ଦୃଷ୍ଟିକୋଣ । ତାଙ୍କ କଥାବାର୍ତ୍ତାରୁ ଏହା ସ୍ପଷ୍ଟ ମନେହୁଏ ଯେ ତାଙ୍କର ଅନୁଭୂତ ଏବଂ ପ୍ରମାଣମୂଳକ ତଥ୍ୟ ମଧ୍ୟରୁ ସେ ନିଜର ଭାବପ୍ରବଣତାକୁ ଅକ୍ଲେଶରେ ଅଲଗା କରିପାରୁଥିଲେ । ତାଙ୍କର ଦୁଇଟି ଗଳ୍ପ—"ନିଷ୍ପତ୍ତି" ଏବଂ "ମୋ ପ୍ରତିରକ୍ଷା"ରେ ତାଙ୍କର ବାସ୍ତବତା ପ୍ରତି ଥିବା ଦୃଷ୍ଟିଭଙ୍ଗୀ ଅତି ପରିଷ୍କାର ଭାବରେ ଅଭିବ୍ୟକ୍ତ ହୋଇପାରିଛି ।

କୋର୍ଯାକ୍ ମାଗନା ଫାଲ୍‌ସ୍କାଙ୍କ "କୁନି ପିଲାଙ୍କ ଘୃଢ ଖବରେ" ଶ୍ରେଣିଶଦ ତାକ ଲେଖାଇଥିଲେ । ଏସବୁ, ପରେ ବହି ଆକାରରେ ଯେତେବେଳେ ସଙ୍କଳନ କରାଗଲା, ସେତେବେଳେ ଏହା ଶିଶୁସାହିତ୍ୟ ଜଗତରେ ଏକ ନୂଆ ଦିଗନ୍ତ ଉନ୍ମୋଚନ କଲା ।

ମଣିଷର ପ୍ରତ୍ୟେକଟି ଆଗ୍ରହ, ବ୍ୟବହାର, ପ୍ରବୃତ୍ତି, ସ୍ୱଭାବପ୍ରବଣତା, ଭାଷା, ପରପ୍ରକାଶର ଶୈଳୀ, ଯୁକ୍ତିବୁଦ୍ଧିର ସ୍ୱରୂପ, ସମ୍ବେଦନଶୀଳତା, ପ୍ରତିକ୍ରିୟା-ଶୀଳତା ସବୁକିଛି କୋର୍ଯାକ୍‌ଙ୍କ ପାଇଁ ନୂତନ ଆବିଷ୍କାର ସକାଶେ ଗୋଟିଏ ଗୋଟିଏ ଉତ୍ସ ଏବଂ ଗବେଷଣା ପାଇଁ ଉଦ୍ଦୀପକ ଥିଲା ।

ଏତେବର୍ଷ ଧରି ମିସେସ୍ ଫାଲ୍‌ସ୍କାଙ୍କ ସହଯୋଗରେ ଡାକ୍ତର କୋର୍ଯାକ୍ ଯେଉଁ ପରୀକ୍ଷାମୂଳକ ଶିକ୍ଷାପଦ୍ଧତି ନେଇ କାମ ଚଳାଇଲେ, ତାହା ବାହାରେ ବହୁତ ଆଲୋଡ଼ନ ସୃଷ୍ଟିକଲା ଏବଂ ଅନେକ ଲୋକପ୍ରିୟତା ହାସଲ କଲା । ନେତୃତ୍ୱ ନେଉଥିବା ସମାଜସେବୀ କର୍ମୀମାନେ ସ୍ୱେଚ୍ଛାସେବୀମାନଙ୍କୁ ନେଇ ଏକ ସ୍ୱତନ୍ତ୍ର କମିଟି ତିଆରି କଲେ । ଏହି ପରୀକ୍ଷାଟିକୁ ଆହୁରି ଅନେକ ଜାଗାରେ ସଫଳ କରାଇବା ପାଇଁ ସେମାନେ ନିଷ୍ପତ୍ତି ନେଲେ । କର୍ମର ପରିସର ବଢ଼ିଯିବା ଦ୍ୱାରା, ଡାକ୍ତର କୋର୍ଯାକ୍ ସବୁ ଦାୟିତ୍ୱ ନିଜେ ବହନ କରିବା ପାଇଁ ସକ୍ଷମ ନଥିଲେ । ଏହି କମିଟିର ମୁଖ୍ୟ ଥିଲେ, ନିଜେ ମାଡ଼ାମ୍ ପିଲ୍‌ସୁଡ୍‌ସ୍କି । ମାଡ଼ାମ୍ ପିଲ୍‌ସୁଡ୍‌ସ୍କି ହେଉଛନ୍ତି, ମାର୍ଶାଲ୍ ପିଲ୍‌ସୁଡ୍‌ସ୍କିଙ୍କ ସହଧର୍ମିଣୀ, ମାର୍ଶାଲ୍ ପିଲ୍‌ସୁଡ୍‌ସ୍କି ପୋଲାଣ୍ଡର ପ୍ରଧାନମନ୍ତ୍ରୀ (ପ୍ରିମିୟର) ପଦରେ ଅଧିଷ୍ଠିତ ହେବାର ଥିଲା ।

ଏ ସବୁଥିରେ ସନ୍ତୁଷ୍ଟ ହୋଇ କୋର୍ଯାକ୍ ଅଟକି ଯାଇନଥିଲେ । ସୁଚିନ୍ତିତ ଯୋଜନା ମାଧ୍ୟମରେ ସବୁକିଛି ସୁସଙ୍ଗଠିତ କରି ଗଢ଼ିତୋଳିବା ପାଇଁ ସେ ଲାଗି-ପଡ଼ିଲେ । ପରିଶେଷରେ ୧୯୨୭ ମସିହାରେ ନିର୍ମାଣାଧୀନ ତାଙ୍କର ନୂତନ ପ୍ରକଳ୍ପଟି ପ୍ରକୃତ ରୂପରେଖ ନେଇ ଛିଡ଼ାହେଲେ । ବିଲାନୀରେ ସେଇ ନୂଆ ସୁନ୍ଦର ଏବଂ ଆଧୁନିକ ଢଙ୍ଗରେ ନିର୍ମିତ "ଆମଘର" ଅନାଥାଶ୍ରମଟି ଉନ୍ମୋଚିତ ହେଲା । ଏହା ଡାକ୍ତରଙ୍କପାଇଁ ଥିଲା ବିଜୟର ଦିବସ ।

## (୧୭) କୋର୍ଯାକ୍ ଶିକ୍ଷା ବ୍ୟବସ୍ଥା

ଶିଶୁକୁ ଭଲଭାବରେ ବୁଝିବା ଏବଂ ତଦନୁଯାୟୀ ଶିଶୁ ପାଇଁ ଅନୁକୂଳ ପରିବେଶଟିଏ ଗଢ଼ିତୋଳିବା ହେଉଛି କୋର୍ଯାକ୍‌ଙ୍କ ଶିକ୍ଷା ବ୍ୟବସ୍ଥାର ମୌଳିକ ଉଦ୍ଦେଶ୍ୟ । ଏହି ଶିକ୍ଷା ବ୍ୟବସ୍ଥାରେ ଶିକ୍ଷାଦାନ, ଶିଶୁର ଲାଳନପାଳନ ଓ ଶିଶୁର

ବିକାଶ ଆଦି ସବୁ କ୍ଷେତ୍ରରେ ସର୍ବାଧିକ ସ୍ୱାଧୀନତା ରହିଥିବ । ତତ୍ ସଙ୍ଗେ ସଙ୍ଗେ ଶିଶୁ ଭିତରେ ସୁରକ୍ଷିତ ଭାବରେ ଜୀବନ ବଞ୍ଚିବାର ମନୋବଳ ଏବଂ ଏକ ଶୃଙ୍ଖଳାଗତ ଜ୍ଞାନ ବିକଶିତ ହେବ ।

ଶ୍ରୀମତୀ ଫାଲ୍ସ୍କା "ଆମ ଘର (Our Home)ର ଅନୁଭୂତିକୁ ନେଇ ଏ ସମ୍ବନ୍ଧରେ ଲେଖିଛନ୍ତି—"ନ୍ୟାୟ, ଭ୍ରାତୃତ୍ୱ, ସମାନ, ସୁବିଧା ସୁଯୋଗ ଓ କର୍ତ୍ତବ୍ୟର ଭିତ୍ତି ଉପରେ ପର୍ଯ୍ୟବେସିତ କୈଶୋର ଗୋଷ୍ଠୀ ଗଢ଼ିବା ପାଇଁ ଆମର ଇଚ୍ଛା । ପୂର୍ଣ୍ଣ ବିକଶିତ ସ୍ୱଦେଶାନୁରାଗୀ ସଙ୍ଗଠନ ଛଡ଼ା ଅନ୍ୟ କାହାକୁ ଅନୁସରଣ କରିବା ପାଇଁ ଆମ ପାଖରେ କୌଣସି ଦୃଷ୍ଟାନ୍ତ ନାହିଁ । ଅମେ ଏହାକୁ ଶିଶୁ ଉପଯୋଗୀ କରାଇ ପ୍ରବର୍ତ୍ତନ କରିବାକୁ ଚେଷ୍ଟା କରିବୁ । ବାଧ୍ୟବାଧକତା ଉପରେ ନିର୍ଭର ନକରି ଆମେ ଏହି ଗୋଷ୍ଠୀଗତ ଜୀବନକୁ ବଞ୍ଚିବାକୁ ସ୍ୱେଚ୍ଛାକୃତ ଭାବରେ ଗ୍ରହଣ କରିବାର ଉପାୟଟିକୁ ଅବଲମ୍ବନ କରିବୁ । ଏହି ଉତ୍ସାହପ୍ରଦ ଗୋଷ୍ଠୀଗତ ଜୀବନର ବିକାଶ ପାଇଁ ଆମେ ପରିତ୍ୟକ୍ତ ତଥା ଖ୍ୟାତ ହୋଇଥିବା ନୈତିକ ବ୍ୟବସ୍ଥା ଗୁଡ଼ିକରେ ପରିବର୍ତ୍ତନ ଆଣିବା ପାଇଁ ଲକ୍ଷ୍ୟ ରଖିଛୁ । ଶିଶୁର ବିକାଶଧାରାକୁ ନୂଆ ଛାଞ୍ଚରେ ପକାଇବା ବା ପରିବର୍ତ୍ତନ କରିବାର ଅଭିପ୍ରାୟ ଆମର ନାହିଁ । ଆମର ପ୍ରକୃତ ଲକ୍ଷ୍ୟ ହେଉଛି ଶିଶୁଟିକୁ ଭଲକରି ବୁଝିବା ଓ ଆପଣାର କରିବା । ପ୍ରାପ୍ତବୟସ୍କ ମଣିଷର ଜୀବନ ପାଇଁ ଯାହା ସବୁ କ୍ଷତିକାରକ' ସେସବୁଠାରୁ ଦୂରରେ ରହିବାପାଇଁ ଆମେ ସେମାନଙ୍କୁ ଶିଖାଇବା ତଥା ସାହାଯ୍ୟ କରିବା ପାଇଁ ମନସ୍ଥ କରିଛୁ । ସର୍ବପ୍ରଥମେ ଆମକୁ ସେମାନଙ୍କୁ ସ୍ୱୀକାର କରିବାକୁ ହେବ । ସେମାନଙ୍କର ଏକ ପରିଚୟ ଅଛି—ଏକଥା ଆମକୁ ମାନିବାକୁ ହେବ । ଘୃଣା ରହିତ ମନୋଭାବ ନେଇ ଆମକୁ କାମ କରିବାକୁ ହେବ । ଶିକ୍ଷା ତଥା ପିଲାମାନଙ୍କ ଲାଳନ ପାଳନ ପାଇଁ ଆମେ ପିଲାମାନଙ୍କ ସାଙ୍ଗରେ ମିଶିବୁ ।"

କୋର୍ଚ୍ଚାକ୍ ଏ ସମ୍ବନ୍ଧରେ ବୁଝାଇବାକୁ ଯାଇ କହନ୍ତି—ଆମର ଏହି ଶିକ୍ଷା ବ୍ୟବସ୍ଥାଟି ଗୋଟିଏ ସୁନ୍ଦର ତନ୍ତ୍ର ଆକାରରେ ଅଛି । ଆମେ କୌଣସି ସିଦ୍ଧାନ୍ତକୁ ଆଣି ଲଦି ଦେଇନାହୁଁ । ଗମ୍ଭୀରକୁ ଆଡ଼େଇ ଅନୁସନ୍ଧାନ କରିବା ଏବଂ ବାସ୍ତବତାଠାରୁ ଦୂରେଇ ନଯିବା ହେଉଛି ଆମ କାର୍ଯ୍ୟପନ୍ଥାର ମୂଳମନ୍ତ୍ର ।

ଶିଶୁର ସ୍ୱତନ୍ତ୍ର ଆବଶ୍ୟକତା ତଥା ସମ୍ଭାବନା ସକଳ ସମ୍ବନ୍ଧରେ କୋର୍ଚ୍ଚାକ୍‌ଙ୍କର ଅନେକଗୁଡ଼ିଏ ଲେଖାଥିଲା; ମାତ୍ର ଏଥିରୁ ଅନେକ ଲେଖା ବୋମାମାଡ଼ ଓ ଜଳା-ପୋଡ଼ାରେ ନଷ୍ଟ ବିନଷ୍ଟ ହୋଇଯାଇଥିଲା । ୧୯୧୭ ମସିହାରୁ ୧୯୧୮ ମସିହା ଭିତରେ କୋର୍ଚ୍ଚାକ୍ ଏକ ଆଗ୍ରହପ୍ରଦ ପ୍ରବନ୍ଧ ଲେଖିଥିଲେ । ଏହା ଅନାଥପିଲାଙ୍କ ବିଶ୍ରାମାଳୟର ବିଧିବିଧାନ ସମ୍ବନ୍ଧୀୟ ଗୋଟିଏ ଲେଖା । ମାରିନା ଫାଲ୍ସ୍କା ୧୯୨୭ ମସିହାରେ "ଆମଘର" ସମ୍ବନ୍ଧରେ ଲେଖିଥିବା ଏକ କ୍ଷୁଦ୍ର ପୁସ୍ତିକାରେ କୈଶୋର

ସଙ୍ଗଠନ ବିଷୟରେ ଏକ ବିସ୍ତୃତ ବିବରଣୀ ଦେଇଥିଲେ । ଏଥିରୁ ମଧ୍ୟ ଅନେକ କଥା ଅନୁମାନ କରି ଜାଣିହେଉଛି ।

ଏ. ପୋଜ୍ ନାନ୍‌ସ୍କା ଏବଂ ଟି. ଓସିଜନ୍‌ସ୍କା ନାମକ ଦୁଇଜଣ ଭଦ୍ରମହିଳା କୋର୍ଚାକ୍‌ଙ୍କ ଅନୁଷ୍ଠାନରେ ବହୁବର୍ଷଧରି କାମ କରିଥିଲେ । ସେମାନେ ମଧ୍ୟ କୋର୍ଚାକଙ୍କ ଶିକ୍ଷା ବ୍ୟବସ୍ଥା ସମ୍ବନ୍ଧରେ ବିସ୍ତୃତଭାବରେ ବିଶ୍ଳେଷଣ କରିଛନ୍ତି ଏବଂ ଏଥିରୁ ଅନେକ ଉପାଦେୟ ତଥ୍ୟ ମିଳିପାରୁଛି ।

ଡୋମୋଲ୍‌ନା ଅନାଥାଶ୍ରମରେ ପିଲାମାନଙ୍କୁ ଯେପରି ଭାବରେ ବିଭିନ୍ନ ଶ୍ରେଣୀରେ ବିଭକ୍ତ କରାଯାଉଥିଲା ତାହା ଆଜିର ପାଠକମାନଙ୍କ ପାଇଁ ଏକ ଉପନ୍ୟାସ ଭଳି ମନେହେବ । ପିଲାଟି କେଉଁ ଶ୍ରେଣୀରେ ଅନ୍ତର୍ଭୁକ୍ତ ହେବ, ସେଥିପାଇଁ ପିଲାର ବୁଦ୍ଧି ବା ଧୀ-ଶକ୍ତିକୁ ବିଚାରକୁ ନିଆଯାଉନଥିଲା । ପିଲାର ଆଚରଣ ଓ ବ୍ୟବହାରକୁ ମାପକାଠି ଭାବରେ ଗ୍ରହଣ କରାଯାଉଥିଲା । ଶ୍ରେଣୀଗୁଡ଼ିକୁ ନିମ୍ନୋକ୍ତ ଢଙ୍ଗରେ ବିଭକ୍ତ କରାଯାଉଥିଲା, ଯଥା—ଅନଭିଜ୍ଞ, ଅଳ୍ପଶାଳୀ, ଉଦାସୀନ, ପ୍ରିୟସାଥୀ, ନାଗରିକ, ସାଜା, ପିଲାଙ୍କ ବନ୍ଧୁ ଇତ୍ୟାଦି । ପିଲାମାନେ ଏ ପ୍ରକାର ବିଭାଗୀକରଣକୁ ବୁଝି ଖୁସିରେ ହର୍ଷ ଧ୍ୱନି ଦେଇ ଗ୍ରହଣ କରୁଥିଲେ । ଏହାଛଡ଼ା, "କର୍ମୀ" ଏବଂ "ଯୋଗକର୍ମୀ" ଏହିପରି ଶ୍ରେଣୀ ମଧ୍ୟ ରହିଥିଲା ।

ବିଷୟମାନେ ପିଲାମାନଙ୍କୁ ବିଭିନ୍ନ ଶ୍ରେଣୀକୁ ପଠାଉନଥିଲେ । ପିଲାମାନେ ଭୋଟ ଦେଉଥିଲେ । ସେମାନେ ନିଜପାଇଁ ଆଇନଟିଏ ତିଆରି କରୁଥିଲେ ଏବଂ ଏହି ଆଇନ ଅନୁସାରେ ବିଭିନ୍ନ ଶ୍ରେଣୀରେ ବର୍ଗୀକୃତ ହେଉଥିଲେ । ଯଦି କେହି ନିଜର ଶ୍ରେଣୀ ପରିବର୍ତ୍ତନ ପାଇଁ ଇଚ୍ଛା କରୁଥିଲା, ତେବେ ଏଥିପାଇଁ ଆଉଥରେ ଭୋଟ ଗ୍ରହଣ କରାଯାଉଥିଲା ।

ପ୍ରତ୍ୟେକ ଶ୍ରେଣୀ ବା ଦଳ ପାଇଁ ଏକ ସ୍ୱତନ୍ତ୍ର ସୁବିଧା ଯୋଗାଇ ଦିଆଯାଉଥିଲା । କ୍ରୋଚମାଲ୍‌ନା ଷ୍ଟ୍ରିଟ୍‌ର ଅନାଥାଶ୍ରମଠାରୁ "ଆମ ଘର" ଅନାଥାଶ୍ରମରେ ଟିକିଏ ଅନ୍ୟ ପ୍ରକାରର ବ୍ୟବସ୍ଥା ଥିଲା । ଏଠାରେ ଶ୍ରେଣୀମାନଙ୍କ ସଂଖ୍ୟା କମ୍ ଥିଲା । ପିଲା-ମାନଙ୍କ ଭିତରୁ ନେତା ବଛାଯାଉଥିଲେ ଏବଂ ଏହି ନେତାମାନଙ୍କୁ ସ୍ୱତନ୍ତ୍ର କ୍ଷମତା ପ୍ରଦାନ କରାଯାଉଥିଲା ।

ପିଲାମାନଙ୍କର ନିଜସ୍ୱ ବିଚାରାଳୟ ଥିଲା । ଏହାଛଡ଼ା ଗୋଟିଏ ଲୋକସଭା ବା ପାର୍ଲିଆମେଣ୍ଟ ଥିଲା । ପାର୍ଲିଆମେଣ୍ଟକୁ ୨୨ ଜଣ ପ୍ରତିନିଧି ନିର୍ବାଚିତ ହେଉଥିଲେ । ପାର୍ଲିଆମେଣ୍ଟର ଅଧିବେଶନ ବର୍ଷକୁ ଥରେ ଅନୁଷ୍ଠିତ ହେଉଥିଲା । ପିଲାମାନଙ୍କ ଭିତରୁ ଉଭୟ ଗୀତ ଓ ଦିନ ପାଇଁ ପ୍ରତି ମହଲା ସକାଶେ ଅଲଗା ଅଲଗା ପରିଚାରକ ବଛାଯାଉଥିଲେ । ବଡ଼ପିଲାମାନଙ୍କ ଭିତରୁ ପରିଦର୍ଶକ ବା ସୁପରଭାଇଜର ବଛାଯାଇ-

ଥିଲେ । ଅଭିଭାବକ ଭୂମିକା ଗ୍ରହଣ କରିବାପାଇଁ ମଧ୍ୟ ପିଲାମାନଙ୍କ ଭିତରୁ ବଛାଯାଉ-ଥିଲେ ।

ପିଲାଙ୍କ ବିଚାରାଳୟ ପରିଚାଳନାପାଇଁ ଏକ ବିଶେଷ ସମ୍ବିଧାନ ଲେଖାଯାଇଥିଲା । ଏହାକୁ "ଅନାଥାଶ୍ରମର ଆଇନ ବହି" କୁହାଯାଉଥିଲା । ଏହା ଅତି ଛୋଟ ପିଲାଟିଠାରୁ ଆରମ୍ଭକରି ୧୪ ବର୍ଷର ପିଲା ପର୍ଯ୍ୟନ୍ତ ସମସ୍ତଙ୍କ ଜୀବନ ଓ କାମକୁ ନିୟନ୍ତ୍ରଣ କରୁଥିଲା ।

ବିଚାରାଳୟ ଅଧୀନରେ ସୀମିତ କ୍ଷମତା ଥିଲା । କୋର୍ଝାକ୍‌ଙ୍କ ବିଧାସଲେଖ ଆପତ୍ତି ଅଭିଯୋଗ ଜଣାଇବାପାଇଁ ପିଲାମାନଙ୍କର ଅଧିକାର ଥିଲା । ପିଲାମାନଙ୍କ ବୟସ ଓ ବୃଦ୍ଧି ଅନୁସାରେ ସେମାନଙ୍କପାଇଁ କାମ ବଣ୍ଟାଯାଇଥିଲା । ପିଲାମାନଙ୍କୁ ପୋଷ୍ଟକାର୍ଡ ଆକାରରେ ପୁରସ୍କାର ଦିଆଯାଉଥିଲା । ଏପରି ସମ୍ମାନବୋଧଯୁକ୍ତ ବ୍ୟବସ୍ଥା "ଆମ ଘର"ର ଶୃଙ୍ଖଳାକୁ ସୁରକ୍ଷିତ ରଖିପାରୁଥିଲା ଏବଂ ସମଗ୍ର ପରିବେଶଟିକୁ ଜୀବନ୍ତ ରଖୁଥିଲା । ଅନୁଷ୍ଠାନର ନିୟମକୁ ସମସ୍ତେ ଭଲଭାବରେ ବୁଝୁଥିଲେ । ପ୍ରତି ମହଲାପାଇଁ ଅଲଗା ଅଲଗା ଟିପାଖାତା ଦିଆଯାଉଥିଲା । ପରିଚାରକମାନଙ୍କୁ ଦିଆଯାଉଥିବା ସ୍ୱତନ୍ତ୍ର ଟିପାଖାତାରେ ସବୁକଥା ଲେଖିକରି ଜଣାଇଦିଆଯାଉଥିଲା ।

ପିଲାମାନଙ୍କ କାମର ମୂଲ୍ୟକୁ "ପ୍ରଚେଷ୍ଟା ଏକକ" (Effort unit) ମାଧ୍ୟମରେ ପ୍ରକାଶ କରାଯାଉଥିଲା । "ଅଧଘଣ୍ଟିକିଆ କାମକୁ ଗୋଟିଏ "ପ୍ରଚେଷ୍ଟା ଏକକ" ଭାବରେ ବିଚାର କରାଯାଉଥିଲା । ସବୁକଥାକୁ ଏକ ସ୍ୱତନ୍ତ୍ର କଳାପଟାରେ ବିସ୍ତୃତ ଓ ପ୍ରାଞ୍ଜଳଭାବରେ ଲେଖି ଟାଙ୍ଗିଦିଆଯାଉଥିଲା । ଯେପରିକି ସବୁ ପିଲା ଛିଡ଼ାହୋଇ ଦେଖିପାରିବେ ।

ସ୍ୱତନ୍ତ୍ର ଟିପାଖାତାଗୁଡ଼ିକରେ ପରିଷ୍କାର ପରିଚ୍ଛନ୍ନତା, ବିଭିନ୍ନ ଘଟଣାବଳୀର ତାଲିକା, ଦରଖାସ୍ତ ଫର୍ମ ଆଦି ସମ୍ବନ୍ଧରେ ଟିପ୍ପଣୀ ରହୁଥିଲା । ଏପରିକି ବିଦେଶୀ ମୁଦ୍ରା, ବାଣିଜ୍ୟ ବ୍ୟବସାୟ ସମ୍ବନ୍ଧରେ ମଧ୍ୟ ଏଥିରେ ଉଲ୍ଲେଖ ହେଉଥିଲା । ଅନାଥାଶ୍ରମ ବାହାରକୁ ପିଲାମାନେ ବୁଲିଯିବା ଓ ବାହାରୁ ପରିଦର୍ଶକମାନେ ଅନାଥାଶ୍ରମକୁ ଆସୁଥିବା ବିଷୟରେ ମଧ୍ୟ ଟିପାଖାତାରେ ଟିପ୍ପଣୀ ଲେଖାଯାଉଥିଲା ।

ଓ୍ୱାର୍ସୋରେ ଡାକ୍ତର କୋର୍ଝାକ୍‌ଙ୍କ ଦ୍ୱାରା ପରିଚାଳିତ ଅନାଥାଶ୍ରମଗୁଡ଼ିକରେ ଏହି ଜଟିଳ ତଥା ସଂକ୍ଷିପ୍ତ ଉପାୟଟି ଅନେକବର୍ଷ ପର୍ଯ୍ୟନ୍ତ ସଫଳତାର ସହ କାର୍ଯ୍ୟକାରୀ ହୋଇପାରିଥିଲା । ଏହି ସଫଳତାର ମୂଳରେ ରହିଥିଲା ଡାକ୍ତରବାବୁଙ୍କର ଆକର୍ଷଣୀୟ ତଥା ଅପ୍ରତିଦ୍ୱନ୍ଦ୍ୱୀ ବ୍ୟକ୍ତିତ୍ୱର ପ୍ରଭାବ । ଏହି ବ୍ୟବସ୍ଥାଟିର ସୃଷ୍ଟିର ମୂଳରେ ଥିଲେ ଜଣେ ଡାକ୍ତରବାବୁ । କୋର୍ଝାକ୍‌ଙ୍କ ସାଙ୍ଗରେ ଯେଉଁ ମହିଳାମାନେ ଏହି

ସଙ୍ଗଠନରେ କାମ କରୁଥିଲେ, ସେମାନଙ୍କର ଅସୀମ ଶକ୍ତି ଏବଂ ବୁଦ୍ଧି ଏହି ବ୍ୟବସ୍ଥାଟିର ସଫଳତା ପାଇଁ ଅନେକାଂଶରେ ଦାୟୀ ।

ମୁଖ୍ୟତଃ **ଷ୍ଟିଫା ଓ୍ୱିଲ୍‌କଜ୍‌ସ୍କା ଏବଂ ମାରିନା ଫାଲସ୍କା** ଡାକ୍ତରଙ୍କ ଦାୟିତ୍ୱକୁ ଅନେକ ଭାବରେ ତୁଲାଇନେଉଥିଲେ । ମାତ୍ର ଅନାଥାଶ୍ରମର କାମକୁ ଠିକ୍ ଭାବରେ ତୁଲାଇବାପାଇଁ ସବୁବେଳେ ଉପଯୁକ୍ତ ବ୍ୟକ୍ତିବିଶେଷଙ୍କୁ ଖୋଜାଯାଉଥିଲା । ଅନାଥପିଲାମାନଙ୍କ ଭିତରୁ ଏଥିପାଇଁ ଉପଯୁକ୍ତ ପୁଅଝିଅମାନଙ୍କୁ ବାଛିବାପାଇଁ ମଝିରେ ମଝିରେ ଏକ ନିର୍ବାଚନ ବୋର୍ଡ ବସୁଥିଲା । ଏହି ପିଲାମାନେ ଅନାଥାଶ୍ରମରୁ ବିଦାୟ ନେଇସାରିଲାପରେ ମଧ୍ୟ ସାପ୍ତାହିକ କ୍ଲାସ୍ ଓ ଆଲୋଚନାଚକ୍ରରେ ଭାଗନେଉଥିଲେ । ଏହି ସାପ୍ତାହିକ କ୍ଲାସ୍ ଓ ଆଲୋଚନାଚକ୍ରର ମୁଖ୍ୟ ଉଦ୍ଦେଶ୍ୟ ଥିଲା, ନୂଆ ନୂଆ ପରିଦର୍ଶକ (Supervisor)ମାନଙ୍କୁ ତାଲିମ ଦେବା । ସମସ୍ତର ପରିପକ୍ୱତାକୁ ଲକ୍ଷ୍ୟକରି ପରିଚାଳନା କମିଟିରୁ ନିଜେ ଡାକ୍ତରବାବୁ ଓ ଷ୍ଟିଫା ଓ୍ୱିଲ୍‌ନସ୍କା ଓହରି-ଯାଇ ଅନ୍ୟମାନଙ୍କ ହାତରେ ପରିଚାଳନା ଭାର ଦେଇ କମିଟିଟିକୁ କାର୍ଯ୍ୟଦକ୍ଷ କରାଇବା ସକାଶେ ମନ ଭିତରେ ଉଦ୍ଦେଶ୍ୟ ରଖିଥିଲେ ।

ମାତ୍ର ଏହି ପରୀକ୍ଷାମୂଳକ ଯୋଜନାଟିର ସଫଳତା ବା ବିଫଳତାକୁ ଜାଣିବା-ପାଇଁ କୌଣସି ସୁଯୋଗ ରହିପାରିଲା ନାହିଁ । ଏହି ଉତ୍ସାହଜନକ ତଥା ଆଶାପୂର୍ଣ୍ଣ ବ୍ୟବସ୍ଥାଟି ହଠାତ୍ ଚୂର୍‌ମାର୍ ହୋଇଗଲା । ଯୁଦ୍ଧରେ ଶ୍ରୀମତୀ ଫାଲ୍‌ସ୍କା ପ୍ରାଣ ହରାଇଲେ । ଯେତେବେଳେ ପୋଲଣ୍ଡରେ ଯୁଦ୍ଧ ସମାଭୂତ ହେଲା, ଯେତେବେଳେ "ଆମ ଘର" ଅନାଥାଶ୍ରମରେ ରହୁଥିବା ପିଲା ତଥା କୋସାକ୍‌ଙ୍କ ଅନେକ ଛାତ୍ରଛାତ୍ରୀ ଯୁଦ୍ଧର ନିର୍ଦ୍ଦୟ ଚକତଳେ ପେଷିହୋଇଗଲେ । ଫଳରେ ଯେଉଁମାନଙ୍କର କୋର୍ଝାକ୍‌ଙ୍କ ଏହି ବ୍ୟବସ୍ଥାଟି ସମ୍ପର୍କରେ ପ୍ରତ୍ୟକ୍ଷ ଅନୁଭୂତି ରହିଥିଲା, ସେମାନଙ୍କଠାରୁ ସବୁକଥା ରେକର୍ଡ କରିବା ସମ୍ଭବ ହୋଇପାରିଲା ନାହିଁ ।

କୋର୍ଝାକ୍‌ଙ୍କର ଏହି ପରୀକ୍ଷାମୂଳକ ବ୍ୟବସ୍ଥାଟି ସମାଲୋଚନାର ଶରବ୍ୟ ହୋଇଥିଲା । ମାତ୍ର ଏ ସମାଲୋଚନାଗୁଡ଼ିକ କଥାଟିକୁ ଭଲ ଭାବରେ ନବୁଝି ଉପର-ଠାଉରିଆ ଦୃଷ୍ଟିକୋଣରୁ ହେଉଥିଲା । ଏହାର ଅର୍ଥ ନୁହେଁ ଯେ କୋର୍ଝାକ୍‌ଙ୍କ ବ୍ୟବସ୍ଥାଟି ସମ୍ପୂର୍ଣ୍ଣ ତ୍ରୁଟିହୀନ ଥିଲା । କୋର୍ଝାକ୍ ନିଜେ ଏହି ବ୍ୟବସ୍ଥାଟିର ଦୁର୍ବଳତା ସମ୍ବନ୍ଧରେ ସଚେତନ ଥିଲେ । କୋର୍ଝାକ୍ ପ୍ରତ୍ୟେକ ପିଲାକୁ ଯେଉଁ ଭାବରେ ପାଇଥିଲେ, ସେହି ଦୃଷ୍ଟିକୋଣରୁ ବିଚାରକରି ମୂଲ୍ୟାୟନ କରୁଥିଲେ । କୋର୍ଝାକ୍‌ଙ୍କ ଅନାଥାଶ୍ରମକୁ ବିଭିନ୍ନ ପ୍ରକାରର ପିଲା ଆସୁଥିଲେ । ସମ୍ପୂର୍ଣ୍ଣ ବିପରୀତ ଗୁଣଧର୍ମୀ ପିଲା-ମାନେ ଜୁଟୁଥିଲେ । ଅଧିକାଂଶ ପିଲାଙ୍କର ଆଚରଣ ଅତ୍ୟନ୍ତ ଅସ୍ୱାଭାବିକ ଥିଲା ।

ଅନେକ ବର୍ଷର ଅନୁଭୂତିକୁ ଧାରଣକରି କୋର୍ଝାକ୍ ସ୍ୱୀକାର କରିଥିଲେ ଯେ— ସେ ରାସ୍ତାକଡ଼ରୁ ସାଉଁଟି ଆଣିଥିବା ଏହି ମଣିଷଛୁଆଗୁଡ଼ିକ ଅସ୍ୱାଭାବିକ ଭାବରେ ଦୁଷ୍ଟ ଓ

ବିଶୃଙ୍ଖଳିତ ହୋଇ ରହୁଥିଲେ । ବସ୍ତିରୁ ଆସିଥିବା ବଡ଼ ବଡ଼ ପିଲାମାନଙ୍କୁ କୋର୍ସାକ୍‌ଙ୍କ ସ୍ନେହ, ଶ୍ରଦ୍ଧା, ଯତ୍ନ ଆଦି ବିଶେଷ ଭାବରେ ପ୍ରଭାବିତ କରିପାରୁନଥିଲା । ସେମାନଙ୍କୁ କୋର୍ଟ, ଜେଲ୍, ମାନସିକ ଡାକ୍ତରଖାନାକୁ ଯିବାକୁ ପଡ଼ୁଥିଲା । ଏପରି ଅନେକ ପିଲା ଥିଲେ, ଯେଉଁମାନେ ଅନ୍ୟର ଦୁଃଖ ଦେଖିଲେ ଖୁସି ହେଉଥିଲେ । ସେମାନେ କାହାକୁ ଭୟ ବା ଖାତିର କରୁନଥିଲେ । ଅଉ କେତେକ ପିଲା ଗୋଡ଼େଇ ଗୋଡ଼େଇ କୁକୁର ଧରୁଥିଲେ ବା କଂସେଇ ସାଜୁଥିଲେ ।

ଏସବୁଥିରେ କୋସାକ୍ ନିରାଶ ବା ହତାଶ ହୋଇପଡ଼ୁନଥିଲେ । ସାମଗ୍ରିକ ସ୍ଥିତିଟିର ଭଲ କଥାଗୁଡ଼ିକୁ ସେ ମନରେ ରଖୁଥିଲେ । ଯଦି ସେ ହୃଦୟଙ୍ଗମ କରୁଥିଲେ ଯେ କୌଣସି ଜଣେ ଦୁଷ୍ଟ ବା ବିଶୃଙ୍ଖଳିତ ପିଲାକୁ ଅନାଥାଶ୍ରମରୁ ବାହାର କରିଦେଲେ ଅଧିକାଂଶ ପିଲାଙ୍କର ମଙ୍ଗଳ ହେବ, ତେବେ ସେ ପିଲାଟିକୁ ବାହାର କରିଦେବା ପାଇଁ ଆଦୌ କୁଣ୍ଠିତ ହେଉନଥିଲେ ।

ମୂଳକଥା ହେଲା, କୋସାକ୍‌ଙ୍କ ଅନାଥାଶ୍ରମକୁ ଦୁଃଖୀ, ଦରିଦ୍ର ଓ ଅବହେଳିତ ପିଲାମାନେ ଆସୁଥିଲେ । ସେମାନଙ୍କ ଭିତରୁ କିଏ ଥିଲା ଦୁଷ୍ଟ ବା ଖଣ୍ଟର ସନ୍ତାନ ତ ଆଉ କିଏ ଥିଲା ବେଶ୍ୟା କିମ୍ବା ମଦୁଆର ସନ୍ତାନ । ଏହି ପିଲାମାନଙ୍କୁ ଠିକ୍ ମାର୍ଗରେ ପରିଚାଳିତ କରିବା ପାଇଁ ସେମାନଙ୍କ ଉପରେ ଶୃଙ୍ଖଳା ଓ ନିୟମର ଏକ ବାଡ଼ ଲଗାଇଦେବା ଛଡ଼ା ଆଉ ବା କଅଣ ଉପାୟ ଥିଲା ? ଅବାଟରେ ଗଲୁଥିବା ବା ବିଦ୍ରୋହୀ ପିଲାମାନଙ୍କଠାରୁ ଅନ୍ୟପିଲାମାନଙ୍କୁ ରକ୍ଷା କରିବା ଥିଲା କୋସାକ୍‌ଙ୍କର ଏକ ମୁଖ୍ୟ କର୍ତ୍ତବ୍ୟ ।

ସବୁ ପିଲାମାନେ ନିଜ ନିଜର ସୁବିଧା -ଅସୁବିଧାକୁ କୋର୍ସାକ୍‌ଙ୍କୁ ଜଣାଉଥିଲେ । ପିଲାମାନଙ୍କୁ ସୁରକ୍ଷା ବଳୟ ଭିତରେ ରଖିବା ଥିଲା କୋସାକ୍‌ଙ୍କର ଏକ ନିଆଦିନିଆ ଚିନ୍ତା । ବାହାର ଦୁନିଆରେ ଏହି ପିଲାମାନେ ଭିକ ଉପାସରେ କାଳ କାଟୁଥିଲେ । କେବଳ ପେଟକୁ ଯେ ମୁଠାଏ ଦାନା ମିଳୁନଥିଲା ସେକଥା ନୁହେଁ, ମନର ବିକାଶ ପାଇଁ ତଥା ନୈତିକତା ପାଇଁ ବି ସେଠାରେ ସେମାନେ କିଛି ପାଇପାରୁନଥିଲେ । ଏହି ବାହାର ଦୁନିଆଁରୁ ପିଲାମାନଙ୍କୁ କିପରି ସୁରକ୍ଷା ଦେବାକୁ ହେବ ତାହା ଥିଲା କୋର୍ସାକ୍‌ଙ୍କର ଏକ ମୁଖ୍ୟ ଉଦ୍ଦେଶ୍ୟ । କୋସାକ୍‌ଙ୍କ ଅନାଥାଶ୍ରମ ଭିତରେ ବି ବିପଦ-ମାନ ରହିଥିଲା । ଯଦି ନୀତି ନିୟମଗୁଡ଼ିକୁ କଡ଼ାକଡ଼ି ଭାବରେ ପାଳନ କରାଯାଉ ନଥାନ୍ତା, ତେବେ ଭିତରର ବିପଦ ପିଲାମାନଙ୍କୁ ନଷ୍ଟଭ୍ରଷ୍ଟ କରିଦେବାର ସମ୍ଭାବନା ଥିଲା ।

ଏହିସବୁ କାରଣରୁ କୋର୍ସାକ୍ ସାଧାରଣ ଭାବରେ ବିଶୃଙ୍ଖଳିତ ଓ ଅଧିକ ବିପଦ ସୃଷ୍ଟି କରୁଥିବା ପିଲାମାନଙ୍କୁ ଚିହ୍ନଟ କରି ରଖୁଥିଲେ । କିଦ୍‌ଖୋର୍ ପିଲାମାନେ ଅନାଥାଶ୍ରମର ନୀତି ନିୟମ ଓ ଜୀବନଶୈଳୀକୁ ମାନିନେବାକୁ ରାଜି ହେଉନଥିଲେ

ଏବଂ ଏସବୁ ଖରାପ ଅଭ୍ୟାସକୁ ନଷ୍ଟ କରିଦେବା ପାଇଁ ଭୟ ଦେଖାଉଥିଲେ । ଏହିଭଳି ପିଲାଙ୍କ ସାଙ୍ଗରେ ଖାପଖୁଆଇ କେତେଦୂର ଚାଲିହେବ, ସେକଥା ବିଚାର କରି କୋର୍ଚାକ୍ଙ୍କୁ ନିଷ୍ପତ୍ତି ନେବାକୁ ପଡୁଥିଲା ।

କେତେକ ପିଲା ଅନାଥାଶ୍ରମର ମଙ୍ଗଳ ଓ ସୁରକ୍ଷା ଚାହୁଁଥିଲେ ଓ ଆଉ କେତେକ ଦୁଷ୍ଟ, ବିଶୃଙ୍ଖଳିତ ଓ ମାନସିକ ବିକାରଗ୍ରସ୍ତ ଥିଲେ । ଏହି ଉଭୟ ଦଳକୁ ଏକତ୍ର ମିଶାଇ ଚଳାଇବା ଅନେକ କଷ୍ଟକର ବ୍ୟାପାର ବୋଲି କୋର୍ଚାକ୍ ଅନୁଭବ କରୁଥିଲେ । ଅନାଥାଶ୍ରମର ପ୍ରତ୍ୟେକ ପିଲା ଯେପରି ସମାଜବିରୋଧୀ କାର୍ଯ୍ୟରୁ ନିବୃତ୍ତ ରହି ଏକ ସୁସ୍ଥ ଓ ପରିମଳ ଜୀବନ ବଞ୍ଚିପାରିବ, ସେଥିପାଇଁ କୋର୍ଚାକ୍ ସର୍ବଦା ପ୍ରଚେଷ୍ଟା କରୁଥିଲେ ।

ବେଳେବେଳେ କୋର୍ଚାକ୍ଙ୍କୁ ନ୍ୟାୟାଳୟକୁ ସ୍ୱତନ୍ତ୍ର ଭାବରେ ଡକାଯାଉଥିଲା । ଅନେକ ସମୟରେ ଅଳ୍ପ ଜାଣିଥିବା ସରକାରୀ କର୍ମଚାରୀ ଏବଂ ନ୍ୟାୟାଧୀଶଙ୍କ ସହିତ ତାଙ୍କ ମତାମତରେ ଭୀଷଣ ପାର୍ଥକ୍ୟ ରହୁଥିଲା । କୋର୍ଚାକ୍ କିନ୍ତୁ ନିଜ ଯୁକ୍ତିରୁ ଓହରି ଯାଉନଥିଲେ । ସେ ନିଜ ବ୍ୟବସ୍ଥାଟିର ସପକ୍ଷରେ ଯୁକ୍ତି ବାଢ଼ି ଦୃଢ଼ତାର ସହ ନିଜ ମତଟିକୁ ଉପସ୍ଥାପନ କରୁଥିଲେ । କାରଣ ଏହି ବ୍ୟବସ୍ଥାଟିରୁ ହିଁ ସେ ଅନେକ ଅନୁଭୂତି ଲାଭ କରିଥିଲେ । ପୁଣି ଯେତେବେଳେ ଅନ୍ୟାନ୍ୟ ଯେତେ ଯେତେ ଅନୁଷ୍ଠାନରେ ପିଲାମାନଙ୍କର ଲାଳନପାଳନ କରାଯାଉଥିଲା, ସେ ସମସ୍ତଙ୍କଠାରୁ କୋର୍ଚାକ୍ଙ୍କ ଅନାଥାଶ୍ରମ ସବୁଠାରୁ ବଡ଼ ଥିଲା ଏବଂ ଅଧିକ ସଫଳତାର ସହିତ ଆଗେଇ ଚାଲିଥିଲା ।

କୋର୍ଚାକ୍ ଅନାଥାଶ୍ରମର ପରିଚାଳନା ଦାୟିତ୍ୱଟିକୁ ଅଧିକ ଗୁରୁତ୍ୱର ସହ ବିଚାର କରୁଥିଲେ । ବାର୍ଷିକ ବଜେଟ୍ ପ୍ରସ୍ତୁତ ବେଳେ ସେ ବହୁତ ଯତ୍ନବାନ ହେଉଥିଲେ । "ଆୟ ଦେଖି ବ୍ୟୟ" ନୀତିରେ ସେ ସମ୍ପୂର୍ଣ୍ଣ ବିଶ୍ୱାସ କରୁଥିଲେ ଏବଂ ସେହି ଅନୁସାରେ ଯୋଜନା କରୁଥିଲେ । ଗୋଟିଏ ପଇସାର ହିସାବ ବି ତାଙ୍କ ନଜର ବାହାରକୁ ଚାଲିଯାଉନଥିଲା । କୌଣସି ଏକ ନୂତନ ସୃଜନଶୀଳ ଯୋଜନା ଯଦି ଅନୁଷ୍ଠାନର ଆର୍ଥିକ ସ୍ଥିତିକୁ ଦୁର୍ବଳ କରିଦେବାର ଭୟ ସୃଷ୍ଟିକରୁଥିଲା, ତେବେ ସେ ସେହି ଯୋଜନାଟିକୁ ମଧ୍ୟ ସଂପୂର୍ଣ୍ଣ ଭାବରେ ପରିହାର କରିବାକୁ ପଛାଉ ନଥିଲେ ।

ଜଣେ ଶିକ୍ଷାବିତ୍ ହିସାବରେ, କୋର୍ଚାକ୍ ନିଜସ୍ୱ ମୌଳିକତା, ନିଜର ହସ ହସ ସ୍ୱଭାବ ଏବଂ ଅଦମ୍ୟ ବ୍ୟକ୍ତିତ୍ୱ ବଳରେ ଅନ୍ୟମାନଙ୍କୁ ନିଜ ମତଟି ଦ୍ୱାରା ପ୍ରଭାବିତ କରିପାରୁଥିଲେ । ନିଜ କାବ୍ୟିକ କଳ୍ପନାରେ ସେ ପିଲାମାନଙ୍କୁ ଅନ୍ୟ ଭାବରାଜ୍ୟକୁ ନେଇଯାଇପାରୁଥିଲେ । ମାତ୍ର କୌଣସି ମୁହୂର୍ତ୍ତରେ ସେ ପିଲାମାନଙ୍କର ଦୁର୍ବିସହ, ଦୟନୀୟ ବାସ୍ତବ ଅନୁଭୂତିଗୁଡ଼ିକୁ ପାସୋରି ଯାଉନଥିଲେ ।

ପିଲାଙ୍କ ପାଇଁ ଥିବା ନିଜସ୍ୱ ବିଶ୍ୱରରେ କୋର୍ଜାକ୍ ଅଟଳ ରହୁଥିଲେ । "ପିଲା-ମାନଙ୍କ ଅଧିକାରକୁ ସମ୍ମାନ ଦେବା"—ଏହା ଥିଲା କୋର୍ଜାକଙ୍କର ମୌଳିକ ବିଶ୍ୱାସ । ଅନେକ ବର୍ଷଧରି ସେ ପିଲାଙ୍କ ସକାଶେ ଏକ ବହି ଲେଖିବାରେ ବ୍ୟସ୍ତ ରହିଥିଲେ । ଏହି ବହିର ମୁଖ୍ୟ ପ୍ରସଙ୍ଗ ଥିଲା—ପିଲାର ଅଧିକାର । ନିଜ କଳ୍ପନାରାଜ୍ୟ ଉପରେ ବି ପିଲାର ଅଧିକାର ରହିଛି—ଏହା ବି ଏହି ପୁସ୍ତକରେ ଉଲ୍ଲେଖ ଥିଲା । ପୁସ୍ତକଟିରେ ଆଉ ଗୋଟିଏ ଦେଶର ପରିକଳ୍ପନା କରିଯାଇଛି । ଏହି କଳ୍ପନାର ଦେଶଟି ପିଲାଙ୍କ ହାତରେ ରହିବ । ପିଲାମାନେ ଏହି ଦେଶର ଶାସନ ବ୍ୟବସ୍ଥା ବୁଝିବେ । ଏ ଦେଶର ସବୁକିଛି ପିଲାଙ୍କ ଆବଶ୍ୟକତାକୁ ଦୃଷ୍ଟିରେ ହେବ । ସାନ ସାନ ପିଲାଙ୍କୁ ଆଖିରେ ରଖି କବାଟରେ ଛୋଟ ଛୋଟ ଝିଡ଼କି, ପିଲାଙ୍କ ହାତ ପାଇଲା ଭଳି ଜାଗାରେ ଲଗାଯାଇ-ଥିବ, ପାହାଡ଼ଗୁଡ଼ିକରେ ବାଡ଼ ଲଗାଯାଇଥିବ ଯଦ୍ଦ୍ୱାରା ପିଲାମାନେ ବାଡ଼ ଧରି ଧରି ଉଠିପାରିବେ । ପିଲା ନିଜେ ଚଳାଇପାରିଲା ଭଳି ଦେଶର ପରିବହନ ବ୍ୟବସ୍ଥା ରହିବ । ଏହି ବହିଟିରେ ଗୋଟିଏ କୁନିରାଜାକୁ ନେଇ ଗପଟି ଲେଖାଯାଇଥିଲା । ଏହି ରାଜାଙ୍କୁ କୁହାଯାଉଥିଲା "କିଙ୍ଗ୍ ମ୍ୟାଟ୍ ଦ ଫାଷ୍ଟ" । ସାନବଡ଼ ସମସ୍ତଙ୍କ ନିକଟରେ ବହିଟି ପୃଥିବୀର ବିଭିନ୍ନ ଦେଶରେ ଆଦୃତ ହୋଇଥିଲା । ମୂଳ ବହିଟି ଯଦିଓ ପୋଲାଣ୍ଡ ଭାଷାରେ ଲେଖାଯାଇଥିଲା, ଏହାକୁ ଅନେକ ଭାଷାରେ ଅନୁବାଦ କରିଯାଇଥିଲା ।

ବହିଟିରେ ବର୍ଣ୍ଣିତ କୁନିରାଜା ଜଣକ ବହୁତ ବିଜ୍ଞ ଓ ଚତୁର ଥିଲେ । ଏସବୁ ସତ୍ତ୍ୱେ ରାଜ୍ୟ ପ୍ରତି ମାଡ଼ିଆସୁଥିବା ବିପଦକୁ ସେ ପ୍ରତିହତ କରିପାରୁନଥିଲେ । ଧ୍ୱନ୍ୟର ସମସ୍ତ କଳାକୌଶଳର ଉପଯୋଗ ସତ୍ତ୍ୱେ ସେ ବିଫଳତାର ସମ୍ମୁଖୀନ ହେଉଥିଲେ । ଏହାର ଅର୍ଥ ନୁହେଁ ଯେ ରାଜ୍ୟରେ ଯୋଜନାସବୁ ଭୁଲ୍ ଥିଲା । ମାତ୍ର ସେସବୁ ସବୁବେଳେ ବୟସ୍କମାନଙ୍କ ସଂସାର ସହ ପ୍ରତ୍ୟକ୍ଷ ଭାବରେ ମାଡ଼ ହେଉଥିଲା ।

ଏହି ପୁସ୍ତକର ବର୍ଣ୍ଣନାଗୁଡ଼ିକୁ ପାଠକଲେ ଏହା ଅନେକ ଭାବରେ କଳ୍ପନା-ବିଳାସ ବୋଲି ମନେହେବ । ମାତ୍ର ସବୁକଥାଗୁଡ଼ିକ ସେପରି ନଥିଲା । ଅନେକ କିଛି କୋର୍ଜାକଙ୍କ ଅନାଥାଶ୍ରମରେ ବାସ୍ତବତାରେ ପରିଣତ ହୋଇପାରିଥିଲା । ଅନାଥାଶ୍ରମରେ "ପିଲାଙ୍କ ପାର୍ଲିଆମେଣ୍ଟ ଏହାର ଏକ ଜ୍ୱଳନ୍ତ ଉଦାହରଣ । ଏହି ପାର୍ଲିଆମେଣ୍ଟରେ ୨୨ ଜଣ ଛାତ୍ର ପ୍ରତିନିଧି ଗୋଟିଏ ସବୁଜ ଚାଦର ବିଛାଯାଇଥିବା ଟେବୁଲ ଚାରିପାଖରେ ବସି ବିଚାର କରୁଥିଲେ, ଯୋଜନା କରୁଥିଲେ ଏବଂ ନିଷ୍ପତ୍ତି ଗ୍ରହଣ କରୁଥିଲେ ।

"କିଙ୍ଗ୍ ମ୍ୟାଟ୍ ଦ ଫାଷ୍ଟ" ବହିରେ ଯାହା ଯାହା ଲେଖାଯାଇଥିଲା, ସେସବୁ ଏଠାରେ ଅବିକଳ ଭାବରେ ଗ୍ରହଣ କରିଯାଇଥିଲା । ବର୍ଷକୁ ଥରେ ଡାକ୍ତରଙ୍କ

ନେତୃତ୍ୱରେ ଏହି ପାର୍ଲିଆମେଣ୍ଟର ଅଧିବେଶନ ଅନୁଷ୍ଠିତ ହେଉଥିଲା । ପ୍ରକୃତରେ ଏହା ଥିଲା ଡାକ୍ତରଙ୍କର ଶିଶୁ ନନ୍ଦନକାନନ ସମ୍ବନ୍ଧୀୟ ସ୍ୱପ୍ନର ଏକ ଅଂଶ । ପିଲାଙ୍କ ନ୍ୟାୟାଳୟ ସମ୍ବନ୍ଧୀୟ ଧାରଣାଟି ଡାକ୍ତରଙ୍କ ରଚିତ ଏହି "କିଙ୍ଗ୍ ମ୍ୟାଟ୍ ଦ ଫାଷ୍ଟ"ର ଏକ ପ୍ରତିଫଳନ ଅଟେ ।

## (୧୭) ଏକାଧାରରେ ଜଣେ ଶିକ୍ଷକ ଓ ବୈଜ୍ଞାନିକ

ଦିନକର ଘଟଣା । ସେଦିନ ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ସ୍ପେସିଆଲାଇଜ୍‌ଡ୍ ପେଡ଼ାଗୋଗୀରେ କୋର୍ଚାକଙ୍କ ଅଧ୍ୟାପନା କରିବାରଥାଏ । ନିର୍ଦ୍ଦିଷ୍ଟ ସମୟ ଗଡ଼ିଗଲାଣି । କୋର୍ଚାକ୍ ଧଇଁସଇଁ ହୋଇ ପଶିଆସିଲେ ଏବଂ ବ୍ୟତିବ୍ୟସ୍ତ ହୋଇ ବିଳମ୍ବ ସକାଶେ କ୍ଷମା ମାଗିଲେ । ଶ୍ରୋତାମାନଙ୍କୁ କହିଲେ, ସେ ବହୁତ କ୍ଳାନ୍ତ ହୋଇପଡ଼ିଛନ୍ତି । ବହୁତ କାମ କରିବାକୁ ଥିଲା । କାମଗୁଡ଼ିକରେ ସେ ଏତେ ନିବିଷ୍ଟ ଥିଲେ ଅଧ୍ୟାପନା କଥା ସମ୍ପୂର୍ଣ୍ଣ ଭାବରେ ଭୁଲିଯାଇଥିଲେ । ତା'ପରେ ପୁଣି କହିଲେ, "ଆଶା ମୋତେ କ୍ଷମା ମିଳିବ ।"

କାମଟା ପ୍ରକୃତରେ କଅଣ ଥିଲା ? ଯେତେବେଳେ ତାଙ୍କୁ ଏ ସମ୍ବନ୍ଧରେ ପଚରାଗଲା, ସେ କହିଲେ, "ସେ ପିଲାଙ୍କର ହାତ ପୋଛା ମଇଳା ରୁମାଲଗୁଡ଼ିକୁ ସଜାଡ଼ି ରଖୁଥିଲେ ଏବଂ ପରୀକ୍ଷା ନିରୀକ୍ଷା କରୁଥିଲେ । ଏହି କାମ ମାଧ୍ୟମରେ ସେ ପିଲାମାନଙ୍କ ବିଷୟରେ ଅନେକ ଗହନ କଥା ଜାଣିପାରିଲେ । ସତରେ ରୁମାଲଟିଏ ଜଣେ ବ୍ୟକ୍ତି ପାଇଁ କେଡ଼େ ଚମତ୍କାର ଗ୍ରନ୍ଥ ନୁହେ ସତେ ! —ଏକ ବିକୃତ ତୃପ୍ତି ପାଇ, ସେ ମୁରୁକି ହସ ହସି ଶ୍ରୋତାମାନଙ୍କୁ ଏକଥା ଜଣାଇଲେ ।

ଏ ଘଟଣାଟିରୁ ଅନୁମାନ କରିହେବ ଶିକ୍ଷକ ହିସାବରେ କୋର୍ଚାକ୍ କେତେ ଗଭୀରକୁ ପ୍ରବେଶ କରିଯାଇ ପାରୁଥିଲେ । ପିଲାର ବ୍ୟକ୍ତିତ୍ୱ ସମ୍ବନ୍ଧରେ ଅନୁସନ୍ଧାନ କରିବାକୁ ହେଲେ, ପୂର୍ବଜନ୍ମସ୍ଥ ଯେକୌଣସି ରାଜ୍ୟରେ ପ୍ରବେଶ କରିବାକୁ ପଡ଼ିବ —ଏକଥା କୋର୍ଚାକ୍‌ଙ୍କ ନିମିତ୍ତ ଅତି ସ୍ୱାଭାବିକ ହୋଇ ରହିଥିଲା ।

ଅନ୍ୟ ଏକ ଦିନର ଘଟଣା । ଡାକ୍ତରମାନଙ୍କୁ ସେଦିନ ତାଙ୍କର କହିବାର ଥିଲା । ପିଲାଙ୍କର ବୁଦ୍ଧିଦୀପ୍ତ ପରୀକ୍ଷା କଲାବେଳେ ସେ କିପରି ଅନେକ ରହସ୍ୟପୂର୍ଣ୍ଣ ତଥ୍ୟ ଆବିଷ୍କାର କରିଥିଲେ, ସେ ସମ୍ବନ୍ଧରେ ସେ ପ୍ରାୟ ତିନିଘଣ୍ଟାକାଳ ଆଲୋଚନା କରିଥିଲେ । ଉପରୋକ୍ତ ଘଟଣା ହିଁ ତାଙ୍କ ବ୍ୟକ୍ତିତ୍ୱର ସନ୍ଧାନ ଦିଏ ।

ମୃତ୍ୟୁର ଅଳ୍ପ କେତେଦିନ ପୂର୍ବରୁ ଯେତେବେଳେ ଜର୍ମାନମାନେ ଘେଟୋ ଉପରେ ଚଢ଼ାଉକଲେ, ସେତେବେଳେ ସେ ଅନାଥାଶ୍ରମର ଗେଜେଟ୍ ପାଇଁ ଗୋଟିଏ ଲେଖା ପ୍ରସ୍ତୁତ କରିଥିଲେ । ଲେଖାଟିର ନାମକରଣ ସେ କରିଥିଲେ—"ମୁଁ କାହିଁକି ଖାଇବା ଟେବୁଲ ଉପରୁ ନିଜେ ମଇଳା ଅଇଁଠା ସବୁ ସଫାକରେ ।"

ଲେଖାଟିରେ ବ୍ୟକ୍ତିବିଶେଷଙ୍କର ଜୀବନଶୈଳୀ ସମ୍ପର୍କରେ କେତେକ ପର୍ଯ୍ୟବେକ୍ଷଣ ସେ ଉଲ୍ଲେଖ କରିଥିଲେ । ପିଲାମାନେ କେଉଁଠାରୁ ଖାଆନ୍ତି, ଖାଦ୍ୟ, ବାସନକୁସନ କିପରି ମଇଳା ଓ ନଷ୍ଟ କରନ୍ତି—ଏ ବିଷୟରେ ସେ ଲେଖାଟିରେ ବର୍ଣ୍ଣନା କରିଥିଲେ । ଏଗୁଡ଼ିକ ବିସ୍ତୃତ ବ୍ୟକ୍ତିର ସାମାଜିକ ଚାଲିଚଳଣି ସହ କିଭଳି ସମ୍ପର୍କିତ, ସେ ସମ୍ବନ୍ଧରେ ସେ ଅନୁସିଦ୍ଧାନ୍ତମାନ ଉପସ୍ଥାପନ କରିଥିଲେ ।

ଅତି ଜଣାଶୁଣା ତଥା ଏକ ସାମାଜିକ ଅନୁଷ୍ଠାନ ଦ୍ୱାରା ପ୍ରକାଶିତ ଏକ ପତ୍ରିକାକୁ ଲେଖାଟିଏ ପଠାଇବା ପାଇଁ ତାଙ୍କୁ ଅନୁରୋଧ କରାଯାଇଥିଲା । କୋର୍ଯାକ୍ ଏହି ପତ୍ରିକାକୁ ଯେଉଁ ଲେଖାଟି ପଠାଇଥିଲେ, ତାହାର ନା ଥିଲା, "ଉଚ୍ଚାଭିଳାଷୀ ଶିକ୍ଷାଦାନ ପଦ୍ଧତି" । ଏଥିରେ ସେ ଲେଖିଥିଲେ, ପିଲାଟିକୁ ଚଟାଣ ପୋଛି ସଫା କରିବାକୁ କହିବା ପୂର୍ବରୁ ନିଜକୁ ଅନେକ ଥର ଏ କାମଟିକୁ ଅଭ୍ୟାସ କରିବାକୁ ପଡ଼ିବ । ପୋଛିବା ଅଖାରୁ କିପରି ପାଣି ଚିପୁଡ଼ିବାକୁ ହୁଏ ସେ କଥା ନିଜେ ଶିଖିବାକୁ ହେବ । ଶେଯପାରିବା ଏବଂ ଶେଯ ଉପରେ ଗୁଦିର ପକାଇବା ସମ୍ବନ୍ଧରେ ବର୍ଣ୍ଣନା କରି ସେ କହିଛନ୍ତି—ଶୋଇବା ଶେଯରେ ପାଳ ଭର୍ତ୍ତିକରିବାର ରହସ୍ୟଟି ସହ ନିଜକୁ ପରିଚିତ ହେବାକୁ ପଡ଼ିବ ।

ପିଲାଙ୍କୁ କଠୋର ଧରାବନ୍ଧା କାମ କରାଇ ଶୋଷଣ କରିବାକୁ ସେ ଭୀଷଣ ବିରୋଧ କରୁଥିଲେ । ଗୋଟିଏ ପିଲା କଅଣ କରିବାକୁ ସକ୍ଷମହୋଇପାରିବ ସେ ସମ୍ବନ୍ଧରେ ବିଚାର କରିବା ପୂର୍ବରୁ ନିଜେ ସବୁପ୍ରକାର ଘରକରଣା କାମରେ ହାତ-ଦେଇ ଅନୁଭୂତି ହାସଲ କରିବାକୁ ସେ ବୁଝାଉଥିଲେ ।

କୋର୍ଯାକ୍ ସବୁବେଳେ ଗବେଷଣାମୁଖୀ ଥିଲେ । କାମଟି ଯେତେ ଶ୍ରେଷ୍ଠ ହେଉପଛକେ ସେ ସବୁ କଥାକୁ ଠିକ୍ ଭାବରେ ଗୁରୁତ୍ୱଦେଇ କହୁଥିଲେ । ଜୀବନର ଅଧାବୟସ ବିତିଗଲାପରେ ବି ସେ କହୁଥିଲେ, "ମୋ ମନଟି ଗୋଟିଏ ଗବେଷକର ମନ; ମାତ୍ର ଉଦ୍ଭାବକ ମନ ନୁହେଁ ।" ତାଙ୍କୁ ଯେତେବେଳେ ଅନୁସନ୍ଧାନର ଉଦ୍ଦେଶ୍ୟ ସମ୍ବନ୍ଧରେ ପଚରାଯାଉଥିଲା, ସେ କହୁଥିଲେ ଯେ ସେ କେବଳ ଦେଖିବାପାଇଁ ବା କୌଣସି ଏକ ଅସମାହିତ ପ୍ରଶ୍ନକୁ ସମାଧାନ କରିବାପାଇଁ ଅନୁସନ୍ଧାନ କରୁନଥିଲେ । ସେ କହୁଥିଲେ, "ମୁଁ ଗୋଟିଏ ପ୍ରଶ୍ନରେ ଉପନୀତ ହେବାପାଇଁ ଅନୁସନ୍ଧାନ କରୁଥିଲି । ପ୍ରଶ୍ନ ପଚରି—ସବୁବେଳେ ମୁଁ ପ୍ରଶ୍ନ ପଚାରେ । ମୁଁ ଅବିରତ ଭାବରେ ପ୍ରଶ୍ନ ପଚାରେ ।"

ସେ ଆହୁରି ବୁଝାଇ କହନ୍ତି, "ମୁଁ ବୁଢ଼ାଠାରୁ ଆରମ୍ଭକରି ସାନ ପିଲାଟି ପର୍ଯ୍ୟନ୍ତ ଯିବ କ କଥା କହି ଶିଖିନଥାଏ—ସମସ୍ତଙ୍କୁ ମୁଁ ପ୍ରଶ୍ନ ପଚାରେ । ମୁଁ ସତ୍ୟ ଏବଂ ଘଟଣା-ଗୁଡ଼ିକ ସମ୍ପର୍କରେ ହିଁ ପ୍ରଶ୍ନ ପଚାରିଥାଏ । ଉତ୍ତର ପାଇବାର ଆଶା କିନ୍ତୁ ମୋର ନଥାଏ । ଗୋଟିଏ ପ୍ରଶ୍ନ ମନକୁ ଛୁଇଁଲାବେଳେ ତା'ପରେ କେତେ ଯେ ପ୍ରଶ୍ନ ଉଙ୍କି ମାରନ୍ତି ତା'ର କିଛି ଇୟତ୍ତା ନଥାଏ । ସତରେ ପ୍ରଶ୍ନ ଭିତରେ ହିଁ ପ୍ରକୃତ ଆନନ୍ଦ ଟିକିକ ଥାଏ ।

ଫରାସୀ କୀଟବିଶାରଦ ଜନ୍ ହେନେରି ଫାବ୍ରଙ୍କୁ କୋର୍ଯାକ୍ ବହୁତ ପ୍ରଶଂସା କରୁଥିଲେ । ଫାବ୍ର ଅତ୍ୟନ୍ତ ବିନମ୍ର ଥିଲେ । ସେ ଥିଲେ ପ୍ରକୃତରେ ଜଣେ ସ୍କୁଲ ଶିକ୍ଷକ । ଫାବ୍ର ପାଠ ପଢ଼ିବାକୁ ଏତେ ସୁଯୋଗ ପାଇପାରିନଥିଲେ; ମାତ୍ର ସେ ଅନେକ ପ୍ରକାର କୀଟପତଙ୍ଗଙ୍କର ଜୀବନଚକ୍ର ସଂଗ୍ରହ କରିଥିଲେ, ପର୍ଯ୍ୟବେକ୍ଷଣ କରିଥିଲେ ଏବଂ ବହୁତ ଧୈର୍ଯ୍ୟର ସହ ସେସବୁର ଅନୁସନ୍ଧାନ କରିଥିଲେ । କୋର୍ଯାକ୍ କହୁଥିଲେ, ଶିକ୍ଷାଦାନ ପାଇଁ ଶିକ୍ଷକଙ୍କୁ ପିଲାଙ୍କ ଜୀବନ ଭିତରେ ପଶି ଜଣେ କୀଟ ବିଶାରଦଙ୍କ ପରି କାମ କରିବାକୁ ପଡ଼ିବ । କୋର୍ଯାକ୍ ୨୦ ବର୍ଷକାଳ ଘରଚଟିଆମାନଙ୍କ ଗତିବିଧିକୁ ଲକ୍ଷ୍ୟ କରିଥିଲେ । ପିଲାଙ୍କ ଉପରେ ଗବେଷଣା କରିବା ପୂର୍ବରୁ କଥାଟିକୁ ଭଲ ଭାବରେ ବୁଝିବାପାଇଁ ଏପରି କରୁଥିଲେ । ସେ ଡାକ୍ତରୀ ପାଠ ପଢ଼ିଥିଲେ ଏବଂ ଶିଶୁ ବିଶେଷଜ୍ଞ ଭାବରେ ବି ତାଙ୍କର ଅନେକ ଅନୁଭୂତି ଓ ଅଭିଜ୍ଞତା ଥିଲା । ନିଜକୁ ସବୁଥିରେ ବ୍ୟସ୍ତ ରଖିବାକୁ ସେ ଭଲପାଉଥିଲେ ।

ଭେଷଜ ଚିକିତ୍ସାରେ ରୋଗର କାରଣ ନିର୍ଣ୍ଣୟ କରିବାପାଇଁ ଏକ ନିଦାନ ରହିଛି ବୋଲି ସେ ମନ୍ତବ୍ୟ ଦେଇଥିଲେ । ସେହିପରି ଶିକ୍ଷାଦାନ କ୍ଷେତ୍ରରେ ପର୍ଯ୍ୟବେକ୍ଷଣ ଓ ବ୍ୟାଖ୍ୟାକରଣ ପାଇଁ ସ୍ୱତନ୍ତ୍ର ପାଠ୍ୟକ୍ରମ ରହିବା ଆବଶ୍ୟକ । ଅନୁଭୂତି, ଅଭ୍ୟାସ ଏବଂ ପର୍ଯ୍ୟବେକ୍ଷଣକୁ କୋର୍ଯାକ୍ ବହୁତ ମର୍ଯ୍ୟାଦା ପ୍ରଦାନ କରୁଥିଲେ । ସେ କହୁଥିଲେ, "ଅଭ୍ୟାସ ମୋର ଅତୀତ, ଅଭ୍ୟାସ ମୋ ଜୀବନ ।" ହତାଶା, ପରିକଳ୍ପ, ବିଜୟ ସବୁକିଛିକୁ ସେ ନିଜର କରି ସ୍ୱାଭାବିକ ଭାବରେ ଜୀବନକୁ ଆଶା ଓ ନିରାଶାର ଏକ ପ୍ରତିଫଳନ ବୋଲି ମାନିନେଉଥିଲେ ।

କୋର୍ଯାକ୍ ଅନେକ ବୈଜ୍ଞାନିକଙ୍କ ଜୀବନୀ ପାଠ କରିଥିଲେ ଓ ସେମାନଙ୍କ କର୍ମମୟ ଜୀବନଶୈଳୀକୁ ଅନୁଧ୍ୟାନ କରିଥିଲେ । ମେଡିସିନ୍ ଏବଂ ମନସ୍ତତ୍ତ୍ୱ ଉପରେ ସେ ପ୍ରତିଦିନ ଏକାଧିକ ଭାଷାରେ ନୂଆ ନୂଆ ଭାବରେ ଭାଷଣ ଦେଉଥିଲେ । ଥରେ ସେ କହିଥିଲେ, ଯଦି ସେ ଖାଇବାକୁ ଯିବା ପୂର୍ବରୁ କିଛି ନପଢ଼ିଥାନ୍ତି, ତେବେ ତାଙ୍କୁ ହାତଗୋଡ଼ ଧୋଇ ହୋଇନଥିଲାଭଳି ଅସ୍ୱସ୍ତି ଲାଗେ ।

୧୯୪୨ ମସିହାରେ ସେ ଗୋଟିଏ ବହିରେ ଲେଖିଥିଲେ, "ପରିସଂଖ୍ୟାନ ବିଦ୍ୟା ସମ୍ପର୍କରେ ଅବହିତ ହେଲାପରେ ମୁଁ ମେଡିସିନକୁ ଭଲଭାବରେ ବୁଝିପାରିଥିଲି । ପରିସଂଖ୍ୟାନ ବିଦ୍ୟା ମୋତେ ଯୌକ୍ତିକତା ଓ ବାସ୍ତବିକତା ସମ୍ବନ୍ଧରେ ଶୃଙ୍ଖଳାଜ୍ଞାନ

ଦେଖାଯାଉଥିଲେ, ସେତେବେଳେ ଶିକ୍ଷକ ତଥା ଦାର୍ଶନିକ ଡାକ୍ତର କୋର୍ଯାକ୍ ହୃଡ଼ବଡ଼େଇଯାଉଥିଲେ । ଏହାର ସମାଧାନ ପାଇଁ, ସେ ଭେଷଜବିଜ୍ଞାନ ଶାସ୍ତ୍ର, ମନସ୍ତତ୍ତ୍ୱ ପୁସ୍ତକ, ସାମାଜିକ ବିଜ୍ଞାନ ବହି, ଅପରାଧ ବିଜ୍ଞାନ, କବିତା, ପ୍ରାର୍ଥନା ବହି ଆଦି ସବୁକିଛିର ସହାୟତା ଲୋଡ଼ୁଥିଲେ । ଜଣେ ମନସ୍ତାତ୍ତ୍ୱିକ ହିସାବରେ ସେ ସ୍ୱୀକାର କରୁଥିଲେ ଯେ "ଅଭିଜ୍ଞତା ହାସଲ କରିବା ଅର୍ଥ କଷ୍ଟ ପାଇବା ।"

ହିଭସ୍ସ ଚିନ୍ତା ଓ ଚିନ୍ତନ କ୍ଷେତ୍ରରେ ତଥା ବାସ୍ତବ ଜୀବନକ୍ଷେତ୍ରରେ କୋର୍ଯାକ୍ ଯନ୍ତ୍ରଣା ଭୋଗକରୁଥିଲେ । ମାତ୍ର ଯେଉଁ ଜଟିଳଜଞ୍ଜାଳ ବସ୍ତୁଜଗତରୁ ସେ ଚମତ୍କାରିତାର ଝଲକ ଅନୁଭବ କରୁଥିଲେ, ସେଥିରୁ ସେ ସମ୍ପର୍କ ଛିଣ୍ଡାଇ ଦେଇ ନଥିଲେ । ସବୁଠାରୁ ଖରାପ ପରିସ୍ଥିତିରେ ମଧ୍ୟ ସେ ଖୁସି ଓ ମଜା ପାଇବାର ସୁବିଧାଟିଏ ପାଇଯାଉଥିଲେ । ଥରେ ସେ ହସି ହସି କହୁଥିଲେ, "ଆଜି କେତୋଟି କାଳିଦୁଆତ ସଫାକରିହେବା-ପାଇଁ ରଖାଯାଇଥିଲା । ଅନୁଶୀଳନୀ ଖାତାରେ କେତୋଟି ହସ୍ତଲିପି ସଙ୍କେତ ଥିଲା ମାତ୍ର ପିଲାଙ୍କ କୋତାର ତଳ ସୋଲ୍ ପକାଇ ମୁଁ କେତେଟଙ୍କା ସଞ୍ଚୟ କରିପାରିବି ସେ ହିସାବ କରୁଥିଲି ।"

"ପୋଥିବାଇଗଣ ଅପେକ୍ଷା, ବାଣିବାଇଗଣ" ଉପରେ କୋର୍ଯାକ୍ ସମ୍ପୂର୍ଣ୍ଣ ଭାବରେ ଜୋର୍ ଦେଉଥିଲେ । ବହିରୁ ତାତ୍ତ୍ୱିକ ପାଠପଢ଼ି ଜ୍ଞାନୀ ହେବାର ମୂଲ୍ୟକୁ ସେ ଆଦୌ ଖାତିର କରୁନଥିଲେ । ତାଙ୍କ ମତରେ ରୋଷେଇ ଘରଟି ପାଇଁ ଯେଉଁ ଜ୍ଞାନକୌଶଳ ଆବଶ୍ୟକ ତାହା ଯେକୌଣସି ବିଜ୍ଞାନ ପରୀକ୍ଷାଗାରଠାରୁ ଅଧିକ ଅଟେ ; ଯେଉଁ ବୟସ୍କ ସ୍ତ୍ରୀଲୋକଟି କୁକୁଡ଼ା ଛୁଆଁ ପ୍ରସ୍ତୁତ କରିବାର ୫ ବର୍ଷ ଅନୁଭୂତି ହାସଲ କରିଛି, ସେ ନୂଆ କରି ଡିପ୍ଲୋମା ହାସଲ କରିଥିବା ସ୍ତ୍ରୀଲୋକଟି ଅପେକ୍ଷା ପିଲା ଲାଳନପାଳନ ବହୁତ ଭଲଭାବରେ କରିପାରିବ ।

ଘରକରଣା କଥା ଉପରେ ଗୃହବିଜ୍ଞାନୀ ତଥା ସେ ସମ୍ପର୍କରେ ବିଶେଷଜ୍ଞ ହୋଇଥିବା ବ୍ୟକ୍ତିମାନଙ୍କୁ କୋର୍ଯାକ ସର୍ବଦା ବିରୋଧ କରୁଥିଲେ । ବୈଜ୍ଞାନିକ ପରୀକ୍ଷା-ନିରୀକ୍ଷାରୁ ନିଃସୃତ ବୋଲି ଦାବି କରୁଥିବା ନୂତନ ତଥା ଅଲଗାକରି ଜଣା-ପଡ଼ୁଥିବା ସତ୍ୟଗୁଡ଼ିକୁ ଉପସ୍ଥାପନ କଲାବେଳେ କୋର୍ଯାକ୍ ଏସବୁକୁ ବିରୋଧ କରି ଖୁସିହେଉଥିଲେ । ସେ ବାରମ୍ବାର ସଚେତନ କରାଇଦେଉଥିଲେ ଯେ "ମୁଁ ଜାଣିନାହିଁ"—ଏହି କୌଶଳକୁ ଲୋକମାନେ ବ୍ୟବହାର କରିବା ପାଇଁ ଶିଖିବା ଆବଶ୍ୟକ ।"

ଓଜନ ଓ ଉଚ୍ଚତା ଗ୍ରାଫ୍ଟିକୁ ଦେଖି ପିଲାର ଭବିଷ୍ୟତ ଉପରେ ମନ୍ତବ୍ୟ ଦେବା ଉପରେ କୋର୍ଯାକ୍ ଭୀଷଣ ବିରକ୍ତ ହେଉଥିଲେ । "ଘଣ୍ଟାକଣ୍ଟା ଅନୁସାରେ ପିଲାଟିଏ ଶୋଇବ ବା ତାକୁ ସେହି ଅନୁସାରେ ଖାଇବାକୁ ଦିଆଯିବ"—ଏହି ଧାରଣାଟିକୁ କୋର୍ଯାକ୍ ଚିଡ଼ୁଥିଲେ ଏବଂ ଗାଳିବର୍ଷଣ କରୁଥିଲେ ।

'କୌତୁକପୂର୍ଣ୍ଣ ଶିକ୍ଷାଦାନ' ( Pedagogy Humerous ) ପୁସ୍ତକର ଶେଷ ଆଡ଼କୁ କୋର୍ଯାକ୍ ଔଷଧ, ରୋଗ ଓ ଚିକିତ୍ସା ପଦ୍ଧତି ଉପରେ ବର୍ଣ୍ଣନା କରିଛନ୍ତି । ସେଇଠି ସେ ଏସବୁ ବିରୋଧୀମତଗୁଡ଼ିକୁ ଉଲ୍ଲେଖ କରିଛନ୍ତି । ମାତ୍ର ସବୁ କଥାରେ ତାଙ୍କର ଅନୁରାଗଟିକୁ ଦୃଢ଼ ଭାବରେ ପ୍ରକାଶ କରିଛନ୍ତି—ତାହାହେଲା ଗବେଷଣା ବୈଜ୍ଞାନିକ ଅନୁସନ୍ଧାନ ଏବଂ ଅନୁସିଦ୍ଧାନ୍ତ ।

କୋର୍ଯାକ୍ ଉପସ୍ଥାପିତ ସିଦ୍ଧାନ୍ତ ବା ସତ୍ୟଗୁଡ଼ିକୁ ବିରୋଧ କରୁଥିଲେ ବୋଲି ସେ ସେ ରକ୍ଷଣଶୀଳ ଥିଲେ, ସେକଥା ନୁହେଁ । ନୂତନ ସତ୍ୟର ଉଦ୍‌ଘାଟନ ପାଇଁ ସେ ପ୍ରୟାସୀ ଥିଲେ ଏବଂ ଏଥିପାଇଁ ସେ ଅନ୍ୟମାନଙ୍କୁ ଉତ୍ସାହିତ କରୁଥିଲେ । ମାତ୍ର କୌଣସି ଅନୁସିଦ୍ଧାନ୍ତ ବା ପ୍ରତିଷ୍ଠିତ ସତ୍ୟକୁ ହଠାତ୍ ନବୁଝି ନଶୁଣି ଖାମଖିଆଲି ଢଙ୍ଗରେ ଆବୋରି ବସିବାକୁ ସେ ପସନ୍ଦ କରୁନଥିଲେ ।

କୋର୍ଯାକଙ୍କ ଖିଆଲଗୁଡ଼ିକୁ ଅନୁଶୀଳନ କଲେ ଆଶ୍ଚର୍ଯ୍ୟ ଲାଗେ । ଏପଟେ ଗମ୍ଭୀର ଗବେଷଣା ଓ ବୈଜ୍ଞାନିକ ଅନୁସିଦ୍ଧାନ୍ତ କଥା କହୁଥିଲାବେଳେ ବେଳେବେଳେ ସେ ଭାବପୂର୍ଣ୍ଣ କଳ୍ପନା ରାଜ୍ୟରେ ବିଚରଣ କରୁଥିବାର ମନେହୁଏ । ତାଙ୍କ ଗଳ୍ପ-ଗୁଡ଼ିକରେ ସେ ସତ୍ୟ ଓ ବାସ୍ତବତାକୁ ସ୍ୱପ୍ନ ଓ କଳ୍ପନା ସହ ସୁନ୍ଦର ଭାବରେ ଯୋଡ଼ି ଜୀବନ୍ତ ଓ ପ୍ରାଣବନ୍ତ କରିପାରୁଥିଲେ ।

ଅନ୍ୟମାନେ ଯେଉଁ କ୍ଷେତ୍ରରେ ଆଉ କିଛି ଆବିଷ୍କାର କରିବାର ନାହିଁ ବୋଲି ଭାବୁଥିଲେ, କୋର୍ଯାକ୍ ସେହି କ୍ଷେତ୍ରରେ ନୂଆ ଆବିଷ୍କାରମାନ ଆଣି ଉପସ୍ଥାପନ କରୁଥିଲେ । ପାଲେଷ୍ଟାଇନ୍ ଭ୍ରମଣ କରିବାପରେ କୋର୍ଯାକଙ୍କ ଦୃଷ୍ଟିକୋଣ ଅନେକ ବିକଶିତ ହୋଇପାରିଥିଲା । ମଣିଷ ପାଖରେ ଫଳପ୍ରଦ ପରିବର୍ତ୍ତନ ପାଇଁ ଥିବା ଅପ୍ରକାଶିତ ସମ୍ଭାବନାଗୁଡ଼ିକୁ ସେ ଅତି ନିବିଡ଼ ଭାବରେ ପ୍ରକାଶ କରିଥିଲେ । ମଣିଷ ଜୀବନର ଏକ ଆମୂଳଚୂଳ ପରିବର୍ତ୍ତନ ପାଇଁ ସେ ସମ୍ଭାବନାଗୁଡ଼ିକୁ ଠଉରାଇପାରୁ-ଥିଲେ । ପାଲେଷ୍ଟାଇନ୍ ତାଙ୍କୁ ଏକ ଫାର୍ମର ପରୀକ୍ଷାଗାର ପରି ମନେହେଉଥିଲା । ମାଳୀ ତା ଗୋଲାପ ବଗିଚା ପାଇଁ ଯେପରି ଅନେକ ନୂତନ ପଦ୍ଧତି ସବୁ ଅନୁସରଣ-କରେ, ସେହିପରି ପାଲେଷ୍ଟାଇନ୍ ଜାତିର ଅଭ୍ୟୁଦୟ ପାଇଁ ସେଠାରେ ନାନା ରକମର ପରୀକ୍ଷାମୂଳକ ପଦକ୍ଷେପମାନ ଗ୍ରହଣ କରାଯାଉଥିଲା ।

ପାଲେଷ୍ଟାଇନ୍‌ରେ ରହଣିବେଳେ କୋର୍ଯାକ୍ ନିବିଡ଼ ଭାବରେ ଜୀବନକୁ ଅନୁଧ୍ୟାନ କରୁଥିଲେ । ସେ କହୁଥିଲେ, ପ୍ରତ୍ୟେକ ବିଷୟରେ ସବୁକଥା ମୂଳରୁ ହିଁ ଆରମ୍ଭ କରାଯିବ । ପାଲେଷ୍ଟାଇନ୍‌ରେ ଯୁବକମାନଙ୍କର କ୍ଷୁଧା, ତୃଷା ତଥା ଯେଉଁ ଗରିବ ଲୋକମାନେ ବାହାରୁ ଆସି ଏଠାରେ ବସବାସ କରିଥିଲେ, ସେମାନଙ୍କର ସୀମିତ ସମ୍ବଳ ଭିତରେ ମୌଳିକ ଆବଶ୍ୟକତାଗୁଡ଼ିକୁ କିପରି ପୂରଣ

କରିଯାଇପାରିବ ସେ ସମ୍ବନ୍ଧରେ ସେ କାମ କରିବା ପାଇଁ ଆଗ୍ରହୀ ଥିଲେ । ପାଲେଷ୍ଟାଇନରେ ସେ ଆଉ ଏକ ସମସ୍ୟାର ସମାଧାନ ପାଇଁ ଲାଗିପଡ଼ିଥିଲେ । ସେଠାରେ ବାପାମାଆମାନେ ସେମାନଙ୍କର ପିଲମାନଙ୍କ ପ୍ରତି ସମୟ ଦେଇ ପାରୁନଥିଲେ । ମାତ୍ର ନିର୍ଭରଶୀଳ ଶିଶୁମାନେ ସ୍ୱାବଲମ୍ବୀ ହେବା ପାଇଁ ବାପାମା'ମାନଙ୍କ ସହାୟତା ଲୋଡ଼ୁଥାନ୍ତି । ଶିଶୁମାନଙ୍କର ଏହି ସମସ୍ୟାଟିକୁ ସମାଧାନ କରିବାପାଇଁ କୋର୍ଯାକ୍ ଏକ ଅଭିନବ ଉପାୟ ଚିନ୍ତାକଲେ । ଏହି କୁନି ପିଲଙ୍କ ପାଇଁ ଏକପ୍ରକାର ଶିକ୍ଷା ଦିଆଯିବ, ଯଦ୍ଦ୍ୱାରା ସେମାନେ ସ୍କୁଲଶିଖିବା ପାଇଁ ବଡ଼ମାନଙ୍କ ଉପରେ ନିର୍ଭର କରିବେ ନାହିଁ । ଅନେକ କିଛି କରିବା ପାଇଁ ଅପେକ୍ଷା କରି ରହିଥିବା ଏହି ଭୂଇଁଟି କୋର୍ଯାକଙ୍କ ପାଇଁ ଆଦର୍ଶ ଭୂମି ଥିଲା । ଏହା ଥିଲା ତାଙ୍କର ଅଭିପ୍ସିତ ଭୂମି । ଏହି କର୍ମଭୂଇଁ ସମସ୍ତଙ୍କ ପାଇଁ ଏକ ଆହ୍ୱାନ ବୋଲି ସେ ମନେକରୁଥିଲେ ।

ପାଲେଷ୍ଟାଇନ୍ ପ୍ରକୃତରେ ଥିଲା କଠିନ ଭୂଇଁ । ପ୍ରାୟ ୨୦୦୦ ବର୍ଷ ଧରି ଏଠାରେ ବସବାସ କରୁଥିବା ଅଧିବାସୀମାନେ ଯେଉଁ ଅସୁବିଧା ନେଇ ଏଠାରେ ଜୀବନ ଧାରଣ କରିଥିଲେ ତାହା ଇହୁଦୀମାନଙ୍କୁ ଅନେକ ପ୍ରେରଣା ଯୋଗାଇଥିଲା । ସନ୍ଧ୍ୟାବେଳଯାଏ କୁନି କୁନି ଝିଅମାନଙ୍କୁ ଛାଡ଼ି ମାଆମାନେ ଦିନସାରା କଠିନ ପରିଶ୍ରମ କରି ଅନେକ ତ୍ୟାଗ ସ୍ୱୀକାର କରୁଥିଲେ । ସେହିପରି ନୂଆକରି ପିତୃତ୍ୱ ଲାଭ କରିଥିବା ବାପାମାନେ ବିଲରେ ଦିନସାରା ଝାଳବୁହା ପରିଶ୍ରମ କରୁଥିଲେ । ଧରାପୃଷ୍ଠକୁ ଆସିଲା ପରଠାରୁ ଶିଶୁମାନେ ବାପା-ମାଆମାନଙ୍କର ଏହି ବୋଝର ଅଂଶୀଦାର ହେବାକୁ ବାଧ ହେଉଥିଲେ । ଏସବୁ ଦେଖି କୋର୍ଯାକ୍ ବ୍ୟତିବ୍ୟସ୍ତ ହୋଇପଡ଼ୁଥିଲେ ଏବଂ ଏହାର ଏକ ସମାଧାନ ପନ୍ଥା ବାହାର କରିବା ପାଇଁ ଯୋଜନା କରୁଥିଲେ । ସମ୍ବେଦନଶୀଳ ଶିଶୁପ୍ରେମୀ କୋର୍ଯାକ୍ କୁନି ଶିଶୁମାନଙ୍କର ବୋଝ ଲାଘବ କରିବା ପାଇଁ ଅତ୍ୟନ୍ତ ବ୍ୟାକୁଳ ଥିଲେ । କୁନି ପିଲାମାନଙ୍କର ବୁଢ଼ାଆଙ୍ଗୁଳି ଚୁଚୁମାଇବା ଦେଖି କୋର୍ଯାକ ସ୍ତବ୍ଧ ହୋଇଯାଉଥିଲେ । ପୃଥିବୀର ଅନ୍ୟ ଯେକୌଣସି ଦେଶ ଅପେକ୍ଷା ପାଲେଷ୍ଟାଇନ୍‌ରେ ଶିଶୁମାନଙ୍କର ଏ ଅଭ୍ୟାସ ସବୁଠାରୁ ବେଶୀ । ଏହି ଆଙ୍ଗୁଳି ଚୁଚୁମିବାର କାରଣଟି ସମ୍ପର୍କରେ ଆବିଷ୍କାର କରିବା ପାଇଁ କୋର୍ଯାକ୍ ପାଲେଷ୍ଟାଇନ ଯାତ୍ରାବେଳେ ନିଜ ବୁଢ଼ା ଆଙ୍ଗୁଳିକୁ ଚୁଚୁମିବାକୁ ନିଷ୍ପତ୍ତି ନେଲେ । ନିପ୍ଲେସରୁ ହାଇଫା ପର୍ଯ୍ୟନ୍ତ ଯାତ୍ରାସାରା ସେ ଏପରି ଆଙ୍ଗୁଳି ଚୁଚୁମାଇଥିଲେ । ଷାଠିଏ ବର୍ଷ ବୟସରେ ଡାକ୍ତର କୋର୍ଯାକଙ୍କର କି ଅଦ୍ଭୁତ ନିଷ୍ପତ୍ତି ସତେ !

ଦୁର୍ଭାଗ୍ୟର କଥା ଯେ ତାଙ୍କ ଅନ୍ତରରେ ଶିଶୁମାନଙ୍କ ପ୍ରତି ଭରିରହିଥିବା କୋମଳ ଭାବପ୍ରବଣତାକୁ ସେ ଠିକ୍ ଭାବରେ ଜଣାଇପାରୁ ନଥିଲେ; କିନ୍ତୁ ଏଥିପାଇଁ ସବୁପ୍ରକାର ପ୍ରଚେଷ୍ଟା କରୁଥିଲେ । "ପିଲାଟିକୁ କିପରି ଭଲପାଇବ" ପୁସ୍ତକରେ ସେ ଲେଖିଥିଲେ, ଭାବପ୍ରବଣତା କ୍ଷେତ୍ରରେ ପିଲାଟି ପୃଥକ ଅଟେ । ଏକଥା ବୁଝିବାକୁ-

ହେଲେ ଜଣକୁ ଏ ବୟସରେ ପିଲାଳିଆମି ଢଙ୍ଗରେ ଚିନ୍ତା କରିବାକୁପଡ଼ିବ । ଭଲ ପାଇବା ସଙ୍ଗେ ସଙ୍ଗେ ଦୁଃଖ ଅନୁଭବ କରିବାକୁ ହେବ । ମନସ୍ତାପ କରିବା ସାଙ୍ଗକୁ ପଛକଥା ଭୁଲିଯିବାକୁପଡ଼ିବ । ଲଜ୍ଜିତ ହେବାକୁ ପଡ଼ିବ, କ୍ଷମା କରିବାକୁ ହେବ ଏବଂ ପିଲାଟିପରି ନିଜର ଆତ୍ମବିଶ୍ୱାସ ଦେଖାଇବାକୁ ହେବ ।'' କୋର୍ଯାକ୍ ଏହି କଥାଟିକୁ ବିଭିନ୍ନ ଉଦାହରଣ, ଛବି ଏପରିକି ନାଟକୀୟ ସଂଳାପ ମାଧ୍ୟମରେ ବୁଝାଇବାକୁ ଚେଷ୍ଟା କରୁଥିଲେ ।

ଦିନକର ଘଟଣା । ସେଦିନ ଓ୍ୱାର୍ସୋର ''ସ୍ୱତନ୍ତ୍ର ଶିକ୍ଷାଦାନ ଅନୁଷ୍ଠାନ''ରେ (ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ସ୍ପେସିଆଲାଇଜ୍‌ଡ ପେଡାଗୋଗୀ) କୋର୍ଯାକ୍‌ଙ୍କ ଅଧ୍ୟାପନା ଶୁଣିବା ପାଇଁ ୨୩ ଜଣ ଛାତ୍ର-ଛାତ୍ରୀ ଅପେକ୍ଷା କରିଥିଲେ । ବହୁତ ବିଳମ୍ବରେ କୋର୍ଯାକ୍ ପହଞ୍ଚିଲେ । ସେ ଡାକ୍ତରୀ ୟୁନିଫର୍ମ ପୋଷାକ ପିନ୍ଧିଥିଲେ ଓ ସାଙ୍ଗରେ ଗୋଟିଏ ସାନ ପିଲାକୁ ନେଇଆସିଥିଲେ । ପିଲାଟି ଭୟରେ ଥରୁଥିଲା । ଲେକ୍‌ଚର ହଲ୍ ଭିତରକୁ ପଶିବା ପାଇଁ ଅମଙ୍ଗ ହେଉଥିଲା । ଏ ଦୃଶ୍ୟ ଦେଖି ଛାତ୍ରଛାତ୍ରୀମାନେ ଆଚମ୍ବିତ ହୋଇ ଅନାଇ ରହିଲେ । ସାନପିଲାଟି ଡାକ୍ତରଙ୍କ ହାତକୁ ଜୋର୍‌ରେ ଜାବୁଡ଼ି ଧରିଥିଲା । ଏତେ ଛାତ୍ର-ଛାତ୍ରୀଙ୍କୁ ଦେଖି ବି ତା'ର ଡର କମୁନଥିଲା ।

କୋର୍ଯାକ୍‌ଙ୍କ ଘୋଷଣା ଶୁଣି ସମସ୍ତେ ଆଶ୍ଚର୍ଯ୍ୟ ହେଲେ । କୋର୍ଯାକ୍ କହିଲେ, ଆଜି ରଞ୍ଜନରଶ୍ମି ପରୀକ୍ଷାଗୃହରେ (Roentological Laboratory) ପାଠ ପଢ଼ାହେବ । ଅନ୍ଧାରଘର ଭିତରେ ପିଲାଟିକୁ ଗୋଟିଏ ଅଜଣା ମେସିନ୍ ଆଗରେ ଲଙ୍ଗଳା ହୋଇ ଛିଡ଼ାହେବାକୁ କୁହାଗଲା । ପିଲାଟି ଭୟରେ ଥରିବାକୁ ଲାଗିଲା । ରଞ୍ଜନରଶ୍ମି ମେସିନ୍ ପରଦାରେ ଛାତ୍ରଛାତ୍ରୀମାନେ ଦେଖିଲେ ପିଲାଟିର ହୃତ୍‌ପିଣ୍ଡଟି କିପରି ଅନିୟମିତ ଭାବରେ ଦପ୍‌ଦପ୍ ହେଉଛି । କୋର୍ଯାକ୍ ଅତି ଶାନ୍ତଭାବରେ ହସି ହସି କହିଲେ, ''ଭଦ୍ରବ୍ୟକ୍ତିମାନେ ଏହି ହୃତ୍‌ପିଣ୍ଡଟିକୁ ଦେଖି ଏବଂ ଯାହା ଦେଖୁଛ ତାହା ଜୀବନଯାକ ପାଇଁ ତୁମେ ଭୁଲିଯିବ ନାହିଁ··· ··· । ପିଲାମାନେ ଯେତେବେଳେ ଦୁଷ୍ଟାମୀ କରନ୍ତି ଏବଂ ତୁମେ ଯେତେବେଳେ ଏ ଦୁଷ୍ଟାମୀ ପାଇଁ ରାଗିଯାଅ କିମ୍ବା ତୁମେ ଯେତେବେଳେ କ୍ଳାନ୍ତ ଅନୁଭବ କର, ଚିଡ଼ିଯାଅ ଏବଂ ତୁମେ ଯେତେବେଳେ ଅନୁଭବକର ଯେ ପିଲାଟିକୁ ଦଣ୍ଡ ଦେବାକୁ ହେବ, ମନେରଖ ଯେତେବେଳେ ହୃତ୍‌ପିଣ୍ଡଟି ଏହି ଭୟାର୍ତ୍ତ ପିଲାଟିର ହୃତ୍‌ପିଣ୍ଡ ପରି ଅନିୟମିତ ଭାବରେ ସ୍ପନ୍ଦିତ ହୁଏ । ଏହି ହୃତ୍‌ପିଣ୍ଡଟି ଏକ ଭୟାତୁର ପିଲାର ଏବଂ ତୁମ ରାଗକୁ ପିଲାର ହୃତ୍‌ପିଣ୍ଡ ଏହିପରି ପ୍ରତିକ୍ରିୟା କରେ । ଧନ୍ୟବାଦ ସମସ୍ତଙ୍କୁ । ଆଜିପାଇଁ ପାଠପଢ଼ା ଏତିକି ଥାଉ ।''

## (୧୮) କୋର୍ଯାକ୍‌ଙ୍କ ଭଲପାଇବା

କୋର୍ଯାକ୍ ପିଲମାନଙ୍କୁ ବହୁତ ଭଲପାଉଥିଲେ । "ବବୋ" ନାମକ ଏକ କାହାଣୀ ଏବଂ "ପିଲଙ୍କୁ କପରି ଭଲପାଇବ" ପୁସ୍ତକରେ ତାଙ୍କ ଭଲପାଇବାର ଗଭୀରତା ସୁସ୍ପଷ୍ଟ । କୁନି ପିଲଟିର କୁନି ଘରବଖରାକୁ ସେ ଯେତେବେଳେ ନଇଁକରି ପଶୁଥିଲେ, ସେତେବେଳେ ତାଙ୍କ ମୁହଁରେ ହସ ଖେଳିଯାଉଥିଲା । ମମତା ଓ ଅନୁରାଗଭରା ତାଙ୍କ ହାତଟି ପିଲଟିର କପାଳକୁ ଛୁଇଁଯାଉଥିଲା । ତା'ପରେ ପିଲଟିର ଆଖି ଆଗରେ ସେ ବଡ଼ ଗ୍ରାବନେଟ୍ଟାଟିକୁ ହଲେଇ ଦେଖାଉଥିଲେ । ଗ୍ରାବନେଟ୍ଟାର ଦୋହଲିବା ସାଙ୍ଗରେ ପିଲଟିର ଆଖିପତା ହଲଚଲ ହେଉଥିଲା । ହାତର ଗତିବିଧି ଅନୁସାରେ ପିଲାର ଆଖିଡୋଳା ଘୂରୁଥିଲା । ଏହା ଦେଖି କୋର୍ଯାକ ଗଡ଼ ବାଳସୁଲଭ ଆନନ୍ଦରେ ଉଚ୍ଛ୍ୱସିତ ହେଉଥିଲେ ।

"ପିଲଙ୍କୁ କପରି ଭଲପାଇବ" ବହିରେ କୋର୍ଯାକ ଲେଖିଛନ୍ତି—"ମୁଁ ସେମାନଙ୍କର କୁନି କୁନି ମୁହଁଗୁଡ଼ିକରେ ମୋର ଚକ୍ଷୁ ଏବଂ ଆତ୍ମାକୁ ନେଇ ଚୁମା ଦେଉଥିଲି ଏବଂ ସେମାନଙ୍କୁ ମୁଁ ପଚାରିବାକୁ ଇଚ୍ଛା କରୁଥିଲି ଯେ ସେମାନେ କଅଣ ସବୁ ଧରିଆସିଛନ୍ତି; ଯଥା—ଯଶ, ସୁଖ, ସୌନ୍ଦର୍ଯ୍ୟ ଇତ୍ୟାଦି । ଜଣେ ଜ୍ୟୋତିର୍ବିତ୍ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତର ନୀଳଗଗନ ଗର୍ଭରେ ଝଲସିଉଠୁଥିବା ନକ୍ଷତ୍ରଟିକୁ ନିଜର କଳିଭଳି ମୁଁ ପିଲାଙ୍କ ଉପରେ ଶାଶ୍ୱତ, ନିଷ୍କାମ ପ୍ରେମ ଏବଂ କୃତଜ୍ଞତା ଢାଳିଦେବାକୁ ଇଚ୍ଛା କରେ ।"

ଯୁବକ ଅବସ୍ଥାରେ କୋର୍ଯାକଙ୍କ ଭାବପ୍ରବଣତା ଅତି ଜୋର୍‌ରେ ମାଡ଼ିବସୁଥିଲା । ଏସବୁ ଭାବପ୍ରବଣତାକୁ ଦମନ କରିବାପାଇଁ ଗୋଟିଏ ମାତ୍ର ବାଟ ଥିଲା । ତାହା ହେଲା, ପିଲଙ୍କୁ ଭଲପାଇବା । କୋର୍ଯାକ ଗବେଷଣା, ପାଠ ପଢ଼େଇବା ଓ ବୁଝାଇବା କାର୍ଯ୍ୟରେ ନିଜକୁ ଅଧିକାଂଶ ସମୟ ନିୟୋଜିତ ରଖୁଥିଲେ । କିନ୍ତୁ ସର୍ବୋପରି ସେ ପିଲଙ୍କୁ ଭଲପାଉଥିଲେ । ତାଙ୍କ ଭଲପାଇବା ପଛରେ କୌଣସି କାରଣ ବା ମତଲବ ରହୁନଥିଲା ।

କୋର୍ଯାକ୍ ସବୁବେଳେ ଚିନ୍ତାଗ୍ରସ୍ତ ରହୁଥିଲେ । ତାଙ୍କ ଭଲପାଇବାଟା ଆଦୌ ବାହାରକୁ ପ୍ରକାଶ ହେଉନଥିଲା । କିନ୍ତୁ, ବେଳେବେଳେ ପିଲମାନେ ତାଙ୍କସହ ଏମିତି ଅଦ୍ଭୁତ ଆଚରଣ କରୁଥିଲେ ଯେ, ଦେଖିଲେ ଆଶ୍ଚର୍ଯ୍ୟ ଲାଗେ । ଅନାଥାଶ୍ରମକୁ ବାହାରୁ ଅନେକ ଲୋକ ଦେଖିବାକୁ ଆସୁଥିଲେ । ସେମାନେ ଲକ୍ଷ୍ୟକରୁଥିଲେ ଯେ, ପିଲମାନେ କୋର୍ଯାକ୍‌ଙ୍କୁ ଭକ୍ତି ଓ ସମ୍ମାନ କରିବା ଅପେକ୍ଷା ଅଧିକ ସ୍ନେହ କରୁଥିଲେ ।

କେବେ ତାଙ୍କ ଚନ୍ଦାମୁଣ୍ଡିଟିକୁ ଆପୁଡ଼େଇ ଦେଉଥାଏ ତ ଆଉ କେବେ ତାଙ୍କ ମୁହଁର ଚମରେ ଟାଣିହୋଇ ଯାଇଥିବା ବାର୍ଦ୍ଧକ୍ୟର ଗାରଗୁଡ଼ିକୁ ଛୁଇଁ ଯାଉଥାଏ । ଆଉ କେବେ ତାଙ୍କ ପାଚିଲା ଦାଢ଼ି ଭିତରେ ହାତ ବୁଲାଉଥାଏ ତ ଆଉ କେବେ ତାଙ୍କ ଆଣ୍ଠୁ ଉପରକୁ ବା କାନ୍ଧଉପରକୁ ଚଢ଼ିଆସୁଥାଏ ।

୧୯୦୫ ମସିହାରେ ରୁଷିଆ ଓ ଜାପାନ ମଧ୍ୟରେ ଚାଲିଥିବା ଯୁଦ୍ଧ ସମୟର ଏକ ରିପୋର୍ଟରେ କୋର୍ସାକ୍ ଲେଖିଥିଲେ—ଏକ ହସ୍‌ପିଟାଲ୍ ଟ୍ରେନ୍‌ରେ ସେ ଯାତ୍ରା କରୁଥିଲେ । ଟ୍ରେନ୍‌ରେ କ୍ଷତବିକ୍ଷତ ହୋଇଥିବା ଅନେକ ସୈନ୍ୟ ଯାଉଥିଲେ । ଟ୍ରେନ୍‌ରେ ଗୋଟିଏ ଡବାରୁ ଅନ୍ୟ ଡବାକୁ ଯିବାପାଇଁ ବାଟ ନଥିଲା । ଟ୍ରେନ୍‌ଟି ଷ୍ଟେସନ ମାନଙ୍କରେ ରହିଲାବେଳେ କୋର୍ସାକ୍ ଗୋଟିଏ ଡବାରୁ ଆଉ ଗୋଟିଏ ଡବାକୁ ଯାଉ-ଥିଲେ । ସୈନ୍ୟମାନଙ୍କର କ୍ଷତଜାଗାକୁ ଡ୍ରେସିଂକରି ଔଷଧ ଦେଉଥିଲେ । ତା'ପରେ ସେ ଗୋଟିଏ ବର୍ଥର ଗୋଟିଏ କଡ଼କୁ ବସୁଥିଲେ ଓ ନିଜେ ଲେଖିଥିବା କବିତା ଆବୃତ୍ତି କରି ଯାତ୍ରୀମାନଙ୍କୁ ଶୁଣାଉଥିଲେ । ସେ କମ୍ପାର୍ଟମେଣ୍ଟଟି ସହ ଅତି ପରିଚିତ ଥିଲେ ଏବଂ ସଚେତନ ଥିଲେ ଯେ ଦେଖଣାହାରିମାନେ ତାଙ୍କୁ ବେଖାତିର କରି ଦେଖୁନାହାନ୍ତି । ଏହା ତାଙ୍କୁ ହାଲୁକା ରହିବା ପାଇଁ ସାହାଯ୍ୟ କରୁଥିଲା । ବଡ଼ ଧରଣର ଲୋକ ଗହଳି ଭିତରେ ସେ ଗମ୍ଭୀର ରହିବାକୁ ବାଧ୍ୟ ହେଉଥିଲେ । ମାତ୍ର ବେଳେବେଳେ ହସ କୌତୁକିଆ କଥା କହି ସେ ହାଲୁକା ଅନୁଭବ କରୁଥିଲେ ।

ହସ କୌତୁକ ଉପରେ ଧାରଣା ତଥା ଶିଶୁମନସ୍ତତ୍ତ୍ୱ ଉପରେ ଥିବା ତାଙ୍କର ଅଶେଷ ଜ୍ଞାନ ଯୋଗୁଁ ସେ ପିଲାଙ୍କ ସାଙ୍ଗରେ ସ୍ୱାଭାବିକ ଭାବରେ ମିଶିପାରୁଥିଲେ । ପିଲାଙ୍କ ସାଙ୍ଗରେ ସମାନ ମଞ୍ଚଉପରେ ସେ ନିଜର ପରିଚୟ ପ୍ରଦାନ କରିପାରୁଥିଲେ । କୌତୁକିଆ କଥା କହି ବା ନିଜର ସ୍ୱଭାବସୁଲଭ ଢଙ୍ଗରେ ହସିଦେଇ ସେ ଗମ୍ଭୀର ପରିବେଶକୁ ସହଜରେ ହାଲୁକା କରି ଦେଇ ପାରୁଥିଲେ ।

ପିଲାଙ୍କ ପ୍ରତି ଥିବା ନିଜର ଭାବପ୍ରବଣତାକୁ ସେ ନିୟନ୍ତ୍ରଣ କରିପାରୁଥିଲେ । ପିତାମାତାଙ୍କୁ ମଧ୍ୟ ସେ ଏଥିପାଇଁ ସଚେତନ କରାଇ ଦେଉଥିଲେ । ପିଲାକୁ ବେଶି-ଗୁଡ଼ାଏ ଚୁମ୍ବନ ଦେବା ଓ କୋଳେଇ କାଖେଇ ଗେଲ କରିବାକୁ ସେ ବାରଣ କରୁ-ଥିଲେ । ସେ କହୁଥିଲେ, ଏ ପ୍ରକାର ମାତ୍ରା ପିଲାଙ୍କପାଇଁ ବୋଝ ଅଟେ ଏବଂ ଏହା ଅନେକ ସମୟରେ ବଡ଼ମାନଙ୍କର ପ୍ରୀତି ଉତ୍ତେଜକ ଭାବଦ୍ୱାରା ପ୍ରଭାବିତ ହୋଇଥାଏ ।

ପିଲାମାନଙ୍କୁ ଶାରୀରିକ ଦଣ୍ଡ ଦେବା କ୍ଷେତ୍ରରେ ସେ ଭୀଷଣ ବିରୋଧ କରୁଥିଲେ । କୋର୍ସାକ୍‌ଙ୍କର ମୂଳମନ୍ତ୍ର ଥିଲା, ପିଲାଙ୍କୁ ଭଲପାଇବା । ଏହି ମୌଳିକ ମାତ୍ରା ତଥା ପିଲାମାନଙ୍କୁ ଭଲପାଇବାର ସ୍ୱାଭାବିକ ଭାବ, କୋର୍ସାକ୍‌ଙ୍କୁ ପିଲାଙ୍କ ପାଇଁ ନୂଆ ସ୍ୱପ୍ନ ଓ ନୂଆ ନୂଆ ଧାରଣା ସୃଷ୍ଟିକରିବାର ପ୍ରେରଣା ଯୋଗାଇଥିଲା । ଏ ସମ୍ବନ୍ଧୀୟ

ତାଙ୍କର ସ୍ୱପ୍ନ ଓ ଧାରଣାଗୁଡ଼ିକ ଅତ୍ୟନ୍ତ ବୈପ୍ଳବିକ ଥିଲା ଏବଂ ଅନେକ କ୍ଷେତ୍ରରେ ଅପ୍ରାସଙ୍ଗିକ ମନେହେଉଥିଲା ସତେଯେପରି ସେଥିରୁ ଅନେକ ମଣିଷ ଜୀବନର ପ୍ରାକୃତିକ ନିୟମକୁ ବିରୋଧ କରୁଛି ।

ପିଲାଙ୍କ ଉପରେ ତାଙ୍କର ମତାମତ ଭିନ୍ନ ଥିଲା । ସେ କହୁଥିଲେ, ପିଲା ହିଁ ପୃଥକ୍, ସେ ସ୍ୱାଧୀନ ଏବଂ ଅନନ୍ୟସାଧାରଣ । ସେ ଜୋର୍ ଦେଇ କହୁଥିଲେ ଯେ, ଯେଉଁଠି ପିଲାର ଭାଗ୍ୟ କଥା ପଡ଼ୁଛି, ସେଠାରେ ନିଜ ସମ୍ବନ୍ଧରେ ନିଷ୍ପତ୍ତି ନେବା ସକାଶେ ପିଲାର ଅଧିକାର ଉପରେ ନିର୍ଭର କରୁ । ପିଲାର ଖାଇବା, ଶୋଇବା ଆଦିରେ ବାପାମାଆମାନଙ୍କର ଘଣ୍ଟାକଣ୍ଟା ଅନୁଯାୟୀ ପରିଚାଳିତ କରିବାର ପ୍ରବୃତ୍ତିକୁ ସେ ପରିହାସ କରୁଥିଲେ । ବିନା କାରଣରେ ପିଲାଙ୍କ ପାଇଁ ବ୍ୟସ୍ତ ରହିବାକୁ ସେ ପିଲାଙ୍କ ପ୍ରତି କ୍ଷତିକାରକ ବୋଲି ବିଚାର କରୁଥିଲେ । ଏସବୁ ପିଲାଙ୍କର ସ୍ୱାଭାବିକ ବିକାଶ ଦିଗରେ କୁପ୍ରଭାବ ପକାଏ ବୋଲି ସେ କହୁଥିଲେ ।

ବହୁବର୍ଷ ଧରି କୋର୍ଚ୍ଚାକ୍ ବିଭିନ୍ନ ପ୍ରକାର ପିଲାଙ୍କ ଉପରେ ପରୀକ୍ଷା ନିରୀକ୍ଷା ଓ ପର୍ଯ୍ୟବେକ୍ଷଣ ଜାରିରଖିଥିଲେ । ଦୋଷ ଦୁର୍ବଳତାଯୁକ୍ତ, ଅବିକଶିତ ଓ ଅକର୍ମଣ୍ୟ ପିଲାମାନେ ମୁଖ୍ୟତଃ ଏହି ପରିସର ଭିତରେ ଅନ୍ତର୍ଭୁକ୍ତ ଥିଲେ । ଯେଉଁ ପିଲାମାନେ ଅଲଗା ହୋଇ ରହିବାକୁ ଇଚ୍ଛା କରୁଥିଲେ, କୋର୍ଚ୍ଚାକ୍ ସେମାନଙ୍କ ପାଇଁ ଶ୍ରେଷ୍ଠ ଶ୍ରେଷ୍ଠ ଘରସବୁ ବାହାର କରୁଥିଲେ । ବାସ୍ତବ କ୍ଷେତ୍ରରେ କୋର୍ଚ୍ଚାକ୍‌ଙ୍କର ବିଚାରଧାରାକୁ କାର୍ଯ୍ୟକାରୀ କରିବା ଅନେକ କ୍ଷେତ୍ରରେ ଅସମ୍ଭବ ମନେହେଉଥିଲା ।

କୋର୍ଚ୍ଚାକ୍ ହିଁ ପ୍ରଥମେ ଜୋର୍‌ଦେଇ କହିଲେ ଯେ, ଦୋଷଦୁର୍ବଳତା ଥିବା ପିଲାଙ୍କ ପାଇଁ ଅଧିକ ସ୍ନେହ ଶ୍ରଦ୍ଧା ଆବଶ୍ୟକ । ଯେଉଁ ଶିକ୍ଷକମାନେ ଏଭଳି ପିଲାଙ୍କ ପାଠପଢ଼ା ଦାୟିତ୍ୱରେ ଥିଲେ, ସେ ସେମାନଙ୍କୁ ଅଧିକ ସ୍ନେହୀ ହେବାକୁ ଉପଦେଶ ଦେଉଥିଲେ । ସେ ନିଜେ ପିଲାମାନଙ୍କ ପାଇଁ ଯେଉଁସବୁ କାର୍ଯ୍ୟମାନ କରୁଥିଲେ, ତାହା ଅତ୍ୟନ୍ତ ଦୃଷ୍ଟାନ୍ତଯୋଗ୍ୟ । ଯେକୌଣସି ପିଲାଟିର ଶେଯରେ ପରିସ୍ରା କରିବା ଅଭ୍ୟାସକୁ ଛଡ଼ାଇବା ପାଇଁ ସେ ପ୍ରାୟ ରାତିହେ ରାତି ଅନିଦ୍ରା ହୋଇ ଜଗିବସୁଥିଲେ । ଅଧିକାଂଶ ପିଲାଙ୍କ ସ୍ୱାର୍ଥଦୃଷ୍ଟିରୁ ଯଦି ଜଣେ ଦୁଷ୍ଟପିଲାକୁ ବାହାର କରିବାକୁପଡ଼ୁଥିଲା । ତେବେ ସେ ନିଷ୍ଠୁର ଭାବରେ ଏହାକୁ କାର୍ଯ୍ୟକାରୀ କରୁଥିଲେ ।

ପ୍ରାୟ ୩୦ ବର୍ଷରୁ ଊର୍ଦ୍ଧ୍ୱକାଳ ସେ ଅନାଥାଶ୍ରମ ଭିତରେ ଜୀବନ ବିତାଇଥିଲେ । ଅନାଥାଶ୍ରମଗୁଡ଼ିକୁ ପରିଚାଳନା କରିଥିଲେ । ଅନାଥାଶ୍ରମରେ ସମସ୍ତେ ଏକ ଗୋଷ୍ଠୀଗତ ଜୀବନଯାପନ କରୁଥିଲେ । ଏସବୁ ସତ୍ତ୍ୱେ ଯଦି ପିଲାଟିଏ ଏକୁଟିଆ ରହିବାକୁ ଇଚ୍ଛା ପ୍ରକାଶ କରୁଥିଲା, ତେବେ ଡାକ୍ତର କୋର୍ଚ୍ଚାକ୍ ପିଲା ସପକ୍ଷରେ ଯୁକ୍ତି ବାଢ଼ୁଥିଲେ । ଅନେକ ପିଲାଙ୍କ ସାଙ୍ଗରେ ବାସକରି ପିଲାଟି ଭିତରେ ଏକୁଟିଆ ରହିବାର ତୀବ୍ର

ବାସନାଟିକୁ ସମସ୍ତଙ୍କ ଅପେକ୍ଷା ସେ ଅଧିକ ଭାବରେ ହୃଦୟଙ୍ଗମ କରିଥିଲେ । ପିଲାଙ୍କର ଏହି ଆବଶ୍ୟକତାଟିକୁ ସେ ଅପରିହାର୍ଯ୍ୟ ବୋଲି ଯଦିଓ ବିଚାର କରୁଥିଲେ; ମାତ୍ର ସମସ୍ତଙ୍କୁ ସେ ଏହା ଯୋଗାଇ ପାରୁନଥିଲେ ।

ସେ ହାଡ଼େ ହାଡ଼େ ହୃଦୟଙ୍ଗମ କରୁଥିଲେ ଯେ ବାସ୍ତବ ଏବଂ ତତ୍ତ୍ୱ ମଧ୍ୟରେ ଏକ ବିରାଟ ଫାଙ୍କ ରହିଛି । ସୀମିତ ସମ୍ବଳ ଓ ଆୟୋଜନ ଭିତରେ ଅନାଥାଶ୍ରମରେ ଚାଲିଥିବା ବହିବାର ଧାରା ସହି ଡାକ୍ତରଙ୍କୁ ଉତ୍ସାହିତ କରି ରଖିଥିବା ଆଦର୍ଶର ବିଶେଷ ସାମଞ୍ଜସ୍ୟ ରହୁନଥିଲା । ସାମାଜିକ ସଂସ୍କାର, ଶିକ୍ଷାଦାନ, ସଙ୍ଗଠନ ଆଦି ଥିଲା ଡାକ୍ତରଙ୍କର ଜନ୍ମଗତ ପ୍ରବୃତ୍ତି ଏବଂ ପିପାସା । ଏଥିପାଇଁ ସେ ଯେଉଁ ଆଦର୍ଶର ପଥ ବାଛିନେଇଥିଲେ ତାହା ଅନୁକୂଳ ହୋଇପାରୁନଥିଲା ଏବଂ ସେ ଅନେକ ସମୟରେ ଝିମିପଡ଼ୁଥିଲେ । ବେଳେବେଳେ ସେ ହତାଶାରୁ କପଟ ସତ୍ୟଟି ଆଗରେ ମୁଣ୍ଡ ନୁଆଇଁ ଦେଉଥିଲେ । ଏହି ସତ୍ୟଟି ହେଲା—ଶିକ୍ଷକ ଦୁର୍ବଳ ଏବଂ ହତାଶ ହେବାର କାରଣ ହେଉଛି ସାମାଜିକ ଚଳଣି, ପରମ୍ପରା ଏବଂ ଆସନ୍ତାକାଲି କ'ଣ ଘଟିବାକୁ ଯାଉଛି ତାହାର ଅନିଶ୍ଚିତତା ।

କୌଣସି ଯଥାର୍ଥ କାରଣ ନଥାଇ ସେ ଅନୁଭବ କରୁଥିଲେ ଯେ ସେ ଏହି ସାଂପ୍ରତିକ ପରିସ୍ଥିତି ପାଇଁ ଦାୟୀ ଏବଂ ତାହାର ଫଳ ସେ ଭୋଗ କରୁଛନ୍ତି । ବାସ୍ତବତା ବିରୋଧରେ ସେ ସଂଗ୍ରାମ ଓ ବିଦ୍ରୋହ ଜାରି ରଖିଲେ । ମାତ୍ର ପରିସ୍ଥିତିର କୌଣସି ପରିବର୍ତ୍ତନ ଆଣି ନପାରି ନିଜକୁ ନିଜେ ବିରୋଧ କଲେ । ପରିସ୍ଥିତିର ଚାପରେ ସେ ବେଳେବେଳେ ଅସହ୍ୟ ଯନ୍ତ୍ରଣା ଅନୁଭବ କରୁଥିଲେ ଏବଂ ଏଥିପାଇଁ ବହୁତ ଉତ୍ତେଜନାପ୍ରବଣ ହୋଇପଡ଼ୁଥିଲେ । ଏହାକୁ ମୁକାବିଲା କରିବା ପାଇଁ ସେ ଲୋକମାନଙ୍କୁ ବି ଡେକା ଦେଉଥିଲେ । ଫଳରେ ଅନେକ ସମୟରେ ଅଘଟଣମାନ ଘଟୁଥିଲା । ଅଧସ୍ତନ କର୍ମଚାରୀମାନଙ୍କୁ ବ୍ୟତିବ୍ୟସ୍ତ କରାଇ ସେ ନିଜ କୋଠରି ଭିତରକୁ ପଶିଯାଉଥିଲେ । ଭିତରୁ କବାଟ କିଳି ଏକୁଟିଆ ରହୁଥିଲେ ଏବଂ ପଶୁଭଳି ଗର୍ଜୁଥିଲେ । ସେ ବିଚାର କରୁଥିବା ଆଦର୍ଶ, ସମାଜମଙ୍ଗଳକର ଓ ଜନହିତକର କଥାଗୁଡ଼ିକ ଉପରେ ନିଜେ ସୁନିଶ୍ଚିତ ଥିଲେ; ମାତ୍ର ବାସ୍ତବ କ୍ଷେତ୍ରରେ ସେଗୁଡ଼ିକ ସଂପୂର୍ଣ୍ଣ ଓଲଟା ହେଉଥିଲା । ଏଥିପାଇଁ ସେ ଭୀଷଣ ଭାବରେ ଅଧୈର୍ଯ୍ୟ ହୋଇ-ପଡ଼ୁଥିଲେ ଏବଂ ନିଜକୁ ଏଥିପାଇଁ ଦାୟୀ କରୁଥିଲେ ।

ଜୀବନର ଶେଷ ଆଡ଼କୁ ସେ ସ୍ୱୀକାର କରିଥିଲେ ଯେ ତାଙ୍କର ଦୁଇଟି ଅବିଗୁଣ ଯୋଗୁଁ ସେ ବହୁତ କଷ୍ଟ ଭୋଗ କରୁଥିଲେ । ସେଗୁଡ଼ିକ ହେଲା, ଦୂରଦୃଷ୍ଟିର ଅଭାବ ଏବଂ ଦେଖୁଥିବା ସତ୍ୟଗୁଡ଼ିକୁ ଭୁଲିଯିବା । ଏହି ଦୁର୍ବଳତାଗୁଡ଼ିକ ଯୋଗୁଁ ସେ ଅନେକ ସୁବିଧା ମଧ୍ୟ ପାଉଥିଲେ । ଯେହେତୁ ସେ ଲୋକମାନଙ୍କୁ ମନେପକାଇ

ଚହ୍ନି ପାରୁନଥିଲେ ତେଣୁ କୌଣସି ପୂର୍ବାଗ୍ରହକୁ ଧାରଣା ନକରି ନିରପେକ୍ଷ ଭାବରେ ଉଦ୍ଦିଷ୍ଟ ଆଲୋଚନାରେ ଭାଗ ନେଉଥିଲେ ।

ଲେଖକ ହିସାବରେ କୋର୍ଯାକ୍‌ଙ୍କର ସେତେ ଆଦର ନଥିଲା । ତାଙ୍କ ଲେଖାକୁ କେହି ପଢ଼ିବାକୁ ଆଗ୍ରହ ପ୍ରକାଶ କରୁନଥିଲେ । ଶିକ୍ଷାଦାନ ପରିସରରେ, ତାଙ୍କୁ ସମସ୍ତେ ପାଗଳ କହି ଗୁରୁତ୍ୱ ଦେଉନଥିଲେ । ହଠାତ୍ ତାଙ୍କ ଭିତରେ ଉଦ୍ରେକ ହେଉଥିବା ନୂଆ ନୂଆ ତଥ୍ୟଗୁଡ଼ିକୁ କେହି ବୁଝିପାରୁନଥିଲେ । ବହୁତ କମ୍ ଲୋକ ତାଙ୍କ ଚିନ୍ତାଧାରାର ମହତ୍ତ୍ୱକୁ ବୁଝିପାରୁଥିଲେ । ପୁନଶ୍ଚ ଯେଉଁମାନେ ତାଙ୍କ ପରୀକ୍ଷା-ଗୁଡ଼ିକୁ ବୁଝି ପ୍ରଶଂସା କରୁଥିଲେ, ସେମାନଙ୍କ ସଂଖ୍ୟା କମ୍ ଥିଲା । କ୍ଷତବିକ୍ଷତ ସୈନ୍ୟମାନଙ୍କୁ ନେଉଥିବା ହସ୍‌ପିଟାଲ ଟ୍ରେନ୍ ଡବା ଭିତରେ, ଅନାଥାଶ୍ରମର ପିଲାମାନେ ଶୋଉଥିବା ବଡ଼ ହଲ୍ ଭିତରେ, "ଆମ ଘରର" ଉପର ମହଲରେ ଥିବା ଛୋଟିଆ ଘର ଭିତରେ, ଏପରିକି ୮-ଜ୍ଲୋଟା ଷ୍ଟ୍ରିଟ୍‌ରେ ଥିବା ତାଙ୍କ ଭଉଣୀଙ୍କ ଫ୍ଲାଟ୍‌ରେ ସବୁଠି ପ୍ରଶଂସାର ପାତ୍ର ଥିଲେ । ଏସବୁ ଜାଗାରେ ତାଙ୍କୁ କେହି ବେଖାତିର କରି ଦେଖୁନଥିଲେ । ସକାଳେ ଓ ସନ୍ଧ୍ୟାରେ ନିରୋଳାରେ, ନିବିଡ଼ ଭାବରେ ସେ ବହି ପଢ଼ୁଥିଲେ । ୮-ଜ୍ଲୋଟା ଷ୍ଟ୍ରିଟ୍‌ର ଉପର ମହଲରେ ବସିଥିଲାବେଳେ ତାଙ୍କ ଭିତରେ ନୂଆ ନୂଆ ସ୍ୱପ୍ନ, ନୂଆ ନୂଆ ଯୋଜନା ଓ ନୂଆ ପୁସ୍ତକ ରଚନା ମୁଣ୍ଡ ଟେକୁଥିଲା । ପିଲାମାନଙ୍କ ପାଇଁ ଏକ ନୂତନ ଦୃଷ୍ଟିକୋଣ ସୃଷ୍ଟି କରିବା ପାଇଁ ସେ ବ୍ୟସ୍ତ ରହୁଥିଲେ । କୋର୍ଯାକ୍‌ଙ୍କ ବିଚାରଧାରା ପିଲାମାନଙ୍କ ମନରେ ପ୍ରତିଦ୍ୱନ୍ଦ୍ୱିତା ସୃଷ୍ଟି କରୁଥିଲା । ମାତ୍ର ଏହା କୋର୍ଯାକ୍‌ଙ୍କୁ ଆନନ୍ଦ ଦେଉଥିଲା । କାରଣ କୋର୍ଯାକ୍ ଥିଲେ ଜଣେ ଗବେଷକ ଏବଂ ପରୀକ୍ଷା ନିରୀକ୍ଷା କରି ସତ୍ୟକୁ ଠାବ କରିବା ମନୋବୃତ୍ତିର ବ୍ୟକ୍ତି ।

ଅନାଥାଶ୍ରମର ନିୟମ ବହି ଅନୁସାରେ ଉଭୟ ଉଚ୍ଚ ଓ ନୀଚମାନର କାମପାଇଁ ପୁରସ୍କାରର ବ୍ୟବସ୍ଥା ଥିଲା । ଉଦାହରଣସ୍ୱରୂପ ନିୟମ ବହିର ଏକ ଶତ ଅନୁଚ୍ଛେଦରେ ନିମ୍ନମାନର କାମପାଇଁ କି ପ୍ରକାର ପୁରସ୍କାର ଦିଆଯିବ ସେ ସମ୍ବନ୍ଧରେ ଉଲ୍ଲେଖ ଥିଲା । ଅନେକ ସମୟରେ, ଡାକ୍ତର କୋର୍ଯାକ୍‌ଙ୍କର ଅତି ସାଧାରଣ ନିରସିଆ କୌତୁକ ପାଇଁ ତାଙ୍କୁ ଏହିଭଳି ପୁରସ୍କାର ଦିଆଯିବା ପାଇଁ ଯୋଗ୍ୟ ବିବେଚିତ କରାଯାଉଥିଲା । ପିଲାମାନେ କିଛି ସମୟ ପାଇଁ ମଜାରେ ଡାକ୍ତରଙ୍କୁ 'ଡାକ୍ତର-୧୦୦' ବୋଲି ଡାକୁଥିଲେ ।

ଶିକ୍ଷକ ହିସାବରେ କୋର୍ଯାକ୍ ନିୟମ ପ୍ରତି ରକ୍ଷଣଶୀଳ ନଥିଲେ । ସେ ଏକ ସ୍ୱାଭାବିକ ଧାରା ପସନ୍ଦ କରୁଥିଲେ । ପିଲାମାନଙ୍କର ସ୍ୱାଭାବିକ ଦୁଷ୍ଟାମିକୁ ସେ ବିରୋଧ କରୁନଥିଲେ । ପିଲାମାନେ ପରସ୍ପର ଭିତରେ ମାଡ଼ପିଟ ହେଲେ ସେ ଅସ୍ୱାଭାବିକ

ମନେକରୁନଥିଲେ । "ଜୋର୍ଡ୍ସି ନୋର୍ଟ୍ସି ଏବଂ ସ୍କୁଲେ" ବହିରେ ସେ ଗ୍ରୀଷ୍ମାବକାଶ କଥା ସ୍ମରଣ କରାଇ ବର୍ଣ୍ଣନା କରିଥିଲେ ଯେ, "ଯେଉଁଠି କୋଡ଼ିଏ ପିଲା ଥିବେ ଏବଂ ଯେଉଁଠି କୋଡ଼ିଏ କଥା ବିଗୃହ କରି ନିଷ୍ପତ୍ତି ନିଆଯିବ, ସେଠି ତ ନିଶ୍ଚିତ ଭାବରେ ମାଡ଼ପିଟ୍ ହେବ ।"

"କୁନି ସମ୍ବାଦପତ୍ର"ର ନୂଆ ସମ୍ପାଦକ ହିସାବରେ କୋର୍ଚାକ୍ ସମ୍ବାଦ ସଂଗ୍ରହ ପାଇଁ ଗୋଟିଏ ଅନାଥାଶ୍ରମରେ ପହଞ୍ଚି ଦେଖିଲେ ବଡ଼ ହଲ୍‌ଟିରେ ମାଡ଼୍‌ପିଟ୍ ଚାଲିଛି । ଦି' ତିନି ଜଣ ପିଲାଙ୍କ ନାକଫାଟି ରକ୍ତ ବହୁଛି । କୋର୍ଚାକ ଚୁପ୍‌ଚାପ୍ ଏ ଦୃଶ୍ୟ ଦେଖିବାକୁ ଲାଗିଲେ ଓ ମଝିରେ ମଝିରେ ମୁରୁକ ମୁରୁକ ହସୁଥିଲେ । ଯେତେବେଳେ ପିଲାମାନେ ସାଧାରଣ ମାଡ଼ପିଟରୁ ଅସାଧୁ ଉପାୟରେ ମାଡ଼ପିଟକୁ ଆଗେଇ ନେବାକୁ ଆଗଭର ହେଉଥିଲେ, ସେତେବେଳେ ଯାଇ କୋର୍ଚାକ୍ ହସ୍ତକ୍ଷେପ କରୁଥିଲେ । ଗମ୍ଭୀର ଭାବରେ ସେ ଚେତାଇ ଦେଉଥିଲେ—"ନା ଗୋଇଠା ନୁହେଁ, ପାଦରେ ମାଡ଼ ଚଳିବନି ।" ଏହି ସମୟରେ ଜଣେ ମୋଟି ସ୍ତ୍ରୀଲୋକ ଦୌଡ଼ିଆସିଲେ । ତାଙ୍କର ଓଠ ଗାଲ ଆଦି ଥରୁଥିଲା । ସେ କୋର୍ଚାକଙ୍କୁ ପାଟିକଲେ, "ତୁ କେଡ଼େ ଅମଣିଷଟାଏ ମ ! ପିଲାମାନେ ମାଡ଼ପିଟ୍ ଲାଗିଛନ୍ତି, ତୁ ବନ୍ଦ କରୁନୁ କାହିଁକି ? ତୁ କଅଣ ଚାହୁଁଛୁ ସେମାନେ ପରସ୍ପରକୁ ଜୀବନରେ ମାରିଦିଅନ୍ତୁ !"

କୋର୍ଚାକ୍ ମୋଟୀ ସ୍ତ୍ରୀ ଲୋକଟିକୁ ଉତ୍ତର ଦେଇ ଚମକାଇଦେଲେ । 'ମାଡ଼ାମ୍, ପିଲାମାନେ ତ ନିଶ୍ଚିତ ଭାବରେ ମାଡ଼୍‌ପିଟ୍ ହେବେ । ସେମାନଙ୍କର ପ୍ରବୃତ୍ତିକୁ କ୍ଷୁଣ୍ଣ କରିବାପାଇଁ ଆମର କୌଣସି ଅଧିକାର ନାହିଁ । ମୁଁ କେବଳ ସେତେବେଳେ ହସ୍ତକ୍ଷେପ କରୁଛି, ଯେତେବେଳେ ସେମାନେ ମାଡ଼ପିଟ୍ ବେଳେ ଖରାପ ଉପାୟ ଅବଲମ୍ବନ କରିବାକୁ ଆଗେଇ ଯାଉଛନ୍ତି । ଏଭଳି ଉପାୟ ଭୀରୁତାର ପରିଚୟ ଦିଏ ଏବଂ ସେସବୁକୁ ଆଦୌ ଉତ୍ସାହିତ କରାଯିବ ନାହିଁ ।"

ଯେତେବେଳେ ମାଡ଼ପିଟ୍ ଖେଳୁଆଡ଼ ମନୋଭାବରୁ ବାହାରକୁ ଚାଲିଯାଉଥିଲା, ସେତେବେଳେ କୋର୍ଚାକ ଜୋର୍‌ରେ ହସ୍ତକ୍ଷେପ କରୁଥିଲେ ଏବଂ ଆବଶ୍ୟକ ହେଲେ ସେ ଅତ୍ୟନ୍ତ କଠୋର ହେଉଥିଲେ । ମାତ୍ର ସବୁବେଳେ ମଜାକଥା କହି ପରିସ୍ଥିତିକୁ ହାଲୁକା କରିଦେଉଥିଲେ । ବେଳେବେଳେ ସତର୍କ କରାଇଦେଉଥିଲେ ଏବଂ ଦରକାର ହେଲେ ଗାଳି ଦେଉଥିଲେ । ସେ ଏଥିପାଇଁ ଅନାଥାଶ୍ରମରେ କେତେଗୁଡ଼ିଏ ବଛା ବଛା ଶବ୍ଦ ବ୍ୟବହାର କରୁଥିଲେ । ସେସବୁ ଭିତରୁ ତାଙ୍କର ପ୍ରିୟ ଶବ୍ଦ ଥିଲା "ଅସଭ୍ୟ" । ଆଉ ବେଳେବେଳେ ବ୍ୟବହାର କରୁଥିଲେ "ଅତ୍ୟାଚାରୀ", "ପକ୍ଷୀଆ ସାପ" ଇତ୍ୟାଦି ।

ଥରେ ଗୋଟିଏ ଚଉଦ ବର୍ଷର ଝିଅ ଅସୁସ୍ଥ ଥିଲା । ଝିଅଟିକୁ ଦେଖିବା ପାଇଁ ଡାକ୍ତରବାବୁଙ୍କୁ ଡକାଯାଇଥିଲା । କୋର୍ଚାକ ଝିଅଟିକୁ ଥଟ୍ଟାରେ ପଚାରିଲେ, "ତୁମର

କେତୋଟି ନାକ ଅଛୁ ?'' ସେ ଭାବୁଥିଲେ, ଏତେ ପ୍ରଶ୍ନ ପଚାରୁଥିବା ଫିଲ୍ଟର କେତୋଟି ଶବ୍ଦଛଡ଼ା ଆଉ କିଛି କହିପାରିବ ନାହିଁ । ମାତ୍ର ଝିଅଟି ଚଟାପଟ୍ ଉତ୍ତର ଦେଲା, ''କେତୋଟି ନୁହେଁ, ଗୋଟିଏ'' । କୋର୍ଶାକ ବିସ୍ମିତ ହେଲେ; ମାତ୍ର ପିଲାଟି ପ୍ରାଙ୍ଗରେ ଟିକିଏ ଅଧିକ ଲାଗିଲେ । ସେ ଝିଅଟିକୁ ପଚାରିଲେ, 'ତୁମର ଜେଜେମା ଉଡ଼ନ୍ତି କି ?' ଝିଅଟି ଉତ୍ତର ଦେଲା, ''ମୋ ଜେଜେମା ଜଣେ ମଣିଷ । ସେ ଚଢ଼େଇ ନୁହଁନ୍ତି ।'' କିନ୍ତୁ, ତାପରେ ଝିଅଟି ଆଉ ଗୁରୁଗୁରୁ ହୋଇ କିଛି କହିଲା ନାହିଁ । ସେ ବୁଝିପାରିଲା ଯେ ତା' ମାମା, ଡାକ୍ତରଙ୍କୁ ଅତିଥି ଭାବରେ ନିମନ୍ତ୍ରଣ କରିଛନ୍ତି । ସେ ତାକୁ ଚିକିତ୍ସା କରି ଭଲ କରିଦେବେ ବୋଲି ଆଶା ରଖି ମାମା ଡାକିଛନ୍ତି । କିନ୍ତୁ, ଯେତେବେଳେ ବାପା ମା'ଆଙ୍କର ପିଲାଟି ଆଡ଼କୁ ନଜର ରହିଲାନି, ପିଲାଟି ପୁଣି ପୂର୍ବଭଳି ଡାକ୍ତରଙ୍କୁ ପ୍ରତି ଆକ୍ରମଣ କଲା । ସେ କହିଲା, ''ଡାକ୍ତରବାବୁ, ମୁଁ ତୁମକୁ ଆମ ଘର ବାହାରକୁ ଫୋପାଡ଼ିଦେବି । ତୁମେ ଦେଖିବାକୁ ଭାରି ଅସୁନ୍ଦର । ତୁମ ମୁଣ୍ଡରେ ବାଳ ନାହିଁ । ତା'ଛଡ଼ା ତୁମେ ବହୁତ ବାଜେ କଥା କହୁଛ ।''

ଏକଥା ଶୁଣି କୋର୍ଶାକ, ଠୋ ଠୋ ହୋଇ ହସିଲେ । ପିଲାଙ୍କ ଗହଣରେ ଥିଲାବେଳେ ସେ ମନଖୋଲା ହସନ୍ତି । ପିଲାଙ୍କର ଅସୁବିଧା ହେଲେ ସେ ଦୁଃଖ କରନ୍ତି । ପିଲାଙ୍କର କିଛି କ୍ଷତିହେଲେ ଏବଂ ସେହି କ୍ଷତିକୁ ସେ ପୂରଣ କରିନପାରିଲେ ନିରାଶ ହୋଇପଡ଼ନ୍ତି ଓ ଦୁଃଖରେ ଭାଙ୍ଗିପଡ଼ନ୍ତି ।

୧୯୪୦ ମସିହାର ବସନ୍ତ ଋତୁର ଏକ ଘଟଣା । କୋର୍ଶାକ ହାନା ମୋର୍ଟ୍‌କୋର୍ଓ୍ୱିକ୍‌ଜ—ଓଲ୍‌ଜାକେଙ୍କୁ (ଯିଏ କୋର୍ଶାକଙ୍କ ଜୀବନୀ ଲେଖିଥିଲେ) ଗୋଟିଏ ସ୍କୁଲ୍ ବ୍ୟାନର ତିଆରି କରିବା ସକାଶେ ଆଲୋଚନା କରିବାକୁ ଡକାଇ-ଥିଲେ । କୋର୍ଶାକ୍ ଏହି ବ୍ୟାନରଟି ପାଇଁ ବହୁ ଦିଗରୁ ଯୋଜନା କରିଥିଲେ । ବ୍ୟାନରରେ କି ପ୍ରକାର ରଙ୍ଗଦିଆଯିବ ସେକଥା ମନେ ମନେ ଠିକ୍ କରିସାରିଥିଲେ । ବ୍ୟାନରଟିକୁ ଇହୁଦୀ କବର ସ୍ଥାନରେ ଗୋଟିଏ ଉତ୍ସବରେ ପିଲାମାନଙ୍କୁ ହସ୍ତାନ୍ତର କରାଯିବ । ଏହି ଉତ୍ସବଟି ଅନାଥାଶ୍ରମରେ ମୃତ୍ୟୁବରଣ କରିଥିବା ଦୁଇଜଣ ପିଲାଙ୍କ ପାଇଁ ଉଦ୍ଦିଷ୍ଟ ଥିଲା ।

ଜଣେ କବି ଏତିକବେଳେ ଦୁଇଟି ଫଟୋ ଦେଇଯାଇଥିଲା । ସେଥିରୁ ଗୋଟିଏ ଫଟୋ ଥିଲା ଇଜ୍ଜର ବ୍ରନ୍ଦ୍ରର । ଏହି ପିଲାଟି ପ୍ରଥମ ବିଶ୍ୱଯୁଦ୍ଧ ସମୟରେ ଟାଇଫସ୍ ରୋଗରେ ମୃତ୍ୟୁବରଣ କରିଥିଲା । ସେତେବେଳେ କୋର୍ଶାକ୍ ଅନାଥାଶ୍ରମ ବାହାରେ ଥିଲେ । ଅନ୍ୟ ଫଟୋଟି ଥିଲା ଜୋସେଫ୍ ଷ୍ଟକ୍‌ମ୍ୟାନର ଏହି ପିଲାଟି ଅତ୍ୟଧିକ କ୍ଲାନ୍ତ ଏବଂ ନିମୋନିଆ ରୋଗରେ ମରିଯାଇଥିଲା । ୧୯୩୯ ମସିହାରେ ଓ୍ୱାର୍ସୋ ଅଧିକାର ସମୟରେ ବୋମା ବିସ୍ଫୋରଣ ଯୋଗୁଁ ଏକ ଅଗ୍ନିକାଣ୍ଡ

ଘଟିଥିଲା । ଏହି ଅଗ୍ନିକାଣ୍ଡ ସମୟରେ ଅନାଥାଶ୍ରମର ଜିନିଷପତ୍ରସବୁ ରକ୍ଷାକରିବାକୁ ଯାଇ ପିଲାଟି ଏହି ଦଶା ଭୋଗିଥିଲା ।

ଡାକ୍ତର କୋର୍ଶାକ୍ ଏବଂ ବଡ ଷ୍ଟିଫା ଓ୍ୱିଲକ୍‌ଜିନସ୍କା ଅଫିସ ଏବଂ ଶୋଇବାଘର କାନ୍ଥରେ ଆଉଜେଇ ହୋଇ ମୃତପିଲାଦୁଇଟିର ଫଟୋକୁ ଚାହିଁରହିଲେ । କୋର୍ଶାକ୍ ଅପଲକ ନୟନରେ ଅତି ଆତୁର ହୋଇ ଫଟୋ ଦୁଇଟିକୁ ଦେଖୁଥିଲେ । ସେତେ-ବେଳେ ସେ ଏତେ ଅନ୍ୟମନସ୍କ ହୋଇପଡ଼ିଲେ, ଯେ ଯାହାକୁ ଡାକଥିଲେ, ତାଙ୍କ ଆସିବାଟାକୁ ସେ ଜାଣିପାରିଲେ ନାହିଁ । ହଠାତ୍ ପୁତ୍ର ବିୟୋଗର ସମ୍ବାଦ ଶୁଣି ଦୁଃଖରେ ଭାଙ୍ଗିପଡ଼ିଥିବା ଜଣେ ପିତାପରି ସେ ସ୍ତମ୍ଭିଭଳି ଛିଡ଼ା ହୋଇ ରହିଥିଲେ । ଅନାଥାଶ୍ରମରେ ହଜାର ହଜାର ପୁଅ ଝିଅ ଲାଳିତ ପାଳିତ ହେଉଥିଲେ । ସେମାନଙ୍କ ମଧ୍ୟରୁ ମାତ୍ର ଦୁଇଜଣ ଚାଲିଗଲେ । ଯେ କୌଣସି ପରିଦର୍ଶକ ଧନ୍ୟବାଦ ଦେଇ କହିଥାଆନ୍ତା ଯେ ଏତେ ପିଲାଙ୍କ ଭିତରୁ ମାତ୍ର ଦୁଇଜଣ କୋର୍ଶାକ୍‌ଙ୍କ ହାତରୁ ଚାଲିଗଲେ; ମାତ୍ର ଆହୁରି ଅନେକ ସଂଖ୍ୟାରେ ସୁରକ୍ଷିତ ଅଛନ୍ତି । କିନ୍ତୁ କୋର୍ଶାକ୍‌ଙ୍କ ପାଇଁ ଏହି କ୍ଷତି ଅସହ୍ୟ ଥିଲା । ସେ ଏଥିପାଇଁ ଅନେକ ଚିନ୍ତିତ ଏବଂ ମ୍ରିୟମାଣ ହୋଇପଡୁଥିଲେ । ଯେ କୌଣସି ପ୍ରକାର କ୍ଷତି ପାଇଁ ସେ ଭାରି ସଚେତନ ଥିଲେ । ତାଙ୍କ ଆଖିରେ ଲୁହ ଭରିଯାଇଥିଲା । ତାଙ୍କ କପାଳର ଲୋଳିତ ଚର୍ମରେ ଯନ୍ତ୍ରଣା ପ୍ରତିଫଳିତ ହେଉଥିଲା ।

ମାତ୍ର ଏହି ସମୟରେ ପାର୍କହଲ୍‌ଟିର ପିଲାମାନଙ୍କର ହସ ଖୁସିର କଲୋହେଳ ଶୁଭୁଥିଲା । ପିଲାମାନେ ମନ ଆନନ୍ଦରେ ଡର୍ଆଡ଼େଇଁ କରୁଥିଲେ । ଅନାଥାଶ୍ରମରେ ଜୀବନ ନାଚଉଠୁଥିଲା । ହସରେ ଘର ଉଚ୍ଛୁଳି ପଡୁଥିଲା । କୋର୍ଶାକ୍ ଦୁଃଖଦ ମୁହୂର୍ତ୍ତ ଭିତରୁ ବାହାରିଆସିଲେ । ମୁହୂର୍ତ୍ତେକ ଚାହିଁଲେ । ତାଙ୍କ ରକ୍ତିମ ନୟନଯୁଗଳର ଚାହାଣି ଫାଙ୍କା ଜଣାପଡ଼ୁଥିଲା । ତାଙ୍କ ଆଖିପତା ଅସ୍ଥିର ଦେଖାଯାଉଥିଲା । ସେ ଦୁଃଖଭରା ସ୍ମିତହାସ୍ୟ ପ୍ରକାଶ କରି କହିଲେ, ଏ କଥା ସତ୍ୟ ଯେ ଭାକୁ ମନେ-ହେଉଛି ସେ ତାଙ୍କ ସାଥୀମାନଙ୍କର ଭାବନାକୁ ଶୁଣିପାରୁଛନ୍ତି—"ମାତ୍ର ଦୁଇଟି ପିଲା ମରିଯାଇଛନ୍ତି" । କିନ୍ତୁ ଆଉ କିଛି ଭାବନା ତାଙ୍କୁ ବ୍ୟତିବ୍ୟସ୍ତ କରିପକାଉଛି । ତାଙ୍କ ଅନାଥାଶ୍ରମ ଉପରେ ବିପଦର ଘନ କୁହେଳିକା ଯେ ମାଡ଼ିବସିବ, ଏ କଥା ତାଙ୍କୁ ଜଳ ଜଳ ଦିଶିଯାଉଛି । ଯେଉଁ ହଲ୍‌ଟିରୁ ପିଲାମାନଙ୍କର ଏଭଳି ହର୍ଷୋତ୍ଫୁଲ୍ଲିତା ଭାସି-ଆସୁଛି, ସେହି ହଲ୍‌ର ପିଲାମାନଙ୍କ ଉପରେ ଯେ ମୃତ୍ୟୁର ଛାପ ବସିଗଲାଣି ଏ କଥା ତାଙ୍କୁ ହୃଦ୍‌ବୋଧ ହେଉଥିଲା ।

ଦୁଇଟି ପିଲାଙ୍କର ଅକାଳ ମୃତ୍ୟୁରେ କୋର୍ଶାକ୍ ମର୍ମାହତ ହୋଇପଡ଼ିଛନ୍ତି । ତା' ସଙ୍ଗେ ସଙ୍ଗେ ନିକଟ ଭବିଷ୍ୟତରେ ଘଟିବାକୁ ଯାଉଥିବା ମର୍ମନ୍ତୁଦ ମୃତ୍ୟୁର

ପଦଯାତ୍ରାକୁ ସେ ହାଡ଼େ ହାଡ଼େ ଅନୁଭବ କରୁଥିଲେ । ଏହି ଅନୁଭବ ଯୋଗୁଁ କୋର୍ସାକ୍ ଦୁଇଶହ ପିଲାଙ୍କର ମୁଣ୍ଡ ଉପରେ ସେମାନଙ୍କ ଅନ୍ତିମ ଯାତ୍ରାରେ ଫର୍ ଫର୍ ହୋଇ ଉଡ଼ିବାକୁ ଅପେକ୍ଷା କରିଥିବା ସବୁଜ ବ୍ୟାନରଟି ପାଖରେ ନଇଁ-ପଡ଼ୁଥିଲେ ।

## (୧୯) ଲେଖକ ଜାନୁସ୍ କୋର୍ସାକ୍

ଆମେ ଆଗରୁ ଅବଗତ ଅଛେ ଯେ, "ଜାନୁସ୍ କୋର୍ସାକ୍" ନାଁଟି ଡାକ୍ତରଙ୍କର ମୂଳନାମ ନଥିଲା । ଏହି ନାଁଟି ତାଙ୍କ ପାଖକୁ ଆକସ୍ମିକ ଭାବରେ ଆସିଛି ଏବଂ ସେ ଏହି ନାମରେ ସର୍ବତ୍ର ପରିଚୟ ଲାଭ କରିଛନ୍ତି । ଡାକ୍ତରଙ୍କ ପ୍ରକୃତ ନାମ ହେଉଛି ହେନେରିକ୍ ଗୋଲ୍ଡ଼ସ୍ମିଥ ।

ଥରେ ହେନେରିକ୍ ଏକ ନାଟକ ଲେଖା ପ୍ରତିଯୋଗିତାକୁ ଲେଖାଟିଏ ପଠାଇବା ପାଇଁ ସ୍ଥିରକଲେ । ଲେଖାଟିର ଶୀର୍ଷକ ଥିଲା, "ବାଟ କେଉଁଆଡ଼େ ।" ନାଟକଟିର ଏକ ମନଛୁଆଁ ନାମ ଦେବାପାଇଁ ସେ କେତେଗୁଡ଼ିଏ ବହି ଖୋଜିଲେ । ସେ ଊନବିଂଶ ଶତାବ୍ଦୀର ଖ୍ୟାତନାମ ପୋଲାଣ୍ଡୀୟ ଲେଖକ ଜାଚ୍ କେର୍ଓ୍ୱେସ୍କିଙ୍କ ଲିଖିତ ପୁସ୍ତକଟିଏ ପାଇଲେ । ଏହି ବହିଟିର ନାଁ ଥିଲା । "ଜାନୁସ୍ କୋର୍ସାକ୍ଙ୍କ ସମ୍ବନ୍ଧରେ ।" ସେ ନିଜ ପାଣ୍ଡୁଲିପିରେ ଏହି ନାଁଟିକୁ ଲେଖିଲେ । ଛାପାଖାନାରେ ଅକ୍ଷର ଯୋଡୁଥିବା ଭଦ୍ରବ୍ୟକ୍ତି ବହିର ନାମକରଣ ପୃଷ୍ଠାରେ "ଜାନୁସ୍ କୋର୍ସାକ୍" ଲେଖିଦେଲେ । ତା ପରଠୁ ଅନ୍ୟ ଲେଖାମାନଙ୍କରେ ନାଁଟି ସେଇମିତି ରହିଗଲା । ହେନେରିକ୍ ଗୋଲ୍ଡ଼ସ୍ମିଥ୍ ଏହିପରି ଆକସ୍ମିକ ଭାବରେ "ଜାନୁସ୍ କୋର୍ସାକ୍" ନାମରେ ଅଭିହିତ ହେଲେ ।

"ସମାଜର ପିଲା" ବହିକୁ ସହଜ ଓ ସୁନ୍ଦର କରିବାକୁ ସେ ଭାବିଥିଲେ । ତାଙ୍କ ପାଣ୍ଡୁଲିପିଗୁଡ଼ିକରେ ଅନେକ କଥାକୁ ସେ ଉଡ଼ାଇ ଦେଉଥିଲେ, ବହୁତ କଟାକଟି କରୁଥିଲେ ଏବଂ ସଂକ୍ଷେପରେ ଅନେକ କଥା ପ୍ରକାଶ କରୁଥିଲେ । କୋର୍ସାକ୍ଙ୍କ ଲେଖାଗୁଡ଼ିକ ଅତ୍ୟନ୍ତ ସାହସିକତାର ସନ୍ଦେଶ ବହନ କରୁଥିଲା । ପରେ ପରେ ସମାଜ ପାଇଁ ତାଙ୍କର ସମର୍ପିତ ଭାବ ଏବଂ ଦାବି ଓ୍ୱାର୍ସୋର ସମାଜ ସଂସ୍କାରକ ଓ ବୈଜ୍ଞାନିକମାନଙ୍କ ତାତ୍ତ୍ୱିକ ବକ୍ତୃତାଧାରାକୁ ଧକ୍କା ଦେଲା ।

ଦସ୍ତୋଭିସ୍କି ଏବଂ ମେଟରଲିଙ୍କ ଆଦି ଲେଖକମାନଙ୍କ ଲେଖାରେ ହେନେରିକ୍ ଆଗରୁ ଅଭିନିବିଷ୍ଟ ହୋଇ ରହୁଥିଲେ ଏବଂ ଏସବୁ ଲେଖାରୁ ଅନେକ ପ୍ରେରଣା

ଲାଭ କରୁଥିଲେ । ମାତ୍ର ଏହି ଲେଖାମାନଙ୍କରେ ହେନେରକ୍ ବେଶିଦିନ ବାନ୍ଧିହୋଇ ରହିପାରିଲେ ନାହିଁ । ଗର୍କି, ଚେକଭ୍ ଆଦିଙ୍କ ଲେଖାଦ୍ୱାରା ସେ ଅଧିକରୁ ଅଧିକ ପ୍ରଭାବିତ ହେଲେ । କୋର୍ଯାକ୍ ଏମାନଙ୍କୁ ସମାଜର ବିଜିଦ ଭାବରେ ଜ୍ଞାନ କରୁଥିଲେ ।

ହେନେରକ୍ ସମାଜମଙ୍ଗଳ କାର୍ଯ୍ୟକ୍ରମମାନଙ୍କରେ ମନୋନିବେଶ କରିବା ପାଇଁ ଚାହିଁଲେ । ଏଥିପାଇଁ ଉପନ୍ୟାସ ଆଦି ଲେଖାଲେଖିରୁ ନିବୃତ୍ତ ରହିଲେ । ଲେଖକ ଭାବରେ ନିଜର ପରିଚୟ ଦେଲେ ନାହିଁ । ମାତ୍ର ଜାନୁସ୍ କୋର୍ଯାକ୍ ନାଁଟିକୁ ପରିତ୍ୟାଗ କଲେ ନାହିଁ ଏବଂ ଲେଖାଲେଖି ବନ୍ଦ କଲେ ନାହିଁ । ଏହା ପରେ ପରେ ତାଙ୍କ ଲେଖନୀ ପିଲାଙ୍କ ଉଦ୍ଦେଶ୍ୟରେ ସମର୍ପିତ ହେଲା ।

ସେ ବହୁତଗୁଡ଼ିଏ ବହି ଅଧ୍ୟୟନ କରିବାକୁ ଲାଗିଲେ । ବାଇବେଲ୍‌ରୁ ଆରମ୍ଭ-କରି ମାର୍କସ ପର୍ଯ୍ୟନ୍ତ ଏକ ବୃହତ୍ତର ପରିସରକୁ ବୁଝିବାପାଇଁ ଚେଷ୍ଟାକଲେ । ସେ ଭେଷଜ ବିଜ୍ଞାନ, ଦର୍ଶନ ଆଦି ବହିମାନଙ୍କ ସାଙ୍ଗକୁ ଫରାସୀ, ଜର୍ମାନ, ରୁଷୀୟ ତଥା ନିଜ ଜନ୍ମସ୍ଥାନର ଭାଷା ଅଧ୍ୟୟନ କରିବାକୁ ଲାଗିଲେ । ଜୀବନ ସ୍ମୃତିରେ ସେ ନିଜ ପଢ଼ିବା ସମ୍ବନ୍ଧରେ ଲେଖିଛନ୍ତି—"ମୁଁ ବହୁତ ବହି ପଢ଼ିଛି । ମୋତେ ମନେ-ହେଉଥିଲା । ପ୍ରତ୍ୟେକ ବହି ଗୋଟିଏ ବାଲ୍‌ଟିଭର୍ତ୍ତି ପାଣି ଏବଂ ତା ଭିତରୁ ମୁଁ ମାତ୍ର କେଇଟୋପା ମୂଲ୍ୟବାନ୍ ସତ୍ୟ ପାଇପାରିଥିଲି । ଏହି ପାଇଥିବା ସତ୍ୟଗୁଡ଼ିକ ମୋ ନିଜର । ମାତ୍ର ପ୍ରଶ୍ନ ହେଉଛି ଏସବୁ ସତ୍ୟକୁ ଏକତ୍ର ରଖାଯିବ କିପରି ?"

ଖୋଲ୍‌ଖୋଲ୍ ଭାବରେ କହିବା ଏବଂ ଲେଖିବା ଥିଲା ତାଙ୍କର ନିଜସ୍ୱଶୈଳୀ । ସେ କହୁଥିଲେ, "ମୁଁ ପିଲାମାନଙ୍କ ଶିକ୍ଷାଦାନ ଉପରେ ଆଧୁନିକ ପ୍ରବକ୍ତାମାନଙ୍କର ବହି ପଢ଼ିଲି । ଏସବୁ କେତେ ବାଜେ ଲେଖା ! ଲେଖାଗୁଡ଼ିକ ପିଲାଙ୍କ ପାଇଁ ନୁହେଁ, ବୟସ୍କମାନଙ୍କ ପାଇଁ ।" ଷାଠିଏ ବର୍ଷ ବୟସରେ ଲେଖିଥିବା ଚିଠିମାନଙ୍କରେ ସେ ଏସବୁ ମତାମତ ଲେଖିଥିଲେ । କେତେଗୁଡ଼ିଏ ବହିକୁ କୋର୍ଯାକ ବହୁତ ଭଲ ପାଉ-ଥିଲେ । ଆଉ କେତେକ ବହିକୁ ସେ ସାରା ଜୀବନ ବିଦ୍ରୂପକରି ଉଡ଼ାଇ ଦେଉଥିଲେ । ପୋଲାଣ୍ଡର କବି ଆଙ୍କ୍ ଜିକଙ୍କ—କବିତା "ଡ୍ୟାର୍ ଡ୍ୟାସ୍କ" କୋର୍ଯାକଙ୍କୁ ପିଲାଦିନ ଠାରୁ ଆରମ୍ଭକରି ମୃତ୍ୟୁ ପର୍ଯ୍ୟନ୍ତ ଭଲ ଲାଗୁଥିଲା ।

ଇହୁଦୀ ବସ୍ତି (ଘେଟୋ)ରୁ ସେ ଲେଖିଥିଲେ "୫୦ ବର୍ଷରୁ ମୁଁ ଏହି କବିତାଟିକୁ ଆବିଷ୍କାର କରିଥିଲି । ସଂକୀର୍ଣ୍ଣ, ପ୍ରଶସ୍ତ, ମର୍ଯ୍ୟଣ, କଣ୍ଟକିତ ଓ ଆରାମଦାୟକ ଆଦି ସବୁପ୍ରକାର ରାସ୍ତାରେ ଏହି କବିତାଟି ମୋର ସାଥୀ ହୋଇ ରହିଛି । ୧୯୩୯ ମସିହା ପୂର୍ବରୁ ସେ ଦେଇଥିବା ରେଡ଼ିଓ ଭାଷଣରେ ଏହି କଥାଟିକୁ ଉଚ୍ଚାର କରି କହିଥିଲେ । ତାଙ୍କର "ମଜାଳିଆ ଶିକ୍ଷାଦାନ" (Paedegogy of Humerous) ବହିରେ

ସେ ପୁରା କବିତାଟିକୁ ଛପାଇବା ପାଇଁ ଜୋର୍ ଦେଉଥିଲେ । ସେ କହୁଥିଲେ, ଏହାଦ୍ୱାରା ଏ କବିତାଟି ଆଗକୁ ଆସୁଥିବା ଗୁରୁତ୍ୱପୂର୍ଣ୍ଣ ୫୦ ବର୍ଷ ପର୍ଯ୍ୟନ୍ତ ମଧ୍ୟ ଜୀବନ୍ତ ହୋଇପାରିବ ।

ସେ କେତେଗୁଡ଼ିଏ କବିତାକୁ ଯେପରି ଅତି ଭଲପାଉଥିଲେ ସେହିପରି ଆଉ କେତେଗୁଡ଼ିଏ କବିତାକୁ ଅତି ଘୃଣା କରୁଥିଲେ । ନଡ଼ିସେଙ୍କର "ଦସ୍ ଷ୍ଟେକ୍ ଜାରାଥୁଷ୍ଟ୍ରା" ବହିଟି ତାଙ୍କୁ ଆଦୌ ଭଲ ଲାଗୁନଥିଲା । ଏହା ଏକ ପ୍ରବଞ୍ଚନା ତଥା ଜଣେ ମିଥ୍ୟା ଭବିଷ୍ୟଦ୍ରଷ୍ଟାଙ୍କ ବହିବୋଲି ସେ କହୁଥିଲେ ।

ବର୍ଣ୍ଣେଟଙ୍କ "ଜୀବନ୍ତ ପଥର" ବହିଟି ସମ୍ବନ୍ଧରେ ବର୍ଣ୍ଣନାକରି ସେ କହୁଥିଲେ, ମୋତେ ମନେହେଉଥିଲା, ବହିଟି ଭିତରେ ସବୁବେଳେ ମାଡ଼ପିଟ୍ ଚାଲିଛି । ସତେ-ଯେପରି ମୋ ମୁହଁକୁ କିଏ ଚମୁଟି ଛୁଣ୍ଡାଇ ଦେଉଛି । କିନ୍ତୁ ଶେଷରେ ମୋତେ ବହିଟି ମଜା ଲାଗୁଥିଲା । ପ୍ରାଉସ୍ତଙ୍କ ବହି ତାଙ୍କୁ ଭଲ ଲାଗୁନଥିଲା । ସେ ପ୍ରାଉସ୍ତଙ୍କ ଲେଖା ଉପରେ ମତଦେଇ କହୁଥିଲେ, "ଏହା ଏକ ଦୁର୍ବଳ ଅନୁଭୂତି ।"

ଭଲ ହେଉ କି ମନ୍ଦ ହେଉ, ସବୁ ଲେଖା ଭିତରକୁ କୋର୍ଚ୍ଚାକ ପଶିଯାଉଥିଲେ ଏବଂ ସେଥିରୁ ସହଜରେ ବାହାରି ଆସିପାରୁନଥିଲେ । ୧୯୩୯ ମସିହାରେ ପୋଲଣ୍ଡର ଲେକ୍ ଜିଲ୍ଲାରେ ଥିଲାବେଳେ କୋର୍ଚ୍ଚାକ ଅସୁସ୍ଥ ହୋଇପଡ଼ିଥିଲେ । ଏଥିପାଇଁ ସେଠାରେ ମାସେକାଳ ବିଶ୍ରାମ ନେବାକୁ ପଡ଼ିଲା । ତାପରେ ସେ ତାଙ୍କ ଅନୁଷ୍ଠାନର ଗୋଲ୍କାଓ୍ୱେକ୍ ଫାର୍ମରେ ଆଉ ମାସେ କାଳ ରହିଲେ । ଏତେଦିନ ଧରି ସେ କୌଣସି ବହି ବା ସମ୍ବାଦପତ୍ର ସହ ସମ୍ପର୍କ ରଖିପାରିଲେ ନାହିଁ । ତେଣୁ ତାଙ୍କୁ ବହୁତ ଅଡ଼ୁଆ ଲାଗୁଥିଲା । ସେହି ବର୍ଷ ଅଗଷ୍ଟ ମାସରେ ସେ ତାଙ୍କର ଜଣେ ଯୁବବନ୍ଧୁଙ୍କ ପାଖକୁ ଚିଠିରେ ଲେଖିଥିଲେ, ଏତେଗୁଡ଼ିଏ ସପ୍ତାହଧରି ମୁଁ ଗୋଟିଏ ହେଲେ ବହି ଧରିପାରିଲି ନାହିଁ । କୌଣସି ସମ୍ବାଦପତ୍ର ବି ପଢ଼ିପାରିଲି ନାହିଁ । ତେଣୁ ସମ୍ପୂର୍ଣ୍ଣ ଆରୋଗ୍ୟ ଲାଭ କଲାପରେ ବି ମୋତେ ଅଫିମ ନିଶା ଘାରୁଥିଲା ଭଳି ଅନୁଭବ କରୁଛି ।

କୋର୍ଚ୍ଚାକଙ୍କ ଲେଖାଗୁଡ଼ିକ ମୁଖ୍ୟତଃ ପିଲାଙ୍କ ପାଇଁ ଉଦ୍ଦିଷ୍ଟ ଥିଲା । ସେ ଚାହୁଁଥିଲେ, ତାଙ୍କ ଲେଖା ମାଧ୍ୟମରେ ସେ ପିଲାମାନଙ୍କୁ ସୁନ୍ଦର କରି ଗଢ଼ିତୋଳିବେ । ତା'ଛଡ଼ା ଏଭଳି ଲେଖିବା ପାଇଁ ତାଙ୍କ ଭିତରେ ଏକ ଅନ୍ତର୍ନିହିତ ଜିଦ୍ ବି ଥିଲା । ବାସ୍ତବିକ୍ କୋର୍ଚ୍ଚାକ ଥିଲେ ଜଣେ ସୃଜନଶୀଳ ଲେଖକ । ସାହିତ୍ୟ ସୃଷ୍ଟିପାଇଁ ସେ ବିଭିନ୍ନ ନୂଆ ନୂଆ ମତାମତ ଆଦି ସଂଗ୍ରହ କରୁଥିଲେ । ତାପରେ ସେ ଯୋଜନା କରୁଥିଲେ ଏବଂ ବହି ଲେଖା ଆରମ୍ଭ କରୁଥିଲେ । ତାଙ୍କ ସ୍ୱପ୍ନ ଏବଂ ଅଭିଳାଷର କାର୍ଯ୍ୟକ୍ରମ ଭିତରେ ସାହିତ୍ୟ ମୁଖ୍ୟ ଭୂମିକା ଗ୍ରହଣ କରିଥିଲା । ମାତ୍ର ଦୈନନ୍ଦିନ ଜୀବନ ଭିତରେ

ସେ ବେଳେବେଳେ ଅନ୍ୟ କାର୍ଯ୍ୟରେ ଲିପ୍ତ ରହୁଥିଲେ । ତେଣୁ ତାଙ୍କ ସୃଜନାତ୍ମକ ମନଟି ଭାଙ୍ଗିପଡ଼ୁଥିଲା ।

ପୋଲାଣ୍ଡରେ "ସାହିତ୍ୟ ସମ୍ବାଦ" ନାମରେ ଏକ ପତ୍ରିକା ପ୍ରକାଶ ପାଉଥିଲା । ପତ୍ରିକା ତରଫରୁ କୋର୍ଯାକଙ୍କୁ ଏକ ଲେଖା ପ୍ରଦାନ କରିବାପାଇଁ ଅନୁରୋଧ କରାଯାଇଥିଲା । ମାତ୍ର କୋର୍ଯାକ୍ ଏକ ନିରାଶଜନକ ଚିଠି ଲେଖି ପଠାଇଥିଲେ । ଚିଠିରେ ଲେଖାଥିଲା, "ବେଳେବେଳେ ବହୁତ କିଛି କହିବାକୁ ଅଛି ବୋଲି ମନେହୁଏ; ମାତ୍ର ଏହା କହିବା ପାଇଁ ସମୟ ମିଳେନା ବା କହିଲାବେଳକୁ ଅନେକ ଡେରି ହୋଇଯାଏ ।

କୋର୍ଯାକ୍ କେତେଗୁଡ଼ିଏ ବହି ଲେଖିବା ପାଇଁ ଯୋଜନା କରିଥିଲେ । ମାତ୍ର ବହୁତ କମ୍ ବହି ଲେଖିପାରିଥିଲେ । ୧୯୩୦ ମସିହାରେ ସେ ନିମ୍ନଲିଖିତ ବହିଗୁଡ଼ିକ ପ୍ରକାଶ ଅପେକ୍ଷାରେ ବୋଲି ଜଣାଇ ଦେଇଥିଲେ ଯଥା—

(୧) ପାଗଳମାନଙ୍କର ପରିଷଦ
(୨) ଅଜା ନାତି
(୩) ବନସ୍ତ୍ରୀମାନଙ୍କର ଉପନ୍ୟାସ
(୪) ଜୀବନ ସହି ସହିମତି
(୫) ଯାଦୁକର କାଜିତସ୍
(୬) ପିଲାଙ୍କ ସମାଜ
(୭) ଜୀବନର ନୀତି—ସ୍ୱାସ୍ଥ୍ୟରକ୍ଷା
(୮) ସାହିତ୍ୟ ସମ୍ବାଦ ପାଇଁ ପ୍ରବନ୍ଧ

ଏତେଗୁଡ଼ିଏ ତାଲିକା ଭିତରୁ ମାତ୍ର ଦୁଇଟି ଲେଖା ପୁସ୍ତକ ଆକାରରେ ପ୍ରକାଶ ଲାଭ କରିଥିଲେ । ସେ ଦୁଇଟି ହେଲା, "ପାଗଳମାନଙ୍କର ପରିଷଦ" ଏବଂ "ଯାଦୁକର କାଜିତସ୍" । ଅନ୍ୟ ବହିଗୁଡ଼ିକୁ ସମ୍ପୂର୍ଣ୍ଣ କରିନପାରିବାର କାରଣ ଅତ୍ୟନ୍ତ ସୁସ୍ପଷ୍ଟ । ତାଙ୍କର ଦୈନନ୍ଦିନ ଜୀବନ ଅତ୍ୟନ୍ତ ବ୍ୟସ୍ତ ଥିଲା । ୨୪ ଘଣ୍ଟାରୁ ସାମାନ୍ୟ ଟିକିଏ ସମୟ ବାହାର କରିବା ତାଙ୍କ ପକ୍ଷରେ କଷ୍ଟକର ଥିଲା । ପୁନଶ୍ଚ ଯେଉଁ ସବୁ କାମ ସେ ହାତକୁ ନେଇଥିଲେ, ସବୁଗୁଡ଼ିକ ପ୍ରତି ସେ ସମର୍ପିତ ଥିଲେ । ସକାଳ ଓ ସଞ୍ଜ ବେଳେ ଯାହା ଟିକିଏ ସମୟ ସେ ବାହାର କରୁଥିଲେ । ଏହି ସମୟକୁ ସେ ଉଭୟ ପଢ଼ିବା ଓ ଲେଖିବା ପାଇଁ ଉପଯୋଗ କରୁଥିଲେ । ପୁଣି ଏପରି ଦିନସବୁ ଥିଲା, ଯେଉଁ ଦିନଗୁଡ଼ିକରେ ସେ ଆଦୌ ସମୟ ଟିକିଏ ବାହାର କରିପାରୁ ନଥିଲେ । ଏସବୁ ବ୍ୟତୀତ ତାଙ୍କ ରହିବା ପରିବେଶଟି ଲେଖାଲେଖି ପାଇଁ ଅନୁକୂଳ ନଥିଲା । ଅନାଥାଶ୍ରମଟିଏ କିପରି ବା ଲେଖାପଢ଼ା ପାଇଁ ଉପଯୁକ୍ତ ପରିବେଶଟିଏ

ଯୋଗାଇପାରିବ । ତେଣୁ ଯେତେବେଳେ ସେ ଲେଖାଲେଖି କାମ କରନ୍ତି, ସେତେବେଳେ ଭଉଣୀଙ୍କ ଫ୍ଲାଟ୍‌ରେ କରନ୍ତି ।

କୋର୍ଜାକ ତାଙ୍କ ସମୟର ଲେଖାଲେଖି ସହ ସମ୍ପର୍କ ରଖିପାରୁନଥିଲେ । ତେଣୁ ଲେଖାଲେଖିରେ ସେ ଯୁଗୋପଯୋଗୀ ହୋଇପାରୁଥିଲେ । ସାହିତ୍ୟ ସମାଲୋଚକ-ମାନେ ତାଙ୍କ ଲେଖାଗୁଡ଼ିକର ବିଷୟବସ୍ତୁ ତଥା ଉଦ୍ଦେଶ୍ୟକୁ ବୁଝିନପାରି ପସନ୍ଦ କରୁନଥିଲେ । କୋର୍ଜାକ ଦୁଃଖପ୍ରକାଶ କରି କହୁଥିଲେ ଯେ ଯେଉଁ ଲେଖାଗୁଡ଼ିକୁ ସେ ପିଲାଙ୍କ ସକାଶେ ଲେଖିଥିଲେ ଏବଂ ପିଲାଙ୍କ ନିକଟରେ ସେସବୁକୁ ସମର୍ପିତ କରିଥିଲେ, ସେଗୁଡ଼ିକୁ ବି ସମାଲୋଚକମାନେ ହୃଦୟଙ୍ଗମ କରୁନଥିଲେ କିମ୍ବା ଆଦର କରୁନଥିଲେ ।

ତେଣୁ ସେ ଏକାକୀ ନିଜ ସାହିତ୍ୟ ପଥର ପଥିକ ସାଜିଲେ । କୌଣସି ଏକ ନିର୍ଦ୍ଦିଷ୍ଟ ଦଳରେ ସେ ଅନ୍ତର୍ଭୁକ୍ତ ହୋଇ ରହିଲେ ନାହିଁ । ବୋଧହୁଏ ସମୟର ଅଭାବଯୋଗୁଁ ସେ ନୂତନ ରଚନାଧାରା ସହ ସମ୍ପର୍କ ରକ୍ଷା କରିପାରୁନଥିଲେ । ସେ ଅନ୍ୟ କାହାକୁ ଅନୁସରଣ ନକରି ନିଜସ୍ୱ ଶୈଳୀରେ ସାହିତ୍ୟ ସୃଷ୍ଟି କରିଚାଲିଲେ । ତାଙ୍କ ପ୍ରକାଶନଗୁଡ଼ିକ, ପୋଲାଣ୍ଡୀୟ ସାହିତ୍ୟ ଜଗତରେ ଏକ ନୂତନ ଦିଗନ୍ତ ସୃଷ୍ଟିକଲା । ତାଙ୍କର ପ୍ରକାଶନ ଭିତରୁ କେତୋଟିର ଦୃଷ୍ଟାନ୍ତ ଦେଲେ ସହଜରେ ବୁଝିହେବ । ଦୁଇ ବର୍ଷର ଶିଶୁଙ୍କ ଉଦ୍ଦେଶ୍ୟରେ ସେ ଗୋଟିଏ ପୁସ୍ତିକା ରଚନା କରିଥିଲେ । ଏହି ପୁସ୍ତିକାରେ ପିଲାଙ୍କୁ ଖେଳ କରିବା ପାଇଁ କେତେଗୁଡ଼ିଏ ପୁରୁଣା-କାଳିଆ ସରଳ, ସୁଶ୍ରାବ୍ୟ ନାନାବାୟା ଗୀତ ଲେଖାଯାଇଥିଲା । ଏହା ଥିଲା ପୁରାପୁରି ଏକ ନୂତନ ସୃଷ୍ଟି । "ଈଶ୍ୱରଙ୍କ ସହ ଏକୁଟିଆ" ନାମକ ଗ୍ରନ୍ଥରେ ସେ କେତେଗୁଡ଼ିଏ ନିଜସ୍ୱ ପ୍ରାର୍ଥନାକୁ ଏକତ୍ର ସଙ୍କଳନ କରିଥିଲେ ଏବଂ ବହିଟିକୁ ପିତାମାତାଙ୍କ ଉଦ୍ଦେଶ୍ୟରେ ଅର୍ପଣ କରିଥିଲେ । ପରେ ସେ "ବୁଢ଼ା ଡାକ୍ତରଙ୍କ ଗଳ୍ପଗୁଚ୍ଛ" ନାମକ ବହିଟିଏ ଲେଖିଥିଲେ । ଏହି ଗଳ୍ପଗୁଡ଼ିକ ଓ୍ୱାର୍ସୋ ରେଡ଼ିଓରେ ପ୍ରସାରିତ ହେବା ପାଇଁ ଲେଖାଥିଲା । ସବୁ ଗଳ୍ପରେ ଗୋଟିଏ ସମାନ ମର୍ମକୁ ଜଣେ ସହଜରେ ଚିହ୍ନଟ କରିପାରିବ । ଗଳ୍ପଗୁଡ଼ିକ ପାଲେଷ୍ଟାଇନ୍‌ର ପିଲାମାନଙ୍କ ଉଦ୍ଦେଶ୍ୟରେ ଲେଖାଯାଇଥିଲା ।

ବୟସ୍କ ପିଲାଙ୍କ ପାଇଁ ମଧ୍ୟ ସେ ସରଳ ପୁସ୍ତକମାନ ଲେଖିବାକୁ ଚେଷ୍ଟା କରିଥିଲେ । ନିତିଦିନିଆ ଜୀବନକୁ ଆଧାର କରି ସେ ବଡ଼ ମଜାଳିଆ ଢଙ୍ଗରେ ବହିଗୁଡ଼ିକୁ ଲେଖିଥିଲେ । ଅନୁଚ୍ଛେଦଗୁଡ଼ିକୁ ବହୁତ ସୁନ୍ଦର ଭାବରେ ବର୍ଣ୍ଣନା କରୁଥିଲେ । ପିଲାଙ୍କ ଭିତରେ ଜାଗ୍ରତ ହେଉଥିବା ଅଦ୍ଭୁତ ପରିକଳ୍ପନାଗୁଡ଼ିକ ଲେଖା ଭିତରେ ଅତି ଉତ୍ତମ ଭାବରେ ଫୁଟିଉଠୁଥିଲେ । ଏହିପରି ଭାବରେ ପାରମ୍ପରିକ

ଢାଞ୍ଚାରେ ଗପ ଲେଖିବା ବଦଳରେ ସେ ନୂଆ ଶୈଳୀରେ ଗପ ଲେଖିବାର ପରୀକ୍ଷାମାନ କରୁଥିଲେ । ଶବ୍ଦ, ଶବ୍ଦଖଣ୍ଡ, ବାକ୍ୟାଂଶ ଆଦିକୁ ବାରମ୍ବାର ଦୋହରାଇ ଏକ କାଳ୍ପନିକ ଛନ୍ଦରେ ପକାଇ ସେ ଗପ ଲେଖୁଥିଲେ । ଗଳ୍ପର ବିଷୟବସ୍ତୁ ପିଲାଙ୍କ ମସ୍ତିଷ୍କରେ ଅତି ସହଜରେ ପ୍ରବେଶ ହୋଇଯାଉଥିଲା । ପିଲାମାନେ ବିରକ୍ତ ନହୋଇ ଗପଗୁଡ଼ିକୁ ଅତି ଆଗ୍ରହ ସହକାରେ ଶୁଣୁଥିଲେ ଏବଂ ପଢ଼ୁଥିଲେ । ଏହି ଉପାୟରେ କୋର୍ଚ୍ଚାକ ନିରସିଆ ବିଷୟବସ୍ତୁକୁ ଗପ ଆକାରରେ ଉପସ୍ଥାପନ କରି ପିଲାଙ୍କ ନିକଟରେ ଆଦୃତ କରାଇପାରୁଥିଲେ ।

ଗପଗୁଡ଼ିକୁ ଦୋହରାଇ ପଢ଼ିବା ଉପରେ କୋର୍ଚ୍ଚାକ ଅତି ଭାବରେ ବିଶ୍ୱାସ କରୁଥିଲେ ଏବଂ ଏଥିପ୍ରତି ଯଥେଷ୍ଟ ଗୁରୁତ୍ୱ ଆରୋପ କରୁଥିଲେ । ଏହି ବିଶ୍ୱାସ ନେଇ ସେ ଅନାଥାଶ୍ରମରେ ପିଲାମାନଙ୍କ ପଞ୍ଚତନ୍ତ୍ରର କାହାଣୀଗୁଡ଼ିକୁ ବାରମ୍ବାର କହୁଥିଲେ । ବୃଦ୍ଧ ଆଣ୍ଟିମାନଙ୍କୁ ସେ ଏଥିପାଇଁ ଖୁବ ପ୍ରଶଂସା କରୁଥିଲେ ।

କୋର୍ଚ୍ଚାକଙ୍କର ଆଉ ଏକ ବହି "ଜିଦ୍‌ଖୋର ବାଳକ" ବଡ଼ ପିଲାଙ୍କ ଉଦ୍ଦେଶ୍ୟରେ ଲେଖାହୋଇଥିଲା । ଏହା କୋର୍ଚ୍ଚାକଙ୍କ ସାହିତ୍ୟ ସୃଷ୍ଟିରେ ଆଉ ଏକ ପରୀକ୍ଷା ।

ପିଲାଙ୍କ ମନକୁ ଅଭିବ୍ୟକ୍ତ କରୁଥିବା ଲେଖା ବ୍ୟତୀତ ଅତୀନ୍ଦ୍ରିୟ ସ୍ତରର ଲେଖା ଲେଖିବାପାଇଁ ମଧ୍ୟ ସେ ନିଜର ଜ୍ଞାନ ଓ ବୁଦ୍ଧିକୁ ପ୍ରୟୋଗ କରୁଥିଲେ । ଏସବୁ ଲେଖାରେ ଉଭୟ କାଳ୍ପନିକ ଏବଂ ବାସ୍ତବତାର ଦିଗଗୁଡ଼ିକ ଅତି ଆଶ୍ଚର୍ଯ୍ୟଜନକ ଭାବରେ ସମନ୍ୱିତ ହେଉଥିଲା । "ଯାଦୁକର କାଜିତସ୍" ବହିଟି ଏହାର ଏକ ଉତ୍ତମ ନମୁନା ଅଟେ । ଏହି ବହି ସମ୍ବନ୍ଧରେ ସେ ମତାମତ ଦେଇ ଲେଖିଛନ୍ତି, "ମୁଁ ଏହି କୌଶୋରୋଚିତ କ୍ଷୁଦ୍ର ଉପନ୍ୟାସଟି ଲେଖିବା ପୂର୍ବରୁ ପୁଅମାନଙ୍କ ସହ ଯାଦୁ ଏବଂ ଗୁଣି ବିଦ୍ୟା ସମ୍ବନ୍ଧରେ ଏବଂ ଝିଅଙ୍କ ସହ ଭାଗ୍ୟ ବିଷୟକ ଭବିଷ୍ୟବାଣୀ ସମ୍ବନ୍ଧରେ ଆଲୋଚନା କରିଥିଲି । ତା'ପରେ ଯେତେବେଳେ ମୁଁ ବହିଟିର ଲେଖାଲେଖି ଆରମ୍ଭ କଲି, ପ୍ରତି ଅଧ୍ୟାୟକୁ ସେମାନଙ୍କୁ ପଢ଼ି ଶୁଣାଉଥିଲି । ସେମାନଙ୍କ ମତାମତ ଅନୁସାରେ ପୁଣି ଅଧ୍ୟାୟଟିକୁ ପରିବର୍ତ୍ତନ କରି ସଜାଡ଼ି ଦେଉଥିଲି । ମୁଁ ଚାହୁଁଥିଲି, ବହିଟି ଆଗ୍ରହୋଦ୍ଦୀପକ ହେଉ ଏବଂ ସମସ୍ତେ ପଢ଼ି ବହିଟିକୁ ସହଜରେ ବୁଝିପାରନ୍ତୁ ।"

ପିଲାଙ୍କ ସହ ଆଲୋଚନା, କଥାବାର୍ତ୍ତା, ଯୁକ୍ତିତର୍କ ଆଦି ଦ୍ୱାରା କୋର୍ଚ୍ଚାକଙ୍କର କଳାତ୍ମକ ଜ୍ଞାନ ବିକାଶର ନୂତନ ଗବାକ୍ଷ ଖୋଲିଥିଲା । ପାଲେଷ୍ଟାଇନ୍ ଅଭିଯାତ୍ରା ତାଙ୍କପାଇଁ ନୂତନ ସମ୍ଭାବନାମାନ ଉନ୍ମୋଚିତ କରିଦେଲା । ପାଲେଷ୍ଟାଇନ୍‌ର ଜୀବନ-ଯାପନ ପ୍ରଣାଳୀରୁ ସେ ଅନେକ ନୂତନ ଉତ୍ସାହ ଲାଭକଲେ ଏବଂ ଲେଖାଲେଖିପାଇଁ ନୂଆ ଲକ୍ଷ୍ୟ ଓ ଉଦ୍ଦେଶ୍ୟ ଖୋଜି ପାଇପାରିଲେ । ଇହୁଦୀମାନଙ୍କର ରାଜନୈତିକ

ଆନ୍ଦୋଳନର କରୁଣ୍ୟ ଏବଂ ଜତ୍ସୋଚ୍ଛାସରୁ ସେ ଅନେକ ପ୍ରେରଣା ଲାଭକଲେ । ଯେଉଁ ପାଲେଷ୍ଟାଇନ୍‌ରେ ବାଇବେଲର ମୂଳତତ୍ତ୍ୱ ଆରମ୍ଭ ହୋଇଥିଲା, ସେଇ ପାଲେଷ୍ଟାଇନ୍‌ରେ ବାଇବେଲ୍ ପଢ଼ି ସେ ସେଥିରୁ ଯଥେଷ୍ଟ ମାନସିକ ଶକ୍ତି ଲାଭକଲେ । ତାଙ୍କ ଉପରେ ଏ ସବୁର ଏତେ ପ୍ରଭାବ ପଡ଼ିଲା ଯେ ଲେଖିବା ପାଇଁ ତାଙ୍କ ଭିତରେ ବହୁତ ଜିଦ୍ ଓ ଉତ୍ସାହ ସୃଷ୍ଟି ହେଉଥିଲା ଏବଂ ସେ ଏଥିପାଇଁ ଶୋଇପାରୁ ନଥିଲେ ।

କୋର୍ଯାକ୍ ଚାହୁଁଥିଲେ, ବାଇବେଲର ପରମ୍ପରା ସହ ସେ ତାଙ୍କ ନୂତନ ଜୀବନ ଓ କାର୍ଯ୍ୟଧାରାକୁ ମିଶାଇଦେବେ । ମୋଜେସ୍‌ଙ୍କ ପିଲାଦିନର ସ୍ୱରସହ ମିଳାଇ ଗୀତସ୍ୱର ଏବଂ ଛନ୍ଦପଦକୁ ଯୋଡ଼ି ସଙ୍ଗୀତର ନୂତନ ରୂପ ଦେବାପାଇଁ ସେ ଚନ୍ତାକରୁଥିଲେ । ବାଇବେଲ ଓଡ଼େଶୀ, ଓମର ଖୟାମଙ୍କ ରୁବାୟତ ଏବଂ ବ୍ରାଜିଲ୍‌ରେ ମିଷ୍ଟର ବାଲସର ନାମକ ଏକ ବହି ଯେଉଁଥିରେ ନୂତନ ଶତାବ୍ଦୀର ଆରମ୍ଭବେଳେ ପୋଲାଣ୍ଡର ଚାଷୀମାନେ ବ୍ରାଜିଲକୁ ଚାଲିଯାଉଥିବା ବିଷୟରେ ଲେଖାଯାଇଛି ଆଦି ବହିଗୁଡ଼ିକୁ ଅଧ୍ୟୟନ କରିଥିଲେ । ଏସବୁ ବହିକୁ ସେ ଏକାନିଃଶ୍ୱାସକେ ପଢ଼ି ଶେଷ କରି ଦେଉଥିଲେ ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହେବାର ମାତ୍ର ମାସକ ଆଗରୁ କୋର୍ଯାକ୍ ଜଣେ ବନ୍ଧୁଙ୍କ ପାଖକୁ ଚିଠିଟିଏ ଲେଖିଥିଲେ । ଚିଠିରେ ସେ ପାଲେଷ୍ଟାଇନକୁ ଆଧାରକରି ଏକ ଉପନ୍ୟାସ ଲେଖିବା ବିଷୟରେ ଉଲ୍ଲେଖ କରିଥିଲେ । ସେ ବଢ଼େଇକରି ଏ ବିଷୟରେ ଲେଖିଥିଲେ ଯେ—"ଏହି ଯୋଜନାଟି ଏକ ନୂଆ ବାଇବେଲ ରଚନାଠାରୁ କୌଣସି ଗୁଣରେ ଊଣା ନୁହେଁ ।" ଯଦିଓ ତାଙ୍କର ମନ୍ତବ୍ୟଟି ହାଲୁକା ଥିଲା ତଥାପି ତାଙ୍କ ଭିତରେ ଏହି କାମଟି ପାଇଁ ପ୍ରବଳ ଉତ୍ସାହ ଜାଗ୍ରତ ହେଉଥିଲା ।

କୋର୍ଯାକ୍ ବାର୍ଦ୍ଧକ୍ୟରେ ଉପନୀତ ଏବଂ ସେ ଭଲଭାବରେ ଅନୁଭବ କରୁଥିଲେ ଯେ ଆଉ ଅଳ୍ପ କେତୋଟି ବର୍ଷ ଭିତରେ ସଂଗୀତ ମୃତ୍ୟୁର କରାଳ ଛାୟା ଘନେଇ ଆସିବ । କାରଣ ସେତେବେଳେ ସାରା ୟୁରୋପ ତଥା ପୃଥିବୀର ଅନ୍ୟତ୍ର ମଧ୍ୟ ଏହାର ଆଭାସ ପରିପ୍ରକାଶ ହେଉଥିଲା । ଯୁବକବେଳେ ସେ ଜଣେ ସାହିତ୍ୟର ଲେଖକ ବୋଲି ଦାବି କରିବାକୁ ମନାକରିଦେଇଥିଲେ । ଏହା ସତ୍ତ୍ୱେ ସାଂପ୍ରତିକ ପରିସ୍ଥିତିକୁ ପ୍ରଭାବିତ କରିବାପାଇଁ ସେ ସାହିତ୍ୟକୁ ଅସ୍ତ୍ର ଭାବରେ ବ୍ୟବହାର କରିବାକୁ ବିଚାର କଲେ ।

ସଂକ୍ଷିପ୍ତ ଆଭାସ ଭିତରେ ଅନେକ କିଛିକୁ ଅଭିବ୍ୟକ୍ତ କରିବାର ଆଶା ଓ ଆକାଙ୍କ୍ଷା ପୋଷଣ କରି କୋର୍ଯାକ୍ ନିଜର ସୃଜନୀଶକ୍ତିକୁ ବେଶିଦିନ ବଜାୟ ରଖିପାରିଲେ ନାହିଁ । ଶବ୍ଦ ଓ ବାକ୍ୟ ମାଧ୍ୟମରେ ବର୍ଣ୍ଣନାମୂଳକ ସାହିତ୍ୟ ରଚନା କରି ଜୀବନକୁ ପରିପ୍ରକାଶ କରିହେବ ବୋଲି ସେ ହଠାତ୍ ହୃଦୟଙ୍ଗମ କଲେ । ମାତ୍ର ଏହି

କଷ୍ଟକର କାମଟି ପାଇଁ ତାଙ୍କ ପାଖରେ ଆଉ ବଳ ନଥିଲା । ବୋଧହୁଏ କୋର୍ଯାକ୍ ଯେଉଁ ଅତିମାନବୀୟ ଆଶା ନେଇ କାର୍ଯ୍ୟରେ ଆଗେଇବାପାଇଁ ଅଭିଳାଷ ରଖିଥିଲେ, ତାହା ମାନବୀୟ କ୍ଷମତା ବାହାରେ ଥିଲା ।

ଏହି କାମଟିକୁ ସମ୍ପାଦନା କରିବା ଆଶାରେ କୋର୍ଯାକ୍ ଅତି ବିକଳ ଭାବରେ ଅଧିକ ଦିନ ବଞ୍ଚିବାପାଇଁ ଇଚ୍ଛା କରୁଥିଲେ । ସେ କହୁଥିଲେ ପ୍ରତିଟି ଘଣ୍ଟା ହେଉଛି ଏକ ମୋଟା ବହି । ଦିନଟିକୁ ବୁଝିବାକୁ ହେଲେ ତୁମକୁ ଦିନଟିକୁ ଅଧ୍ୟୟନ କରିବାକୁ ହେବ । ତୁମେ ବୃଦ୍ଧିକାହିଁ ଯେ ଦିନପରେ ଦିନ, ସପ୍ତାହ ପରେ ସପ୍ତାହ ଏବଂ ବର୍ଷ ପରେ ବର୍ଷ ତୁମେ ଏକ ଭଗ୍ନ ଓ ଅସଜଡ଼ା ଜୀବନ ବଞ୍ଚିବ । ତୁମେ ଚାହିଁ ତୁମ ଜୀବନ ଦୀର୍ଘ ହେଉ । କିନ୍ତୁ, କାଳ ତ ମଣିଷର ଇଚ୍ଛାନୁସାରେ ପରିଚାଳିତ ହେବନାହିଁ ବା ସେଥିପାଇଁ ଅପେକ୍ଷା କରିପାରିବ ନାହିଁ । ବୟସ ଗଡ଼ିଯିବା ସଙ୍ଗେ ସଙ୍ଗେ କୋର୍ଯାକ୍ଙ୍କ ବଦନରେ ବିଷାଦର ଚିହ୍ନ ଉଙ୍କି ମାରୁଥିଲା । "ଅନେକ କାମ ବାକି ରହିଯାଇଛି"— ଏହା ତାଙ୍କୁ ମାଡ଼ିବସିଲା ପରି ଲାଗୁଥିଲା । ସେ କହୁଥିଲେ, "ଦିନଟିକୁ ସଂପୂର୍ଣ୍ଣଭାବରେ ବଞ୍ଚିବା ଗୋଟିଏ ବହି ଲେଖିବାଠାରୁ ଅଧିକ କଷ୍ଟକର ବ୍ୟାପାର ଅଟେ ।

## (୬୦) ସମ୍ପାଦକର ଭୂମିକାରେ

କୋର୍ଯାକ୍ ସବୁକଥାରେ ପିଲାଙ୍କୁ ଆଗରେ ରଖୁଥିଲେ । ସ୍କୁଲର "ଗାଜେଟ୍" ବିଷୟରେ ମନ୍ତବ୍ୟ ଦେଇ ସେ କହିଥିଲେ, "ମୋର ଦୃଢ଼ ବିଶ୍ୱାସ ଯେ ପିଲା ତଥା ଯୁବକମାନଙ୍କ ପାଇଁ ଏକ ପତ୍ରିକା କିମ୍ବା ଗୋଟିଏ ଦୈନିକ ସମ୍ବାଦପତ୍ରର ଆବଶ୍ୟକତା ରହିଛି । ଏହି ପତ୍ରପତ୍ରିକାଗୁଡ଼ିକ ପିଲାମାନଙ୍କ ଦ୍ୱାରା ପରିଚାଳିତ ହେବା ଆବଶ୍ୟକ ଏବଂ ଏଥିରେ ମୁଖ୍ୟତଃ ପିଲାଙ୍କ ପାଇଁ ଯାହା ଗୁରୁତ୍ୱପୂର୍ଣ୍ଣ ସେ ବିଷୟରେ ଲେଖାହେବା ଆବଶ୍ୟକ ।

୧୯୨୧ ମସିହାରେ କୋର୍ଯାକ୍ ଏ କଥା କହିଥିଲେ; ମାତ୍ର ଏହା ଫଳବତୀ ହୋଇପାରିନଥିଲା । କୋର୍ଯାକ୍ ତାଙ୍କ ଅନାଥାଶ୍ରମଗୁଡ଼ିକରେ ଏ କଥାଟିକୁ ବହୁତ ଆଗରୁ ବାସ୍ତବତାରେ ପରିଣତ କରିସାରିଥିଲେ । ୯୨—କ୍ରୋଚ୍‌ମାଲ୍‌ନା ଷ୍ଟ୍ରିଟ୍, କଭ୍‌ର ବୋଗଟ୍ ଷ୍ଟ୍ରିଟ୍‌ରେ ଥିବା ଅନାଥାଶ୍ରମଗୁଡ଼ିକରେ ସାପ୍ତାହିକ "ଗାଜେଟ୍" ଏକ ମୁଖ୍ୟ ଘଟଣା ଥିଲା । ପରେ ବିଲାନିରେ ଥିବା ଅନାଥାଶ୍ରମରେ ମଧ୍ୟ ଏକ ସାପ୍ତାହିକ ଗାଜେଟ୍ ପ୍ରକାଶ ପାଇଥିଲା । ପିଲାମାନେ ଅତି ଉତ୍ସାହର ସହ ଲେଖା ଦେଉଥିଲେ । ଲେଖାଗୁଡ଼ିକୁ ସମସ୍ତଙ୍କୁ ବସାଇ ପଢ଼ାଯାଉଥିଲା । ଏହା ପିଲାଙ୍କ ଭିତରେ

ବହୁତ ଆନନ୍ଦ ଓ ଉତ୍ସାହ ଭରଦେଉଥିଲା । ସେମାନେ ମଧ୍ୟ ଶିକ୍ଷକଙ୍କର ଗଭୀର ପର୍ଯ୍ୟବେକ୍ଷଣ ପାଇଁ ଯଥେଷ୍ଟ ସୁଯୋଗ ଦେଉଥିଲେ ।

ଗ୍ରୀଷ୍ମାବକାଶଗୁଡ଼ିକ ବ୍ୟତୀତ ପ୍ରାୟ ତିରିଶ ବର୍ଷ କାଳ କୋର୍ଯାକ୍ ପ୍ରତି ସପ୍ତାହରେ ଗାଜେଟ୍‌ରେ ସମ୍ପାଦକୀୟ ଲେଖୁଥିଲେ । ଗାଜେଟ୍‌ରେ କୋର୍ଯାକଙ୍କର ଲେଖାହିଁ କେବଳ ବୟସ୍କଙ୍କ ତରଫରୁ ସ୍ଥାନ ପାଉଥିଲା । ଅନ୍ୟସବୁ ଲେଖାଗୁଡ଼ିକ ପିଲାମାନଙ୍କ ଦ୍ୱାରା ଲେଖାଯାଉଥିଲା । ସେ ଏକଥା ଭଲଭାବରେ ହୃଦୟଙ୍ଗମ କରିଥିଲେ ଯେ ପିଲାଙ୍କ ମାଗାଜିନ ଏବଂ ପିଲାଙ୍କ ସମ୍ବାଦପତ୍ର ପିଲାଙ୍କ ଆଗ୍ରହକୁ ନେଇ ତିଆରି ହେବା ଦରକାର । ଶିକ୍ଷକମାନେ ବର୍ଣ୍ଣାଶୁଦ୍ଧି ଏବଂ ବ୍ୟାକରଣଗତ ତ୍ରୁଟିକୁ ସଂଶୋଧନ କରିବାଛଡ଼ା ଅଧିକ କିଛି କରିବେ ନାହିଁ ! ପୁନଶ୍ଚ ଏହି ସଂଶୋଧନ ଯେପରି ବିଷୟବସ୍ତୁ ଉପରେ କୌଣସି ବିକୃତ ସୃଷ୍ଟି ନକରେ, ସେଥିପ୍ରତି ଶିକ୍ଷକମାନେ ସଚେତନ ରହିବେ । ଯାହାସବୁ ପରିବର୍ତ୍ତନ କରାଯାଉଥିଲା ବା ଲେଖାଟିକୁ ସଜାଡ଼ିବା ପାଇଁ ଆଉ ଯାହାକିଛି ଯୋଗ କରାଯାଉଥିଲା, ସେସବୁକୁ ଲେଖା ଶେଷରେ ଟିପ୍ପଣୀ ଆକାରରେ ଲେଖିଦିଆଯାଉଥିଲା । କୋର୍ଯାକ୍ ଜୋର୍ ଦେଉଥିଲେ ପିଲାମାନେ ଯେପରି ବଡ଼ମାନଙ୍କ ଶୈଳୀକୁ ଅନୁକରଣ ନକରନ୍ତୁ । ଗାଜେଟ୍‌ରେ ଲେଖାଗୁଡ଼ିକ ଯେ ବଡ଼ମାନଙ୍କପରି ସୁସ୍ଥରୂପେ ସଙ୍ଗଠିତ ଥିଲା, ସେକଥା ନୁହେଁ; ମାତ୍ର ଏଥିରେ ଭରି-ରହିଥିଲା ପିଲାମାନଙ୍କର ନିଷ୍ଠା, ମୁକ୍ତ ମତ ବିନିମୟ, ନିଜସ୍ୱ ଅନୁଭୂତି ଏବଂ ନିଜେ ଦେଇଥିବା ଲେଖାଗୁଡ଼ିକର ଅବିକଳ ବର୍ଣ୍ଣନା । ଅନୁଭୂତିଗୁଡ଼ିକ ପ୍ରତି ପିଲାମାନଙ୍କର ପ୍ରତିକ୍ରିୟା ଜାଣିବା ପାଇଁ କୋର୍ଯାକ୍ ପ୍ରବଳ ଆଗ୍ରହୀ ଥିଲେ ।

ଅନାଥାଶ୍ରମରେ ଗୋଟିଏ ସ୍ୱତନ୍ତ୍ର ବାକ୍ସ ଥିଲା । ପିଲାମାନେ ଗାଜେଟ୍‌ପାଇଁ ଲେଖୁଥିବା ପାଣ୍ଡୁଲିପିଗୁଡ଼ିକୁ ଏହି ବାକ୍ସରେ ପକାଇ ଦେଉଥିଲେ । ଲେଖା ତଥା ବିବରଣୀଗୁଡ଼ିକୁ ଶିକ୍ଷକ ଶିକ୍ଷୟିତ୍ରୀମାନେ ସମ୍ପାଦନା କରୁଥିଲେ ଏବଂ ଭଲ ହସ୍ତାକ୍ଷରରେ ଗାଜେଟରେ ଲେଖିଦେଉଥିଲେ । ସେମାନେ ଲେଖାଗୁଡ଼ିକରେ ଶୈଳୀ ଓ ବିଷୟ-ବସ୍ତୁରେ ଯଥାସମ୍ଭବ ପିଲାମାନଙ୍କ ମୌଳିକତାକୁ ବଜାୟ ରଖୁଥିଲେ । ଏଥିପାଇଁ ଅନାଥାଶ୍ରମରେ ଛାପାକଳ ବା ନକଲ କରିବାପାଇଁ କୌଣସି ପ୍ରକାର ଯନ୍ତ୍ର ନଥିଲା । ଏପରିକି ସେଠାରେ ଟାଇପ୍ ମେସିନ୍‌ଟିଏ ବି ନଥିଲା । ହାତଲେଖା ଗାଜେଟ୍‌କୁ ସମସ୍ତଙ୍କ ଆଗରେ ପଢ଼ାଯାଉଥିଲା । କାର୍ଯ୍ୟକ୍ରମଟି ଏକ ସାପ୍ତାହିକ ଉତ୍ସବ ଭଳି ମନେହେଉଥିଲା । ଅନାଥାଶ୍ରମ "ହୋମ୍"ରେ ଡାକ୍ତରବାବୁ ନିଜେ ପଢ଼ୁଥିଲେ ଏବଂ ଏହିଦିନ ସେ ଖୁସିହୋଇ ମିଠା ବାଣ୍ଟୁଥିଲେ । "ଆମଘର" ଅନାଥାଶ୍ରମରେ ମିସେସ୍ ମାରିନା ଫାଲସ୍କା "ଗାଜେଟ୍" ପଢ଼ୁଥିଲେ । "ଆମଘର" ଅନାଥାଶ୍ରମ ସ୍ଥାପିତ ହେବା ଦିନଠାରୁ ହିଁ ସେଠାରେ ଗାଜେଟ୍ ପଢ଼ା ଆରମ୍ଭ ହୋଇଥିଲା ।

୧୯୨୬ ମସିହା ନଭେମ୍ବର ୨୩ ତାରିଖରେ କୋର୍ଯାକ୍ ଲେଖିଥିଲେ,—'ଘର' ନାମରେ ଗୋଟିଏ ସମ୍ବାଦପତ୍ର ବାହାରିବ । ସେଥିରେ ସମସ୍ତେ ସହଯୋଗ କରିବେ । ଆଜି ଆମେ ଏହାକୁ ପ୍ରଥମକରି ସମସ୍ତଙ୍କ ଆଗରେ ପଢ଼ୁଛନ୍ତି । ଏହା ଭିତରେ ସବୁକିଛି ରହିବ । ଯଥା :—ଏଠାରେ କ'ଣ ଚାଲିଛି । କିଏ ଆସିଲା, କିଏ ଚାଲିଗଲା, କିଏ ଅସୁସ୍ଥ ଅଛି, କିଏ ଆରୋଗ୍ୟ ଲାଭକଲା, କିଏ ସାହାଯ୍ୟ କରୁଛି, କିଏ କରୁନାହିଁ ଏବଂ ଏଠାରେ ସବୁକିଛି ଆମକୁ ପୋଷାଉଛି କି ନାହିଁ ଇତ୍ୟାଦି । ଯଦି ତୁମ ମତରେ ସବୁ କିଛି ଖରାପ ଚାଲିଛି, ତେବେ ତୁମେ ଏହାକୁ ଭଲରେ ପରିଣତ କରିବାପାଇଁ କିପ୍ରକାର ପଦକ୍ଷେପ ନିଆଯିବା ଆବଶ୍ୟକ ବୋଲି ଭାବୁଛ, ତାହା ମଧ୍ୟ ତୁମେ ଲେଖିପାର ।'' ''ବେଳେବେଳେ ପିଲାଟିଏ ଭାରି ବିମର୍ଷ ହୋଇ ରହିଥାଏ ଏବଂ କିଛି କହିବାପାଇଁ ପାଟି ଖୋଲିପାରେ ନାହିଁ । ବେଳେବେଳେ ତୁମେମାନେ ତୁମ ଅସୁବିଧାକୁ ଘୋଡ଼ାଇ ରଖିବାପାଇଁ ଛଳନା କରିଥାଅ । ଗାଜେଟ୍‌ରେ ଏସବୁକୁ ପ୍ରକାଶ କରିବାପାଇଁ ତୁମେ ସହଜ ଅନୁଭବ କରିବ ଏବଂ ଏହାଦ୍ୱାରା ନିଜକୁ ହାଲୁକା ଅନୁଭବ କରିପାରିବ । ତୁମମାନଙ୍କ ଭିତରେ କେହି କେହି ସବୁକିଛିକୁ କିପରି ପୁରି ସଂଗଠିତ କରିପାରିବ ସେକଥା ଜାଣିଛ । ଅନ୍ୟମାନେ ଯେତେବେଳେ ସେସବୁ ତୁମଠାରୁ ଦେଖିବେ, ସେତେବେଳେ ସେମାନେ ଏପରି କରିବାପାଇଁ ମନ ବଳାଇବେ; କିନ୍ତୁ, ସେମାନେ ଏ ବିଷୟରେ କିଛି କରିବାକୁ ମନବଳାନ୍ତି ନାହିଁ କାରଣ ସେମାନଙ୍କର ଡର ଯେ କାଳେ ସେମାନେ ହସ୍ତକ୍ଷେପ କରୁଛନ୍ତି ବୋଲି ସେମାନଙ୍କ ଉପରେ ଦୋଷାରୋପ କରାଯିବ । ଏସବୁ ବିଷୟରେ ଲେଖା ଆକାରରେ ପ୍ରକାଶ କରିବା ଏକ ପୃଥକ କଥା ।''

କୋର୍ଯାକ ପିଲାମାନଙ୍କ ଉଦ୍ଦେଶ୍ୟରେ ଅତି ସରଳ ଏବଂ ଯଥାସମ୍ଭବ ସେମାନଙ୍କ ଭାଷାରେ ଲେଖୁଥିଲେ ଏବଂ କହୁଥିଲେ । ଉଭୟ ''ହୋମ'' ଏବଂ ''ଆମଘର'' ଅନାଥାଶ୍ରମର ଗାଜେଟ୍ ପ୍ରକାଶନରେ ନିଜେ ଭାଗନେବାକୁ କୋର୍ଯାକ୍ ବହୁତ ଗୁରୁତ୍ୱ ଦେଉଥିଲେ । ଏହି କାମଟି ତାଙ୍କର ଅତିପ୍ରିୟ ଥିଲା । ଏହି ଗାଜେଟ୍‌ଟି ତାଙ୍କ ଲକ୍ଷ୍ୟ ଓ ଉଦ୍ଦେଶ୍ୟକୁ କେତେକାଂଶରେ ପୂରଣ କରିପାରୁଥିଲା ।

ବୟସ ବଢ଼ିବା ସଙ୍ଗେ ସଙ୍ଗେ ତାଙ୍କର ସାହିତ୍ୟ ରଚନାର ଦିଗନ୍ତ ପ୍ରସାରିତ ହେବାକୁ ଲାଗିଲା । ପିଲାଙ୍କ ଶିକ୍ଷାଦାନ ସମ୍ବନ୍ଧୀୟ କାମ ଆଗେଇଲା । କ୍ରମେ ଗାଜେଟ୍ ଅପେକ୍ଷା ଅଧିକ ବ୍ୟାପକରେ କମ୍ ''ପିଲାଙ୍କ ପତ୍ରିକା'' କଥା ତାଙ୍କ ମୁଣ୍ଡରେ ପଶିଲା । ଏହି ପତ୍ରିକା ଅନାଥାଶ୍ରମଗୁଡ଼ିକର ସୀମା ଅତିକ୍ରମ କରିଯିବ । ପିଲାଙ୍କ ଦୁନିଆର ସବୁ ଆବଶ୍ୟକତା ଓ ସବୁ ସମସ୍ୟାକୁ ସେ ଲେଖିବେ । ସେ ଇଚ୍ଛା କରୁଥିଲେ ଯେ, ପତ୍ରିକାଟି ପିଲାଙ୍କର ଏକ ସ୍ୱୟଂସମ୍ପନ୍ନ ପତ୍ରିକା ଭାବରେ ଆତ୍ମପ୍ରକାଶ କରିବ । ଏଭଳି ପତ୍ରିକାକୁ ଆତ୍ମନିର୍ଭରଶୀଳ କରାଇ ଚଳାଇ ରଖିବା ପ୍ରକୃତରେ ଅତ୍ୟନ୍ତ ଜଟିଳ

ତଥା ସମସ୍ୟାବହୁଳ ଥିଲେ । ସେ ଭଲ ଭାବରେ ଜାଣିଥିଲେ ଯେ ଏହି କାମଦ୍ୱାରା ସେ ସରକାର ତଥା ପ୍ରତିବଶାଳୀ ସାଧାରଣ ଅନୁଷ୍ଠାନମାନଙ୍କର ବିରୋଧୀ ହୋଇ- ଉଠିବେ । ସେତେବେଳେ ପିଲଙ୍କ ଜନନ ପାଳନପାଇଁ ଥିବା ସମସ୍ତ ବିଚାରଧାରାକୁ କୋର୍ଚାକଙ୍କ ବିଚାରଧାରା ବିରୋଧ କରୁଥିଲା । କୋର୍ଚାକଙ୍କ ଯୋଜନାଟି କାର୍ଯ୍ୟକାରୀ ହେଲେ ସମାଜର ଅନେକ ଦିଗରୁ ଏଥିପାଇଁ ପ୍ରତିବାଦମାନ ଆସିବ ବୋଲି କୋର୍ଚାକ ଜାଣିଥିଲେ । ସବୁଠାରୁ କଷ୍ଟକର ବିରୋଧ ଆସିବ କର୍ତ୍ତୃପକ୍ଷଙ୍କଠାରୁ । ପତ୍ରିକାଟିକୁ କିଛି ଅଂଶ ନିୟନ୍ତ୍ରଣ କରିବାପାଇଁ ସେମାନେ ଇଚ୍ଛା କରିବେ ।

ଏତେ ପ୍ରକାର ଅସୁବିଧା ଓ ସମସ୍ୟାଥିବା ସତ୍ତ୍ୱେ ପତ୍ରିକାଟି ପ୍ରକାଶିତ ହେଲା । ଯେ ପର୍ଯ୍ୟନ୍ତ ପତ୍ରିକାଟି ପାଇଁ ଏକ ଲମ୍ବା ଚୁକ୍ତି କରାଯାଇ ପାରିନଥିଲା । ସେ ପର୍ଯ୍ୟନ୍ତ ପତ୍ରିକାଟି ବାହାରି ପାରୁନଥିଲା । ଓ୍ୱାର୍ସୋରୁ ପୋଲାଣ୍ଡ ଭାଷାରେ ସର୍ବବୃହତ୍ ସମ୍ବାଦପତ୍ର ଭାବରେ "ଆମ୍ଭ ସମୀକ୍ଷା" ପ୍ରକାଶିତ ହେଉଥିଲା । '୧୬୭ ମସିହାରେ ସମ୍ବାଦପତ୍ରର କର୍ତ୍ତୃପକ୍ଷ କୋର୍ଚାକଙ୍କ କହିବାନୁସାରେ ପତ୍ରିକାଟିକୁ ପ୍ରକାଶ କରିବାର ଦାୟିତ୍ୱ ବହନ କଲେ । ଯଦି ସବୁକିଛି ଏକାବେଳକେ ଆତ୍ମପ୍ରକାଶ ଲାଭ କରିଥାନ୍ତା, ତେବେ କର୍ତ୍ତୃପକ୍ଷ ପତ୍ରିକାଟିକୁ ବନ୍ଦ କରିଦେଇଥାନ୍ତେ କର୍ତ୍ତୃପକ୍ଷଙ୍କୁ ହଠାତ୍ ସତର୍କ ନକରାଇବାପାଇଁ ବିଭିନ୍ନ ପର୍ଯ୍ୟାୟରେ ପତ୍ରିକାଟିକୁ ନିଜସ୍ୱ ସ୍ୱରୂପକୁ ଅଣାଗଲା ।

ପିଲାଙ୍କ ପତ୍ରିକାଟି ଚଳାଇବାପାଇଁ ସମ୍ବାଦପତ୍ର କର୍ତ୍ତୃପକ୍ଷଙ୍କ ତରଫରୁ ଜଣେ ବ୍ୟକ୍ତି ସ୍ୱତନ୍ତ୍ର ଭାବରେ ଦାୟିତ୍ୱ ବହନ କଲେ । କୋର୍ଚାକ୍ କର୍ତ୍ତୃପକ୍ଷଙ୍କ ଏଭଳି ଅନୁକୂଳ ମନୋଭାବରେ ନିଜେ ବିସ୍ମିତ ହୋଇପଡ଼ିଥିଲେ ଏବଂ ପ୍ରବଳ ଉତ୍ସାହରେ ପତ୍ରିକାଟି ପାଇଁ ଲାଗିପଡ଼ିଲେ । ଯଦିଓ ତାଙ୍କର ଏହି ଉଦ୍ୟମଟି ପୋଲାଣ୍ଡର ଇହୁଦୀ ଯୁବଗୋଷ୍ଠୀ ଭଳି ଏକ କ୍ଷୁଦ୍ର ପରିବାର ପାଇଁ ଉଦ୍ଦିଷ୍ଟ ଥିଲା ତଥାପି ସେ ତାଙ୍କ ନିଷ୍ଠାପର ଉଦ୍ୟମରେ ଆଦୌ ଅବହେଳା କରିନଥିଲେ । ଏଭଳି ଏକ ପତ୍ରିକା ପ୍ରକାଶନର ବିଗ୍ରହ ତାଙ୍କୁ ଅତ୍ୟନ୍ତ ଗତିଶୀଳ ଏବଂ ସକ୍ରିୟ ରଖିବାରେ ସାହାଯ୍ୟ କରୁଥିଲା । କେବଳ ପତ୍ରିକାଟିକୁ ଆରମ୍ଭ କରିବା ସକାଶେ ଅନୁମତି ମିଳିବା କୋର୍ଚାକପାଇଁ ଯଥେଷ୍ଟ ଥିଲା । ପତ୍ରିକାଟି ପାଇଁ ତାଙ୍କର ଉତ୍ସାହ ଏଭଳି ବୃଦ୍ଧି ପାଇଥିଲା ଯେ ସେ ତାଙ୍କ ସର୍ବୋତ୍ତମ ପ୍ରଚେଷ୍ଟା ଚଲାଇ ରଖିବାପାଇଁ ପ୍ରବୃତ୍ତ ହେଲେ । ପିଲାଙ୍କର ଏହି ପତ୍ରିକାଟି ସାପ୍ତାହିକ ଥିଲା ଏବଂ ଏହାର ନାଁ ଥିଲା । "କ୍ଷୁଦ୍ର ସମୀକ୍ଷା" । ୧୯୬୭ ମସିହା ଶରତ ଋତୁରେ ପତ୍ରିକାଟି ପ୍ରଥମେ ଉନ୍ମୋଚିତ ହୋଇଥିଲା । ଏହା ପୃଥକ୍ ଭାବରେ ନ ବାହାରି, ବୟସ୍କମାନଙ୍କ ପାଇଁ ଉଦ୍ଦିଷ୍ଟ "ଆମ ସମୀକ୍ଷା" ସମ୍ବାଦପତ୍ରରେ ଅଂଶ ଭାବରେ ବାହାରିଲା । ଏହି "କ୍ଷୁଦ୍ର ସମୀକ୍ଷା" ଭିତରେ କେବଳ ପିଲାଙ୍କପାଇଁ ଉଦ୍ଦିଷ୍ଟ ଲେଖାଗୁଡ଼ିକ ପ୍ରକାଶିତ ହେଲା । ପତ୍ରିକାଟିର ଉଦ୍‌ଘାଟନ ପାଇଁ କୋର୍ଚାକ ଏକ ଉପକ୍ରମଣିକାରେ ଲେଖିଥିଲେ ।

"ଏହି ପତ୍ରିକାଟି ପ୍ରତିଷ୍ଠିତ ହୋଇ ଆସୁଥିବା ଯୁବଜଗତ ଏବଂ ସ୍କୁଲଗୁଡ଼ିକର ସମସ୍ତ ସମସ୍ୟାକୁ ବିଶ୍ଳେଷଣ କରିବ ଏବଂ ସେସବୁର ସମାଧାନ କରିବ । ଏହା ଏପରି ଭାବରେ ସଂପାଦିତ ହେବ ଯଦ୍ୱାରା ପିଲାଙ୍କ ଜୀବନର ସମସ୍ତ ଦିଗକୁ ପର୍ଯ୍ୟବେକ୍ଷଣ କରିପାରିବ ଏବଂ ସେମାନଙ୍କ କାମରେ ଲାଗିବ । ପତ୍ରିକାଟି ନ୍ୟାୟକୁ ବଜାୟ ରଖିବ ଏବଂ ପିଲାଙ୍କ ଆଗ୍ରହକୁ ଚରିତାର୍ଥ କରିବାପାଇଁ ଅଭିଭାବକ ଭାବରେ ଦାୟିତ୍ୱ ଗ୍ରହଣ କରିବ । ପତ୍ରିକାଟି ପାଇଁ ତିନିଜଣ ସଂପାଦକ ରହିବେ । ସେମାନଙ୍କ ଭିତରୁ ଜଣେ ବୟସ୍କ, ସେ ଚଷମା ପିନ୍ଧିଥିବେ, ତାଙ୍କ ମୁଣ୍ଡ ଚନ୍ଦା ହୋଇଥିବ (ସେ ନିଜକୁ ଲକ୍ଷ୍ୟକରି କହିଥିଲେ) ଏବଂ ସେ ବାହାର ଦୁନିଆଟିକୁ ଆଖିରେ ରଖି ସବୁକିଛି ସଜାଡ଼ି ଚଳାଇବେ । ଦ୍ୱିତୀୟ ଜଣକ ଜଣେ ତରୁଣ ବାଳକ । ସେ ପୁଅ ପିଲାଙ୍କ କଥା ବୁଝିବେ । ତୃତୀୟ ଜଣଙ୍କ ଜଣେ ତରୁଣୀ ବାଳିକା । ସେ ଝିଅମାନଙ୍କ କଥା ବୁଝିବେ ।

ସମସ୍ତେ ନିର୍ବିଘ୍ନରେ ସମ୍ପାଦକଙ୍କ କାର୍ଯ୍ୟାଳୟକୁ ଆସିପାରିବେ । ନିଜ ମତକୁ ମୁକ୍ତ କଣ୍ଠରେ କହିପାରିବେ । ଲେଖିବା ପାଇଁ ସମସ୍ତଙ୍କୁ ସ୍ୱାଗତ କରାଯିବ । ଯଦି ଜଣେ ଇଚ୍ଛା କରିବ, ସେ ସମ୍ପାଦକଙ୍କ କାର୍ଯ୍ୟାଳୟକୁ ନିଜେ ଆସି ସେଠାରେ ଗୋଟିଏ ଆରାମ ଚେୟାରରେ ବସି ଲେଖାଲେଖି କରିପାରିବେ ଏବଂ କାର୍ଯ୍ୟାଳୟର କର୍ମଚାରୀମାନଙ୍କ ସାଙ୍ଗରେ କଥାବାର୍ତ୍ତା କରିପାରିବେ । "କୁନି ସମୀକ୍ଷା" ପତ୍ରିକାଟି ପାଇଁ ଯେଉଁମାନେ ସବୁଦିନିଆ କର୍ମଚାରୀ, ସେମାନଙ୍କ ପାଇଁ ଅଫିସ—ଡେସ୍କ, ଡ୍ରୟାର, କାଗଜପତ୍ର, ପେନ୍ ପେନ୍ସିଲ୍, ଫାଇଲ୍, କାଳି ବୋତଲ, ଏପରିକି ଟାଇପ୍ ମେସିନ୍ ଆଦି ପାଇଁ ସ୍ୱତନ୍ତ୍ର ଖୋପସବୁ ରହିବ ।

ଯେଉଁମାନଙ୍କର ହସ୍ତାକ୍ଷର ଭଲ ନୁହେଁ ବା ଯେଉଁମାନଙ୍କର ବର୍ଣ୍ଣାଶୁଦ୍ଧି ଥାଏ, ସେମାନେ ଲାଜ ନକରି, ସମ୍ପାଦକଙ୍କ କାର୍ଯ୍ୟାଳୟକୁ ଆସିବେ । ସମ୍ପାଦକ ସେମାନଙ୍କଠାରୁ ନିଜେ ଲେଖା ସଂଗ୍ରହ କରିବେ ଏବଂ କହିବେ "ଏସବୁ ଚଳିବ।" ସେ ବି ଟିପାଖାତାରେ ଲେଖିରଖିବେ । ସମ୍ବାଦପତ୍ରରେ ପ୍ରକାଶ ପାଇବା ପୂର୍ବରୁ କାର୍ଯ୍ୟାଳୟରେ ସବୁ ଲେଖାକୁ ସଂଶୋଧନ କରି ଛପାଇବା ପାଇଁ ପଠାଯିବ । କାର୍ଯ୍ୟାଳୟକୁ, ସମ୍ବାଦଗୁଡ଼ିକ, ପାଟିରେ, ଚିଠି ମାଧ୍ୟମରେ, ଟେଲିଫୋନ୍‌ରେ ବା ଟେଲିଗ୍ରାଫ୍ ମାଧ୍ୟମରେ ଜଣାଇ ଦିଆଯାଇ ପାରିବ । ଯେଉଁମାନେ ଲାଜକୁଳା, ଅତି ବିନୟୀ ବା ଦୁର୍ବଳ ହୃଦୟ ସେମାନଙ୍କୁ କୌଣସି ପ୍ରକାରେ ମାନସିକ ଅଶାନ୍ତିରେ ନପକାଇବା ପାଇଁ ସମସ୍ତ ପ୍ରକାର ବ୍ୟବସ୍ଥା କରାଯିବ ।

ଅନେକ ବୟସ୍କ ଲୋକ କେବଳ ଲେଖାଲେଖି କରନ୍ତି । କାରଣ ଏଥିପାଇଁ ସେମାନଙ୍କୁ ଲାଜ ଲାଗେ ନାହିଁ । କିନ୍ତୁ ଅନେକ ପିଲା ଅଛନ୍ତି, ଯେଉଁମାନଙ୍କର ମୌଳିକ ଚିନ୍ତା ତଥା ବିଚାରଧାରା ରହିଛି, ଅନେକ ଆଗ୍ରହପ୍ରଦ କଥା ବ୍ୟକ୍ତକରିବାକୁ

ଅଛୁ, ସେମାନେ କିଛୁ ଲେଖିପାରନ୍ତି ନାହିଁ । କାରଣ ସେମାନେ ବହୁତ ଲାଜକୁଳା ଏବଂ ଭୟାଳୁ । ସେମାନଙ୍କର ସାହସ ପାଏ ନାହିଁ । ତେଣୁ ସେମାନେ ଲେଖନ୍ତି ନାହିଁ । "କ୍ଷୁଦ୍ର ସମୀକ୍ଷା" ପତ୍ରିକାଟି ଏସବୁ ଅସୁବିଧାକୁ ଦୂରକରିବା ପାଇଁ ଜନ୍ମଲାଭ କରିଛି । ଏହା ସମସ୍ତଙ୍କ ଭିତରେ ସାହସ ଭରିଦେବ ଏବଂ ଆମ ବାଟକୁ ଆହୁରି ସହଜ ଓ ସୁଗମ କରିପାରିବ ।"—ପିଲାମାନଙ୍କର ପ୍ରିୟ ବନ୍ଧୁ ତଥା ରକ୍ଷାକର୍ତ୍ତା ଜାନୁସ୍ କୋର୍ଶାକ୍‌ଙ୍କର ଏହା ଥିଲା ସେ ଦିନର ଉପକ୍ରମମୂଳକ ସନ୍ଦେଶ ।

କୋର୍ଶାକଙ୍କ ନିଜସ୍ୱ ନିୟମ ଅନୁସାରେ ସମ୍ପାଦକମଣ୍ଡଳୀକୁ ସଂଗଠିତ କରାଗଲା । "ଝିଅ ସମ୍ପାଦକ, ଅଳ୍ପ ବୟସର ସମ୍ବାଦ ପ୍ରତିନିଧି, ସମ୍ବାଦଦାତା ପ୍ରତ୍ୟେକଙ୍କୁ ସମ୍ବାଦ ବାଛିବା ଏବଂ ସଜାଡ଼ିବା ପାଇଁ ନିର୍ଦ୍ଦିଷ୍ଟ ଦାୟିତ୍ୱ ଦିଆଗଲା । କୋର୍ଶାକ୍ ଜଣେ କିଶୋରଙ୍କୁ ବୁଦ୍ଧି ପରୀକ୍ଷାରେ ଖେଳ କର୍ଣ୍ଣରଟି ଚଳାଇବା ପାଇଁ ତଥା କାହାଣୀକାମ ବୁଲାଇବା ପକାଶେ ନିଯୁକ୍ତ କଲେ ଏବଂ କିଶୋର ଜଣଙ୍କୁ କହିଲେ, 'ତୁମକୁ ଏହି ଚାକିରିଟି ଦିଆଗଲା । କାରଣ ତୁମର ଏଥିପାଇଁ ଦକ୍ଷତା ନାହିଁ । ଯେଉଁମାନେ ଅତି ଦକ୍ଷ ସେମାନଙ୍କୁ ମୁଁ ଘୃଣାକରେ ।" କୋର୍ଶାକଙ୍କର ଏହି ମନ୍ତବ୍ୟଟି ଶୁଣିଲାପରେ କିଶୋର ଜଣକ ଆଶ୍ୱସ୍ତି ଲାଭକଲେ ଏବଂ କାମ କରିବା ପାଇଁ ତା'ର ଆତ୍ମବିଶ୍ୱାସ ବଢ଼ିଲା ।

ସବୁ ଚାକିରିଆମାନଙ୍କୁ ଦରମା ଦିଆଯାଉଥିଲା । ବଡ଼ମାନଙ୍କୁ ଯେପରି ପାଉଣା ଦିଆଯାଉଥିଲା, ସ୍ୱାଧୀନ ଲେଖକମାନଙ୍କୁ ମଧ୍ୟ ସେହିପରି ଧାଡ଼ିକୁ ଏତିକି ଟଙ୍କା ହିସାବରେ" ପାଉଣା ପ୍ରଦାନ କରାଯାଉଥିଲା । ପ୍ରଥମେ ପ୍ରଥମେ କୋର୍ଶାକ ଚିନ୍ତା କରୁଥିଲେ, "କ୍ଷୁଦ୍ର ସମୀକ୍ଷା" ପତ୍ରିକାଟିକୁ ବଡ଼ମାନଙ୍କ ଉଦ୍ଦେଶ୍ୟରେ ପ୍ରକାଶିତ ହେଉଥିବା "ଆତ୍ମସମୀକ୍ଷା" ପତ୍ରିକାପରି ପ୍ରକାଶ କରିବେ । ସେ ଅନୁଭବ କରୁଥିଲେ ଯେ ବଡ଼ମାନଙ୍କ ପାଇଁ ଯାହା ଅଛି ପିଲାମାନଙ୍କ ପାଇଁ ବି ସେସବୁ ରହିବା ଉଚିତ । ଉଦାହରଣ ସ୍ୱରୂପ, ଦୁର୍ଘଟଣା ଆଦିର ବିବରଣୀ, ରାଜନୀତିକ ପ୍ରବନ୍ଧ ଇତ୍ୟାଦି । ମାତ୍ର କୋର୍ଶାକଙ୍କର ଏହି ଚିନ୍ତାଧାରାଟି ପିଲାଙ୍କ କ୍ଷେତ୍ରରେ ଆଦୃତ ହେଲା ନାହିଁ । କୋର୍ଶାକଙ୍କ ପାଇଁ ଚିନ୍ତାଧାରାଟିକୁ ବଦଳାଇବା ପାଇଁ ଏହାହିଁ ଯଥେଷ୍ଟ ଥିଲା । ଦୁର୍ଘଟଣା ବିବରଣୀ ଓ ରାଜନୀତିକ ପ୍ରବନ୍ଧ ବଦଳରେ ସେହି ସ୍ଥାନରେ ରହିଲା, ଦେଶରେ ଘଟୁଥିବା ନୂଆ ନୂଆ ଘଟଣା, ଘର କଥା, ବନ୍ଧୁମାନଙ୍କ କଥା, ବଡ଼ ଓ ସାନ ଟାଉନ୍-ମାନଙ୍କର ବିଷୟବସ୍ତୁ । 'କ୍ଷୁଦ୍ର ସମୀକ୍ଷା' ପତ୍ରିକାରେ ସବୁଠୁ ପ୍ରିୟ ବିଭାଗଟି ଥିଲା 'ବୁଦ୍ଧି ପରୀକ୍ଷା' । ଏଥିରେ ଯେଉଁସବୁ ବିଷୟବସ୍ତୁ ଦିଆଯାଉଥିଲା, ସେସବୁ ବାସ୍ତବରେ ଥିଲା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

ପ୍ରକାଶନର ପ୍ରଥମ ବର୍ଷ ଭିତରେ ଷ୍ଟାଫ୍‌ମାନଙ୍କ ଭିତରେ ଦୁଇ ଶହରୁ ଊର୍ଦ୍ଧ୍ୱ ସବୁଦିନିଆ ସମ୍ବାଦ ପ୍ରତିନିଧି ଥିଲେ । ବର୍ଷକୁ ପ୍ରାୟ ଆଠରୁ ଦଶ ହଜାର ଚିଠି

ହସ୍ତଗତ ହେଉଥିଲା । ନିୟମ ଅନୁସାରେ ଏବଂ କୋର୍ଝାକଙ୍କ ନିର୍ଦ୍ଦେଶ ଅନୁସାରେ ସବୁ ଚିଠି ଏବଂ ପ୍ରବନ୍ଧଗୁଡ଼ିକୁ ପତ୍ରିକାରେ ଛପାଯାଉଥିଲା । କୌଣସି ବିଷୟକୁ ବାଦ୍ ଦେବାକୁ କୋର୍ଝାକ ଅମଙ୍ଗ ଥିଲେ । ଜଣେ ଯୁବ ଲେଖକଙ୍କର ଲେଖାଟିଏ ଯେତେ ନିମ୍ନମାନର ହୋଇଥାଉ ପଛକେ ସେ ଲେଖାଟିକୁ ପ୍ରକାଶ କରିବା ପାଇଁ ଇଚ୍ଛା ପ୍ରକାଶ କରୁଥିଲେ । ଯାହା କିଛି ଚିଠି ଆସୁଥିଲା, ସବୁକୁ ସେ ଏକ ଫାଇଲରେ ସଜାଡ଼ି ରଖାଯାଉଥିଲା । ଏସବୁ ଏତେ ବେଶି ହେଉଥିଲା ଯେ ସବୁଗୁଡ଼ିକୁ ତନ୍ନତନ୍ନ କରି ଦେଖିବା କଷ୍ଟକର ହୋଇପଡ଼ୁଥିଲା । କୋର୍ଝାକଙ୍କ ଠିକଣାରେ ଯାହାସବୁ ହସ୍ତଗତ ହେଉଥିଲା, ସେସବୁକୁ ସେ ପାର୍ସଲକରି ପଠାଇ ଦେଉଥିଲେ କାରଣ ସେଗୁଡ଼ିକ ପରେ ଅନାବଶ୍ୟକ ହୋଇପାରେ ବୋଲି ସେ ମନେକରୁଥିଲେ ।

ପତ୍ରିକାଟିର ସୁନାମ ବଢ଼ିଚାଲିଲା । ଏହାର ସୁଯୋଗନେଇ କୋର୍ଝାକ ସେଥିରେ ପିଲାଙ୍କ ଶିକ୍ଷାଦାନ ସମ୍ବନ୍ଧରେ ତାଙ୍କର ଚିନ୍ତାଧାରାଗୁଡ଼ିକୁ ପ୍ରକାଶ କରିବା ପାଇଁ ପ୍ରୟାସ କଲେ । କାହାର ଲେଖିବା ଶୈଳୀ ବହୁତ ବର୍ଣ୍ଣନାମୂଳକ ବା ଅମୂଳକ ମନେହେଉଥିଲେ, କୋର୍ଝାକ ସେ ସବୁକୁ କାଣ୍ଟଛାଣ୍ଟ କରି ସଜାଡ଼ି ଦେଉଥିଲେ । ମାତ୍ର ଏସବୁକୁ ସେ ପାରୁପର୍ଯ୍ୟନ୍ତ ଭଦ୍ରତା ସହକାରେ କାର୍ଯ୍ୟକାରୀ କରୁଥିଲେ । ବଢ଼େଇକରି ଲେଖିବା ତଥା ଅନାବଶ୍ୟକ ଅର୍ଥହୀନ ବାକ୍ୟବିନ୍ୟାସ ବିରୋଧରେ ସେ ସତର୍କ କରାଇ ଦେଉଥିଲେ । ସେ ଅନ୍ୟଠୁ ଚୋରି କରି ଲେଖିବାକୁ ଆଦୌ ସହ୍ୟ କରିପାରୁ ନଥିଲେ । ସେ ଚାହୁଁଥିଲେ, ଲେଖାଗୁଡ଼ିକ ମୌଳିକଧର୍ମୀ ହେଉ ତଥା ନିଷ୍ଠା ସହକାରେ ହେଉ । ଅନେକ ସମୟରେ ସେ ଏଥିପାଇଁ ନିଜ ସମ୍ବାଦ ପ୍ରତିନିଧିମାନଙ୍କ ସହ ଆଲୋଚନା କରୁଥିଲେ ଏବଂ ସେମାନଙ୍କୁ ଧୈର୍ଯ୍ୟ ଓ ସହନ-ଶୀଳତାର ସହ ହସାଇ ମଜାକ ବୁଝାଉଥିଲେ ।

ପିଲାଙ୍କ ସପକ୍ଷରେ ଯୁକ୍ତି ଉପସ୍ଥାପନ କରିବା ଥିଲା କୋର୍ଝାକ୍‌ଙ୍କର ଏକ ସ୍ୱତନ୍ତ୍ର ଗୁଣ । ପିଲାଙ୍କ ସପକ୍ଷରେ ଲଢ଼ିବା ପାଇଁ ସେ ଅତ୍ୟଧିକ ଉତ୍ସାହ ଦେଖାଉଥିଲେ ଏବଂ 'କୁନି ସମୀକ୍ଷା' ପତ୍ରିକାରେ ଏହା ପ୍ରତିଫଳିତ ହେଉଥିଲା । ତେଣୁ ପିତାମାତାମାନେ କୁନି ସମୀକ୍ଷାଠାରୁ ନିଜକୁ ଦୂରେଇ ରଖୁଥିଲେ ।

ଥରେ ଗୋଟିଏ ନଅ ବର୍ଷର ପିଲା, 'କୁନି ସମୀକ୍ଷା' ପତ୍ରିକାରେ ତା'ର ଏକ ଦାବି ଜଣାଇଲା । କଥାଟି ହେଉଛି ଏହିପରି—ପରୀକ୍ଷାରେ ଭଲ ନମ୍ବର ରଖିଲେ ପିଲାଟିର ଦାଦା ତା ପାଇଁ ସାଇକେଲଟିଏ ଦେବେ ବୋଲି କହିଥିଲେ । ପିଲାଟି ଭଲ ନମ୍ବର ରଖିଲା । ମାତ୍ର ଦାଦା ସାଇକେଲଟିଏ ଦେବାପାଇଁ କୌଣସି ଆଗ୍ରହ ଦେଖାଇଲେ ନାହିଁ । ଏହି କଥାଟିକୁ ନେଇ କୋର୍ଝାକ ନିଜେ ଏକ ପ୍ରବଳ ଲେଖି କୁନି ସମୀକ୍ଷାରେ ପ୍ରକାଶ କଲେ । ପ୍ରବନ୍ଧଟିର ନାଁ ଥିଲା 'ଦାଦା ଟଙ୍କା ଦିଅ' ପ୍ରବନ୍ଧଟି

ପାଠକର ଚିଠିର ଦାବୀ ଲକ୍ଷିତ ହେଲେ ଏବଂ ରାଗରେ କହିଲେ, ପତ୍ରିକାର ସମ୍ପାଦକ ବଡ଼ ଖେଚଡ଼ା ଲୋକ । କିନ୍ତୁ ସେ ଆଉ ବିଳମ୍ବ ନକରି ପିଲାଟି ପାଇଁ ସାଇକେଲଟିଏ କିଣି ଆଣିଲେ ।

ଆଉ ଗୋଟିଏ ଘଟଣା । ଆଠ ବର୍ଷର ବାଳକଟିଏ ଗୋଟିଏ ଅଭିଯୋଗ ଉପସ୍ଥାପନ କଲା । ଅଭିଯୋଗ ଏହିପରି ଥିଲା—ପିଲାଟିର ବାପାମାଆ ପିଲାଟିକୁ ଘରେ ସବୁଯାକ ଗୁଣନଖନ୍ଦା ଶିଖିବାକୁ ବାଧ୍ୟ କରୁଛନ୍ତି । ପିଲାଟିକୁ ଏହା ଖରାପ ଲାଗୁଛି । ବାପାମାଆ ଚେୟାରଗୁଡ଼ିକୁ ନେଇ କାର୍ କରିବା ଖେଳ ଖେଳିବା ପାଇଁ ପିଲାଟିକୁ ମନାକରୁଛନ୍ତି । ଏହି କ୍ଷେତ୍ରରେ କୋର୍ଚାକ ପିଲାଟିକୁ ବୁଝାଇଦେଲେ ଯେ ଗୁଣନଖନ୍ଦା ଥର ଥର କରି ଶିଖିଲେ ସହଜରେ ଶିଖି ହୋଇଯିବ ଏବଂ ଆଦୌ କଷ୍ଟକର ମନେହେବ ନାହିଁ । ଘରେ ପିଲାଟିର ଅନ୍ୟାନ୍ୟ କାର୍ଯ୍ୟକଳାପ ସମ୍ବନ୍ଧରେ କୋର୍ଚାକ ବୁଝାଇ କହିଲେ ଯେ ବାପା ମାଆ ପରିବାରର ଅନ୍ୟମାନଙ୍କ ସ୍ୱାର୍ଥକୁ ଆଖିରେ ରଖି ଚେୟାରଗୁଡ଼ିକୁ କାର୍ କରିବା ପାଇଁ ମନା କରୁଛନ୍ତି । ଅନ୍ୟମାନେ କାର୍‌ଗୁଡ଼ିକ ଉପରେ ବସିବେ ।

ଅନେକ ପିଲା ସେମାନଙ୍କ ଶିକ୍ଷକ ଏବଂ ସ୍କୁଲ ସାଙ୍ଗଙ୍କ ବିରୋଧରେ ଅଭିଯୋଗ-ମାନ ଲେଖିପଠାଇଲେ । ଅଭିଯୋଗଗୁଡ଼ିକୁ 'ଲିଟିଲ ସମୀକ୍ଷା'ରେ ଯେଉଁଭଳି ଭାବରେ ପ୍ରକାଶ କରାଯାଉଥିଲା, ପତ୍ରିକାଟି ଅଧିକ କଠୋର ମନେହେଉଥିଲା । ଅସଲକଥା ହେଉଛି ନିଜେ କୋର୍ଚାକ ପତ୍ରିକାରେ ଏଭଳି କଥା ପ୍ରକାଶପାଉ ବୋଲି ନିଜେ ଚାହୁଁଥିଲେ । ଯେତେବେଳେ ସେ ଜାଣୁଥିଲେ ଯେ ବଡ଼ମାନଙ୍କୁ ତଥା ବଡ଼-ମାନଙ୍କ ସଂସାରକୁ ପିଲାମାନେ ଭଲପାଉନାହାନ୍ତି ସେତେବେଳେ ସେ ପିଲାମାନଙ୍କୁ ନିଜସ୍ୱୀ ହୋଇ ଛିଡ଼ା କରାଇବାକୁ ଇଚ୍ଛାପ୍ରକାଶ କରୁଥିଲେ ।

ଯେତେବେଳେ କୌଣସି ଏକ ପିଲା ବା ଦଳେ ପିଲାଙ୍କର ବ୍ୟକ୍ତିଗତ ସମସ୍ୟା-ମାନଙ୍କର ଅଭିଯୋଗମାନ ଆସି ଉପସ୍ଥାପିତ ହେଉଥିଲା, କୋର୍ଚାକ ସେମାନଙ୍କୁ ସମ୍ପାଦକଙ୍କର ଟେବୁଲ ନିକଟପାଖେ ଏକାଠି ବସାଇ କଥାବାର୍ତ୍ତା କରିବା ପାଇଁ ବ୍ୟବସ୍ଥା କରୁଥିଲେ । 'ଲିଟିଲ ସମୀକ୍ଷା' ପତ୍ରିକା ପାଇଁ କାମ କରୁଥିବା ସବୁ ଲୋକେ ସହଜରେ ଏବଂ ସବୁ ସମୟରେ ସମ୍ପାଦକଙ୍କ ପାଖରେ ସବୁକଥା ମୁକ୍ତଭାବରେ ତଥା ନିର୍ଭୟରେ କହିପାରୁଥିଲେ ।

ପିଲାମାନଙ୍କ ଦୃଷ୍ଟିରେ କୋର୍ଚାକ ଥିଲେ ଜଣେ ବୃଦ୍ଧ ତଥା ଜ୍ଞାନୀ ଲୋକ । ତା'ଛଡ଼ା ସେ ମଜାମଜା କଥା କହୁଥିଲେ । ତେଣୁ ପିଲାମାନେ କୋର୍ଚାକଙ୍କୁ ନିଯୁମିତ ଦେଖାକରିବାକୁ ଆସୁଥିଲେ । ଏହିଭଳି ନିୟମିତ ଦେଖାସାକ୍ଷାତରୁ ଏହା 'ଆମ ସମୀକ୍ଷା' ସମ୍ପାଦକଙ୍କ କାର୍ଯ୍ୟାଳୟରେ 'ଗୁରୁବାରଆ' ଚା ପାନ ମିଟିଂ ନାମରେ ପରିଚିତ ହୋଇଗଲା । ଏହି ମିଟିଂରେ କୋର୍ଚାକ୍ ତାଙ୍କର ମନ୍ତ୍ରମୁଗ୍ଧ ଓ କୌତୁକିଆ

ବ୍ୟବହାରରେ ସମସ୍ତଙ୍କୁ ଆପ୍ୟାୟିତ କରୁଥିଲେ । ଏସବୁ ଭିତରେ ସେ ନିଜ ବିଶ୍ୱାସ ଉପରେ ଦୃଢ଼ ରହୁଥିଲେ । ସ୍କୁଲମାନଙ୍କର ଅଗ୍ରଗତି, ପିଲାମାନଙ୍କର ବାପା ମାଆ ସହ ଯୁକ୍ତିତର୍କ, ପରିଷ୍କାର ହାତର ନଖ, ଯୋକଷିଆ ଦାନ୍ତ ପିଲାଙ୍କର କୋନ ତମ୍ ଅବସ୍ଥା ସବୁକିଛି କୋର୍ଷାକଙ୍କ ଆଗ୍ରହକୁ ବଢ଼ାଉଥିଲା ଏବଂ ଖୁସି ଦେଉଥିଲା । ଏଥିରୁ ସେ ଅନେକ ରୋଗବ୍ୟାଧି ପାଇଁ ଆରୋଗ୍ୟର ଉପାୟଗୁଡ଼ିକୁ ପାଇପାରୁଥିଲେ । ସେ ସବୁବେଳେ ଉପଦେଶ ଦେଉଥିଲେ ଏବଂ ଯେଉଁଠି ପାରୁଥିଲେ, ସେଇଠି ସାହାଯ୍ୟ କରୁଥିଲେ । ସାକ୍ଷାତ କରିବାକୁ ଆସୁଥିବା ପିଲାମାନଙ୍କୁ ସେ ଗୋଟିଏ କୋଣରେ ଥିବା କଫିଘରୁ କେକ୍ ଆଇସ୍‌କ୍ରିମ୍, ସ୍ୟାଣ୍ଡୱିଚ୍ କିଣି ଖାଇବାକୁ ଦେଉଥିଲେ । ପିଲାଙ୍କ ଭିତରୁ ଜଣେ ସମ୍ପାଦକ ପରେ କୋର୍ଷାକଙ୍କ କଥାବାର୍ତ୍ତା ଓ ଆଲୋଚନାକୁ ସ୍ମରଣ କରି ବର୍ଣ୍ଣନା କରିଥିଲେ ଯେ ଏସବୁ ତାଙ୍କପାଇଁ ଥିଲା ପ୍ରଥମ ସାହିତ୍ୟ କ୍ଲବ୍‌ର ମିଟିଂ ।

ଅନାଥାଶ୍ରମରେ କୋର୍ଷାକ ପିଲାମାନଙ୍କୁ ଛବିଥିବା ପୋଷ୍ଟକାର୍ଡ଼ରେ ନିଜ ହସ୍ତାକ୍ଷର ଲେଖି ପୁରସ୍କାର ଦେଉଥିଲେ । "କୁନି ସମୀକ୍ଷା" ପତ୍ରିକାଟି କ୍ଷେତ୍ରରେ ସେ ଏହି ଉପାୟଟିକୁ ଯଥାର୍ଥ ଭାବରେ ଲାଗୁ କରିପାରିଥିଲେ । ପୋଷ୍ଟକାର୍ଡ଼ଗୁଡ଼ିକୁ ବିଭିନ୍ନ ଉଦ୍ଦେଶ୍ୟରେ ଦିଆଯାଉଥିଲା ଯଥା—ପିଲାଙ୍କୁ ଉତ୍ସାହିତ କରିବା, ଅଭିନନ୍ଦନ ଜଣାଇବା କିମ୍ବା କୌଣସି ମୁଖ୍ୟ ଘଟଣାକୁ ପ୍ରସଙ୍ଗ କରି ପ୍ରଶଂସା କରିବା ଯଥା—ଜଣେ ବାଳକ ବା ବାଳିକାଙ୍କର ଶ୍ରେଷ୍ଠତମ ଲେଖାଟିକୁ ସ୍ମରଣ କରାଇ ପ୍ରଶଂସା କରିବା । ମଝିରେ ମଝିରେ ଏଥିପାଇଁ ପ୍ରତିଯୋଗିତା କରାଯାଉଥିଲା । ପରିଶେଷରେ ପିଲାଙ୍କ ଅବଦାନଗୁଡ଼ିକର ଶ୍ରେଣୀବିଭାଗ କରିବାପାଇଁ ଏକ ସ୍ୱତନ୍ତ୍ର ବିଭାଗ ଖୋଲାଗଲା । ସାତବର୍ଷ ପିଲାଟିର ବଙ୍କାଟଙ୍କା ଅକ୍ଷର ଲେଖାଠାରୁ ଆରମ୍ଭକରି କିଶୋର କିଶୋରୀମାନଙ୍କର ଜୀବନର ବର୍ଣ୍ଣନାତ୍ମକ ଲେଖା ଆଦି ସବୁକିଛିକୁ ଏଥିରେ ଅନ୍ତର୍ଭୁକ୍ତ କରାଯାଉଥିଲା । ଛିଣ୍ଡାକନା ପରିହିତ ଜଣେ ସମ୍ବାଦପତ୍ର ବିକାଳି ହେଉ ବା ମୋଟା-ସୋଟା ସୁନ୍ଦର ପୋଷାକ ପରିଧାନ କରିଥିବା ଧନୀ ଘରର ପିଲା ହେଉ—ସମସ୍ତଙ୍କ ଲେଖାକୁ ସମାନ ମର୍ଯ୍ୟାଦା ଦିଆଯାଉଥିଲା । କୋର୍ଷାକଙ୍କ ନିକଟରେ ସବୁ ପିଲା ସମାନ ଥିଲେ । ପୁଅ ହେଉ ବା ଝିଅ ହେଉ, ସେ କେଉଁ ପରିବେଶ ବା ପରିସ୍ଥିତିରେ ଜୀବନ ଧାରଣ କରୁଛି, ତାହା କୋର୍ଷାକଙ୍କ ପାଇଁ ସଂପୂର୍ଣ୍ଣ ନିରର୍ଥକ ଥିଲା । ସମସ୍ତଙ୍କ ପାଇଁ ତାଙ୍କ ହୃଦୟ ଖୋଲାଥିଲା । ବୟସ ଦୃଷ୍ଟିରୁ ହେଉ ବା ଆଗ୍ରହ ପ୍ରକାଶ କରିପାରିବାର ସାମର୍ଥ୍ୟ ଦୃଷ୍ଟିରୁ ହେଉ ସବୁକିଛିରେ ଏକ ବିରାଟ ତାରତମ୍ୟ ଥିବା ସତ୍ତ୍ୱେ ପତ୍ରିକା ପ୍ରକାଶନର ଶୈଳୀ ଅତ୍ୟନ୍ତ ସନ୍ତୁଳିତ ଥିଲା । ବେଳେବେଳେ ବୟସ୍କମାନଙ୍କ ପାଇଁ ଲେଖାଗୁଡ଼ିକ ପିଲାଳିଆମୀ ଲାଗୁଥିଲା । ଥରେ "କୁନି ସମୀକ୍ଷାରେ" ଗୋଟିଏ ଲେଖାର କିଛି ଅଂଶ ଓ୍ୱାର୍ସୋର "ସାହିତ୍ୟ ସମୀକ୍ଷା"ରେ ପ୍ରକାଶ କରାଯାଇଥିଲା । ଏହି

ଲେଖାରେ ଥିବା ଭୁଲ ବନାନଗୁଡ଼ିକୁ ଲକ୍ଷ୍ୟକରି ଅନେକ ସମାଲୋଚନା କରାହେଲା ଏବଂ ଲେଖାଟିକୁ ଅତି ନିଷ୍ଠୁର ଭାବରେ ବିଦ୍ରୂପ କରାଗଲା ।

କୋର୍ଜାକ ଏହି ସମାଲୋଚନାକୁ ଭୀଷଣ ଭାବରେ ନିଜର ପ୍ରତିକ୍ରିୟା ଜଣାଇଥିଲେ । ଲେଖାରେ ଥିବା ଭୁଲ-ଭ୍ରାନ୍ତି ପାଇଁ ନିଜେ ଦାୟୀ ବୋଲି ସ୍ୱୀକାରୋକ୍ତି ବାଢ଼ିଲେ; ମାତ୍ର ତା'ପରେ ଏକ ତୀକ୍ଷ୍ଣ ମନ୍ତବ୍ୟ ପ୍ରଦାନ କଲେ । ସେ ଲେଖିଥିଲେ, "ବୟସ୍କମାନେ ସବୁବେଳେ ପିଲାମାନଙ୍କୁ ପରିହାସ କରି ଉଡ଼ାଇଦିଅନ୍ତି । ସେଥିପାଇଁ ପିଲାଟିଏ ନିଜର ଚିନ୍ତା ଏବଂ ସ୍ୱପ୍ନକୁ ସେମାନଙ୍କଠାରୁ ଲୁଚାଇ ରଖିଥାଏ । ଆମେ ଆମ "କ୍ଷୁଦ୍ର ସମୀକ୍ଷା"କୁ ଲୁଚାଇ ରଖିପାରିବୁ ନାହିଁ । ଆମ ସଭ୍ୟମାନଙ୍କ ଭିତରେ ଆମେ ଏହାଙ୍କୁ ପଡ଼ଯନ୍ତ୍ରକାରୀଙ୍କ ଦ୍ୱାରା ପ୍ରକାଶିତ ଏକ ଗୁପ୍ତ ପ୍ରଚାର ପତ୍ର ଭାବରେ ବିତରଣ କରିପାରିବୁ ନାହିଁ । ପିଲାର ଭୁଲ ଆଦିକୁ ବିଦ୍ରୂପ କରିବା ଦ୍ୱାରା ଘୃଣାମଣୀର ତାରତମ୍ୟ ବଢ଼ିଯାଏ । ସବୁଠାରୁ ଖରାପ କଥା ଘଟେ ଯେ ଏହା ପିଲାକୁ ଜିଦ୍‌ଖୋର୍ ହେବା, କ୍ଷମାଶୀଳ ନହେବା, ପ୍ରତିହିଂସାପରାୟଣ ହେବା ଏବଂ ଦାନଶୀଳ ନହେବା ଆଦିପାଇଁ ପ୍ରବୃତ୍ତ କରାଏ ।

ପିଲାମାନଙ୍କ ଲେଖାମାନ କ୍ଷୁଦ୍ର ସମୀକ୍ଷା ପତ୍ରିକାକୁ ଅଧିକରୁ ଅଧିକ ସଂଖ୍ୟାରେ ଆସିବାକୁ ଲାଗିଲା । ସେମାନଙ୍କ ପ୍ରବନ୍ଧ ଶଠି ଲେଖାର ଶୈଳୀସବୁ ନିଜସ୍ୱ ଥିଲା । ଯେତେ ଅଧିକ ଲେଖା ଆସିଲା, ସେତେ ଅଧିକ ସଂଖ୍ୟାରେ ଏବଂ ଅଧିକରୁ ଅଧିକ ଜାଗାରେ ଲେଖାଗୁଡ଼ିକ ପ୍ରକାଶ ଲାଭକଲା । ମାତ୍ର ବୟସ ବଢ଼ିବା ସାଙ୍ଗକୁ କୋହାକଙ୍କ କାଗଜ କମିବାକୁ ଲାଗିଲା । ଅନ୍ୟ ବିଷୟରେ ସେ ଚିନ୍ତା କରିବାକୁ ଲାଗିଲେ । ତାଙ୍କର ଯୌବନୋଚିତ କାର୍ଯ୍ୟଧାରା ନୂତନ କ୍ଷେତ୍ରକୁ ବିସ୍ତାର ଲାଭକଲା । କୋର୍ଜାକଙ୍କ ନାରେ ଏକ ଅଭିଯୋଗ ଆସିଲା ଯେ ସେ ପୋଲାଣ୍ଡର ପିଲାମାନଙ୍କୁ ନେଇ ଏକ ସଙ୍ଗଠନ ସୃଷ୍ଟି କରୁଛନ୍ତି ଯେଉଁଠି ପିଲାମାନେ ମିଥ୍ୟା ଓ ଅତିରଞ୍ଜନକାରୀ ସାହିତ୍ୟାଭିଳାଷୀ ହୋଇପଡ଼ିବେ ଏବଂ ସେମାନଙ୍କର ଅପରାଧଗୁଡ଼ିକୁ ଆଦୌ ନିୟନ୍ତ୍ରଣରେ ରଖିହେବ ନାହିଁ । କୋର୍ଜାକଙ୍କ ନାରେ ଆଉ କେତେପ୍ରକାର ମନ୍ତବ୍ୟମାନ ପ୍ରକାଶଲାଭ କରୁଥିଲା । ତାଙ୍କ ବିଷୟରେ କୁହାଯାଉଥିଲା ଯେ ସେ ଏପରି ଏକ ପିଲାଦଳ ସୃଷ୍ଟି କରୁଛନ୍ତି ତଥା ସେମାନଙ୍କୁ ଉତ୍ସାହିତ କରୁଛନ୍ତି ଯେ ସେମାନେ କେବଳ ଲେଖିବା ପାଇଁ ପାଗଳ ହେବେ ଏବଂ ତାଙ୍କଦ୍ୱାରା ଆଉ କିଛି ହେବନାହିଁ ।

ଏସବୁ ସତ୍ତ୍ୱେ କୋର୍ଜାକ୍ ପିଲାଙ୍କ ପଛରେ ଧାଡ଼ିରେ ଛିଡ଼ା ହୋଇଯାଇଥିଲେ । ଯେଉଁଠି ପିଲାମାନଙ୍କୁ ନେଇ ଏପରି ଅଭିଯୋଗମାନ କରାଯାଉଥିଲା, ସେ ତାହାକୁ ଅନ୍ୟାୟ ବୋଲି ସ୍ୱୀକାର କରୁଥିଲେ । ସେ ଏହି ଆକ୍ରମଣକୁ ଗୋଟିଏ ସମ୍ପାଦକୀୟରେ ପ୍ରତିଆକ୍ରମଣ କରି ଅନୁଚ୍ଛେଦଟିଏ ଲେଖିଥିଲେ—

"ଅକ୍ଷରପ୍ରୀତି ଆଦୌ ବିପଦ ନୁହେଁ । ନିରକ୍ଷରତାରେ ହିଁ ରହିଛି ବିପଦ । ଏକ ସଂସ୍କୃତିସଂପନ୍ନ ସମାଜରେ ଅକ୍ଷରପ୍ରୀତି ହେଉଛି ଏକ ସୁସ୍ଥ ସୂଚନା ଏବଂ ଏହା ସେହି ସମାଜ ପାଇଁ ଅଧିକ ପ୍ରଯୁଜ୍ୟ । ଯେଉଁ ସମାଜର ସଂସ୍କୃତିରେ ୧୩୦ ବର୍ଷର ମଳିନତା ପରେ ପୁନଶ୍ଚ ଏକ ପ୍ରସ୍ଫୁଟନର ସମୟ ଆସିଛି । ତାକୁ ଆମେ ସମ୍ମାନ ଦେବା ଉଚିତ । (ଏହି ୧୩୦ ବର୍ଷ କାଳ ପୋଲାଣ୍ଡ ରୁଷିଆ ଅଧିକୃତ ହୋଇ ରହିଥିଲା) ପୋଲାଣ୍ଡର ଭାଷାକୁ ଇହୁଦୀପିଲାମାନଙ୍କୁ ଶିଖାଇବା ଏକ ସୁନ୍ଦର ତଥା ଆବଶ୍ୟକ କାମ । ଧନ୍ୟବାଦର କଥା ଏହି ଯେ, ଆମର ବହୁସଂଖ୍ୟକ ପିଲା ଆମ ଭାଷା ରୂପକ ଜାତୀୟ ସମ୍ପଦର ଉତ୍ସକୁ ମୁକ୍ତ ଭାବରେ ଉନ୍ମୋଚିତ କରିପାରୁଛନ୍ତି ।" କୋର୍ଚ୍ଚାକଙ୍କର ଏହି ଅନୁଚ୍ଛେଦଟି ସମାଲୋଚକମାନଙ୍କୁ ନୀରବ କରିଦେଲା ।

ପିଲାଙ୍କ ସମ୍ବାଦପତ୍ର ପ୍ରକାଶନ ପାଇଁ ଆବଶ୍ୟକ ଜଟିଳ ଯନ୍ତ୍ରପାତି ଓ ଅନ୍ୟାନ୍ୟ ସରଞ୍ଜାମସବୁ ଯୋଗାଡ଼ କରି ଉପଯୁକ୍ତ ଭାବରେ ଅବସ୍ଥାପିତ କଲାପରେ କୋର୍ଚ୍ଚାକ ଏଥିରୁ ନିଜକୁ ଓହରେଇ ଆଣିବାକୁ ଚେଷ୍ଟାକଲେ । ଦୀର୍ଘ ବାରବର୍ଷକାଳ ସମ୍ପାଦକ ହିସାବରେ କାମ କଲାପରେ ସେ "ଲିଟିଲ ସମୀକ୍ଷା" ସମ୍ବାଦପତ୍ରରୁ ଅବ୍ୟାହତି ନେଲେ । ଅବ୍ୟାହତି ନେବା ଅବସରରେ ସେ "ଲିଟିଲ ସମୀକ୍ଷା"ର ଦାୟିତ୍ୱକୁ ବନ୍ଧୁ ଇଗୋଲ ଆବ୍ରାମୋଭ୍‌ଙ୍କୁ ଅର୍ପଣ କରିବା ପାଇଁ ଜିଦ୍ ଧରି ବସିଲେ । ୧୯୩୯ ମସିହାରେ ଯୁଦ୍ଧ ଆରମ୍ଭ ହେବା ପର୍ଯ୍ୟନ୍ତ ଆବ୍ରାମୋଭ୍ ପତ୍ରିକାକୁ ସଫଳତାର ସହ ବଞ୍ଚାଇ ରଖି-ପାରିଲେ । ପତ୍ରିକାର ଗୁଣାତ୍ମକମାନ ତଥା ଗ୍ରାହକ ସଂଖ୍ୟା ଆଗଭଳି ବଜାୟ ରହିଥିଲା । ସବୁଠାରୁ ଆଶ୍ଚର୍ଯ୍ୟର କଥା ଏହି ଯେ ଆବ୍ରାମୋଭ୍ ଇହୁଦୀ ନଥିଲେ । ଆବ୍ରାମୋଭ୍‌ଙ୍କ ସମ୍ପାଦନା ସମୟରେ ପତ୍ରିକାଟିର ଆକାରରେ ପରିବର୍ତ୍ତନ କରା-ଯାଇଥିଲା । ଏହି ସମ୍ବାଦପତ୍ରଟି ସାନ ପିଲାଙ୍କ ଅପେକ୍ଷା ବଡ଼ ପିଲାଙ୍କ ପାଇଁ ଅଧିକ ଉଦ୍ଦିଷ୍ଟ ଥିଲା ଏବଂ ଏଥିରେ ମାନବିକତାର ଆଦର୍ଶ ଉପରେ ବେଶି ପ୍ରକାଶିତ ହେଉଥିଲା ।

ଯୁଦ୍ଧ ପୂର୍ବରୁ ଓ୍ୱାର୍ସୋରେ ରାଜନୀତିକ ବାତାବରଣ ବହୁତ କଦର୍ଯ୍ୟ ଥିଲା । ଏହି ସମୟରେ ଓ୍ୱାର୍ସୋରୁ "ଲିଟିଲ ସମୀକ୍ଷା" ଭଳି ଏକ ସମ୍ବାଦପତ୍ର ପ୍ରକାଶିତ ହେବା ପ୍ରକୃତରେ ଏକ ଅସାଧାରଣ ଘଟଣା କହିଲେ ଅତ୍ୟୁକ୍ତି ହେବନାହିଁ । ସମ୍ବାଦପତ୍ରଟି ବିଭିନ୍ନ ପ୍ରକାରର ଅନେକ ତରୁଣ ତରୁଣୀଙ୍କର ଆଦର୍ଶ ଓ ଆଶାକୁ ପ୍ରତିନିଧିତ୍ୱ କରୁଥିଲା । ଏହି ତରୁଣ ତରୁଣୀମାନଙ୍କ ଭିତରେ ଥିଲେ ପୋଲାଣ୍ଡ ଯୁବଗୋଷ୍ଠୀର ସ୍ୱାଧୀନ ଉଦାରପନ୍ଥୀ ଦଳ, ଇହୁଦୀମୁକ୍ତି ଆନ୍ଦୋଳନକାରୀ, ଯୁବ କମ୍ୟୁନିଷ୍ଟ, ପ୍ରୋଲେଟାରିଆନ୍ ଇହୁଦୀଙ୍କ ପିଲାମାନେ ଏବଂ ଇହୁଦୀ ବୁର୍ଜୋଆ ଗୋଷ୍ଠୀ । ଏମାନେ ସମସ୍ତେ ପ୍ରେମ, ସମ୍ମାନ ଓ ସତ୍ୟର ପତାକା ତଳେ ଏକଜୁଟ ହୋଇ ରହିଥିଲେ ।

ବାସ୍ତବରେ "କ୍ଲବ ସମୀକ୍ଷା" ସମ୍ବାଦପତ୍ରଟି କ୍ରମେ ଏକ ଗୁରୁତ୍ୱପୂର୍ଣ୍ଣ ମୁଖପତ୍ର ଭାବରେ ମୁଣ୍ଡ ଟେକିଲା ଏବଂ ପ୍ରଗତିଶୀଳ ଆଦର୍ଶମୂଳକ ଚିନ୍ତାଧାରାକୁ ପ୍ରତିଫଳିତ କରୁଥିଲା ।

ପିଲମାନଙ୍କ ପାଇଁ ଉଦ୍ଦିଷ୍ଟ ଏହି ସମ୍ବାଦପତ୍ର ଏତେ କ୍ଷିପ୍ର ଗତିରେ ବିକଶିତ ହୋଇଉଠୁଥିବା ସମୟରେ କୋର୍ଯାକ ଏଥିରୁ ଓହରିଯିବାକୁ ନିଷ୍ପତ୍ତି ନେଲେ କାହିଁକି ? ଏଥିନିମନ୍ତେ କେତେଗୁଡ଼ିଏ କାରଣ ସମ୍ବନ୍ଧରେ ଅନୁଧ୍ୟାନ କରାଯାଇପାରେ । ତାଙ୍କର ଗୋଟିଏ ବିଶ୍ୱାସ ଥିଲା ଏବଂ ସେ ଏହି ବିଶ୍ୱାସକୁ ତାଙ୍କର ଜଣେ ବନ୍ଧୁଙ୍କୁ କହିଥିଲେ ବିଭିନ୍ନ ଯନ୍ତ୍ରାଂଶକୁ ସଜାଡ଼ି ମେସିନ୍‌ଟିକୁ କାମରେ ନିୟୋଗ କଲାପରେ ମେସିନ୍ ତାଙ୍କପାଇଁ ପ୍ରତିବନ୍ଧକ ହୋଇ ଛିଡ଼ାହୁଏ । ଏହି ପ୍ରକାର ବିଶ୍ୱାସ ପାଇଁ ସେ ହୁଏତ "କ୍ଲବ ସମୀକ୍ଷା" ସମ୍ବାଦପତ୍ରଠାରୁ ନିଜକୁ ଦୂରେଇ ରଖିଥାଇ ପାରନ୍ତି । କିମ୍ବା ଅନ୍ୟ କୌଣସି ନୂଆ କାମରେ ହାତ ଦେବାପାଇଁ ସେ ମନେ ମନେ ଯୋଜନା କରିସାରିଥିଲେ । କିମ୍ବା ଇହୁଦୀମୁକ୍ତ ଆନ୍ଦୋଳନରୁ ମୁଣ୍ଡ ଟେକିଉଠୁଥିବା ନୂଆ ନୂଆ ସମସ୍ୟାମାନ ତାଙ୍କୁ ଅସୁବିଧାରେ ପକାଉଥିଲା । ଏପରି ବି ହୋଇଥାଇପାରେ ଯେ ସେ ସମ୍ବାଦପତ୍ରକୁ ଏକ ନୂଆ ଢାଞ୍ଚାରେ ପ୍ରକାଶିତ ହେଉ ବୋଲି ଇଚ୍ଛା କରୁଥିଲେ ଯଦ୍ଦ୍ୱାରା ଏହା ଏକ ବୃହତ୍ତର ପରିସରକୁ ପରିବ୍ୟାପ୍ତ ହୋଇପାରିବ । କାରଣ ଯାହା ହେଉ ପଛକେ ସେ ଏକ ନିର୍ଦ୍ଦିଷ୍ଟ ଲକ୍ଷ୍ୟରୁ ଓହରିଯାଇ ନଥିଲେ । ଏହି ନିର୍ଦ୍ଦିଷ୍ଟ ଲକ୍ଷ୍ୟଟି ହେଉଛି କେବଳ ଇହୁଦୀମାନଙ୍କ ଭିତରେ ନିବଦ୍ଧ ନରହି ପୋଲାଣ୍ଡର ସବୁ ବର୍ଗର ପିଲମାନଙ୍କୁ ଏକତ୍ର ବନ୍ଧନରେ ଯୋଡ଼ିରଖିବାରେ "କ୍ଲବ ସମୀକ୍ଷା" ସମ୍ବାଦ ପତ୍ର ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଥିଲା ।

ଏହି ସମୟରେ କୋର୍ଯାକ୍ ଏକ ନିରାଶଜନକ ଘଟଣାର ସମ୍ମୁଖୀନ ହେଲେ । ୧୯୩୬ ମସିହାରେ ଜଣେ ତରୁଣୀ ଯାହାଙ୍କର ପୋଲାଣ୍ଡର ସମ୍ବାଦପତ୍ର ପରିସରରେ କିଛି ନାଁ ଥିଲା ତାଙ୍କ ପାଖରେ ଏକ ପ୍ରସ୍ତାବ ଉପସ୍ଥାପନ କଲେ । ପୋଲାଣ୍ଡର ସରକାରୀ ଅନୁକୂଳ ଏକ ନାମଜାଦା ସମ୍ବାଦପତ୍ରର ଦୁଇଜଣ ମୁଖ୍ୟ ସମ୍ବାଦକଙ୍କୁ ସାକ୍ଷାତ କରିବାପାଇଁ ତରୁଣୀ ଜଣଙ୍କ ବ୍ୟବସ୍ଥା କଲେ । ଏହି ଦୁଇଜଣ ସମ୍ବାଦକ କିଛିଦିନ ତଳେ ପିଲମାନଙ୍କ ପାଇଁ ଏକ ଛୋଟିଆ ସମ୍ବାଦପତ୍ର ପ୍ରକାଶ କରିବାପାଇଁ ଚିନ୍ତା କରୁଥିଲେ ।

ଏଭଳି ଏକ ସମ୍ବାଦପତ୍ରର ସଫଳ ପ୍ରକାଶନ ପାଇଁ କୋର୍ଯାକଙ୍କ ସାହାଯ୍ୟକୁ ତରୁଣୀଜଣକ ଅନୁଭବ କରୁଥିଲେ । ତାଙ୍କ ପ୍ରତି ଅତି ସମବେଦନାପୂର୍ଣ୍ଣ ଥିଲେ ଏବଂ ସେ ଅନ୍ୟ ସମ୍ବାଦକ ଦୁଇଜଣଙ୍କୁ କୋର୍ଯାକ୍‌ଙ୍କ ବିଷୟରେ ଆଗରୁ ଅତି ଉତ୍ସାହର ସହ ବୁଝାଇ ସାରିଥିଲେ । କୋର୍ଯାକଙ୍କ ଯୋଜନା ଓ ମୌଳିକ ସୃଜନଶୀଳତା ସମ୍ବନ୍ଧରେ ତରୁଣୀ ଜଣକ ଅଧିକ ଗୁରୁତ୍ୱର ସହ ଉପସ୍ଥାପନ କରିଥିଲେ । ସେ ଏପରି ବି

କହିଥିଲେ ଯେ ଯଦି କୋର୍ଯାକ୍ ଦାୟିତ୍ୱ ନିଅନ୍ତି, ତେବେ ସମ୍ବାଦପତ୍ରଟି ନିଶ୍ଚୟ ସଫଳତା ଲାଭ କରିବ ।

ଦରକାର ଅନୁସାରେ ଜଣେ ବ୍ୟକ୍ତିଙ୍କୁ ପାଇପାରୁଛନ୍ତି ବୋଲି ଯେତେବେଳେ ସମ୍ପାଦକ ଦ୍ୱୟଙ୍କର ହୃଦ୍‌ବୋଧ ହେଲା, କୋର୍ଯାକ୍‌ଙ୍କ ସହ ସାକ୍ଷାତ ପାଇଁ ସ୍ଥାନ ଓ ସମୟ ସ୍ଥିର କରିବା ଦାୟିତ୍ୱ ସେମାନେ ତରୁଣୀ ଜଣଙ୍କୁ କହିଲେ । ସାକ୍ଷାତ ସମୟର ଦୁଇଘଣ୍ଟା ପୂର୍ବରୁ କୋର୍ଯାକ୍ ତରୁଣୀ ଜଣଙ୍କୁ ଫୋନ୍ କରି କହିଲେ, "ମୁଁ ବର୍ତ୍ତମାନ ବାଲମୀର "ଆମଘର" ଅନାଥାଶ୍ରମରେ ଅଛି । ପିଲାମାନଙ୍କୁ ପ୍ରତିଷେଧକ ଟିକା ଦେଉଛି । ମୋ ପାଖରେ ଏଇଠି କେବଳ କାମ କରିବା ପୋଷାକ ଅଛି । ମୁଁ ଏହି ଦୁଇଜଣ ପ୍ରସିଦ୍ଧ ବ୍ୟକ୍ତିଙ୍କୁ ସାକ୍ଷାତ କରିବାକୁ ଗଲାବେଳେ କଅଣ ଗ୍ରହଣଯୋଗ୍ୟ ପୋଷାକ ପିନ୍ଧି ପ୍ରସ୍ତୁତ ହେବାକୁ ପଡ଼ିବ ?" କୋର୍ଯାକ୍‌ଙ୍କ କଥା ଶୁଣି କିଛି ସମୟ ଧରି ତରୁଣୀ ଜଣଙ୍କ କିଛି କହିପାରିଲେ ନାହିଁ ।

କୋର୍ଯାକ୍ କହିଚାଲିଲେ, "ଯଦି ମୋତେ ସେମିତି ପ୍ରସ୍ତୁତ ହୋଇ ଯିବାକୁ ହେବ, ତେବେ ତୁମେ ଦୟାକରି ୯୨-କ୍ରୋଚ୍‌ମାଲ୍‌ନା ଷ୍ଟ୍ରିଟ୍‌ର ଅନାଥାଶ୍ରମକୁ ଟିକିଏ ଫୋନ୍ କରି ଜଣାଇଦେବ କି ଯେ ବଡ଼ ପିଲାଙ୍କ ଭିତରୁ ଜଣେ କେହି ହ୍ୟାଙ୍ଗରରେ ଝୁଲୁହୋଇଥିବା ମୋର ଗୋଟିଏ ରବିବାରିଆ ସୁଟ୍ ଆଣିଦେବେ । ତାହାହେଲେ ମୁଁ ଏଇ ଦୁଇଜଣ ବିଶିଷ୍ଟ ସାମ୍ବାଦିକଙ୍କୁ ମୋର ଭଲ ପୋଷାକ ଅଛି ବୋଲି ଜଣାଇ-ପାରିବି । ଏହାଦ୍ୱାରା ସେ ଜଣାଇଦେଇଥାନ୍ତେ ଯେ ଏ ପ୍ରକାର ସାକ୍ଷାତ ପାଇଁ ସଜବାଜ ହୋଇ ଯିବାପାଇଁ ତାଙ୍କ ପାଖରେ ସମୟ ନାହିଁ । ତରୁଣୀ ସାମ୍ବାଦିକ ଜଣକ ଆଉ ଅଧିକ ମାନସିକ ଦୁଶ୍ଚିନ୍ତାରେ ହନ୍ତସନ୍ତ ନହେବା ପାଇଁ ଡାକ୍ତରଙ୍କ ପାଇଁ ଭଲ ପୋଷାକ ଆଣିବା ଢଗରେ କୌଣସି ପ୍ରକାର ଉଦ୍ୟମ କରିନଥିଲେ । ସମ୍ପାଦକ ଦ୍ୱୟଙ୍କ ଗୃହାଣିରେ କୋର୍ଯାକ୍ ଆଗରୁ ଯାହା ଆଶଙ୍କା କରୁଥିଲେ ତାହାହିଁ ଦେଖିବାକୁ ମିଳିଲେ । କୋର୍ଯାକ୍ ଯେ ସେମାନଙ୍କ ପାଇଁ ଉପଯୁକ୍ତ ନୁହନ୍ତି ଏକଥା ବୁଝିଗଲେ । ବେଶି କିଛି କହିବା ପୂର୍ବରୁ ସେମାନେ କୋର୍ଯାକଙ୍କୁ ବରଖାସ୍ତ କରିସାରିଥିଲେ ।

ଦୁଇଜଣଙ୍କ ଭିତରୁ ଜଣେ ସମ୍ପାଦକ କୋର୍ଯାକ୍‌ଙ୍କୁ ପଚାରିଲେ, "ତୁମେ ଏ ନୂଆ ପତ୍ରିକା କେମିତି ହେବ ବୋଲି ଭାବୁଛ ? ପତ୍ରିକାଟିର ଆକାର କେମିତି ହେବ ?

କୋର୍ଯାକ୍ ହସିଲେ । ଦୁଃଖରେ ସଜଳ ହସ । ତାଙ୍କର ଦୃଷ୍ଟି ଅତ୍ୟନ୍ତ ତୀକ୍ଷ୍ଣ ଥିଲା । ସେ ନିଷ୍ପତ୍ତି ନେଇସାରିଥିଲେ ଯେ ସେ ନିଜର ତଥା ପିଲାମାନଙ୍କ ପାଇଁ ଉଦ୍ଦିଷ୍ଟ ମୂଲ୍ୟବାନ ସମୟକୁ ଏମାନଙ୍କ ପାଖରେ ନଷ୍ଟ କରିବେ ନାହିଁ । ସମ୍ପାଦକଙ୍କ ପ୍ରଶ୍ନର ଉତ୍ତର ଦେବା ଅବସରରେ, ସେ ନିଜ ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରି କହିଲେ, "ମୁଁ ପିଲାଙ୍କ ସ୍ୱପ୍ନକୁ ନେଇ ପତ୍ରିକା ବାହାର କରିବି । ମୁଁ ଚାହୁଁଛି, ଏଭଳି ଏକ ପତ୍ରିକା

ବାହାର କରିବ ଯାହାକି ସରକାରଙ୍କ ଶିକ୍ଷା ବିଭାଗଦ୍ୱାରା ରଦ୍ଦ ହୋଇଯିବ, ସବୁ ଶିକ୍ଷା ବିଶାରଦ ଏବଂ ପିତାମାତାଙ୍କ ଦ୍ୱାରା ନିନ୍ଦିତ ହେବ ଏବଂ ବିଦ୍ୟାଳୟମାନେ କାଳେ ତାଙ୍କ ପିଲା ପତ୍ରିକା ପଢ଼ିବେ ବୋଲି ଆଶଙ୍କା କରି କେବେ ବି କିଣିବାକୁ ମନ-ବଳାଇବେ ନାହିଁ । ପତ୍ରିକାକୁ କେବଳ ପିଲାମାନେ କିଣିବେ···?

ସମ୍ପାଦକଦ୍ୱୟ ସ୍ମିତହାସ୍ୟ ସହ କୋର୍ଜାକ୍‌ଙ୍କ ଏହି ଉକ୍ତିକୁ ସହିବାକୁ ବାଧ୍ୟ ହେଲେ । ପରସ୍ପରକୁ ଚାହିଁବାଛଡ଼ା ତାଙ୍କର ଆଉ କୌଣସି ଗତି ନଥିଲା । ପରେ କୋର୍ଜାକ୍‌ଙ୍କୁ ସେମାନେ ତାଙ୍କ ନିଷ୍ପତ୍ତି ଜଣାଇବେ ବୋଲି କହିଲେ । ସେ ସେମାନଙ୍କୁ ଆଉ ଅପେକ୍ଷା କରିରହିଲେ ନାହିଁ । ତାଙ୍କ ଅଭିଳଷିତ ପତ୍ରିକା ପାଇଁ ସେଠାରେ କୌଣସି ସ୍ଥାନ ନଥିଲା । ଯେତେବେଳେ ଦେଶରେ ମୁଣ୍ଡଟେକି ଉଠିଥିବା ଦୁଇ ନିଷ୍ଠୁର ଶକ୍ତି ମୁହାଁମୁହିଁ ହୋଇ ରହିଥିଲେ, ସେତେବେଳେ ତାଙ୍କ ପତ୍ରିକାପାଇଁ ସ୍ଥାନ ବା କେଉଁଠି ମିଳିବ ! ଗୋଟିଏ ପକ୍ଷରେ ଦଣ୍ଡାୟମାନ ଥିଲା ଇହୁଦୀମାନଙ୍କର ଉଗ୍ର ଦେଶାତ୍ମବୋଧ ଏବଂ ଅନ୍ୟପକ୍ଷରେ ଅତି ଭୟଙ୍କର ଭାବରେ ଗର୍ଜିଉଠୁଥିଲା ଜାତୀୟତା-ବାଦର ବହୁମୁଣ୍ଡିଆ ରାକ୍ଷସ ।

ସେହିଦିନଠାରୁ କୋର୍ଜାକ୍ ନିଜ ଅନାଥାଶ୍ରମ ପାଇଁ ପ୍ରକାଶିତ ହେଉଥିବା ସାପ୍ତାହିକ ଗେଜେଟ୍‌ମାନଙ୍କର ସମ୍ପାଦକୀୟ ବ୍ୟତୀତ ଆଉ କୌଣସି ପତ୍ରପତ୍ରିକା ପାଇଁ ଲେଖିନଥିଲେ ।

## (୨୧) ନାଟ୍ୟକାର ଜାନୁସ୍ କୋର୍ଜାକ୍

ଷ୍ଟିଫାନ୍ ଜାରାକ୍‌କି ପୋଲାଣ୍ଡର ଜଣେ ବିଖ୍ୟାତ ନାଟ୍ୟ ନିର୍ଦ୍ଦେଶକ । ୧୯୩୦-୩୧ର ଶୀତ ଋତୁରେ ସେ ଓ୍ୱାର୍ସୋରେ ନିଜର ନାଟ୍ୟ ଅନୁଷ୍ଠାନଗୁଡ଼ିକୁ ସମବେତ କରାଇ ନାଟ୍ୟ ପ୍ରଦର୍ଶନ କରାଉଥିଲେ । ସେତେବେଳେ ସେ ପୋଲାଣ୍ଡର ମାଟି, ପାଣି, ପବନ, ସାମାଜିକ ଚଳଣିକୁ ନେଇ ସୃଜନଶୀଳ ମୌଳିକ ଲେଖା ଖୋଜୁଥିଲେ ।

ପ୍ରଥମ ବର୍ଷର ଶେଷଆଡ଼କୁ ନାଟ୍ୟମଣ୍ଡପର ଦ୍ୱାରଦେଶରେ ଅତି ଶାନ୍ତଶିଷ୍ଟ ତଥା ବିନମ୍ର ଭାବରେ କୋର୍ଜାକ୍ ପ୍ରବେଶ କଲେ । ନିଜ ବିଷୟରେ କୌଣସି ପ୍ରକାର ବାହାଦୁରୀ ନ ଦେଖେଇ ସେ ଜାରାକ୍‌କିକୁ ତାଙ୍କ ରଚିତ ପାଣ୍ଡୁଲିପିଟିଏ ବଢ଼ାଇ-ଦେଲେ ।

ଜାରାକ୍‌କି ଆଗରୁ କୋର୍ଜାକ୍‌ଙ୍କ ବିଷୟରେ ଜାଣିନଥିଲେ । ବୋଧହୁଏ ସେ କୋର୍ଜାକ୍‌ଙ୍କର କୌଣସି ବହି ବି ପଢ଼ିନଥିଲେ । କାରଣ କୋର୍ଜାକ୍‌ଙ୍କର ବହି ବା

ଲେଖାଗୁଡ଼ିକ ମୁଖ୍ୟତଃ ପିଲା ତଥା ଶିକ୍ଷକମାନଙ୍କ ପାଇଁ ଉଦ୍ଦିଷ୍ଟ ଥିଲା । ତାଙ୍କ ବିଷୟରେ ଅଜ୍ଞ ଥାଇ ମଧ୍ୟ ଜାଗିନ୍‌ଜ ପାଣ୍ଡୁଲିପିଟିକୁ ଏକାଥରକେ ପଢ଼ିଦେଲେ । ନାଟକଟିର ନାଁ ଥିଲା "ପାଗଳମାନଙ୍କର ସଭା ।"

ନାଟ୍ୟ ନିର୍ଦ୍ଦେଶକ ଜାଗିନ୍‌ଜ ତାଙ୍କୁ ସାହାଯ୍ୟ କରିବାପାଇଁ ଆଉ କାହାକୁ ରଖୁନଥିଲେ । ଏପରିକି ପାଣ୍ଡୁଲିପିଗୁଡ଼ିକୁ ପଢ଼ିବା ପାଇଁ ମଧ୍ୟ କାହାକୁ ନିଯୁକ୍ତ କରୁନଥିଲେ । ନାଟ୍ୟ ଅନୁଷ୍ଠାନକୁ ଯାହା କିଛି ଲେଖା ଆସୁଥିଲା ସେ ସବୁକୁ ନିଜେ ପଢ଼ୁଥିଲେ ।

କୌଣସି ଲେଖାକୁ ନାଟକ ପ୍ରଦର୍ଶନ କରାଇବାକୁ ହେଲେ ସେ ନିଜେ ନିଷ୍ପତ୍ତି ନେଉଥିଲେ । ଅନ୍ୟ କୌଣସି କର୍ତ୍ତୃପକ୍ଷଙ୍କର ଏଥିରେ କୌଣସି ଭୂମିକା ନଥିଲା । କୋର୍ଯାକ୍‌ଙ୍କ ଏହି ପାଣ୍ଡୁଲିପି ଜାଗିନ୍‌ଜଙ୍କୁ ଭାରି ଭଲ ଲାଗିଲା । ସେ ଆଦୌ ବିଳମ୍ବ ନକରି ନାଟକ ଅଭିନୀତ କରାଇଲେ । କୋର୍ଯାକ୍‌ଙ୍କର ଲେଖାରେ ମୌଳିକତା ଓ ସୃଜନଶୀଳତା ଭରିରହିଥିଲା । ଏହା ନିର୍ଦ୍ଦେଶକଙ୍କ ମନକୁ ଛୁଇଁଲା । ନିଜର ସମସ୍ତ ବୁଦ୍ଧି ଓ ଶକ୍ତି ଖଟାଇ ସେ ନାଟକଟିକୁ ଅଭିନୀତ କରାଇଲେ । ସେ ନିଜେ ମୁଖ୍ୟ ଭୂମିକାରେ ଅଭିନୟ କରିଥିଲେ । ମୁଖ୍ୟ ଭୂମିକାରେ ଥିଲେ ଜଣେ ପାଗଳ ଧର୍ମଯାଜକ ।

ସେ ଆଶା କରିଥିଲେ ଦେଖଣାହାରୀମାନେ ନାଟକ ଦେଖିଲା ପରେ ଉତ୍ସାହର ସହ ପ୍ରତିକ୍ରିୟା ଦେଖାଇବେ । ମାତ୍ର ତାଙ୍କର ଆଶା ନିରାଶାରେ ପରିଣତ ହେଲା । ନାଟକ ଲୋକମାନଙ୍କୁ ଆକୃଷ୍ଟ କରିପାରିଲା ନାହିଁ । ସେ ସମୟରେ ଯଦିଓ ଏହା ଏକ ପ୍ରଶଂସନୀୟ ଉଦ୍ୟମ ଥିଲା । ଅତ୍ୟନ୍ତ ଦୟନୀୟ ଭାବରେ ବିଫଳ ହେଲା । ବୋଧହୁଏ ନାଟକର ଦାର୍ଶନିକତା ପାଇଁ ଏହା ଲୋକମାନଙ୍କ ପାଖରେ ଅବୋଧ ହୋଇପଡ଼ିଲା । ସାଧାରଣ ଜନତାଙ୍କୁ ନାଟକର ବିଷୟବସ୍ତୁ ଆକୃଷ୍ଟ କରିପାରିଲାନାହିଁ । କେତେକ ଅଭିଯୋଗ କଲେ ଯେ ନାଟକ ବହୁତ ଅବାସ୍ତବ ଥିଲା । ଅନ୍ୟମାନେ ମନ୍ତବ୍ୟ ଦେଲେ ଯେ ଓ୍ୱାର୍ସୋର୍ ନାଟ୍ୟମଣ୍ଡପରେ ଅଭିନୀତ ହେଉଥିବା ଅନ୍ୟ ନାଟକମାନଙ୍କ ପରି ଏହା ସାଧାରଣଜନତାଙ୍କୁ ସନ୍ତୁଷ୍ଟ କରିବାଭଳି ଲେଖା ହୋଇନଥିଲା ଏଭଳି ସମାଲୋଚନା ଯେ ଅର୍ଥହୀନ ବା ଅଯୌକ୍ତିକ ଥିଲା ତାହା ନୁହେଁ । କୋର୍ଯାକ୍ ନାଟକରେ ଅନେକ ପ୍ରତୀକ ତଥା ସଂକ୍ଷିପ୍ତ ଭାଷା ବ୍ୟବହାର କରିଥିଲେ । ତା'ଛଡ଼ା ନାଟକରେ ପୂରିରହିଥିବା ନିକଟ ଭବିଷ୍ୟତରେ ଘଟିବାକୁ ଯାଉଥିବା ପରିକଳ୍ପନା-ଗୁଡ଼ିକ ଆଦୌ ଜନପ୍ରିୟ ହୋଇପାରିନଥିଲା ।

ଘନେଇଆସୁଥିବା ବିପଦଗୁଡ଼ିକୁ କୋର୍ଯାକ୍ ଏକ ନୂତନ ଶୈଳୀରେ । ଜନତାର ଅର୍ଦ୍ଧମୁଦ୍ରିତ ଚକ୍ଷୁ ସମ୍ମୁଖରେ ଉଦ୍‌ଘାଟନ କରିବାପାଇଁ ପ୍ରଚେଷ୍ଟା କରିଥିଲେ; ମାତ୍ର ଜନତା କୋର୍ଯାକ୍‌ଙ୍କ ଦୂରଦୃଷ୍ଟିକୁ ହଜମ କରିବାକୁ ପ୍ରସ୍ତୁତ ନଥିଲେ ଏବଂ ସେମାନେ

ଅପମାନ ବୋଧ କଲେ ବା କୋର୍ଯାକ୍ଙ୍କ ଅନ୍ୟମନସ୍କ ସ୍ୱଭାବ ପ୍ରତି ସେ ଉଦାସୀନ ରହିଲେ ।

କିନ୍ତୁ ତାଙ୍କର ନୀରବ ମୁହୂର୍ତ୍ତଗୁଡ଼ିକରେ କୋର୍ଯାକ୍ ଏକ ଦୂର ଭବିଷ୍ୟତର ଭୟାବହତାକୁ ଦେଖିପାରୁଥିଲେ । ଏକ ଜ୍ଞାନୀ ଏବଂ ହୃଦୟବାନ୍ ଭବିଷ୍ୟଦ୍ରଷ୍ଟା ଭାବରେ ସେ ବାସ୍ତବରେ ଘଟିବାକୁ ଯାଉଥିବା ବିଭୀଷିକାଗୁଡ଼ିକୁ ଅନୁଭବ କରିପାରୁଥିଲେ । ଏଗୁଡ଼ିକ ଅବଶ୍ୟମ୍ଭାବୀ ବୋଲି ସେ ଭାଗ୍ୟବାଦୀ ନଥିଲେ । ମାତ୍ର ସେ ଜାଣିଥିଲେ ଯେ ସୁସ୍ଥ ସୁନ୍ଦର ସମାଜ ଗଠନ ପାଇଁ ଛିଡ଼ାହୋଇଥିବା ଶକ୍ତିଗୁଡ଼ିକର ବୃଷ୍ଟି ଅତି ସଂକୀର୍ଣ୍ଣ । ଅନେକଗୁଡ଼ିଏ ବିପଦକୁ ନେଇ ସେ ଏତେ ସଚେତନ ହୋଇ-ପଡ଼ିଥିଲେ ଯେ ଆଉ ଗୋଟିଏ ଅତ୍ୟାଧିକ ଛତନାକାରକ ବିପଦ ଦ୍ୱାରଦେଶରେ ମୁଣ୍ଡ ଟେକିଛି ବୋଲି ବୁଝିବାକୁ ସମର୍ଥ ହେଉନଥିଲେ ।

୧୯୨୬ ମସିହାରେ ସେ ସଂକ୍ଷେପରେ ମାତ୍ର ସିଧାସଳଖ ଭାବରେ "ଅଲିକୁକ୍‌ଆ ଗେଡ଼" ବୋଲି ଲେଖାଟିର ନାମକରଣ କରିଯାଇଥିଲି । ସେତେବେଳେ ବି ତାଙ୍କର ପର୍ଯ୍ୟବେକ୍ଷଣ ଶକ୍ତି ଅନେକ ତୀକ୍ଷ୍ଣ ଥିଲା । ପୋଲାଣ୍ଡର ଯେଉଁ ଧାରଣାଗୁଡ଼ିକ ଆଦର୍ଶମୂଳକ ବୋଲି ପ୍ରଧାନ ହୋଇ ରହିଥିଲେ ସେଗୁଡ଼ିକୁ ସେ ଆତ୍ମଘାତୀ ବୋଲି ଅନୁଭବ କରୁଥିଲେ । ସେ ହୃଦୟଙ୍ଗମ କରିଥିଲେ ଯେ ପୋଲାଣ୍ଡରେ ବାସ କରିଥିବା ମାତ୍ର ୩୦ ନିୟୁତ ଲୋକ ଆତ୍ମସୁରକ୍ଷା ପାଇଁ ବିଭିନ୍ନ ଜାତି ତଥା ଗୋଷ୍ଠୀରେ ଭାଗ ଭାଗ ହୋଇ ରହିଥିଲେ ।

୧୯୩୦ ମସିହା ବେଳକୁ ତାଙ୍କ ଦୂରଦୃଷ୍ଟି ଆହୁରି ଦିଗନ୍ତପ୍ରସାରୀ ହୋଇ-ଯାଇଥିଲା । ସେ ଦେଖିପାରୁଥିଲେ ପୋଲାଣ୍ଡ ଉପରେ କାଳିମା ଭୟଙ୍କର ଭାବରେ ମାଡ଼ିଆସିଲାଣି । ବିପଦର କରାଳ ସ୍ରୋତ ମାଡ଼ିଆସିବାକୁ ପ୍ରସ୍ତୁତ ହୋଇସାରିଲାଣି ।

ଏହା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଯେ ସେ ଇଉରୋପର ଦ୍ୱନ୍ଦ୍ୱଠାରୁ ବହୁଦୂରରେ ରହିଥିଲେ ଏବଂ ଇଉରୋପରେ ଥିବା ଗମ୍ଭୀରତର ଅର୍ଥକୁ ପ୍ରଶଂସା କରୁଥିଲେ । କୋର୍ଯାକ୍ ବ୍ୟସ୍ତତାପୂର୍ଣ୍ଣ ଓ ବିଭ୍ରମହୀନ ପୃଥିବୀର ଜୀବନଧାରାଠାରୁ ଦୂରରେ ରହି ଏକ କଳାକାରର କର୍ଣ୍ଣ ମାଧ୍ୟମରେ ଗ୍ରାତନ୍ତ୍ର କରାଉଥିବା ସ୍ୱରଧ୍ୱନିକୁ ଶୁଣୁଥିଲେ ଏବଂ ନାଟ୍ୟକାରର ଲେଖନୀ ମାଧ୍ୟମରେ ଏହାକୁ ଅଭିବ୍ୟକ୍ତ କରୁଥିଲେ । ଏହି ସ୍ୱରଧ୍ୱନି ସେତେବେଳେ ଅତ୍ୟନ୍ତ କ୍ଷୀଣ ଥିଲା । ମାତ୍ର ପରବର୍ତ୍ତୀ କାଳରେ ଜାତୀୟ ଏବଂ ଆନ୍ତର୍ଜାତୀୟ ପାଗଳାମୀର ବିକଟାଳ ସ୍ୱରରେ ପରିଣତ ହେଲା । ଦ୍ୱିତୀୟ ବିଶ୍ୱ-ମହାଯୁଦ୍ଧର ବିଭୀଷିକାମୟ ବିଡ଼ମ୍ବନା ଥିଲା ଏହାର ଚରମ ପ୍ରମାଣ ।

କୋର୍ଯାକ୍‌ଙ୍କର ନାଟକଟିରେ ଦୁଇପ୍ରକାରର ଭୂମିକା ରହିଥିଲା । ସହଯୋଗୀ ଭୂମିକାଗୁଡ଼ିକରେ ଥିଲେ—ଜଣେ ପ୍ରଫେସର, ଜଣେ ଡାକ୍ତର, ଜଣେ ଘରୁଆ ଚାକର, କୁନି ଜନ ଏବଂ ବାରବର୍ଷ ବାଳକ ଆନନ୍ଦଙ୍କ ଚରିତ୍ର । ଏମାନେ ସବୁ ଥିଲେ ସୁସ୍ଥ ମଣିଷ ।

ମାତ୍ର ମୁଖ୍ୟ ଭୂମିକାଗୁଡ଼ିକରେ ଥିଲେ ପୋଷାକ ପାଗଳାମାନେ । ଏହି ଚରିତ୍ରଗୁଡ଼ିକ ପ୍ରତିଷ୍ଠିତ ତଥା ପ୍ରଶଂସନୀୟ ମତଗୁଡ଼ିକ ପ୍ରତିନିଧିତ୍ୱ କରୁଥିଲେ । ନାଟକ ମାଧ୍ୟମରେ ଏହି ଚରିତ୍ରମାନେ ଗମ୍ଭୀର ବିବେକର ପରିଚୟ ଦେଉଥିଲେ । ମାତ୍ର ସମାଜରେ ସେମାନଙ୍କର ଠିକ୍ ସେହିଭଳି ମର୍ଯ୍ୟାଦା ନଥିଲା ।

ନାଟକଟି ଅଭିନୀତ ହେଲା । ଗୋଟିଏ ଅଙ୍କାବଙ୍କା ପଟା ତିଆରି ଗ୍ଲୋବ୍ ବଙ୍କା ଅକ୍ଷ ଉପରେ ଘୂରୁଥିଲା । ଗ୍ଲୋବ୍‌ର କିଛି ଅଂଶ ଫଲ ବାକ୍ସରେ ତିଆରି ହୋଇଥିଲା । ଫଲ ବାକ୍ସ ଉପରେ ଜମିନ୍ କୋଲି ମାନଙ୍କର ନାମ ଥାଇ ଷ୍ଟାମ୍ପ ମରାଯାଇଥିଲା । ଖବରକାଗଜର କଟାଅଂଶଗୁଡ଼ିକ ଅଠାରେ ଯୋଡ଼ି ଏକାଠି ରଖାଯାଇଥିଲା ଏବଂ ଗ୍ଲୋବ୍‌ଟି ବୋଲି ଗଲାବେଳକୁ ଖବରକାଗଜର ଶିରୋନାମା ଦୃଶ୍ୟମାନ ହେଉଥିଲା । କ୍ଷିପ୍ର ଗତିରେ ଚାଲୁଥିବା ଘଡ଼ିଟିଏ ରଖାଯାଇଥିଲା । ଝଡ଼ଭଳି ଚାଲିଯାଉଥିବା ସମସ୍ତଙ୍କୁ ଏହା ରେକର୍ଡ଼ କରୁଥିଲା । ଏକ ଖରାପ ହୃତ୍‌ପିଣ୍ଡ ପରି ଜୋର୍‌ରେ ଟିକ୍ ଟିକ୍ କରୁଥିଲା । ଏହି ଟିକ୍ ଟିକ୍ ଶବ୍ଦ ଭୟଙ୍କର ଭାବରେ ବଢ଼ି ଚାଲୁଥିଲା ଏବଂ ଏକ ଟାଇମ୍ ବୋମା ଭଳି ଜଣାପଡ଼ୁଥିଲା ।

ପାଗଳାଖାନାର ଅନ୍ତେବାସୀମାନେ ପ୍ରତୀକାତ୍ମକ ଭାବରେ ସେମାନଙ୍କର ଇଚ୍ଛାକୁ ପରିପ୍ରକାଶ କରି ମଣ୍ଡପଟିକୁ ସଜାଇଲେ । ଏହି ସାଜସଜ୍ଜା ବିଭିନ୍ନ ଅର୍ଥ ବହନ କରୁଥିଲା । ସୁପ୍ତ ସୌନ୍ଦର୍ଯ୍ୟର ଏକ ରାଜପ୍ରାସାଦ ବା ଅଜ୍ଞାତ ଯୋଦ୍ଧାର କବର— ଏଥିରୁ ଏହିପରି ଅର୍ଥ ସବୁ ବାହାରୁଥିଲା ।

ଦୁଇଟି ପୃଥକ ବସ୍ତୁକୁ ଏହା ସୂଚାଉଥିଲା । ଗୋଟିଏ ହେଲା ମାୟା ଓ ଅନ୍ୟଟି ହେଲା ମୃତ୍ୟୁର ଆଶଙ୍କା । ଉପରେ ଦୋଳାୟମାନ ପୃଥିବୀ । ଏହି ପୃଥିବୀରେ ନାଟକର ଏକ ମୁଖ୍ୟ ଚରିତ୍ର ଥିଲା ଜଣେ ଦୁଃଖୀ ଭାଇ । ସେ ହଇଜା, ଟାଇଫସ୍, ବିଷାକ୍ତ ଗ୍ୟାସ୍, ବାରୁଦ, ଆଦି ସମସ୍ତ ଧରି ଚାଲିଥିବା ଯୁଦ୍ଧଜନିତ ଅକଥନୀୟ ଦୁଃଖଯନ୍ତ୍ରଣାକୁ ଦେଖିଥିଲେ ଏବଂ ସେସବୁ ଦ୍ୱାରା ପୀଡ଼ିତ ହେଉଥିଲେ ।

ଡାକ୍ତରଖାନାର ଅନ୍ତେବାସୀମାନେ ଏକ ସଭା କରିବା ପାଇଁ ଏକାଠି ବସିଲେ । ସଭାରେ ଆଲୋଚନାର ବିଷୟବସ୍ତୁ ଥିଲା—ପୃଥିବୀ, ସମସ୍ୟା, ଜୀବନ ଏବଂ ମାନବ-ସମାଜ । ସଭାସଦ୍‌ମାନେ ବିଭିନ୍ନ ସଙ୍ଗଠନକୁ ପ୍ରତିନିଧିତ୍ୱ କରୁଥିଲେ । ସେମାନଙ୍କ ଭିତରେ ଥିଲେ ଜଣେ ଭୋଜନାଳୟର ମାଲିକ, ଜଣେ ବ୍ୟାଙ୍କ୍ ନିର୍ଦ୍ଦେଶକ; ଜଣେ ଶ୍ରମିକ ଯିଏ ବିନା ଦୁଃଖ ନିର୍ଯ୍ୟାତନାରେ ଗୋଟିଏ ଦିନକୁ ଜୟ କରିବାକୁ ଇଚ୍ଛା ପ୍ରକାଶ କରୁଥିଲେ ଏବଂ ବୀରତ୍ୱ ସହକାରେ ମୃତ୍ୟୁବରଣ ନକରି ଭଲଭାବରେ ବଞ୍ଚିବାକୁ ଚାହୁଁଥିଲେ । ଏମାନଙ୍କ ବ୍ୟତୀତ ଥିଲେ ଜଣେ ନିମ୍ନଶ୍ରେଣୀର ଇଂରେଜ କ୍ଲର୍କ । ସେ ଲମ୍ବା ନାଲି ଭେଲଭେଟ୍ ପୋଷାକ ପିନ୍ଧିଥିଲେ ଯାହାକି ମଧ୍ୟଯୁଗୀୟ

ସମ୍ରାଟଙ୍କ ପରି ଦେଖାଯାଉଥିଲା ମଧ୍ୟଯୁଗୀୟ ସମ୍ରାଟଙ୍କ ପୂର୍ବ ଗୌରବ, ବଂଶ କୀର୍ତ୍ତି ତଥା ଜାତି ବର୍ତ୍ତମା ବିଷୟରେ ଭାବିବା ଛଡ଼ା ଆଉ କିଛି କରିପାରୁ ନଥିଲେ । ଯୌନକ୍ଷୁଧା ମେଣ୍ଟାଇବା ଥିଲା ତାଙ୍କପାଇଁ ମୁଖ୍ୟ କଥା । ଆଉ ଜଣେ ଚରିତ୍ର ଥିଲେ, ଜଣେ ବୁଢ଼ା ଅବସରପ୍ରାପ୍ତ ବ୍ୟକ୍ତି । ସେ ଈଶ୍ୱର ଅନୁସନ୍ଧାନରେ ଲାଗିପଡ଼ିଥିଲେ ।

ସଭାରେ ବସିଥିବା ସାଧାରଣ ଜନତାଙ୍କ ଉପରେ ସଭାର କୌଣସି ପ୍ରଭାବ ପଡ଼ିପାରୁ ନଥିଲା । ପ୍ରତ୍ୟେକ ସଭାସଦ୍ ନିଜ ମତାମତକୁ ପ୍ରକାଶ କରୁଥିଲେ । କେବଳ ନିଜ ପାଗଳାମୀକୁ ଠିକ୍ ବୋଲି ଜୋର୍ ଦେଉଥିଲେ ଏବଂ ନିଜ ବିଷୟରେ କହୁଥିଲେ । ଜଣେ ଅନ୍ୟଜଣଙ୍କର କଥାକୁ ବେଖାତିର କରି ଉଡ଼ାଇଦେଉଥିଲେ । ପ୍ରତୀକାତ୍ମକ ଭାବରେ ଦେଖାଇ ଦିଆଯାଇଥିଲା ଯେ ପୃଥିବୀରେ କେବଳ ପରସ୍ପର ପ୍ରତି ଅବିଶ୍ୱାସମଣା ଏବଂ ବିଦ୍ୱେଷଭାବ ଭରିରହିଛି ଏବଂ ଏହାଦ୍ୱାରା ନିଜେ ନିଜକୁ ଧ୍ୱଂସ ମୁଖକୁ ଟାଣିନେବା ଅପରିହାର୍ଯ୍ୟ ହୋଇପଡ଼ୁଛି ।

ପାଗଳମାନଙ୍କ ସଭାଟି କେବଳ ପାଟିତୁଣ୍ଡରେ ଗୋଳମାଳିଆ ହୋଇ ରହିଲା । କୌଣସି ଯୁକ୍ତିଯୁକ୍ତ ସିଦ୍ଧାନ୍ତ ମିଳି ନଥିଲା । ଯୁକ୍ତି ବୁଦ୍ଧି ଓ ପାଗଳାମୀ ପରସ୍ପର ପ୍ରତି ହାସ୍ୟାସ୍ପଦ ଅଭିନୟ କଲେ । ନାଟକ ମଣ୍ଡପରେ ଅଭିନୟଟିକୁ ଦେଖିଲା ପରେ ମନେହେଲା ସତେଯେପରି ପୃଥିବୀରେ ଆଉ ସୁସ୍ଥ ଲୋକ ନାହାନ୍ତି ।

ପାଗଳଖାନାର ଡାକ୍ତର କହିଲେ, ପାଗଳାମୀ ଦୃଷ୍ଟିକୋଣରୁ ଯୁଦ୍ଧ ଏବଂ ଧର୍ମର ଇତିହାସକୁ ବିଶ୍ଳେଷଣ କରିବା ଏକାନ୍ତ ଆବଶ୍ୟକ । ଷ୍ଟକ୍ ଏକ୍ସଚେଞ୍ଜ ଅଫିସର ମଣିଷମାନଙ୍କୁ କେତେଗୁଡ଼ିଏ ଖେଳଣାସହ ତୁଳନାକଲେ । ଏହିପରି ଭାବରେ ଚୋମ୍ସାକ ନାଟକଟି ଭିତରେ ପ୍ରକାଶ କରୁଥିଲେ ଯେ, ପୃଥିବୀର ସବୁକିଛି ପାଗଳାମୀ ଦ୍ୱାରା ବଶବର୍ତ୍ତୀ ହୋଇ ରହିଛି । ସମ୍ମାନଯୋଗ୍ୟା ତରୁଣୀ ବାରବରା ସଲ୍କ ନିଜର ଭବିଷ୍ୟତ ସ୍ୱାମୀଙ୍କ ପାଗଳାମୀକୁ ନିବାରଣ କରିବାପାଇଁ ପ୍ରେମଭରା ସାନ୍ତ୍ୱନାମୂଳକ କଥା କହୁଥିଲେ ତଥା ଅବିରତ ଭାବରେ ନିଜ ଦେହକୁ ଅର୍ପଣ କରିଚାଲିଥିଲେ । ମାତ୍ର ଏହି ପାଗଳ ବ୍ୟକ୍ତି ପରିଶେଷରେ ବାରବରା ସଲକକୁ ହତ୍ୟାକଲେ । ଡାକ୍ତରଖାନାର ପାଗଳମାନଙ୍କ ଭିତରେ ସବୁଠୁ ଅସୁବିଧାଜନକ ପାଗଳ ଥିଲେ ଜଣେ ସେନାଧ୍ୟକ୍ଷ । ସାରା ପୃଥିବୀକୁ ମାନବିକତା, ସଭ୍ୟତା, ଶିକ୍ଷା ସ୍ୱାସ୍ଥ୍ୟରକ୍ଷା ଏବଂ ଇହୁଦୀମାନଙ୍କୁ ଘୃଣା କରିବା ପାଇଁ ଡ୍ରିଲ୍ କରାଇବାକୁ ସେ ଇଚ୍ଛା କରୁଥିଲେ । ତାଙ୍କର ପାଗଳାମୀ ଏଭଳି କୁତ୍ସିତ ଏବଂ ଉତ୍ତେଜନାପୂର୍ଣ୍ଣ ଥିଲା ଯେ ସେ ପ୍ରତି ଟାଉନ୍‌ର ଛକଜାଗାମାନଙ୍କରେ ଫାଶି ମଣ୍ଡପ ସବୁ ତିଆରି କରାଇ ଆଦର୍ଶବାଦୀମାନଙ୍କୁ ସେଠାରେ ମୃତ୍ୟୁଦଣ୍ଡ ଦେବାପାଇଁ ଚାହୁଁଥିଲେ । ସେ ଚାହୁଁଥିଲେ ଚଳମାନ ପ୍ରିଣ୍ଟିଂ ଟାଇପ୍‌ର ଉଦ୍ଭାବକ ଜୋହାନ ଗୁଟେନ୍‌ବର୍ଗ ଏବଂ ବିଜୁଳି ବଲ୍‌ବର ଉଦ୍ଭାବକ

ଏଲ୍ଡ଼ସନଙ୍କ କଙ୍କାଳକୁ ମାଟିତଳୁ ବାହାର କରି ପୋଡ଼ିଦେବେ । ଏହି ପାଗଳ ସେନାଧ୍ୟକ୍ଷ ଜଣଙ୍କ ହତ୍ୟା, ନାରୀଧର୍ଷଣ, ରକ୍ତପାତ ସହ ଜଡ଼ିତ ବ୍ୟକ୍ତିମାନଙ୍କୁ ତଥା ସେମାନଙ୍କର ଘରଦ୍ୱାରକୁ ଛାରଖାର କରିଦେବାପାଇଁ ମଧ୍ୟ ଇଚ୍ଛା କରୁଥିଲେ । ପରିଶେଷରେ ଏହି ଧ୍ୱଂସାବଶେଷ ଭିତରେ ନିଜ ଜୀବନକୁ ଉପଭୋଗ କରିବେ ବୋଲି ମନେକରୁଥିଲେ । ଏହି ସେନାଧ୍ୟକ୍ଷ ଥିଲେ ଅନ୍ତର୍ଜାତୀୟ ପ୍ରଳୟଙ୍କରୀ ବିପଦ ଓ ମୃତ୍ୟୁର ପ୍ରତିନିଧି ।

ହିଟ୍‌ଲରବାଦର ବିରୋଧୀ ଭାବରେ ଜଣେ ବୃଦ୍ଧ ପାଗଳ ଧର୍ମଯାଜକ ନାଟ୍ୟ-ମଣ୍ଡପ ସାରା ଘୂରିବୁଲୁଥିଲେ । ସେ ସବୁବେଳେ ଈଶ୍ୱରଙ୍କୁ ଖୋଜୁଥିଲେ ଏବଂ ବିଶ୍ୱାସ କରୁଥିଲେ ଯେ ଈଶ୍ୱର ପୃଥିବୀ ଛାଡ଼ି ଚାଲିଯାଇଛନ୍ତି । ପୃଥିବୀରେ କେହି ଜଣେ ମଧ୍ୟ ଈଶ୍ୱରଙ୍କୁ ଚିହ୍ନୁ ନାହାନ୍ତି ।

ପ୍ରଥମ ଅଭିନୟ ପରେ ଧର୍ମଯାଜକ ନାଟ୍ୟମଣ୍ଡପରୁ ଓହ୍ଲାଇ ଆସି ଝୁଲା ହୋଇଥିବା ଉଜ୍ଜ୍ୱଳ ଆଲୋକ ଆଗରେ ବସିପଡ଼ିଲେ ଏବଂ ଜଣେ ବଢ଼େଇର କୁନି ପୁଅକୁ ଲମ୍ବା ଗପଟିଏ କହିଲେ । ଏହି ଗପଟି ନାଟକଟିକୁ ଅଧିକ ହୃଦୟସ୍ପର୍ଶୀ କରାଇଥିଲା । ଲେଖା ଭିତରେ କୋର୍ଚ୍ଚାକଙ୍କର ନିଜତ୍ୱ ଭରିରହିଥିଲା । ତା' ସାଙ୍ଗକୁ ବାଗ୍‌ଚିକ ନିଜେ ଧର୍ମଯାଜକ ଭୂମିକାରେ ଅଭିନୟ କରି ଚରମ ପାରଦର୍ଶିତା ପ୍ରଦର୍ଶନ କରାଇଥିଲେ । ତେଣୁ ସମଗ୍ର ନାଟକଟିରେ ଏହି ଅଂଶଟି ଅତ୍ୟନ୍ତ ପ୍ରଭାବ-ଶାଳୀ ହୋଇପାରିଥିଲା । ବିଚରା ବୃଦ୍ଧ ଧର୍ମଯାଜକ ଚାରିଆଡ଼େ ହରବରା ହୋଇ ଘୂରିବୁଲୁଥିଲେ । ଭବିଷ୍ୟତରେ ଘଟିବାକୁ ଯାଉଥିବା ଦାରୁଣ ବିପଦ ସମ୍ବନ୍ଧରେ ସେ ଯୁବଜନତାକୁ ସତର୍କ କରାଇଦେବାକୁ ବ୍ୟଗ୍ର ହୋଇଉଠୁଥିଲେ ।

ତା'ପରେ ଧର୍ମଯାଜକ କହୁଥିଲେ, ପ୍ରକୃତରେ ଈଶ୍ୱର ଏ ସମସ୍ୟାବହୁଳ ସଂସାରରୁ ଚର୍ଚ୍ଚମାନଙ୍କରୁ, ଲୋକଙ୍କର ଘରମାନଙ୍କରୁ ଛାଡ଼ି ପଳାଇଯାଇଛନ୍ତି । ସେ ସହରର ତଳ ଅଞ୍ଚଳର ଗରିବ ଲୋକମାନଙ୍କ ଘରେ, ବେଶ୍ୟାମାନଙ୍କ ଘରେ, ଡାକ୍ତର-ଖାନାରେ ଏବଂ ଯନ୍ତ୍ରଣାଦାୟକ ଜାଗାମାନଙ୍କରେ ବିଶ୍ରାମ ନେଉଛନ୍ତି । ଈଶ୍ୱର ଗୋଟିଏ କୁନିଝିଅ ମାର୍‌ସେଲକୁ ଖୋଜୁଛନ୍ତି । ଈଶ୍ୱର ଭୟଭୀତ ହୋଇଯାଇଛନ୍ତି । କାରଣ ତାଙ୍କୁ ଏଥର ବହୁ ଆଡ଼ମ୍ବରପୂର୍ଣ୍ଣ ଭାବରେ ମାତ୍ର ଅତି କୃତ୍ରିମତାର ସହ ଅଭ୍ୟର୍ଥନା କରାଗଲା ବୋଲି ସେ ଅନୁଭବ କଲେ । ଦ୍ୱିତୀୟଥର ପାଇଁ ଈଶ୍ୱର ଦୌଡ଼ି ପଳାଇଗଲେ । ତାଙ୍କୁ ଯେତେବେଳେ ଅନୁସରଣ କରାଗଲା ଓ ତାଙ୍କ ଉପରେ ଗମ୍ଭୀର ନଜର ରଖାଗଲା ସେ ଅସଂଖ୍ୟ ସଂଖ୍ୟାରେ ରଙ୍ଗରଙ୍ଗିଆ କୁନି କୁନି ଗୋଲିରେ ପରିଣତ ହୋଇଗଲେ । ଏଗୁଡ଼ିକ ପିଲାମାନଙ୍କ ହୃଦୟ ଭିତରେ ପ୍ରବେଶ କରି-ଯାଇଥିଲା ।

"ମାନବ ସମାଜର ପ୍ରକୃତ ସମ୍ପତ୍ତି ପିଲା ।"—ଏ କଥାଟି "ଦୁଃଖୀଘର" ନାଟକର ଶେଷରେ ଘୋଷଣା କଲେ । ଏଥିପାଇଁ ପିଲା ଈଶ୍ୱରଙ୍କର ଏତେ ନିକଟତର । ପରେ କୋର୍ଶାକ ତାଙ୍କର ଏକ ଗଭୀରତମ ଅନୁଭବ ପ୍ରକାଶ କରିଥିଲେ । ସେ କହିଥିଲେ, "ମୁଁ ଦୃଢ଼ ନିଶ୍ଚିତ ଯେ ପିଲାମାନେ ନିଶ୍ଚିତଭାବେ ସାରା ଜଗତର ଆଧ୍ୟାତ୍ମିକ ଉନ୍ନତି ପାଇଁ ଉପଯୁକ୍ତ ଭୂମିକା ଗ୍ରହଣ କରିବେ ।"

କୋର୍ଶାକ ତାଙ୍କ ନାଟକଟିରେ ଏହି ପାଗଳ ଭୂମିକାଗୁଡ଼ିକରେ ଯେଉଁସବୁ ସନ୍ଦେଶଗୁଡ଼ିକ ଦେଇଥିଲେ ସେ ସବୁକୁ ପ୍ରକୃତରେ ଦ୍ୱିତୀୟ ମହାଯୁଦ୍ଧ ପରେ ଯାଇ ବୁଝିବା ପାଇଁ ସମ୍ଭବ ହେଲା । ନାଜିମାନଙ୍କର ଚକ୍ରାଧାରା ଓ କାର୍ଯ୍ୟକଳାପରୁ କୋର୍ଶାକ ଭବିଷ୍ୟତରେ ଘଟିବାକୁ ଥିବା ଦୁର୍ଦ୍ଦଶାଗୁଡ଼ିକର ଠିକ୍ ଠିକ୍ ପରିକଳ୍ପନା କରି-ପାରିଥିଲେ । ବିଶ୍ୱମହାଯୁଦ୍ଧର ବିଭୀଷିକା ଏବଂ ଯୁଦ୍ଧ ପରବର୍ତ୍ତୀ ପରିଣତି ମାନ କୋର୍ଶାକଙ୍କ ଦୂରଦୃଷ୍ଟିର ପ୍ରମାଣ ଅଟେ । ନାଟକଟିର ପାଗଳ ସେନାଧ୍ୟକ୍ଷ ଜର୍ମାନୀରେ ହିଟ୍‌ଲରଙ୍କ ପ୍ରତିନିଧି ହୋଇଥିଲେ । ପୃଥିବୀରେ ପଡ଼ିଥିବା ବିଭୀଷିକା ସହ ପରିସ୍ଥିତିର ଆଠବର୍ଷ ଆଗରୁ ନାଟକରେ ସେନାଧ୍ୟକ୍ଷ ଭୂମିକା ମାଧ୍ୟମରେ ଏହା ଜଣାଇ ଦିଆଯାଇଥିଲା ।

କୌଣସି ଦ୍ରଷ୍ଟା କୋର୍ଶାକଙ୍କ ପରି ଭବିଷ୍ୟତର ଘଟଣାବଳୀକୁ ସଠିକ ଭାବରେ ବର୍ଣ୍ଣନା କରିବା ଏତେ ସହଜ କଥା ନୁହେଁ । ନିଜର ଭବିଷ୍ୟତ ପରିକଳ୍ପନାଗୁଡ଼ିକ ବାସ୍ତବ କ୍ଷେତ୍ରରେ ଘଟିବା ପୂର୍ବରୁ ଏତେ ବ୍ୟତିବ୍ୟସ୍ତ ହୋଇପଡ଼ିବା ବୋଧହୁଏ କୌଣସି ଭବିଷ୍ୟତଦ୍ରଷ୍ଟାଙ୍କ ନିକଟରେ ଦୃଷ୍ଟିଗୋଚର ହୁଏନାହିଁ । ସେ ମାନବସମାଜ ପାଇଁ ଏତେ ଉଦାର ଓ ସମ୍ବେଦନଶୀଳ ଥିଲେ ଯେ ଭବିଷ୍ୟତର ଏସବୁ ଅଶୁଭ ସମ୍ଭାବନାଗୁଡ଼ିକ ତାଙ୍କୁ ବ୍ୟତିବ୍ୟସ୍ତ କରିପକାଉଥିଲା । ନାଟକଟିରେ ପାଗଳ ବୁଢ଼ା ଧର୍ମଯାଜକ ଭୂମିକା ମାଧ୍ୟମରେ ସେ ନିଜର ମନୋଭାବକୁ ପରିଷ୍କାର ଭାବରେ ଅଭିବ୍ୟକ୍ତ କରିଥିଲେ ।

ଷ୍ଟିଫାନ ଜାରିକଜଙ୍କ ସହ ଜାନୁସ୍ କୋର୍ଶାକଙ୍କ ସାକ୍ଷାତ ଅନେକ ମହତ୍ତ୍ୱପୂର୍ଣ୍ଣ ଥିଲା । ନାଟକଟି ବିଫଳ ହେଲା ସତ; ମାତ୍ର ସେମାନଙ୍କର ବନ୍ଧୁତ୍ୱ କୌଣସି ଭାବରେ କ୍ଷୁଣ୍ଣ ହେଲା ନାହିଁ । ଏତେବେଳକୁ ସାରା ପୃଥିବୀରେ ଆଚ୍ଛାଦିତ ହୋଇ ରହିଥିବା ପାଗଳାମୀକୁ ଅଧିକାଂଶ ଲୋକ ବୁଝିପାରିଥିଲେ । କୋର୍ଶାକଙ୍କ ଭବିଷ୍ୟ ଦୃଷ୍ଟିଗୁଡ଼ିକ ଗୋଟିଏ ପରେ ଗୋଟିଏ ଘଟିଚାଲିଥିଲା । ମାତ୍ର କୋର୍ଶାକ କେବଳ ଭବିଷ୍ୟ ଦ୍ରଷ୍ଟା ଭାବରେ ନିଜର ଭୂମିକା ଲଭାଇବା ପାଇଁ ଆଗ୍ରହ ପ୍ରକାଶ କରୁନଥିଲେ । ତାଙ୍କର ଆଗରେ ଏକ ମସ୍ତବଡ଼ ସମସ୍ୟା ଦେଖାଦେଇଥିଲା । ଏହି ସମସ୍ୟାଟିକୁ ସେ ଶେଷ ପର୍ଯ୍ୟନ୍ତ ସମାଧାନ କରିପାରି ନଥିଲେ । କିନ୍ତୁ ଏଥିପାଇଁ ସେ ସତର୍କତାର ସହ ପ୍ରତି

ମୁହୂର୍ତ୍ତରେ ସଦୁପଯୋଗ କରୁଥିଲେ । ସମସ୍ୟାଟି ହେଲା, "ଅସହାୟ ପିଲାମାନଙ୍କର ଜୀବନକୁ ରକ୍ଷା କରିବା ପାଇଁ ସେ କେଉଁ ପଥଟିକୁ ଅନୁସରଣ କରିବେ ?"

ତାଙ୍କ ହୃଦୟ ଭିତରେ ଏହା ତାଙ୍କୁ ପ୍ରବଳ ଆଘାତ ଦେଉଥିଲା ଏବଂ ପ୍ରକୃତ ଦୁର୍ଦ୍ଦିନ ଆସିବା ପୂର୍ବରୁ ସତର୍କଘଣ୍ଟି ବଜାଇ ଚାଲିଥିଲା । ସେ ଜାଣିଥିଲେ ସେ କୌଣସି ପାଗଳ ସେନାଧକ୍ଷ ନୁହେଁ । ମାତ୍ର ସୈନ୍ୟବାହିନୀର ଜଣେ ସାମାନ୍ୟ ଏବଂ ସାଧାରଣ ପାଗଳ···ପଦାତିକ କୁନି ପିଲାଟିର ହାତଧରି ସିଧାସଳଖ ଶବଦାହନକାରୀ ଅଗ୍ନିକୁଣ୍ଡ ମଧ୍ୟକୁ ନେଇଯିବା ପାଇଁ କଡ଼ା ଆଦେଶ ଦେବ ।

## (୨୨) ପାଲେଷ୍ଟାଇନ୍ ଓ କୋର୍ଯାକ୍

କୋର୍ଯାକଙ୍କ ଅନେକ ଛାତ୍ର ଏବଂ ବନ୍ଧୁ ପାଲେଷ୍ଟାଇନ୍‌ରେ ଘରଦ୍ୱାର କରି ରହୁଥିଲେ । ବହୁ ଦିନରୁ ସେମାନେ ଚାହୁଁଥିଲେ କୋର୍ଯାକ ପାଲେଷ୍ଟାଇନ ଆସିବା ପାଇଁ । କୋର୍ଯାକଙ୍କ ସାହାଯ୍ୟରେ ପାଲେଷ୍ଟାଇନକୁ ସ୍ୱର୍ଗରେ ପରିଣତ କରିବା ପାଇଁ ସେମାନଙ୍କ ଇଚ୍ଛା ଥିଲା । ମାତ୍ର ସେମାନଙ୍କର ଆଶା ପୂରଣ ହୋଇପାରିନଥିଲା । ପାଲେଷ୍ଟାଇନ୍‌କୁ ଖାଲି ଟିକେ ବୁଲିଯିବା ପାଇଁ ସେମାନେ କୋର୍ଯାକଙ୍କୁ ଅନୁରୋଧ କରିଥିଲେ ।

କୋର୍ଯାକ ବହୁ ଦୂରରେ ଥାଇ ପାଲେଷ୍ଟାଇନର ଇହୁଦୀମୁକ୍ତ ଆନ୍ଦୋଳନ ଏବଂ ଏହାର ପରିସୀମା ପ୍ରତି ନିଜକୁ ଜଣେ ଅଚହ୍ଲା ବ୍ୟକ୍ତି ଭାବରେ ଅନୁଭବ କରୁଥିଲେ । ୧୯୨୮ରେ ସେ ଜଣେ ବନ୍ଧୁଙ୍କ ପାଖକୁ ଏ ସମ୍ବନ୍ଧରେ ଚିଠିଟିଏ ଲେଖି ଜଣାଇଥିଲେ ଯେ—

"ଆମେ ଶାରୀରିକ ତଥା ନୈତିକ ସ୍ତରରେ ପାଇନ୍ ଜଙ୍ଗଲ ଓ ବରଫର ଭୂମିରେ ଚଳିଆସିଛୁ । ୨୦୦୦ ବର୍ଷ ଆଗରୁ ଛିଣ୍ଡିଯାଇଥିବା ଦୁଇ ମୁଣ୍ଡକୁ ବର୍ତ୍ତମାନ ଏକାଠି ଯୋଡ଼ିବା ପାଇଁ ବହୁତ ଉଦ୍ୟମ ହେଉଛି । ପର୍ଯ୍ୟାୟକ୍ରମେ ଲକ୍ଷ୍ୟ ପୂରଣ ହେବ କାରଣ ଇତିହାସ ଏହା ଆମଠାରୁ ଦାବି କରୁଛି ଏବଂ ଏଥିପାଇଁ ବହୁତ ପ୍ରଚେଷ୍ଟା ଓ ତ୍ୟାଗ ସ୍ୱୀକାର କରିବା ସହିତ ଅନେକଙ୍କୁ କଷ୍ଟ ସହିବାକୁ ପଡ଼ିବ ।

ମୋ ପାଖରେ ଜୀବନର ବହୁତ କମ୍ ସମୟ ଅଛି ଯେଉଁଥିରୁ ଦଶ ବର୍ଷ ଉତ୍ସର୍ଗ କରିବା ସମ୍ଭବ ହେବ ନାହିଁ । ମାତ୍ର ଏହିପରି ଏକ ନୂଆ ପ୍ରକାରର ବାତାବରଣକୁ ଦେହରେ ସୁହାଇ ନେବା ପାଇଁ ଦଶ ବର୍ଷ ସମୟ ଦରକାର । ଆଧ୍ୟାତ୍ମିକ ଭାବରେ

ଗ୍ରହଣ କରିବା ଓ ଆହୁରି ଦୂରର କଥା ନୂଆ ପବନକୁ ଶ୍ୱାସନଳୀରେ ଗ୍ରହଣ କରିବା, ନୂଆ ଭୂଖଣ୍ଡ ଦେଖିବା, ନୂଆ ଖାଦ୍ୟ ହଜମ କରିବା ଇତ୍ୟାଦି ବିଷୟରେ ଚିନ୍ତାକରି ମୋ ମନ ଟିକିଏ ଦବିଯାଇଛି । ବର୍ତ୍ତମାନ ଆଉ ନୂଆ ଜିନିଷ ଦେଖିବା ପାଇଁ ସ୍ପୃହା ହେଉନି । ବହି ପଢ଼ିବା ଏବଂ ଆମ ଦେଶ ବିଷୟରେ ଚିନ୍ତା କରିବା ହିଁ ଯଥେଷ୍ଟ ।"

ସମସ୍ୟାଟି ପ୍ରକୃତରେ କଅଣ ? ପୃଥିବୀ ପୃଷ୍ଠରେ ମଣିଷର ଭୂତ ଓ ଭବିଷ୍ୟତର ସମସ୍ୟାଟି ଉପରେ ଏକ କଳାଗ୍ରସ୍ତ ନିକ୍ଷେପ କରିଥିବା ଏହି ସମସ୍ୟାଟି ହେଉଛି "ଇହୁଦୀ ଜାତି ।"

ଏହି ଚିଠିଟି ଯେଉଁ ସମୟରେ ଲେଖାଯାଇଥିଲା, ସେତେବେଳେ କୋର୍ଚାକ ଯଥେଷ୍ଟ ସୃଜନଶୀଳ ଥିଲେ ଏବଂ ବହୁମୁଖୀ କାର୍ଯ୍ୟକଳାପରେ ବ୍ୟସ୍ତ ଥିଲେ । ସେ ଅନୁଭବ କରୁଥିଲେ ଏ ସବୁରେ ଲିପ୍ତରହି ନିଜକୁ ସ୍ଥିର କରନେବେ । ସେତେବେଳେ ବିଭିନ୍ନ କାର୍ଯ୍ୟକଳାପ ଭିତରେ କୋର୍ଚାକ ବହୁତ ତୃପ୍ତିଲାଭ କରୁଥିଲେ । କାରଣ ତାଙ୍କର କାର୍ଯ୍ୟଧାରାଗୁଡ଼ିକ ମୁଖ୍ୟତଃ ପିଲାଙ୍କ ପାଇଁ ଉଦ୍ଦିଷ୍ଟ ଥିଲା ।

ଏହି ସମୟରେ ସେ ତାଙ୍କ ଦିନ ଲିପିରେ ଲେଖିଥିଲେ—"ଜୀବନ କଅଣ ? ପ୍ରକୃତରେ ସୁଖ କଅଣ ? ଯଦି ବସ୍ତୁଗୁଡ଼ିକ ଯେଉଁଠି ଅଛନ୍ତି, ସେଇଠି ଥାଆନ୍ତେ, ଯଦି ସେଗୁଡ଼ିକ ଆଉ ଅଧିକ ଖରାପ ହୁଅନ୍ତେ ନାହିଁ, ତେବେ ବୋଧହୁଏ ପ୍ରକୃତ ସୁଖକୁ ଓ ଜୀବନକୁ ଅନୁଭବ କରିହୁଅନ୍ତା ।

ବିନା ଦ୍ୱିଧାରେ ସେ ଲେଖିଥିଲେ—ସମ୍ବାଦପତ୍ରଗୁଡ଼ିକ ପ୍ରତିଦିନ ଆମକୁ ଅର୍ଥହୀନ ସାହିତ୍ୟ ଯୋଗାଇଥାନ୍ତି । ସମ୍ବାଦପତ୍ର ବିନା କିପରି ବଞ୍ଚିବାକୁ ହୁଏ ଆମେ ଜାଣି-ନାହୁଁ । ସମ୍ବାଦପତ୍ରରେ ଥାଏ ସମ୍ପାଦକୀୟ, କ୍ରମଶଃ ଭାବରେ ପ୍ରକାଶ ପାଉଥିବା ଉପନ୍ୟାସ, ମୃତ୍ୟୁ ସମ୍ବାଦ, ନାଟ୍ୟ ସମୀକ୍ଷା ଏବଂ ନ୍ୟାୟାଳୟର ରିପୋର୍ଟ । ଆଉ ଅଧିକ ବା କଅଣ ଆମର ଦରକାର ?

ଯେଉଁ ସବୁ ଜିନିଷ ଅଧିକାଂଶଙ୍କ ପାଇଁ ସନ୍ତୋଷଜନକ ଥିଲା, ସେ ସବୁକୁ କୋର୍ଚାକ ଆନନ୍ଦର ସହ ଗ୍ରହଣ କରୁଥିଲେ । ସେ ଭଲ ଭାବରେ ଜାଣିଥିଲେ ଯେ ଯାହାକିଛି ହେବାକୁ ଯାଉଛି ସେଗୁଡ଼ିକ ଆହୁରି ଖରାପ । ସେ ଲେଖିଥିଲେ ସୂର୍ଯ୍ୟକୁ ଯଦି ବନ୍ଦ କରିବା ସମ୍ଭବ ହୁଅନ୍ତା, ତେବେ ମୁଁ ବର୍ତ୍ତମାନ ବନ୍ଦ କରିଦିଅନ୍ତି ।

ଅବଶ୍ୟ ସୂର୍ଯ୍ୟ ଘୂରିବୁଲିଥିଲା । ଇଉରୋପ ଉପରେ ସ୍ଥିତି ଗାଢ଼ରୁ ଗାଢ଼ତର ହୋଇ ଚାଲିଯାଉଥିଲା । ପ୍ରାୟ ଛଅ ବର୍ଷରୁ ଅଧିକ କାଳ ବିତିଗଲା ପରେ, କୋର୍ଚାକ ପାଲେଷ୍ଟାଇନ୍ ଗଲେ ଏବଂ ଏହି ଅଳ୍ପ ସମୟ ଭିତରେ ଅଭୂତପୂର୍ବ

ପରିବର୍ତ୍ତନମାନ ଘଟିବାକୁ ଲାଗିଲା । ଇହୁଦୀମାନେ ନାନାବିଧ ସମସ୍ୟାରେ ଜର୍ଜରିତ ହୋଇ ରହିଥିଲେ ଏବଂ ପ୍ରତି ସମସ୍ୟା ତାର କାହାଣୀ ବିସ୍ତାର କରିଥିଲା । ସବୁଠାରୁ ଚିନ୍ତାର ବିଷୟ ଥିଲା ଜର୍ମାନୀରେ ନାଜିବାଦର ଚେର ଗଭୀରକୁ ଛୁଇଁଥିଲା ।

ଏସବୁ ସତ୍ତ୍ୱେ କୋର୍ଚ୍ଚାକ ନିଜକୁ ପୋଲାଣ୍ଡ ଦେଶର ଲୋକ ହିସାବରେ ପରିଚୟ ଦେଉଥିଲେ । ଓ୍ୱାର୍ସୋ ମଧ୍ୟଦେଇ ବହିଯାଉଥିବା ମନୋରମ ଦୃଶ୍ୟପଟକୁ ଲକ୍ଷ୍ୟକରି ସେ "ମୋ ଟାଉନ୍" ବୋଲି ବର୍ଣ୍ଣନା କରିଥିଲେ । ସମାନ ଚିଠିରେ ସେ ଲେଖିଥିଲେ —ଏଇଠି ଅଛି ମୋ ରାସ୍ତା, ମୋ ଦୋକାନ, ଯେଉଁଠାରୁ ମୁଁ ମୋ ନିତିଦିନିଆ ଜିନିଷ କିଣେ", ଏଇଠି ଅଛି ମୋ ଦରଜି ଦୋକାନ ଯେଉଁଠି ମୁଁ ମୋର ସୁଟ୍ ତିଆରି କରେ ଏବଂ ମରାମତି କରେ । ସବୁଠାରୁ ବଡ଼ କଥା ହେଲା ଏଇଠି ଅଛି ମୋ କର୍ମସ୍ଥଳୀ ଏବଂ ସେଠାରେ ପଡ଼ିଥିବା ବେଞ୍ଚ । ଏହିପରି ଭାବରେ କୋର୍ଚ୍ଚାକ୍ ଓ୍ୱାର୍ସୋ ସମ୍ବନ୍ଧରେ ନିଜ ବନ୍ଧୁ ଜୋସେଫ୍ ହେଲ୍ପର୍ଣ୍ଣଙ୍କ ପାଖକୁ ୧୯୩୨ ମସିହାରେ ଲେଖିଥିବା ଚିଠିରେ ନିଜର ଅନୁଭୂତିଗୁଡ଼ିକ ପ୍ରକାଶ କରିଥିଲେ । କୋର୍ଚ୍ଚାକ କହୁଥିଲେ, ପୋଲାଣ୍ଡର ଜଣେ ଇହୁଦୀ ମଧ୍ୟ ପୋଲାଣ୍ଡର ବାସିନ୍ଦା ।

ହେଲପର୍ଣ୍ଣଙ୍କୁ ଲେଖିଥିବା ସେହି ସମାନ ଚିଠିରେ ସେ ପୋଲାଣ୍ଡରୁ ପାଲେ-ଷ୍ଟାଇନକୁ ଯାଇଥିବା ପିଲାମାନଙ୍କ ସମ୍ବନ୍ଧରେ ଲେଖିଥିଲେ ଯେ ଯେଉଁ ପିଲାମାନେ ସେମାନଙ୍କର ମାତୃଭୂମିରେ ସାରାଜୀବନ ବିତେଇଥାନ୍ତେ, ସେମାନେ ବର୍ତ୍ତମାନ ମାତୃଭୂମି ଠାରୁ ଛେଉଣ୍ଡ ହୋଇଯାଉଛନ୍ତି ।

ସବୁ ଦେଶରେ ଫାସିବାଦ ସଂକ୍ରାମକ ଭାବରେ ମାଡ଼ିଯାଇଥିଲା । ପୋଲାଣ୍ଡରେ ଇହୁଦୀ ବିରୋଧୀ ଭାବ ପ୍ରବଳରୁ ପ୍ରବଳତର ହୋଇଉଠୁଥିଲା । ଏହା କୋର୍ଚ୍ଚାକଙ୍କୁ ଅନେକ ଭାବରେ ମର୍ମାହତ କରିଥିଲା ।

ସେ କହୁଥିଲେ, "ମୋ ଜନ୍ମମାଟି ତଥା ମୋ ପୂର୍ବ ବଂଶଧରଙ୍କର ଦେଶ ପୋଲାଣ୍ଡକୁ ମୁଁ ମନେପକାଇ ପକାଇ ଜୀବନର ଶେଷ କେଇ ବର୍ଷ ପାଲେଷ୍ଟାଇନରେ ବିତେଇଦେବି ।" କୋର୍ଚ୍ଚାକଙ୍କ ପରି ବୋଧହୁଏ ଆଉ କୌଣସି ପୋଲାଣ୍ଡବାସୀ ପୋଲାଣ୍ଡକୁ ଏତେ ନିଜର କରି ଭଲପାଇ ନଥିଲେ ।

ପାଲେଷ୍ଟାଇନ୍ ପ୍ରତି ତାଙ୍କର ଅନୁରାଗ ବଢ଼ିବାରେ ଲାଗିଥିଲା । ୧୯୩୨ ମସିହାରେ ସେ ଲେଖିଥିଲେ, "ମୋର ଯଦି ସମ୍ବଳ ଥାଆନ୍ତା, ତେବେ ପ୍ରତି ବର୍ଷ ଛଅ ମାସ ଲେଖାଏଁ ମୁଁ ଆସି ପାଲେଷ୍ଟାଇନରେ ରହନ୍ତି ଏବଂ ପୋଲାଣ୍ଡର ପୂର୍ବ ଛଅ ମାସର ରହଣିର ଅନୁଭୂତିକୁ ଏଠାରେ ପ୍ରତିଫଳିତ କରାନ୍ତି । ପାଲେଷ୍ଟାଇନକୁ ଆସିବା ପାଇଁ ସେ ସବୁ ପ୍ରକାର ଯୋଜନା କରିସାରିଥିଲେ ।

ହେଲପର୍ଣ୍ଣଙ୍କୁ ଗୋଟିଏ ଚିଠିରେ ସେ ଲେଖିଥିଲେ—"ଅଗଷ୍ଟ ପର୍ଯ୍ୟନ୍ତ ମୋତେ ମୋର ଯାତ୍ରାକୁ ସ୍ଥଗିତ ରଖିବାକୁ ପଡ଼ିବ । କୌଣସି କାରଣ ନଥାଇ କେବଳ କୌତୁହଳୀ ମନ ସକାଶେ ପୃଥିବୀ ସାରା ବୁଲିବାକୁ ମୋର ଆଉ ବୟସ ନାହିଁ । ମୋତେ ନିଷ୍ପତ୍ତି ନେବାକୁ ହେବ ଯେ, ପାଲେଷ୍ଟାଇନ ବାସୀଙ୍କୁ ପୋଲାଣ୍ଡ ସମ୍ପର୍କରେ ଏବଂ ପୋଲାଣ୍ଡବାସୀଙ୍କୁ ପାଲେଷ୍ଟାଇନ ସମ୍ପର୍କରେ କଅଣ ଜଣାଇବ । କିଛି ନିଷ୍ପତ୍ତି ନେବା ପୂର୍ବରୁ ମୋତେ ଅନେକ କିଛି ପଢ଼ିବାକୁ ପଡ଼ିବ ।

ସେଇ ସମାନ ଚିଠିରେ ସେ ତାଙ୍କ ଜୀବନର ସାରାଂଶକୁ ବି ଲେଖିଥିଲେ । ସେ କହିଥିଲେ, "ଏକଥା ସତ ଯେ ମୁଁ ଚାହେଁ ମାଟି ଆଉ ଆକାଶର ପ୍ରୀତି ଜୋର୍ଡ଼ାନର ବାଲୁକାମୟ ପ୍ରାନ୍ତରର ସ୍ମୃତି ଏବଂ ଆଉ ଅନେକ ଧ୍ୱଂସାବଶେଷର ସ୍ୱପ୍ନ । ଭଣ୍ଟିକାନଙ୍କ ସ୍ୱୀକୃତି ଲାଭକରି ଇହୁଦୀମାନେ ନାଜାରେଥ୍ ଏବଂ ଖ୍ରୀଷ୍ଟଙ୍କର ସମାଧିକୁ ଅଧିକାର କରିନେଇଥିଲେ । ମୋ ଯାତ୍ରାର ସଫଳତା ପାଇଁ ଏହା ଆଦୌ ଯଥେଷ୍ଟ ନୁହେଁ । ତୁମ ସାଙ୍ଗରେ ବହୁଦିନ ଧରି ରହିବା ବି ଯଥେଷ୍ଟ ନୁହେଁ । ଏହି ପୋଲାଣ୍ଡରେ ଅଛି ମୋ ଜଳବାୟୁ, ମୋ ଗଛଲତା, ମୋ ଲୋକମାନେ ମୋ ସଂସ୍କୃତି ଆଉ ମୋର ଭାଷା, ଯାହାକୁ ମୁଁ ହାଡ଼େ ହାଡ଼େ ଜାଣେ ଏବଂ ହୃଦୟ ଦେଇ ଭଲପାଏ । ସେଠାରେ ସବୁକିଛି ମୋ ପାଇଁ ଅଚିହ୍ନା ଅଜଣା ଏବଂ ଅସୁବିଧାଜନକ ମନେହୁଏ । ତୁମ ଜଳକାରଖାନା, ମରୁଭୂମିର ଗରମତାତି ସବୁକିଛି ତୁମକୁ ଯେପରି ସୁହାଇବ, ମୋତେ ସେପରି ସୁହାଇବ ନାହିଁ ।

ସେ ସେଥିରେ ଲେଖିଥିଲେ, "ମୁଁ ଏପର୍ଯ୍ୟନ୍ତ ଓ୍ୱାର୍ସୋକୁ ଯାତ୍ରା ଆରମ୍ଭ କରି ନାହିଁ । ଖବରକାଗଜବାଲା ମୋ ଯାତ୍ରା ବିଷୟରେ ପାଟିତୁଣ୍ଡ ଆରମ୍ଭ କରିଦେଲେଣି । ମୁଁ ଚାହୁଁଛି ଶାନ୍ତ ଆଉ ନୀରବତା । ତେଣୁ ମୁଁ ଯଥାଶିଘ୍ର ଗ୍ରୁଡ଼ ବୁଲିଯିବା ମୋ ପକ୍ଷରେ ଶ୍ରେୟସ୍କର । ଅଳ୍ପ ଭିତରେ ଏଣେତେଣେ ବୁଲିବା ପାଇଁ ମୋ ପାଖରେ ଆଦୌ ସମୟ ନାହିଁ ! ତରତର ହୋଇ ସବୁଥିରେ ହାତଲଗାଇବା ପାଇଁ ମୋର ଆଗ୍ରହ ନାହିଁ ।

୧୯୩୪ ମସିହା ଗ୍ରୀଷ୍ମ ଋତୁରେ ସେ ପାଲେଷ୍ଟାଇନ ଗଲେ । ସେଠାରେ ଛ' ସପ୍ତାହ ରହିଲେ । ସେଠିକାର ସମ୍ପଦ ଏବଂ ସାମାଜିକ ଜୀବନ ନିମନ୍ତେ ଥିବା ଦକ୍ଷତାର ପାରଦର୍ଶିତା ଦେଖି ବିମୁଗ୍ଧ ହୋଇପଡ଼ିଲେ । ଯେତେବେଳେ ସେ ଓ୍ୱାର୍ସୋକୁ ଫେରଆସିଲେ, ସେ ସବୁକାମ ଏପରି କଲେ ଯେତେଯେପରି ଏହା ତାଙ୍କର ନିଜ ଘର ।

ସେ ଫେରଆସିଲା ପରେ କୁନଜିଅ ମିଆସିସ୍ କୋନ ପାଖକୁ ଚିଠିଟିଏ ଲେଖିଲେ । ଚିଠିଟି ଭାରି ଆଗ୍ରହପ୍ରଦ ଥିଲା । କାରଣ ଏଥିରେ ତାଙ୍କର ଗୋଟିଏ

ସପ୍ତାହର ସାଧାରଣ ଜୀବନଯାପନ ବିଷୟରେ ବର୍ଣ୍ଣନା କରାଯାଇଥିଲା । ସେ କୁନ ଝିଅଟିକୁ ଚିଠିରେ ଲେଖିଥିଲେ, ସୋମବାର ଦିନ ମୁଁ ପିଲମାନଙ୍କୁ ଅଗଣାରେ ପରୀକ୍ଷା କରେ । ମଙ୍ଗଳବାର ଓ ବୁଧବାର ଦିନ ମୁଁ ଅଧ୍ୟାପନା କରାଏ । ଗୁରୁବାର ଏବଂ ଶୁକ୍ରବାର ଦିନ ମୁଁ "ଆମଘର" ଅନାଥାଶ୍ରମରେ ସମସ୍ତ ଦିଏ । ଶୁକ୍ରବାର ଓ ଶନିବାର ଦିନ ଅନାଥାଶ୍ରମର "ହୋମ୍"ରେ ସମସ୍ତ ବିତାଏ । ରବିବାର ଦିନ ମୁଁ ଲେଖାଲେଖି କରେ । ସପ୍ତାହଗୁଡ଼ିକ ଅଳ୍ପ କେଇ ଘଣ୍ଟା ପରି କେଉଁଆଡ଼େ ଛୁଟି ଚାଲିଯାଏ ।

ଆଉ ଏକ ଚିଠିରେ ସେ ପଚାରିଥିଲେ, ଏମିତି ଏକ ଖୁନ୍ଦାଖୁନ୍ଦି କାର୍ଯ୍ୟସୂଚୀ ଭିତରେ ମୁଁ କିପରି ଏକ ଭିନ୍ନ ଜୀବନ ଏବଂ ଭିନ୍ନ ଭୂଖଣ୍ଡର ଚିନ୍ତାକୁ ଠିକ୍ ଭାବରେ ଉପସ୍ଥାପିତ କରିପାରିବି ? ଯେତେବେଳେ ତାଙ୍କୁ ପାଲେଷ୍ଟାଇନକୁ ଆଉ ଥରେ ଆସିବା ପାଇଁ କୁହାଗଲା, ସେତେବେଳେ ସେ ପଚାରିଥିଲେ, ମୁଁ ଏଥର ଗଲାବେଳେ କଅଣ କରିବି ? ତୁମେ ତ ମୋତେ ଗାଈ ଦୁହିଁବାକୁ ମନା କରିବ ଏବଂ ମୁଁ ଏତେ ବୁଢ଼ା ହୋଇଗଲିଣି ଯେ କ୍ଷେତବାଡ଼ିରେ କାମଦାମ କରିପାରିବି ନାହିଁ । ପାଲେ-ଷ୍ଟାଇନର କିବୁତ୍ସରେ ତ ସମସ୍ତେ କାମ କରିବା ପାଇଁ ବାଧ୍ୟ । ମୋ କାମ କଅଣ ହେବ ?"

ପାଲେଷ୍ଟାଇନ୍‌ରେ ଥିଲାବେଳେ କୋର୍ଜାକ ଆଳୁର ଚୋପା ଛଡ଼ାଉଥିଲେ ଅନ୍ୟାନ୍ୟ କାମ ସବୁ ତଦାରଖ କରୁଥିଲେ । କଥାବାର୍ତ୍ତା କରୁଥିଲେ, ପଥୁରିଆ ରାସ୍ତାରେ ଉପରକୁ ଚଢ଼ୁଥିଲେ । ବାଲିଗରଡ଼ାର ଗପ କାହାଣୀ ଆଦି-ସଂଗ୍ରହ କରୁଥିଲେ ଏବଂ ଗାଧୋଉଥିଲେ ।

ଦୁଇଟି କଥାକୁ ବିଚାରକରି କୋର୍ଜାକଙ୍କୁ ପାଲେଷ୍ଟାଇନ ଅଣାଯାଇଥିଲା । ଅବଶ୍ୟ ଗୋଟିଏ ଉଦ୍ଦେଶ୍ୟ ଥିଲା 'ପିଲା'—ଯାହାପ୍ରତି କୋର୍ଜାକଙ୍କର ଚୁମ୍ବକୀୟ ଆକର୍ଷଣ ଥିଲା । ଅନ୍ୟ ଉଦ୍ଦେଶ୍ୟଟି ଥିଲା ନୂଆ ପରିବେଶରେ ଏକ ମଣିଷ ଜାତିର ପୁନଃ ସଂସ୍କରଣର ସମ୍ଭାବନା ସମ୍ପର୍କରେ ଅନୁଧ୍ୟାନ କରିବା ।

ଯେତେବେଳେ ସେ ବନ୍ଧୁମାନଙ୍କର କଥାକୁ ଟାଳି ନପାରି ପୁନର୍ବାର ପାଲେଷ୍ଟାଇନ ଯାତ୍ରାକଲେ, ସେ ଲେଖିଥିଲେ, ମୁଁ ପାଲେଷ୍ଟାଇନକୁ ଦୁଇଥର ଆସିଲିଣି । ମୁଁ ବର୍ତ୍ତମାନ ପାଲେଷ୍ଟାଇନର ଭିତରେ ସୌନ୍ଦର୍ଯ୍ୟତାର ଗତିଶୀଳତା ଏବଂ ଦକ୍ଷତା ସମ୍ପର୍କରେ ଭଲଭାବରେ, ବୁଝିବା ପାଇଁ ସମର୍ଥ ହେଲିଣି । ଓ୍ୱାର୍ସୋର ଉପନିବେଶିକମାନଙ୍କର ଦକ୍ଷତା ଓ ଚାଲିକ ସମ୍ପର୍କରେ ଜାଣିବାକୁ ପାଇଲିଣି ।

ପାଲେଷ୍ଟାଇନର ପଥୁରିଆ ଭୂଇଁରେ ସେ ଦେଖିପାରିଲେ ବିଶ୍ୱାସ ଏବଂ ନିଷ୍ଠାପର ତଥା କଡ଼୍‌ଖୋର କର୍ମତତ୍ପରତା ଯାହାକି ପାଲେଷ୍ଟାଇନ ବାସୀଙ୍କୁ ସାର ଭାବରେ

ଛଡ଼ା କରିପାରିଛି । ଇହୁଦୀମାନଙ୍କୁ କୃଷକର ଭୂମିକାରେ ଦେଖି ସେ ବିସ୍ମିତ ହୋଇ-ପଡ଼ିଥିଲେ । ପୋଲାଣ୍ଡରେ ଏକଥା ଆଦୌ କଳ୍ପନା କରିହେବ ନାହିଁ । ତାଙ୍କ ନିଜ ଦେଶରେ କେବଳ ଟାଉନ ଏବଂ ସହରମାନଙ୍କରେ ଇହୁଦୀମାନଙ୍କର ସଫଳତା ବା ବିଫଳତା ସୀମାବଦ୍ଧ । ଗାଁ କ୍ଷେତ ବାଡ଼ିରେ ସେମାନଙ୍କର କୌଣସି ସ୍ଥାନ ନାହିଁ । କିନ୍ତୁ ପାଲେଷ୍ଟାଇନରେ ଧୈର୍ଯ୍ୟ ଓ ସ୍ଥିରତାର ସହ ସେମାନେ ମାଟି ତାଡ଼ୁଛନ୍ତି । ସେମାନଙ୍କର ମାଟି ପ୍ରତି ପ୍ରୀତି ଓ ସେମାନଙ୍କର ଅସୀମ ଧୈର୍ଯ୍ୟ ହିଁ ଟାଙ୍ଗରା ଭୂଇଁରେ ସୁନା ଫଳାଇ ପାରୁଛି ।

ଏହା ଦେଖି କୋର୍ଯାକ୍ ବିସ୍ମିତ ହୋଇଯାଇଥିଲେ । ସେ ବାରମ୍ବାର ଏହି କଥାଟିକୁ ପର୍ଯ୍ୟବେକ୍ଷଣ କରିବାକୁ ଲାଗିଲେ । "ଇହୁଦୀମାନଙ୍କ ମସ୍ତିଷ୍କ ବିଶ୍ରାମ ନେଉଛି । ଏଠାରେ କାଠ, କରତ, ଟାଙ୍ଗିଆ ଆଦି ଇତ୍ୟାଦିର ଚମତ୍କାର ଯୋଗ୍ୟତାପତ୍ର ବଦଳରେ ସ୍ଥାନ ମାଡ଼ିବସିଛି ।

କୋର୍ଯାକ୍ ତାଙ୍କର ପାଲେଷ୍ଟାଇନ୍ ସମ୍ବନ୍ଧୀୟ ଲେଖାରେ ବର୍ଣ୍ଣନା କରିଛନ୍ତି— ଏଠାରେ ଈଶ୍ୱର ତଥା ନୈତିକତା ପ୍ରତି ଏକ ଭିନ୍ନ ଦୃଷ୍ଟିକୋଣ ରହିଛି । ଏଠିକାର ଗଛଲତା ଆଦି ଅଦ୍ଭୁତ । ଘାସ ଏଠାରେ ବି ଅନ୍ୟ ପ୍ରକାରର । ଏଠିକାର ପାଇନ୍ ବି ଭିନ୍ନ । ପାଇନ୍ ଗଛରେ ବକଳ ଓ କଣ୍ଟା ବିଚିତ୍ର । ଖାଦ୍ୟ ବି ଏଠାରେ ଅଲଗା । ସବୁକିଛି ଏଠାରେ ଏତେ ଅପରିଚିତ ଓ ନୂଆ ଯେ ଜଣେ ଚିନ୍ତା ବସ୍ତୁ ପାଇଁ ନିସ୍ୱଣ ହୋଇଯିବ । ଏଠିକାର ନୈରାଶ୍ୟ ବିଭିନ୍ନ । ମୁଁ ପ୍ରାତଃ ଭ୍ରମଣବେଳେ ଜଙ୍ଗଲମାନଙ୍କ ସହ କଥା ହେଲି । ମାତ୍ର ମୁଁ ଏକ ସାଧାରଣ ଭାଷା ପାଇପାରିଲି ନାହିଁ ।

ଏସବୁଥିରୁ କୋର୍ଯାକ୍‌ଙ୍କ ଚରିତ୍ରର ଅନ୍ୟଏକ ଦିଗ ସମ୍ପର୍କରେ ସୂଚନା ମିଳି-ଯାଇଛି । ତାଙ୍କର ପ୍ରକୃତି ପ୍ରତି ପ୍ରେମ ଭରିରହିଥିଲା ଏବଂ ସେ ପ୍ରକୃତି ସହ ଆଳାପ କରିବାପାଇଁ ଇଚ୍ଛା କରୁଥିଲେ । ଥରେ ସେ କହିଥିଲେ, ଏପରି ସବୁ ମୁହୂର୍ତ୍ତ ଆସିଛି, ଯେତେବେଳେ ମୁଁ ପଶୁପକ୍ଷୀ, ଗଛଲତାଙ୍କ ସହ କଥାବାର୍ତ୍ତା ହେବାପାଇଁ ଉପାୟ ପାଇପାରିଛି । ମୁଁ ଯେତେବେଳେ ପଥରମାନଙ୍କ ସହ କଥାବାର୍ତ୍ତା ହେବାପାଇଁ ଚାହିଁଛି, ସେତେବେଳେ ସେମାନେ ବହୁତ ଅଳ୍ପ କହନ୍ତି ଏବଂ ସେମାନେ ମିଛ କହନ୍ତି ନାହିଁ ।

ପ୍ରଖର ବୁଦ୍ଧି ଏବଂ କୋମଳ ହୃଦୟ ପାଇଁ କୋର୍ଯାକ୍‌ଙ୍କୁ ସମସ୍ତେ ଅତି ଆଦର କରୁଥିଲେ । ସେଣ୍ଟଫ୍ରାନ୍‌ସିସ୍ ବି ଡାକ୍ତରଙ୍କୁ ବହୁତ ଭଲପାଉଥିଲେ ।

ପାଲେଷ୍ଟାଇନ୍‌ରେ ବାହାର ଦେଶରୁ ଆସି ଆଶ୍ରୟ ନେଉଥିବା ବୁଢ଼ାବୁଢ଼ୀମାନେ କଥାବାର୍ତ୍ତାବେଳେ କୋର୍ଯାକ୍‌ଙ୍କୁ କହୁଥିଲେ, "ମରିବା ପୂର୍ବରୁ ଥାଳିଏ ଗସ୍‌ବେର ଖାଇବାକୁ ଭାରି ଇଚ୍ଛା ହେଉଛି । ଏ ଦେଶଟା କିପରି ଦେଶ କେଜାଣି, ଏଠାରେ

ଆଦୌ ଗ୍ରହଣୀୟ ଲାଗୁନାହିଁ । ପରେ ପରେ ସେମାନେ କହନ୍ତି, ଏ ଦେଶଟି ଅନ୍ୟର । ଆମକୁ ଯିନା ଭଲଲାଗୁନାହିଁ; ମାତ୍ର ଆମ ପିଲାମାନଙ୍କୁ ଏହା ଭଲଲାଗୁଛି ।

ପୁଅମାନେ ବାପାମାନଙ୍କୁ ବାରମ୍ବାର ପଚାରନ୍ତି, ତୁମର କ'ଣ ଏଠାରେ ରହିବାକୁ ଇଚ୍ଛା ନାହିଁ ? ବୁଢ଼ାବାପା ପୁଅର ଏ ପ୍ରଶ୍ନର ଉତ୍ତର ଦେବାକୁ ଯାଇ କହନ୍ତି, "ଏ ବୟସରେ ମୋ ବଞ୍ଚିବା ଶୈଳୀକୁ ବଦଳାଇବା ଭାରି କଷ୍ଟକର ବ୍ୟାପାର । ତୁ ତୋ ପାଇଁ କାମଧନ୍ଦା ପାଇଗଲୁ ଏବଂ ରହିବାକୁ କୋଣେ ଜାଗା ବି ମିଳିଗଲାଣି । ମାତ୍ର ମୋ ପାଇଁ ନୁହେଁ । ମୋ ପାଇଁ ଜାଗା ସେଠାରେ ।"

ନିଜ ଦେଶରୁ ତଡ଼ା ଖାଇଥିବା ବା ନାଜିମାନଙ୍କର ଉପଦ୍ରବକୁ ସହିନପାରି ପଳାଇ ଆସିଥିବା ଲୋକମାନେ ପାଲେଷ୍ଟାଇନ୍ ଛାଡ଼ି ଫେରିଯିବାକୁ ଆଶା ବାନ୍ଧୁନଥିଲେ । ଏପରିକି ବୁଢ଼ାମାନେ ସେମାନଙ୍କର ଭାଗ୍ୟକୁ ବହୁତ ପ୍ରଶଂସା କରୁଥିଲେ । କୋର୍ଯାକ୍ ଏ ସବୁକୁ ଭଲଭାବରେ ହୃଦୟଙ୍ଗମ କରୁଥିଲେ । କାରଣ ଏ ପାର୍ଥକ୍ୟଟି ଏତେ ସ୍ୱାଭାବିକ ହୋଇପାରୁଥିବା ମୂଳରେ ରହିଛି ଶିଶୁ । ସେ ଏ ବିଷୟରେ ଲେଖିଥିଲେ, "ଏହି ପାଲେଷ୍ଟାଇନ୍‌ର ପବିତ୍ର ଭୂଇଁରେ ଜନ୍ମ ହୋଇଥିବା କୁନି ପିଲାଟି ଆସି ଯେତେବେଳେ ଶିରା ଫୁଟି ବାହାରିଥିବା ଚମ ଥୁରୁଥୁରୁ କରୁଥିବା ଜେଜେବାପାଙ୍କ ବାହୁ ଉପରେ ତା'ର କୁନି ସ୍ୱାସ୍ଥ୍ୟବାନ୍ ହାତଟିକୁ ରଖିଦିଏ ଏବଂ ଅନ୍ୟ ହାତଟି ଝାଉଁଳାଇରେ ସିଝିଯାଇଥିବା ବାପାଙ୍କ ହାତ ଉପରେ ଥୋଇଦିଏ—ଏସବୁ ସମସ୍ୟା ସମାଧାନ ହୋଇଯାଏ ।

କୋର୍ଯାକ୍ କହନ୍ତି—ପିଲାଟି ନିକଟରେ ସବୁପ୍ରକାର କଠିନ ଓ ଜଟିଳ ସମସ୍ୟାର ସମାଧାନ ମିଳିପାରିବ ।

କୋର୍ଯାକ୍‌ଙ୍କ ଆଗରେ ଏକ ମୁଖ୍ୟ ଏବଂ ଜଟିଳ ସମସ୍ୟା ଦଣ୍ଡାୟମାନ ହୋଇ ରହିଥିଲା । ଯାହାର ସମାଧାନର ପନ୍ଥା ସେ ଖୋଜି ପାଇପାରୁ ନଥିଲେ । ଏହା ହେଉଛି ନିଜ ପିଲାମାନଙ୍କର ଦୁର୍ଦ୍ଦଶାପୂର୍ଣ୍ଣ ସମସ୍ୟା । ସେ ପରିଷ୍କାର ଭାବରେ ଦେଖିପାରୁଥିଲେ ସେମାନେ କପରି ଘୃଣାଦ୍ୱାରା ଜର୍ଜରିତ ହେଉଥିଲେ । ସେମାନଙ୍କର ଜୀବନ ଦୁର୍ବିସହ ହୋଇପଡ଼ୁଥିଲା । ସେମାନେ ବିପଦାପନ୍ନ ହୋଇ ରହୁଥିଲେ, କାରଣ ସେମାନଙ୍କ ପାଇଁ ଏ ମାଟି ଥିଲା ବିଦେଶୀ ଏବଂ ଶତ୍ରୁର ମାଟିରେ ସେମାନଙ୍କୁ ଦଳିତ ଏବଂ ପୀଡ଼ିତ ଭାବରେ ସ୍ଥାନ ଦିଆଯାଉଥିଲା । ପୋଲାଣ୍ଡର ଜାତିବାଦୀମାନଙ୍କର ବାଡ଼ ଭିତରେ ସେମାନେ ବନ୍ଦୀହୋଇ ରହୁଥିଲେ । ଏ ଜାତିବାଦୀମାନେ ଜର୍ମାନୀ ସୀମାନ୍ତରୁ ଆସୁଥିବା ହଲାହଳ ବିଷଦ୍ୱାରା ସଂକ୍ରମିତ ହୋଇରହିଥିଲେ । ବିଦେଶାଗତ ଲୋକମାନେ ଏକ ନୂଆ ମାଟିରେ ନିଜ ପାଦ ଆପଣା କରି ନିଜର ବିକାଶ ସାଧନ କରିପାରୁଛନ୍ତି । ଏଥିପାଇଁ କୋର୍ଯାକ୍ ଇସ୍ରାଏଲ୍‌ର ନୂଆ ପିଢ଼ିର ଯୁବକମାନଙ୍କୁ ସେମାନଙ୍କର କର୍ମଠତା ଏବଂ ସାହସିକତା ପାଇଁ ଅତୀବ ପ୍ରଶଂସା କରୁଥିଲେ ।

୧୯୬୭ ମସିହା ମାର୍ଚ୍ଚ ମାସରେ ସେ ଜୋସେଫ ହେଲପର୍ଣ୍ଣଙ୍କୁ ଲେଖିଥିଲେ, "ତୁମେ ବିଶ୍ୱାସ କରିପାରିବନି—ଏହା କେତେ କଷ୍ଟ । ଇତିହାସ ବହୁତ ଶୀଘ୍ର ଆଗେଇ ଚାଲିଛି, ଆଜି ଯେପରି ସବୁକିଛି ଚାଲିଛି, ସେପରି ସବୁଦିନ ଚାଲିବ ନାହିଁ । ପଶ୍ଚ ଜଗତକୁ ସମ୍ପୂର୍ଣ୍ଣ ଅଧୋଗାମୀ ହେବାପାଇଁ ପାଞ୍ଚବର୍ଷ ବା ବେଶୀ ହେଲେ ୧୦ ବର୍ଷ ଲାଗିବ । ତା'ପରେ ଆସିବ ଝଡ଼ ଆଉ ବନ୍ୟା । ତା'ପରେ ତୁମେ ଦେଖିବ ନୂଆ ଢାଞ୍ଚା, ନୂଆ ଶୃଙ୍ଖଳା ଓ ନୂଆ ରକମର ଆଲୋକ । ଆମ ଜଓ୍ୱାନା ଏହି ନୂଆ ବାଟ ଓ ପଦ୍ଧତିକୁ ସୃଷ୍ଟି କରିବା ପାଇଁ ଅଲଗକିଛି ପ୍ରଚେଷ୍ଟା କରିଛି । ଆମ ଆଖି-ଆଗରେ ଶୃଙ୍ଖଳା ଭାଙ୍ଗି ଗଣ୍ଡଗୋଳିଆ ପରିସ୍ଥିତି ସୃଷ୍ଟି ହୋଇଛି । ଶତାବ୍ଦୀ ଶତାବ୍ଦୀ ଧରି ରହିଆସିଥିବା ଭଲ ଓ ମନ୍ଦର ଧାରା ସମ୍ପୂର୍ଣ୍ଣ ଭାବରେ ନିଶେଷ ହୋଇଯାଇଛି ।

ସେ ନିଜ ଜଓ୍ୱାନାକୁ କବର ବୋଲି ବର୍ଣ୍ଣନା କରି କହୁଥିଲେ, "ତୁମେମାନେ ହେଉଛ cradles । ତୁମର ସଦ୍ୟଜାତ ଶିଶୁଟିର ଉଜ୍ଜ୍ୱଳ ଚକ୍ଷୁଯୁଗଳ ଅଛି । ତୁମେମାନେ ସଚେତନ ଏବଂ ସତର୍କ । ଆମେମାନେ ମଶାରିକା ଭିତରେ ବହୁଦିନ ଧରି ରହିଗଲୁ ।"

୧୯୩୦ ମସିହା ପରଠାରୁ କୋର୍ଚ୍ଚାକ୍ଙ୍କର ପ୍ରତ୍ୟେକ ଚିଠିରେ ଜଣେ ଭବିଷ୍ୟ-ଦ୍ରଷ୍ଟାର ସତର୍କ ସୂଚନାମାନ ରହୁଥିଲା । ପାଲେଷ୍ଟାଇନ୍ ତାଙ୍କ ଉପରେ ଏକ ଚମତ୍କାର ଛାପ ପକାଇଦେଲା । ପାଲେଷ୍ଟାଇନ୍‌ରେ ଚାଲୁଥିବା ସମସ୍ତ କାର୍ଯ୍ୟକଳାପରେ, ସେ ବିମୁଗ୍ଧ ହୋଇପଡ଼ୁଥିଲେ ଏବଂ ପ୍ରତ୍ୟେକ ବିଷୟରେ ଯଥେଷ୍ଟ ଆଗ୍ରହ ଦେଖାଉଥିଲେ । ଏ ସବୁ ସତ୍ତ୍ୱେ ସେ ନିଜକୁ ଜଣେ ବିଦେଶୀ ବୋଲି ଭାବୁଥିଲେ । ନିଜକୁ ଜଣେ କେବଳ ଦେଖଣାହାରି ଭାବେ ବିଚାର କରୁଥିଲେ । ସେ କହୁଥିଲେ, ମୁଁ ହିବ୍ରୁଭାଷା ଜାଣିନି କି ଏ ମାଟିର ସାହିତ୍ୟ ବିଷୟରେ ମୋର ଧାରଣା ନାହିଁ ।

ମୁଁ କେବଳ ଜଣେ ପରିଦର୍ଶକ । ମୁଁ ତୁମ କାର୍ଯ୍ୟ ଓ ପ୍ରଚେଷ୍ଟାକୁ ଶିଖିବାକୁ ଚେଷ୍ଟା କରୁଛି । ଜଣେ ବାହାର ଲୋକ କବାଟର ଗ୍ରେଟ କଣାଟି ବାଟେ ବାହାରକୁ ଦେଖିଲାବେଳେ, ଯେତେବେଳେ ତା'ର ଆଖିକୁ ତୀକ୍ଷ୍ଣ ପବନ ପଶିଆସେ ସେ ବାହାରକୁ ଡୁଙ୍କି ବୁଝିପାରେ ଯେ ଏହି ପବନ ବାଲି ଏବଂ ତାତି ବାହାରେ ଥିବା ସ୍ଥାନୀୟ ଲୋକମାନଙ୍କ ପାଇଁ ଆଶୀର୍ବାଦ ଅଟେ । ମାତ୍ର ତା' ପାଇଁ ଏହା ଅନୁପଯୁକ୍ତ । ମୋ ପାଇଁ ଏହି ଉଦାହରଣଟି ପ୍ରଯୁଜ୍ୟ ଅଟେ । ୧୯୩୬ ମସିହା ଜୁଲାଇ ୧୫ ତାରିଖରେ କୋର୍ଚ୍ଚାକ୍ ପୁନର୍ବାର ପାଲେଷ୍ଟାଇନ୍ ଯାଇଥିଲେ । ଏଥରକ ସେ ପାଲେଷ୍ଟାଇନ୍‌ର ଶ୍ରମିକମାନଙ୍କ ସହ ପରିଚିତ ହେବେ ବୋଲି ନିଷ୍ପତ୍ତି ନେଇଥିଲେ । ଦୁଃଖର କଥା ତାଙ୍କୁ ଏଥର ବହୁତ କ୍ଳାନ୍ତି ଲାଗୁଥିଲା । ଖରାପରୁ ଖରାପ ଆଡ଼କୁ ଯାଉଥିବା ଏକ ରାଜନୈତିକ ସ୍ଥିତି ଓ ଆସନ୍ନ ବିପଦ, ତାଙ୍କ ଉପରେ ମାଡ଼ିପଡ଼ୁଥିଲା ।

ଏହି ଅନୁଭବରୁ ଊର୍ଦ୍ଧ୍ୱକୁ ଗ୍ଭଲିଆସିବା ପାଇଁ ତାଙ୍କ ଭିତରେ ସେତିକି ପରିମାଣର ବିଶ୍ୱାସ ଜନ୍ମିପାରୁନଥିଲା । ହତାଶା ଭିତରେ ଛନ୍ଦିହୋଇ ପଡ଼ୁଥିଲେ ସେ ଏବଂ କହୁଥିଲେ ଏ ଥରର ପାଲେଷ୍ଟାଇନ୍ ଯାତ୍ରା ତାଙ୍କ ପାଇଁ ଜୀବନର ଶେଷ ଉଦ୍ୟମ ।

ଠିକ୍ ଏହି ସମୟରେ ଆରବବାସୀ ଓ ଇହୁଦୀମାନଙ୍କ ଭିତରେ ପ୍ରଥମ ଯୁଦ୍ଧ ଆରମ୍ଭ ହୋଇଥିଲା । ସେ ହତାଶ ହୋଇପଡୁଥିଲେ ଓ ନିଜ ଭିତରେ ଇଚ୍ଛାଶକ୍ତିର ଅଭାବ ଦେଖୁଥିଲେ । ଏହି ପ୍ରକାର ଯୁଦ୍ଧ ଡାକରା ଯୋଗୁଁ ତାଙ୍କ ଭିତରେ ମାନବବାଦ ଚିନ୍ତାଧାରା ପ୍ରତି ବିଦ୍ୱେଷଭାବ ସୃଷ୍ଟି ହୋଇଥିଲା ଏବଂ ସେ ଅତି ମ୍ରିୟମାଣ ହୋଇ-ପଡ଼ୁଥିଲେ । ସେ ଯେଉଁ ଆଦର୍ଶ ଆଡ଼କୁ ଜୀବନସାରା ଡାକିରହିଥିଲେ ତାହା ମୂଳରେ ଦୁଇଟି କାରଣ ଥିଲା—ଗୋଟିଏ ହେଲା ଆଧ୍ୟାତ୍ମିକତା ପ୍ରତି ନିଜର ଅନୁରକ୍ତି ଏବଂ ଅନ୍ୟଟି ହେଲା ଏହି ଅଗ୍ରଗତି ପାଇଁ ସ୍ୱାଭାବିକ ସହଯୋଗ ।

ଏହିଭଳି ଏକ ପରିସ୍ଥିତି ସମୟରେ କୋର୍ଜାକ୍ ପାଲେଷ୍ଟାଇନ୍‌ରେ ଦେଖୁଥିଲେ ସଫଳତା ପାଇଁ ମାନସିକ ଓ ଆଧ୍ୟାତ୍ମିକ ପ୍ରଚେଷ୍ଟାର ମହାନତା ଏବଂ ଇହୁଦୀମାନଙ୍କର ପ୍ରଚେଷ୍ଟା ବଳରେ ଲବ୍‌ଧ ହୋଇଥିବା ପାର୍ଥିବ ଏକତ୍ୱ ।

ପୃଥିବୀର ଅଧିକାଂଶ ଜାଗାରେ ଯେତେବେଳେ ଇହୁଦୀମାନଙ୍କର ସଂଖ୍ୟା କମି କମି ଯାଇଥିଲା, ସେତେବେଳେ ପାଲେଷ୍ଟାଇନ୍‌ରେ ସେମାନଙ୍କର ସମସ୍ୟା ବଢ଼ିବାରେ ଲାଗିଥିଲା ।

କୋର୍ଜାକ୍ ପୋଲାଣ୍ଡରେ ବିଭିନ୍ନ ଘଟଣାକୁ ଆଖି ଆଗରେ ଦେଖିଛନ୍ତି; ଅଙ୍ଗେ ନିଭେଇଛନ୍ତି, ଯାହାକି ପୋଲାଣ୍ଡର ସାମାଜିକ ଅବସ୍ଥାକୁ ଉତ୍ପାତଲଗମୀ କରିପକାଇଛି । ମରୁଭୂଇଁ ଉପରେ ଉଦ୍ବେଳିତ ହୋଇଉଠିଥିବା ଜୀବନ କୋର୍ଜାକ୍‌ଙ୍କ ଆଖିରେ ନୂଆ ଜୀବନ ପାଇଁ ଆଶା ସଞ୍ଚାର କରିଦେଉଥିଲା । ସେ ପାଲେଷ୍ଟାଇନ୍‌ରେ ଥିଲାବେଳେ ନିଜ ପିଲାଙ୍କର ଭବିଷ୍ୟତକୁ ନେଇ ସବୁବେଳେ ଚିନ୍ତିତ ରହୁଥିଲେ ଏବଂ ନିଜ ଦୁଃଖ ଭାରରେ ଆନତ ହୋଇ ଭବିଷ୍ୟତକୁ ଅପେକ୍ଷା କରି ବଞ୍ଚୁଥିଲେ । ପାଲେଷ୍ଟାଇନ୍‌ରେ ଛଅ ସପ୍ତାହ ରହଣି ପରେ କୋର୍ଜାକ୍ ପୋଲାଣ୍ଡକୁ ଫେରିଲେ । ପୋଲାଣ୍ଡରେ ସେ ଅନେକ ମାସ ଧରି ନୈରାଶ୍ୟ ଭିତରେ କଟାଇଲେ । ତାଙ୍କ ଭିତରୁ ଏହି ହତାଶାଭାବ ଦୂର ହେଲା, ଯେତେବେଳେ ସେ ନିଷ୍ପତ୍ତି ନେଲେ ସେ ପୋଲାଣ୍ଡ ଛାଡ଼ି ପାଲେଷ୍ଟାଇନ୍‌ରେ ଶେଷ ଜୀବନ କଟାଇବେ ।

୧୯୩୭ ମସିହାରେ ସେ ଏହି ନିଷ୍ପତ୍ତି ନେଲେ । କାରଣ ଏହି ସମୟରେ ସେ ଦୁଇଟି ବ୍ୟକ୍ତିଗତ ପରାଜୟର ସମ୍ମୁଖୀନ ହୋଇଥିଲେ । ଆକାଶବାଣୀରୁ ତାଙ୍କୁ ବକ୍ତା ଭାବରେ ବହିଷ୍କାର କରାଗଲା । ତା'ଛଡ଼ା "ଆମଘର" ଅନାଥାଶ୍ରମ ସହ ତାଙ୍କର ସମ୍ପର୍କ ରହିଲା ନାହିଁ । ଏହି ଦୁଇଟି ଘଟଣା ତାଙ୍କର ହତାଶା ଭାବକୁ ବଢ଼ାଇଦେଲା ।

ଏ ସବୁ ଅବସ୍ଥାରେ, ତାଙ୍କୁ ପାଲେଷ୍ଟାଇନ୍‌ରେ ରହିବାର ନିଷ୍ପତ୍ତି ନେବାପାଇଁ ଖୋରାକ ଯୋଗାଇଲା ।

ପ୍ରାୟ ୨୦୦ ବର୍ଷ ତଳର "କୁନି ଇହୁଦୀ" ପିଲାର କାହାଣୀ ସମ୍ବନ୍ଧରେ କୋର୍ଚ୍ଚାକ୍ ସମ୍ପୂର୍ଣ୍ଣ ସଚେତନ ଥିଲେ । ଏହି ପିଲାଟି ମଇଳା ବାକ୍ସରେ ସୂର୍ଯ୍ୟ, ଚନ୍ଦ୍ରକୁ ଖୋଜୁଥିଲା ଏବଂ ଦେବଦୂତମାନଙ୍କୁ ପ୍ରାର୍ଥନା କରୁଥିଲା । କୋସାକ୍‌ଙ୍କୁ ମନେହେଉଥିଲା, ଏହି ପିଲାଟିର ପ୍ରାର୍ଥନାର ଉତ୍ତର ପାଲେଷ୍ଟାଇନ୍‌ର ସମସ୍ତ ଇହୁଦୀମାନଙ୍କ ପାଇଁ ମିଳିପାରୁଛି, ଯେଉଁଥିପାଇଁ ଏଠାରେ ଇହୁଦୀ ଯୁବଗୋଷ୍ଠୀ ମରୁଭୂମିକୁ ଶସ୍ୟଶାମଳା କରିପାରୁଛନ୍ତି ।

ସବୁଲୋକେ ଖୁସିରେ ରହୁଥିବେ ଏବଂ ଗଛଲତାଙ୍କ ଭଳି ସମସ୍ତଙ୍କର ଯତ୍ନ ନିଆଯାଇପାରୁଥିବ—କୋର୍ଚ୍ଚାକ୍‌ଙ୍କର ଏହି ସ୍ୱପ୍ନର ଭୂଇଁଟିକୁ ସତେଯେପରି ସେ ପାଲେଷ୍ଟାଇନ୍‌ରେ ଠାବ କରିପାରିଥିଲେ ।

୧୯୩୭ ମସିହା ମାର୍ଚ୍ଚ ୩ ତାରିଖରେ ଜୋସେଫ୍ ହେଲ୍‌ପର୍ଣ୍ଣଙ୍କୁ ଲେଖିଥିବା ଚିଠିରେ ସେ ଉଲ୍ଲେଖ କରିଥିଲେ—ପାଲେଷ୍ଟାଇନ୍ ମିଳିତ ଜାତିସଂଘର ଦ୍ୱିତୀୟ କେନ୍ଦ୍ର ହେବା ଆବଶ୍ୟକ । ଯଦି ଜେନେଭା ପୃଥିବୀର ବସ୍ତୁଗତ ଦିଗଗୁଡ଼ିକ ଯଥା—ଯୁଦ୍ଧ, ସଙ୍ଗଠିତ ହତ୍ୟା, ପରିଷ୍କାର ପରିଚ୍ଛନ୍ନତା, ଶିକ୍ଷାଦାନର ପଦ୍ଧତି ଇତ୍ୟାଦି ପାଇଁ ପାର୍ଲିଆମେଣ୍ଟ ବା ଜନସଂସଦ ହେଲା, ତେବେ ଜେରୁଜେଲମ ବ୍ୟକ୍ତିତ୍ୱ, ଆତ୍ମା ଏବଂ ମାନବଜୀବନର ଅନ୍ତିମ ଲକ୍ଷ୍ୟର ରାଜଧାନୀ ହେବା ଆବଶ୍ୟକ । ସେ ଏହାକୁ ବାସ୍ତବ ଭାବରେ ବର୍ଣ୍ଣନା କରି କହିଛନ୍ତି—

କେତେ ମାସ ନୈରାଶ୍ୟ ମଧ୍ୟରେ କଟିଗଲା ପରେ ମୁଁ ନିଷ୍ପତ୍ତି ନେଲି ଜୀବନର ଶେଷ କେଇ ବର୍ଷ ପାଲେଷ୍ଟାଇନ୍‌ରେ କଟାଇବି । ଗୋଟିଏ ବର୍ଷ ଜେରୁଜେଲମରେ ରହି ହିବ୍ରୁ ଶିଖିବି, ଯଦ୍ୱାରା ମୁଁ କବୁତ୍‌ମାନଙ୍କର ଜୀବନକୁ (ଗୋଷ୍ଠୀଗତ ଫାର୍ମ) ବୁଝିପାରିବି । ଏଥିପାଇଁ ମୋ ଯାତ୍ରା ମାସିକ ଭିତରେ ହେବା ଆବଶ୍ୟକ । କାରଣ ମୁଁ ଅନିଶ୍ଚିତତା ଭିତରେ ଆଉ ଅଧିକ ସମୟ ରହିପାରିବି ନାହିଁ । ତେଣୁ ପ୍ରାୟ ୨ ମାସ ବେଳକୁ ମୁଁ ମହାସାଗର ଭିତରେ ଥିବି । ନିଷ୍ପତ୍ତି ନେବା ବହୁତ ଆୟାସ-ସାଧ୍ୟ । ମୁଁ ଜେରୁଜେଲମର ଗୋଟିଏ ଛୋଟିଆ ଶାନ୍ତ କୋଠରୀ ଭିତରେ ବାଇସ୍କୋପ୍ ଧରିବସିବି, ହିବ୍ରୁ ଅଭିଧାନଟିଏ, ପେନ୍‌ସିଲ୍ ଆଉ କାଗଜ ପାଖରେ ଥିବ । ସେଠାରେ ମୁଁ ଜଣେ ଗ୍ରୀଷ୍ମର ଜୀବନ ବିତାଇବି, ଦାରିଦ୍ର୍ୟ ଭିତରେ ବଞ୍ଚିବି । କିନ୍ତୁ ଏ ସବୁଥିରୁ ମୋତେ ମିଳିବ ସନ୍ତୋଷ । ମୋ ଜୀବନର ଅନ୍ତିମ କଷ୍ଟଦାୟକ ପ୍ରଚେଷ୍ଟା···କାହିଁକି ର ଉତ୍ତର···।

କୋର୍ଚ୍ଚାକ୍‌ଙ୍କର ଅନେକ ଚିଠିରେ ପୋଲଣ୍ଡ ଛାଡ଼ି ପଳାଇଯିବା କଥା ଉଲ୍ଲେଖ ଥିଲା । ପାଲେଷ୍ଟାଇନରେ ରାତିର ମୁକ୍ତ ଆକାଶରେ ବଡ଼ ବଡ଼ ନକ୍ଷତ୍ରମାନଙ୍କୁ ଦେଖି

ପିଲମାନେ ଖୁବ୍ ଖୁସି ହେଉଥିବା କଥା ତାଙ୍କୁ ଆକର୍ଷିତ କରୁଥିଲା ବୋଲି ସେ ବର୍ଣ୍ଣନା କରିଥିଲେ । ପୋଲାଣ୍ଡ ଛାଡ଼ି ପଳାଇଯିବାପାଇଁ କୋର୍ଯାକ୍ କାହିଁକି ଏପରି ନାଟକୀୟ ନିଷ୍ପତ୍ତି ଗ୍ରହଣ କଲେ ? ଏ ବିଷୟରେ ଅତି ସରଳ ଭାବରେ ସେ କହୁଥିଲେ, "ଅନ୍ତତଃ ପାଲେଷ୍ଟାଇନରେ ଯିଏ ସବୁଠାରୁ ଖରାପ ଓ ନୀଚଲୋକ, ସେ କେବେ ବି ତା ନିକଟରେ ଥିବା ଲୋକର ମୁହଁକୁ ଇହୁଦୀ ବୋଲି ଛେପ ପକାଉନଥିବ ।"

ପାଲେଷ୍ଟାଇନ୍ ପ୍ରତି ଏତେ ଆକର୍ଷଣ ଜାଗ୍ରତ ହୋଇଥିଲେ ମଧ୍ୟ କୋର୍ଯାକ୍ ଆଉ କେବେ ବି ପାଲେଷ୍ଟାଇନ୍ ଯାଇନାହାନ୍ତି । ଏହାର କାରଣ ଆମେ ପରବର୍ତ୍ତୀ ଅଧ୍ୟାୟରୁ ଜାଣିପାରିବା ।

## (୨୩) ବୃଦ୍ଧ ଡାକ୍ତରଙ୍କ ବେତାର ବାର୍ତ୍ତା

୧୯୩୫ ମସିହାରେ ଜାନୁସ୍ କୋର୍ଯାକଙ୍କୁ ରେଡ଼ିଓରେ କହିବା ପାଇଁ ସୁଯୋଗ ମିଳିଲା ! ଛୋଟ ଛୋଟ ଭାଷଣ ମାଧ୍ୟମରେ ସେ ତାଙ୍କର ବେତାରବାର୍ତ୍ତା ପ୍ରଦାନ କରୁଥିଲେ । ଏଗୁଡ଼ିକୁ ସେ ଆକାଶବାଣୀ ସଂଳାପ ବୋଲି କହୁଥିଲେ । ଏହି ସଳାପ ଗୁଡ଼ିକ ମୁଖ୍ୟତଃ ପିଲମାନଙ୍କ ପାଇଁ ଉଦ୍ଦିଷ୍ଟ ଥିଲା ।

କୋର୍ଯାକଙ୍କର ଏହି ରେଡ଼ିଓ ଭାଷଣଗୁଡ଼ିକ ସମ୍ପୂର୍ଣ୍ଣ ଭାବରେ ନିଜସ୍ୱ ଥିଲା ଏବଂ ଏସବୁ ଏପରି ମନ୍ତ୍ରମୁଗ୍ଧକର ଥିଲା ଯେ ଅତି କମ୍ ଦିନ ଭିତରେ ଅତ୍ୟନ୍ତ ଜନପ୍ରିୟ ହୋଇଉଠିଲା । ମାଇକ୍ରୋଫୋନ୍ ଆଗରେ କହିଲାବେଳେ ସେ ସମ୍ପୂର୍ଣ୍ଣ ରୂପେ ନିଜର ମୌଳିକତା ବଜାୟ ରଖୁଥିଲେ ଏବଂ ଅତି ସୃଜନଶୀଳ ହୋଇପଡ଼ୁଥିଲେ । ସ୍ୱାଭାବିକ ଢଙ୍ଗରେ ନିଜର ବକ୍ତବ୍ୟ ପ୍ରଦାନ କରୁଥିଲେ । ତାଙ୍କ ବକ୍ତବ୍ୟ ମଧ୍ୟରେ ଛୋଟ ଛୋଟ ପ୍ରଶ୍ନଗୁଡ଼ିଏ ଝଙ୍କାହୋଇ ରହୁଥିଲା । ମୁଖ୍ୟ ମୁଖ୍ୟ ସନ୍ଦେଶଗୁଡ଼ିକ ସେ ରହି ରହି ଗୁରୁଗମ୍ଭୀର କଣ୍ଠରେ ଜୋର୍‌ଦେଇ ଏପରି କହୁଥିଲେ ଯେ ତାଙ୍କ କଥାଗୁଡ଼ିକ ଜନସାଧାରଣଙ୍କର ହୃଦୟକୁ ଛୁଉଁଥିଲା । ଏହି ସଳାପରେ ପିଲମାନଙ୍କର ଜୀବନ୍ତ କଣ୍ଠସ୍ୱର ଏବଂ ସେମାନଙ୍କର ପ୍ରଶ୍ନଗୁଡ଼ିକର ଉତ୍ତର ମଧ୍ୟ ସୁନ୍ଦର ଭାବରେ ସନ୍ନିବେଶିତ ହେଉଥିଲା ।

ପିଲମାନଙ୍କ ମନରାଜ୍ୟରେ ବିଚରଣ କରୁଥିବା ଜାନୁସ୍ କୋର୍ଯାକଙ୍କର ଅନୁଭୂତି, ପିଲଙ୍କ ସହ ତାଙ୍କର ହସ କୌତୁକ ଓ ଭାବମୟତା ପ୍ରତ୍ୟେକ ଜନସାଧାରଣଙ୍କୁ ବିମୁଗ୍ଧ କରୁଥିଲା । କୋର୍ଯାକଙ୍କର ସମଗ୍ର ବ୍ୟକ୍ତିତ୍ୱକୁ ସତେଯେପରି ପୋଲାଣ୍ଡବାସୀ ଏହି ବେତାରବାର୍ତ୍ତା ଜରିଆରେ ଦେଖିପାରୁଥିଲେ । ଅତି ଅଳ୍ପଦିନ

ଭିତରେ କୋର୍ଯାକଙ୍କ ବେତାର ବକ୍ତବ୍ୟଗୁଡ଼ିକ ବହୁତ ଖ୍ୟାତି ଅର୍ଜନ କରିପାରିଥିଲା । ଏହାର ସୁଯୋଗରେ କୋର୍ଯାକ ନିଜର ମତାମତକୁ ଖୋଲା ଆକାଶରେ ନିର୍ଭୀକ ଭାବରେ ବାହ୍ନିଦେଉଥିଲେ । ଏକ କ୍ଷୁଦ୍ର ପରିସର ଭିତରେ ନିଜକୁ ଆବଦ୍ଧ ରଖିଥିବା ଏହି ସରଳ, ନିଷ୍କପଟ, ଶିକ୍ଷିତ ମଣିଷଟିର ନୂତନ ବୃହତ୍ତର ପରିସରକୁ ପରିବ୍ୟାପ୍ତି ଅନେକଙ୍କୁ ଚକିତ ତଥା ବିସ୍ମିତ କରିଥିଲା । କୋର୍ଯାକଙ୍କ ବ୍ୟକ୍ତିତ୍ୱରେ ଏକ ଆମୂଳଚୂଳ ପରିବର୍ତ୍ତନ ଘଟିଲା ବୋଲି ଅନେକ ଅନୁଭବ କଲେ । କୋର୍ଯାକ ଏହି ବେତାର ସଂଳାପ ମାଧ୍ୟମରେ ସାଂସ୍କୃତିକ ଓ ସାମାଜିକ ଜୀବନକୁ ଆପଣେଇନେଲେ ।

କୋର୍ଯାକ ନିଜ ଗବେଷଣାର ଫଳ, ମନସ୍ତାତ୍ତ୍ୱିକ ସତ୍ୟ, ଅନେକ ବର୍ଷ ଧରି କରିଥିବା ସଂସ୍କାରମୂଳକ ଏବଂ କଳାତ୍ମକ କାର୍ଯ୍ୟଗୁଡ଼ିକର ପୁନର୍ସମୀକ୍ଷା କରି ସେସବୁକୁ ବେତାର ମାଧ୍ୟମରେ ପରିବେଷଣ କରୁଥିଲେ । ଯେଉଁ ସମୟରେ କୋର୍ଯାକଙ୍କର ସଂଳାପକୁ ରେଡ଼ିଓରେ ପ୍ରଚାର କରିବାପାଇଁ ନିର୍ଦ୍ଧିଷ୍ଟ କରାଯାଇଥିଲା, ସେତେବେଳେ ପୋଲାଣ୍ଡର ପୁରପଲ୍ଲୀ, ସ୍କୁଲ, ଲାବୋରେଟୋରି, କଳକାରଖାନା ଆଦି କୋଣେ ଅନୁକୋଣେ ଆବାଳ-ବୃଦ୍ଧ-ବନିତା ସମସ୍ତେ ନିଜ ନିଜର ବେତାରଯନ୍ତ୍ର ପାଖରେ କାନଡେରି ବସିପଡ଼ୁଥିଲେ ଶୁଣିବାପାଇଁ ଏହି ବୃଦ୍ଧ ଡାକ୍ତରଙ୍କର ସଂସ୍କୃତିସମ୍ପନ୍ନ, ଧୀର ସୁନ୍ଦର ଲଳିତ କଣ୍ଠସ୍ୱରର ସଂଳାପ । ସବୁବେଳେ ରେଡ଼ିଓରୁ ସରକାରୀ ନିୟନ୍ତ୍ରିତ ତଥା ସଂକୀର୍ଣ୍ଣ ରାଜନୀତିକ ଭାଷଣଗୁଡ଼ିକ ଶୁଣି ଶୁଣି ବିରକ୍ତ ହୋଇପଡ଼ିଥିବା ଜନତାର, କର୍ଣ୍ଣରନ୍ଧ୍ରଗୁଡ଼ିକ ଡାକ୍ତରଙ୍କ ମଧୁର କଣ୍ଠସ୍ୱର ଭିତରେ ଏକ ସଂପୂର୍ଣ୍ଣ ନୂତନ ଜଗତର କଥାମୃତ ଆସ୍ୱାଦନ କରୁଥିଲା । ଡାକ୍ତରଙ୍କର ଏହି ବେତାର ସଂଳାପ ଆବାଳବୃଦ୍ଧବନିତା ସମସ୍ତଙ୍କର ଅତି ପ୍ରିୟ ହୋଇଯାଇଥିଲା । ମାତ୍ର ଏ କଣ୍ଠସ୍ୱର ଡାକ୍ତର ଜାନୁସ୍ କୋର୍ଯାକଙ୍କର ବୋଲି ବାହାରକୁ ଜଣାଇ ଦିଆଯାଉ-ନଥିଲା । କୋର୍ଯାକ ଜନମାନସ ଆଗରେ ଅଜ୍ଞାତ ହୋଇ ରହିଯାଉଥିଲେ । ରେଡ଼ିଓରେ ଏହି କାର୍ଯ୍ୟକ୍ରମଟି ବୃଦ୍ଧ ଡାକ୍ତରଙ୍କର ବୋଲି ପ୍ରଚାର କରାଯାଉଥିଲା; ମାତ୍ର କୋର୍ଯାକ ନାଁ ଟି ଉହ୍ୟ ରଖାଯାଉଥିଲା ।

ଆକାଶବାଣୀ କେନ୍ଦ୍ରରେ କୋର୍ଯାକ ତାଙ୍କର ପରିବେଷଣର ଆକର୍ଷଣୀୟ ଶୈଳୀ ପାଇଁ ନିର୍ଦ୍ଦେଶକ ତଥା ଅନ୍ୟ ସମସ୍ତଙ୍କଦ୍ୱାରା ଉଚ୍ଚ ପ୍ରଶଂସିତ ହେଉଥିଲେ । କୋର୍ଯାକ, ଜଣେ ଖ୍ୟାତିସମ୍ପନ୍ନ ଲେଖକ ଏବଂ ପ୍ରବୀଣ ଶିକ୍ଷାବିତ୍ ଭାବରେ ସାରା ପୋଲାଣ୍ଡ ତଥା ସୀମାନ୍ତ ଦେଶଗୁଡ଼ିକରେ ସୁପରିଚିତ ଥିଲେ । ଏସବୁ ସତ୍ତ୍ୱେ ରେଡ଼ିଓରେ ନିଜ ପରିଚୟ ପ୍ରକାଶ ପାଇଁ ତାଙ୍କୁ ଅନୁମତି ମିଳିନଥିଲା । "ସେ ନିଜର ପରିଚୟକୁ ଲୁଚାଇ ରଖିବେ"—ଏହି ସର୍ତ୍ତରେ ହିଁ ପୋଲାଣ୍ଡ ପିଲାମାନଙ୍କ ଉଦ୍ଦେଶ୍ୟରେ କହିବାପାଇଁ ତାଙ୍କୁ ଅନୁମତି ମିଳିଥିଲା । ପୋଲାଣ୍ଡର ପିଲାମାନେ ଯେଉଁ ଡାକ୍ତରଙ୍କୁ ଏତେ ନିବିଡ଼ ଭାବରେ ଜାଣିପାରୁଥିଲେ, ସେମାନେ ଡାକ୍ତରଙ୍କ

କଣ୍ଠସ୍ୱର ଶୁଣୁଥିଲେ; ମାତ୍ର ରେଡ଼ିଓରେ କହୁଥିବା ବ୍ୟକ୍ତି ଜଣକ ଯେ ତାଙ୍କ ପ୍ରିୟ ଜାଣିପାରୁନଥିଲେ ।

ନିଜ ନାଁ ପ୍ରସ୍ତୁତ ହେବ ନାହିଁ, ଅଥଚ ଜଣେ ରେଡ଼ିଓରେ କହିବେ—ଏଭଳି ଏକ ସର୍ତ୍ତରେ କୋର୍ଜାକ କାହିଁକି ରାଜି ହୋଇଥିଲେ, ସେକଥା ସାଧାରଣ ଭାବରେ ବିଚାର କଲେ ଆଚମ୍ବିତ ଲାଗେ । ଏଭଳି ଏକ ସର୍ତ୍ତରେ ରାଜିହେବା କୋର୍ଜାକଙ୍କର ମହାନୁଭବତାର ପରିଚୟ ଦିଏ । କୋର୍ଜାକ ଜାଣିଥିଲେ ଯେ ଇହୁଦୀବିରୋଧୀମାନଙ୍କ ଘୃଣା ଓ ଜଘନ୍ୟତାରୁ ନିଜକୁ ଦୂରେଇ ରଖିବା ପାଇଁ ସେ ନିଜର ପରିଚୟକୁ ଅଜ୍ଞାତ ରଖିଥିଲେ । ସେ ଭଲଭାବରେ ହୃଦୟଙ୍ଗମ କରିଥିଲେ ଯେ ଏହାଦ୍ୱାରା ପିଲାଙ୍କ ଉପରେ ତାଙ୍କର ପ୍ରଭାବ କୌଣସି ଗୁଣରେ ହ୍ରାସ ହେବନାହିଁ ।

ନିଜର ଖ୍ୟାତି ଓ ସମ୍ମାନକୁ ଉତ୍ସର୍ଗକରି ସେ ଯେ ପିଲମାନଙ୍କ ମଙ୍ଗଳ ପାଇଁ ନିଜକୁ ସମର୍ପିତ କରିପାରିବେ—ଏ କଥାଟିକୁ ଅଧିକ ଗୁରୁତ୍ୱ ସହକାରେ ବିଚାର କରୁଥିଲେ । ଇହୁଦୀ ବିରୋଧୀ ଅମାନୁଷିକତା ତଥା ଅନ୍ୟାନ୍ୟ ପ୍ରତିବନ୍ଧକଗୁଡ଼ିକ ବିରୋଧରେ ଏକ ସୁସ୍ଥ ଚିନ୍ତା ପ୍ରଦାନ କରିବା ସଙ୍କାଶେ ସେ ସ୍ଥିର କରିଥିଲେ । ସର୍ବୋପରି ଅନେକ ଲୋକଙ୍କ ପାଖରେ ନିଜର ବାର୍ତ୍ତାକୁ ପହଞ୍ଚାଇବା ପାଇଁ ସେ ମନ କରିଥିଲେ । ଏହାଦ୍ୱାରା ନିଜ ନାଁର ପ୍ରତି ବଦଳରେ ସେ ଏକ ବୃହତ୍ତର ଜନମାନସକୁ ନିଜର ଚିନ୍ତା ଅନୁଭବ ଓ ଉଦ୍ଦେଶ୍ୟକୁ ପରିବେଷଣ କରିପାରିବାର ଅଧିକାର ଓ ସୁଯୋଗ ପାଇ ପାରିଥିଲେ ।

ଆକାଶବାଣୀର ସାପ୍ତାହିକ 'ଆଣ୍ଟେନା' ପତ୍ରିକାରେ କୋର୍ଜାକଙ୍କର ତିନୋଟି ପ୍ରବନ୍ଧ ପ୍ରକାଶିତ ହୋଇଥିଲା । "ନିଃସଙ୍ଗ ବୋଧକରିବା" ଉପରେ ପ୍ରବନ୍ଧଗୁଡ଼ିକ ପର୍ଯ୍ୟବେସିତ ହୋଇଥିଲା । ପ୍ରଥମ ପ୍ରବନ୍ଧଟିରେ ପିଲମାନଙ୍କ ସମସ୍ୟା, ଦ୍ୱିତୀୟଟିରେ ଯୁବକ ଅବସ୍ଥାର ସମସ୍ୟା ଓ ତୃତୀୟଟିରେ ବୃଦ୍ଧ ଅବସ୍ଥାର ସମସ୍ୟା ଉପରେ ସେ ଲେଖିଥିଲେ ।

ଆଣ୍ଟେନା ପତ୍ରିକାର ସମ୍ପାଦକ ଡାକ୍ତରଙ୍କର ଏକ ସାକ୍ଷାତକାରକୁ ପତ୍ରିକାରେ ପ୍ରକାଶ କରିଥିଲେ । ମାତ୍ର ଡାକ୍ତରଙ୍କର ପରିଚୟକୁ ସମ୍ପୂର୍ଣ୍ଣ ଭାବରେ ଲୁଚାଇ ଦେଇଥିଲେ । ଏପରିକି ଡାକ୍ତରଙ୍କ କାର୍ଯ୍ୟ ପରିସରର ମୁଖ୍ୟ ମୁଖ୍ୟ ସଫଳତା ଓ ପିଲଙ୍କ ଭିତରେ ଥିବା ତାଙ୍କର ଆଦର ଆଦି କୌଣସି ବିଷୟରେ ଟିକେମାତ୍ର ସୂଚନା ଦେଇନଥିଲେ । କିନ୍ତୁ ଓ୍ୱାର୍ସୋ ରେଡ଼ିଓ କାର୍ଯ୍ୟକ୍ରମରେ ଯୋଗ ଦେଉଥିବା ଅତି ସାଧାରଣ ଲୋକଙ୍କର ଜୀବନୀ ଫଟୋସହ ଏହି ପତ୍ରିକାରେ ପ୍ରକାଶିତ ହେଉଥିଲା । ଜଣେ ଅନାମଧେୟ ଗାୟକ ଯାହାଙ୍କର ସଙ୍ଗୀତ ଥରେ ମାତ୍ର ପ୍ରଚାର କରାଯାଇ

ଆଉ କେବେ ବି ତାଙ୍କୁ ନିମନ୍ତ୍ରଣ କରାଯାଇ ନଥିଲା, ତାଙ୍କର ଜୀବନୀ ଫଟୋସହ ଏହି ପତ୍ରିକାରେ ସ୍ଥାନ ପାଇଥିଲା; ମାତ୍ର ଜନମାନସରେ ସୁପ୍ରତିଷ୍ଠିତ ବୃଦ୍ଧ ଡାକ୍ତରଙ୍କର ଜୀବନୀ "ଆଣ୍ଟିନା" ପତ୍ରିକାରେ କେବେ ବି ପ୍ରକାଶିତ ହୋଇପାରି ନଥିଲା ।

ଯେଉଁ ଜାନୁସ୍ କୋର୍ଚାକଙ୍କ ହୃଦୟରେ ସବୁ କଷ୍ଟ ପାଇଁ ତଥା ସମସ୍ତଙ୍କ ପାଇଁ ଭରିରହିଥିଲା କ୍ଷମା ଆଉ କ୍ଷମା, ଯାହାର ଅନ୍ତରର ଗଭୀରତମ ପ୍ରଦେଶରେ ପ୍ରତି ପିଲାଟି ପାଇଁ ସ୍ଥାନ ଟିକିଏ ସଂରକ୍ଷିତ ଥିଲା, ଯେଉଁମାନଙ୍କର ଦୁଃଖ ତାଙ୍କ ଚିନ୍ତାହୋଇଯାଏ ମାଧ୍ୟମରେ ଝଲସିଉଠୁଥିଲା, ସେହି ମହାନ ବ୍ୟକ୍ତିଙ୍କର ନାଁ ରେଡ଼ିଓରେ ପ୍ରଚାର କରାଯାଇ ପାରୁ ନଥିଲେ । କି ଆଣ୍ଟିନା ପତ୍ରିକାରେ ପ୍ରକାଶ କରାଯାଉ ନଥିଲା ।

ସତରେ ଏ କି ପ୍ରକାର ଉପହାସ !!

ମାନବିକତାକୁ ଅଙ୍ଗୀକାର କରି ଜୀବନ ବଞ୍ଚୁଥିବା ପ୍ରେମ ଓ ପ୍ରଗତିର ପ୍ରଚାରକ, ଶିକ୍ଷକ ଡାକ୍ତର ଜାନୁସ୍ କୋର୍ଚାକ ଯିଏ କି ସାରା ଦେଶର ବିଦ୍ୱାନ ଭିତରୁ ଜାତି ପ୍ରତି ବକ୍ତବ୍ୟ ପ୍ରଦାନ କରୁଥିଲେ, ସେହି ମହାତ୍ମା ଯେତେବେଳେ ରେଡ଼ିଓରେ ବେତାରବାର୍ତ୍ତା ପରିବେଷଣ କରୁଥିଲେ, ତାଙ୍କୁ ତାଙ୍କ ନାଁ ଲେଖିବା ପାଇଁ ଅନୁମତି ମିଳିପାରିନଥିଲା—କୋର୍ଚାକଙ୍କ ପ୍ରତି ଏଭଳି ନିର୍ଦ୍ଦୟତା ପଛରେ ଯେଉଁ କାରଣଟି ଥିଲା, ତାହା ହେଉଛି, ସେ ଥିଲେ ଜଣେ ଇହୁଦୀ ଏବଂ ତାଙ୍କ ଦାୟିତ୍ୱରେ ଥିଲେ ଅନେକ ଇହୁଦୀ ପିଲା । କେବଳ ଏଇ କାରଣଟି ପାଇଁ ପୋଲାଣ୍ଡର ରେଡ଼ିଓରେ କୋର୍ଚାକଙ୍କ ନାଁଟି ପ୍ରଚାର କରାଯାଉନଥିଲା ଏବଂ ଆଣ୍ଟିନା ପତ୍ରିକାରେ ତାଙ୍କ ଫଟୋ ଛପାଯାଇପାରୁନଥିଲା । ତଥାପି କୋର୍ଚାକ ଜାଣିଥିଲେ ସେ ସେ ନିଜକୁ ଲୁଚାଇରଖି ଅନେକ କଷ୍ଟ ଲାଭ ଉଠାଇବାକୁ ଯାଉଛନ୍ତି । ହିଟ୍‌ଲରୀୟ ପ୍ରାଦୁର୍ଭାବରୁ ପୋଲାଣ୍ଡରେ ଉଚ୍ଛୃଙ୍ଖଳ ଭାବରେ ମୁଣ୍ଡଟେକି ଉଠିଥିବା ଜାତିଆଣ ଭାବକୁ ଆହୁରି ଅଧିକ ସଙ୍ଗଠିତ ନକରିବା ପାଇଁ କୋର୍ଚାକଙ୍କର ଏହି ପଦକ୍ଷେପ ଅନେକ ସହାୟକ ହୋଇପାରିଥିଲା । ବାସ୍ତବରେ ପୋଲାଣ୍ଡରେ ଘନେଇ ହୋଇ ଆସୁଥିବା ଆସନ୍ନ ବିପଦ ମୁହଁରେ କୋର୍ଚାକଙ୍କର ଏହି ଉତ୍ସର୍ଗ ହେଉଛି ଏକ ପ୍ରକାର ବିରୋଧ ଆଳାପ ।

ଦିନକୁ ଦିନ ପୋଲାଣ୍ଡର ଅବସ୍ଥା ଖରାପ ହେବାରେ ଲାଗିଥିଲା । କଟକଣା ଏବଂ ନିୟନ୍ତ୍ରଣର ଯନ୍ତ୍ରାପେଷରେ ଜୀବନ ଅଧିକରୁ ଅଧିକ ଦୁର୍ବିସହ ହୋଇପଡ଼ୁଥିଲା । ଏହି ପରିସ୍ଥିତିକୁ ଲକ୍ଷ୍ୟକରି କୋର୍ଚାକ ଇହୁଦୀ ବିରୋଧୀ କାର୍ଯ୍ୟକଳାପ ତଥା ପୋଲାଣ୍ଡ ସରକାର ବିରୋଧରେ ଅପମାନଜନକ ମନ୍ତବ୍ୟମାନ ଦେଉଥିଲେ । ଏଥିପାଇଁ

କୋର୍ଯାକଙ୍କୁ ରେଡ଼ିଓ କାର୍ଯ୍ୟକ୍ରମରୁ ବରଖାସ୍ତ କରାଯାଇଥିଲା । ସେ ନୀରବରେ ଏହାକୁ ସହିଯାଇଥିଲେ ।

ଅଳ୍ପକିଛି ଦିନପରେ ତାଙ୍କ ଉପରେ ଆଉ ଏକ ଆଘାତ ଆସି ପଡ଼ିଲା । ଅପ୍ରତ୍ୟାଶିତ ଭାବରେ ବର୍ଲିନରେ ଥିବା "ଆମ ଘର" ଅନାଥାଶ୍ରମର ପରିଚାଳନା କମିଟିର ଏକ ଆକସ୍ମିକ ମିଟିଂ ଡକାଗଲା । ନିର୍ଦ୍ଦେଶକମଣ୍ଡଳୀରୁ କୋର୍ଯାକ ଇସ୍ତଫା ଦେଲେ । କୋର୍ଯାକ କିମ୍ବା ମିସେସ୍ ମାରିନା ଫାଲ୍ସ୍କା, ଏ ପରିଷ୍ଥିତିର ସୃଷ୍ଟିକର୍ତ୍ତାଙ୍କ ବିରୋଧରେ କେବେ ବି ପଦେ ପାଟି ଫିଟାଇ କହିଲେ ନାହିଁ । ଏହା କିନ୍ତୁ ଥିଲା କୋର୍ଯାକଙ୍କ ଲକ୍ଷ୍ୟ ଓ ଉଦ୍ଦେଶ୍ୟ ପ୍ରତି ଏକ ଶକ୍ତ ଧକ୍କା ଏବଂ ଏହାଥିଲା ପୋଲାଣ୍ଡକୁ ଭାଗ ଭାଗ କରୁଥିବା ଜାତିଆଣ ସଂଗ୍ରାମର ଏକ ନିଚ୍ଛକ ପ୍ରତିଫଳନ ।

ଏହି ଆଘାତ କୋର୍ଯାକଙ୍କ ଜୀବନରେ ଏକ ବିରାଟ ଝଡ଼ ସୃଷ୍ଟି କଲା । "ଆମଘର" ଅନାଥାଶ୍ରମର ଏବଂ ପିଲାମାନଙ୍କ ପାଇଁ ଏହି ଆଘାତ ଅଧିକ ଗୁରୁତର ଥିଲା । ମାତ୍ର ଜାତିଆଣବାଦୀ ଉଗ୍ରବାଦୀମାନେ ଏଥିପ୍ରତି ଆଦୌ ମୁଣ୍ଡ ଖେଳାଉ ନଥିଲେ । କୋର୍ଯାକ ସାରା ଜୀବନ ବଞ୍ଚିଥିଲେ ଅନାଥ ପିଲାମାନଙ୍କ ପାଇଁ । ସେମାନଙ୍କ ପାଇଁ ସେ ଯୋଜନା କରୁଥିଲେ ଓ ସ୍ୱପ୍ନ ଦେଖୁଥିଲେ । କୋର୍ଯାକ୍ ଏହି ଘଟଣାରେ ମର୍ମାହତ ହୋଇ-ପଡ଼ିଲେ । ରେଡ଼ିଓ କାର୍ଯ୍ୟକ୍ରମରୁ ବହିଷ୍କାର ଏବଂ "ଆମଘର" ଅନାଥାଶ୍ରମରୁ ସମ୍ପର୍କ ଛିନ୍ନ ହୋଇଯିବା ଆଦି ଘଟଣାରେ ବିବ୍ରତ ହୋଇ କୋର୍ଯାକ ପୋଲାଣ୍ଡ ଛାଡ଼ି ଚାଲି-ଯିବାକୁ ନିଷ୍ପତ୍ତି ନେଇଥିଲେ । ପାଲେଷ୍ଟାଇନ୍‌ର ମରୁଭୂମିରେ ଆଶ୍ରୟ ନେବାପାଇଁ ସେ ଶ୍ରେୟସ୍କର ମଣିଲେ ।

ଏହି ମୁହୂର୍ତ୍ତରେ ସେ ଆଶା କରିନଥିଲେ ଯେ ସେ ପୁଣି ଓ୍ୱାର୍ସୋ ଆକାଶବାଣୀ କେନ୍ଦ୍ରରେ ମାଇକ୍ରୋଫୋନ୍ ଆଗରେ ତାଙ୍କର ମନ୍ତ୍ରମୁଗ୍ଧ ସଂଳାପ ପରିବେଷଣ କରି ପୋଲାଣ୍ଡ ଜନତାର ଭଗ୍ନ ହୃଦୟରେ ସାହସ ଭରସା ଭରି ଦେଇପାରିବେ ଏବଂ ପିଲାମାନଙ୍କ ସୁରକ୍ଷା ପାଇଁ ଜନତାର ସ୍ନେହ ଶ୍ରଦ୍ଧାକୁ ଆବେଦନ କରିପାରିବେ । ଏହି ସମସ୍ତଟି କୋର୍ଯାକଙ୍କ ପାଇଁ ଅତ୍ୟନ୍ତ ମର୍ମନ୍ତୁଦ ଅବସ୍ଥା ଥିଲା । ଯେଉଁ ଓ୍ୱାର୍ସୋ ନଗରୀକୁ ସେ ହୃଦୟ ଦେଇ ଭଲ ପାଉଥିଲେ, ମୃତ୍ୟୁର ହୁଙ୍କାର ନାଦରେ କ୍ଷତବିକ୍ଷତ ହୋଇ-ପଡ଼ିଥିବା ସେହି ନଗରୀର ରାସ୍ତା ଉପରେ ପିଲାମାନେ ଇତସ୍ତତଃ ହୋଇ ଦୌଡ଼ିବାକୁ ଲାଗିଲେ । ଓ୍ୱାର୍ସୋ ନଗରୀରେ ସେ ଅନେକବାର ଅପମାନିତ ହୋଇଛନ୍ତି, ହତାଶ ଓ ଅନ୍ୟାୟର କଷାଘାତରେ ପଡ଼ିଛନ୍ତି, କିନ୍ତୁ ଅନାଥ ପିଲାମାନଙ୍କ ପରେ ପରେ ସେ ଓ୍ୱାର୍ସୋ ନଗରୀକୁହିଁ ଭଲପାଉଥିଲେ ।

ଓ୍ୱାର୍ସୋ ନଗରୀ କୋର୍ଯାକଙ୍କୁ ପ୍ରତ୍ୟାଖ୍ୟାନ କଲା । ମାତ୍ର ଓ୍ୱାର୍ସୋର ଅଧିବାସୀ-ମାନଙ୍କର ଦୁଃଖ ବେଦନାର ମୁହୂର୍ତ୍ତରେ ଡାକ୍ତରଙ୍କର କଣ୍ଠସ୍ୱର ଆଶା ଓ ଭରସା

ହୋଇ ଛୁଡ଼ା ହେଉଥିଲା । ଯେତେବେଳେ ବୋମା ଓ ମାରଣାସ୍ତ୍ରର ପ୍ରଚଣ୍ଡତା ଭିତରେ ହୃଦୟବିଦାରକ ଘଟଣାମାନ ଘଟିଯାଉଥିଲା, ସେତେବେଳେ ଯେଉଁ ଅଳ୍ପ କେତେ ଜଣ ମାନସିକ ଭାରସାମ୍ୟ ନହରାଇ, ଧୈର୍ଯ୍ୟର ସହ ଛୁଡ଼ା ହେଉଥିଲେ, ସେମାନଙ୍କ ଭିତରେ ଜାନୁସ୍ କୋର୍ଚ୍ଚାକ ଥିଲେ ଅନ୍ୟତମ ।

## (୨୪) ନିଷ୍ପତ୍ତି ବଦଳିଲା

ପୋଲାଣ୍ଡବାସୀଙ୍କ ଉପରେ ଜର୍ମାନମାନଙ୍କର ଅତ୍ୟାଚାର ବଢ଼ିଚାଲିଲା । ଇହୁଦୀମାନଙ୍କ ଜୀବନ କଷ୍ଟକର ହୋଇପଡ଼ିଲା । ଆସନ୍ନ ମରଣାତ୍ମକ ବିପଦ ଦ୍ରୁତ ଗତିରେ ମାଡ଼ିଆସିଲା । ଏଥିପ୍ରତି କୋର୍ଚ୍ଚାକ ଭଲ ଭାବରେ ସଚେତନ ଥିଲେ । ସେ ଇଚ୍ଛା କରିଥିଲେ ପୋଲାଣ୍ଡ ଛାଡ଼ି ପଳାଇ ଯାଇପାରିଥାନ୍ତେ ଏବଂ ନିଜ ଜୀବନକୁ ସୁରକ୍ଷିତ ରଖିପାରିଥାନ୍ତେ । ସେ ସମସ୍ତଙ୍କୁ ବାରମ୍ବାର ସତର୍କତାର ସୂଚନା ଦେଉଥିଲେ ଯେ ଏଠି ବଞ୍ଚିବାର ଗୋଟିଏ ମାତ୍ର ଉପାୟ ହେଉଛି ପଳାୟନ । ମାତ୍ର ସେ ନିଜେ ପୋଲାଣ୍ଡକୁ ପ୍ରତ୍ୟାଖ୍ୟାନ କରି ଯାଇପାରିଲେ ନାହିଁ । ପୋଲାଣ୍ଡ ନଛାଡ଼ିବାର ପ୍ରଧାନ କାରଣ ହେଲା, ଅନାଥ ପିଲାମାନଙ୍କ ପ୍ରତି ତାଙ୍କର କର୍ତ୍ତବ୍ୟବୋଧ ଏବଂ ମମତ୍ୱ । ଅନାଥାଶ୍ରମରେ କୋର୍ଚ୍ଚାକଙ୍କ ଦାୟିତ୍ୱରେ ଥିଲେ ୨୦୦ ଜଣ ପିଲା । ଯଦିଓ ସେ ଭଲ ଭାବରେ ଜାଣିଥିଲେ ଯେ କେବଳ ତାଙ୍କର ଉପସ୍ଥିତି ଏତେ ପିଲାଙ୍କୁ ସୁରକ୍ଷା ଦେଇପାରିବ ନାହିଁ ତଥାପି ସେ ସେମାନଙ୍କୁ ଛାଡ଼ି ଯାଇପାରିଲେ ନାହିଁ ।

ସେ ଜାଣୁଥିଲେ ଯେ ଜର୍ମାନମାନେ ତାଙ୍କ ଗତିବିଧିକୁ ଭଲ ଭାବରେ ଲକ୍ଷ୍ୟ ରଖିଛନ୍ତି । ତାଙ୍କ ପ୍ରତି ସଦାସର୍ବଦା ବିପଦ ଆଚ୍ଛାଦିତ ହୋଇରହିଛି । ତଥାପି ସେ ସମଗ୍ର ମାନବ ସମାଜ; ଇହୁଦୀସମ୍ପ୍ରଦାୟ ଏବଂ ଇସ୍ରାଏଲ ଯେ ତିଷ୍ଠି ରହିବ ଏ କଥା ଉପରେ ସେ ଗଭୀର ବିଶ୍ୱାସ ରଖୁଥିଲେ । ପାଲେଷ୍ଟାଇନର ଜଣେ ବନ୍ଧୁଙ୍କ ପାଖକୁ ସେ ଚିଠିରେ ଲେଖିଥିଲେ, ଏହି ପଶୁ ନେତୃ ବୃନ୍ଦଙ୍କର କୌଣସି ସୂକ୍ଷ୍ମତର ମାନବୀୟ ଗୁଣ ଓ ଅନୁଭବ ହିଁ ନାହିଁ । ଏମାନେ ଏ ପୃଥିବୀକୁ ଭାଗ ଭାଗ କରିଦେଉଛନ୍ତି । ଗୋଟିଏ ମାତ୍ର ସାନ୍ତ୍ୱନା ଯେ ଏହା ପୃଥିବୀର ପାଗଳାମୀ ନୁହେଁ......। ଏହା ପୃଥିବୀର ବର୍ବରତା । ପରିବର୍ତ୍ତନ ସମ୍ଭବ । ମାତ୍ର ଏଥିପାଇଁ ଅନେକ କଷ୍ଟ ସ୍ୱୀକାର କରିବାକୁ ପଡ଼ିବ । ଆବିସିନିଆ, ସ୍ପେନ ଓ ଚୀନ୍‌ରେ ଏଭଳି କଷ୍ଟଦାୟକ ପଦକ୍ଷେପମାନ ନିଆ ହୋଇସାରିଛି । ଆଉ ଏକ ଚିଠିରେ ସେ ଦୁଃଖର ସହ ଲେଖିଥିଲେ,

"ଏହା ଅତ୍ୟନ୍ତ ଦୟନୀୟ ! ମଧ୍ୟଯୁଗରେ ସେମାନେ ପୃଥିବୀ ଧ୍ୱଂସ ପାଇଯିବ ବୋଲି ଭୟକରୁଛନ୍ତି । ଆଜି ବିଶ୍ୱଯୁଦ୍ଧର ଆଶଙ୍କା ରହିଛି । ତାପରେ ରହିଛି ରୋଗ ବୈରାଗ୍ୟ ଏବଂ ମହାମାରୀର ଭୟ । ଏବେ ବିଷାକ୍ତ ଗ୍ୟାସ ମହଜୁଦ୍ ଅଛି । ଦୁର୍ଭିକ୍ଷ ଆଗରୁ ଥିଲି ଏବଂ ଏବେ ବି ଅଛି ।"

କୋର୍ଜାକ, ଚିତ୍କାର କରି କହୁଥିଲେ, "ପିଲାମାନେ ମୁଁ ବହୁତ ଲଜ୍ଜିତ କାରଣ ମୁଁ ଅନୁଭବ କରୁଛି ସତେଯେପରି ମୋର କ୍ଷୁଧା ପ୍ରଶମିତ ହୋଇ-ଯାଉଛି ।" ଏହାହିଁ ଥିଲା ତାଙ୍କ ଚିତ୍କାର ମୂଳକଥା ଏବଂ ଏହାକୁ ସେ ବାରମ୍ବାର ଦୋହରାଉଥିଲେ । ଅନାଥାଶ୍ରମ ଭିତରେ ଥିବା ପିଲା ତଥା ବାହାରେ ରୋଗ ଓ ଦୁଃଖ ଯନ୍ତ୍ରଣାରେ ପଡ଼ିଥିବା ସବୁ ପିଲାଙ୍କର ଦୁରବସ୍ଥାରେ ସେ ନିଜକୁ ଏତେ ସଂଶ୍ଳିଷ୍ଟ କରି ଦେଉଥିଲେ ଯେ, ଏହି ଅବସ୍ଥା ପାଇଁ ନିଜକୁ ଦାୟୀ କରୁଥିଲେ ।

ତାଙ୍କର ଆଶା ମରିଗଲା ନାହିଁ । ଆଉ ଏକ ଚିଠିରେ ସେ ଲେଖିଥିଲେ, "ଆସନ୍ତା ଭବିଷ୍ୟତରେ ଆମେ ଏକ ବୃହତ୍ତର ଘଟଣା ସମୂହର ସମ୍ମୁଖୀନ ହେବାକୁ ଯାଉଛନ୍ତି । ନିଆଁ ଦାନ୍ତ ଏବଂ ବିସ୍ଫୋରଣର ଯୁଦ୍ଧକୁ କଅଣ ଯୁକ୍ତି ଓ ବୁଦ୍ଧି ଦ୍ୱାରା ପରିବର୍ତ୍ତନ କରିହେବ ? ମୁଁ ନିଜକୁ ରକ୍ଷା କରିବା ପରିବର୍ତ୍ତେ ଏତିକି କାମନା କରିବି ଯେ ମୋର ଚିନ୍ତା ଓ ସୁସ୍ଥ ମାନସିକତା ବଞ୍ଚିରହୁ ।

ବାସ୍ତବ ପରିସ୍ଥିତି ପ୍ରକୃତରେ ବଡ଼ କୁତ୍ସିତ ଥିଲା । କୋର୍ଜାକଙ୍କ ମାନସିକ ଅବସ୍ଥା ଭାରାକ୍ରାନ୍ତ ହୋଇଯାଉଥିଲା । ସେ ପାଲେଷ୍ଟାଇନର ଜଣେ ବନ୍ଧୁଙ୍କ ପାଖକୁ ପଠାଇଥିବା ଏକ ଚିଠିରେ ସେ ଲେଖିଥିଲେ, "ରାସ୍ତାରେ ଗଲାବେଳେ ମୁଁ ଦେଖେ, ପିଲାମାନେ ଡର ଡର ହୋଇ ସ୍କୁଲକୁ ଯାଉଛନ୍ତି । ଏହା ଦେଖି ମୋତେ ଲାଗେ ସତେ ଯେପରି ମୋର ସମସ୍ତ ଶକ୍ତି କ୍ଷୟ ହୋଇଯାଇଛି । ଭୟ ଓ ଆଶଙ୍କା ଦ୍ୱାରା ମୁଁ ଦୁର୍ବଳ ହୋଇଯାଉଛି । ତୁମେ ତୁମ ଜୁନ ପୁଅ ବିଷୟରେ କହୁଥିଲ । ତୁମେ କହିଥିଲ ଯେ ଆଜି ତା ଓଠରେ ଯେଉଁ ଖୋଲା ହସ ଟିକିକ ଫୁଟି ବାହାରୁଛି ତାହା ସବୁଦିନ ଏପରି ରହିପାରିବ ନାହିଁ । ସମସ୍ତ ଥିଲା, ଯେତେବେଳେ ହର୍ଷୋଲ୍ଲାସରେ ଖେଳୁଥିବା ପିଲାମାନଙ୍କୁ ଦେଖିଲେ ମୋର ବିଷାଦ ଦୂର ହୋଇଯାଉଥିଲା । ବାସ୍ତବ ଦୁରବସ୍ଥାକୁ ଭୁଲିଯାଇ ମୁଁ ହାଲୁକା ଅନୁଭବ କରୁଥିଲି । ମାତ୍ର ଆଜି ସେ ସମସ୍ତ ଆଉ ନାହିଁ । ପିଲାମାନଙ୍କର ଚାଲିଚଳନ ମୋ ପାଇଁ ଯନ୍ତ୍ରଣାଦାୟକ ମନେହେଉଛି । କାରଣ ସେମାନେ ସମସ୍ତେ ଅନାଥ । ସେହି ସମାନ ଚିଠିରେ ସେ ଲେଖିଥିଲେ, "ବଞ୍ଚିବା ପାଇଁ ମୋର ଆଉ ଇଚ୍ଛାନାହିଁ । ମୁଁ ଏ ଅନାଥ ଶିଶୁମାନଙ୍କର ପିତାହେବା ପାଇଁ ଯୋଗ୍ୟ ନୁହେଁ ।

ସେତେବେଳେ କୋର୍ଚ୍ଚାକଙ୍କ ପାଖରେ ବହୁତ କମ୍ ସମ୍ବଳ ଥିଲା । ପୁଣି ଧନକୁ ଧନ ସମ୍ବଳ କମିବାରେ ଲାଗିଥିଲା । ଗୋଟିଏ ପକ୍ଷରେ ବୟସ ବଢ଼ି ଚାଲିଛି, ଅନ୍ୟ ପକ୍ଷରେ ଧନର ଅଭାବ । ଏ ସମୟରେ ପାଲେଷ୍ଟାଇନକୁ ପଳାଇ ଯାଇଥିଲେ, ସେଠାରେ ନୂଆକରି ଜୀବନ ବଞ୍ଚିବାକୁ ପଡ଼ିଥାନ୍ତା । ମାତ୍ର ଏ ସମସ୍ୟା ପାଇଁ ଯେ ସେ ପାଲେଷ୍ଟାଇନ୍ ଗଲେ ନାହିଁ ତାହା ଠିକ୍ ନୁହେଁ । ଜଣେ ବନ୍ଧୁଙ୍କ ପାଖକୁ ପଠାଇଥିବା ଚିଠିରେ ସେ କାରଣ ଉଲ୍ଲେଖ କରି ଲେଖିଥିଲେ, "ମୋର ସମସ୍ତ ସମ୍ପର୍କ ମୁଁ ଛିଣ୍ଡାଇ ଦେଇଛି । ମୁଷ୍ଟିମେୟ କେତେଜଣ ବନ୍ଧୁ ଅଛନ୍ତି । କିନ୍ତୁ, ଏଠାରୁ ଛାଡ଼ି ପଳାଇଯିବାର ଧାରଣା ମୁଁ କରିପାରୁନି ।"

ନିଜ ଦେଶର ଦୁର୍ବଳ ସମୟରେ, ଯେତେବେଳେ ଅନାଥ ଶିଶୁମାନେ ତାଙ୍କ ଉପରେ ଅଧିକ ଭରସା ରଖିଛନ୍ତି, ସେତେବେଳେ ଛାଡ଼ି ଚାଲିଯିବାପାଇଁ ଚିନ୍ତା କରିବା ଏକ ବିରାଟ ଅଭିଶାପ । ଏ ସମୟରେ ଛାଡ଼ିଚାଲିଯିବା ଅର୍ଥ ନିଜର ଭୀରୁତା ଓ କାପୁରୁଷ ପଣିଆର ପରିଚୟ ଦେବା । ଏ ପ୍ରକାର ଆତ୍ମସମୀକ୍ଷା କରି ସେ ପାଲେଷ୍ଟାଇନ୍‌କୁ ପଳାଇ ଯିବାର ଅଭିପ୍ରାୟ ପ୍ରତ୍ୟାଖ୍ୟାନ କଲେ । ପରେ ପାଲେଷ୍ଟାଇନ୍‌ର ଜଣେ ବନ୍ଧୁଙ୍କ ପାଖକୁ ପଠାଇଥିବା ଏକ ଚିଠିରେ ସେ ଲେଖିଥିଲେ, "ମୁଁ ପୋଲାଣ୍ଡର ବାସ୍ତବ ପରିସ୍ଥିତି ସହ ସମ୍ପର୍କ ଛିନ୍ନ କରିଦେବା ପାଇଁ ଚାହୁଁ ନାହିଁ । ପ୍ରତ୍ୟେକ ଅନାଥ ଶିଶୁର ଡାକ ମୋତେ ମନେପଡ଼ିବ ଏବଂ ସେଥିରେ ମୁଁ ବ୍ୟସ୍ତ ହୋଇପଡ଼ିବି । ବର୍ତ୍ତମାନ ସହ ମୁଁ ଭୂତ ଭବିଷ୍ୟତର ସବୁକିଛି ବାନ୍ଧି ରଖିବାକୁ ଇଚ୍ଛା କରୁଛି । ପାଲେଷ୍ଟାଇନ୍ ଦେଖିବା ଅତ୍ୟନ୍ତ ଦୟନୀୟ କଥା; ମାତ୍ର ମୁଁ ଅନ୍ୟ କିଛି କରିପାରିଲି ନାହିଁ । ସବୁକିଛି ତ୍ୟାଗ କରିଦେବା ପାଇଁ ମୋତେ ଭଲ ଲାଗେ ନାହିଁ । ମୋ ଶବ୍ଦ ଭଣ୍ଡାର ଭିତରେ ତ୍ୟାଗର ସ୍ଥାନ ନାହିଁ । ତେଣୁ ମୁଁ ପୋଲାଣ୍ଡକୁ ବର୍ଜନକରି ପାଲେଷ୍ଟାଇନ ଯାଇ ପାରିଲି ନାହିଁ ।"

କୋର୍ଚ୍ଚାକଙ୍କ ଜୀବନ ଅନେକ ଝଡ଼ଝଞ୍ଜା ଦେଇ ଗତି କରିଛି । ମାତ୍ର ଏହି ସମୟଟି ତାଙ୍କୁ ସବୁଠାରୁ ଅଧିକ କଷ୍ଟଦାୟକ ମନେହୋଇଛି । ଇଉରୋପ ତଥା ପୃଥିବୀର ଅନ୍ୟ କୋଣରେ ଘଟିଥିବା ଅଘଟଣଗୁଡ଼ିକ ସାଙ୍ଗକୁ କୋର୍ଚ୍ଚାକଙ୍କ ମନରେ ଜାତ ହେଉଥିବା ଆତ୍ମଗ୍ଲାନି ତାଙ୍କୁ ଅଧିକ ସମସ୍ୟାବହୁଳ କରାଉଥିଲା । ଘଟିଯାଉଥିବା ପରିସ୍ଥିତିରେ ତାଙ୍କର କୌଣସି ଭୂମିକା ନଥିଲା ତଥାପି ସେ ନିଜକୁ ସବୁକିଛି ପାଇଁ ଦୋଷୀ ବୋଲି ବିଚାର କରୁଥିଲେ ।

ଦୁଇଶହ ଜଣ ଅନାଥ ଶିଶୁଙ୍କ କରୁଣ କାହାଣୀ କୋର୍ଚ୍ଚାକଙ୍କ ହୃଦୟକୁ ବିଦୀର୍ଣ୍ଣ କରିଦେଉଥିଲା । ଯଦିଓ ସେ ଜାଣିଥିଲେ ଯେ ଏତେଗୁଡ଼ିଏ ଶିଶୁଙ୍କୁ ରକ୍ଷାକରିବା ସକାଶେ ତାଙ୍କର ଶକ୍ତି ନାହିଁ ତଥାପି ସେ ଏମାନଙ୍କ ଠାରୁ ମୁହଁ ଫେରାଇ ନେବା

ପାଇଁ ଅକ୍ଷମ ଥିଲେ । ଏ ସମୟରେ ଷ୍ଟିଫା ଓ୍ୱିଲ୍‌କନ୍‌ସ୍କା ଦେଶ ଛାଡ଼ି ଚାଲିଯିବା ସକାଶେ ଚିନ୍ତା କରୁଥିଲେ । ତେଣୁ କୋର୍ଝାକ୍ ଆଉ କିଛି ଭାବି ପାରୁ ନଥିଲେ । ଓ୍ୱିଲ୍‌କନ୍‌ସ୍କା ଅତ୍ୟନ୍ତ କ୍ଳାନ୍ତ ହୋଇପଡ଼ିଥିଲେ ଏବଂ ଏତେଦିନଯାଏ ମରୀଚିକା ପଛରେ ଧାଇଁଥିଲେ ବୋଲି ଅନୁଭବ କରିବାକୁ ଲାଗିଲେ । ଅନାଥାଶ୍ରମର କର୍ତ୍ତୃପକ୍ଷ ଓ ପରିଚାଳନା ସମିତିର ନିଷ୍ପତ୍ତି ସହ ଷ୍ଟିଫା ରାଜି ହୋଇ ପାରୁନଥିଲେ । ତାଙ୍କର କୌଣସି ଗୋଟିଏ ବି ଦିନ ଛୁଟି ନଥିଲା । ସେ ଅନେକବାର ଚିନ୍ତା କରୁଥିଲେ; ପାଲେଷ୍ଟାଇନ୍ ଚାଲିଯିବାପାଇଁ । ଅନାଥାଶ୍ରମର କାର୍ଯ୍ୟକଳାପ ଭିତରୁ ନିଜକୁ ଓହରେଇ ନେଇ କନିଷ୍ଠମାନଙ୍କୁ ଅଧିକରୁ ଅଧିକ ଦାୟିତ୍ୱ ଦେଇଦେବା ପାଇଁ ସେ ପ୍ରତିଦିନ ଚେଷ୍ଟା କରୁଥିଲେ । ଏ ସବୁସତ୍ତ୍ୱେ ଷ୍ଟିଫା ଓ୍ୱିଲ୍‌କନ୍‌ସ୍କାଙ୍କ ଅନାଥାଶ୍ରମକୁ ଛାଡ଼ି ପାଲେଷ୍ଟାଇନ୍ ଯାଇ ପାରିଲେ ନାହିଁ । ଷ୍ଟିଫା ଯେତେବେଳେ ଛାଡ଼ି ଯାଇ ପାରିଲେ ନାହିଁ, ଅନାଥାଶ୍ରମର ମୂଳ ଉତ୍ସ କୋର୍ଝାକ୍ ଅବା କିପରି ଯାଇ ପାରିଥାନ୍ତେ ! ପାଲେଷ୍ଟାଇନକୁ ପଳାଇଯିବାର ଇଚ୍ଛା ପରିବର୍ତ୍ତିତ ହେଲା । ଏହା ବଦଳରେ ଯୋଜନା ଅନ୍ୟ ପ୍ରକାରର ହେଲା । କୋର୍ଝାକ ଲେଖିଥିଲେ, "ମୁଁ ପୋଲାଣ୍ଡର ସବୁ ଅଞ୍ଚଳକୁ ଯାତ୍ରା କରିବି । ଶ୍ରେଷ୍ଠ ଶ୍ରେଷ୍ଠ ଟାଉନ୍‌ରେ ଥିବା ଅନାଥାଶ୍ରମ ଗୁଡ଼ିକୁ ଯିବି । ମୁଁ ଇସ୍ରାଏଲରେ ଯେପରି ବଞ୍ଚିଥାନ୍ତି, ଏଠାରେ ଆଉ କିଛିଦିନ କାହିଁକି ସେପରି ନ ବଞ୍ଚିବି ?"

ପୋଲାଣ୍ଡର ଇହୁଦୀମାନଙ୍କ ସମ୍ପର୍କରେ ଉଲ୍ଲେଖ କରି ସେ କହୁଥିଲେ, ବାସ୍ତବରେ ସେମାନେ ବହୁତ ଗରିବ । ସେମାନଙ୍କର ଅବସ୍ଥା ବଡ଼ ଦୟନୀୟ ।" ସେ ଜାଣିଥିଲେ ଯେ ଜାତିଆଣ ଘୃଣାରୁ ମୁକ୍ତି ନାହିଁ । ଏପରିକି ପାଲେଷ୍ଟାଇନରେ ବି ଏହା ସମ୍ଭବ ନୁହେଁ । ଆରବୀୟମାନେ ଓ ଉପନିବେଶିକ ଶକ୍ତିଗୁଡ଼ିକ ପାଲେଷ୍ଟାଇନ୍‌ରେ ଏବଂ ସିରିଆରେ ଇହୁଦୀମାନଙ୍କୁ କେତେ ଘୃଣା କରୁଥିଲେ, ସେକଥା କୋର୍ଝାକ ଭଲ ଭାବରେ ବୁଝିଥିଲେ । ସେ ଏହାକୁ ମନରେ ରଖି ଲେଖିଥିଲେ, "ଖ୍ରୀଷ୍ଟିଆନ ଓ ଇହୁଦୀ ସମସ୍ତେ ମୋ ଆଗରେ ସମାନ । ସମସ୍ତେ ସମାନ ଈଶ୍ୱରଙ୍କର ସନ୍ତାନ । ଲୋକମାନେ ସେମାନଙ୍କୁ ଅଲଗା ଅଲଗା କରି ଦେଖନ୍ତି । ଉଭୟ ସେଠାରେ ଏବଂ ଏଠାରେ, ମହତ୍ତର ଉଦ୍ଦେଶ୍ୟଗୁଡ଼ିକ ଘୃଣା ଏବଂ ଜାତିଆଣ ସଂଗ୍ରାମର କର୍ଦ୍ଦମ ଭିତରେ ପଦଦଳିତ ହୋଇ ନଷ୍ଟ ହୋଇଯାଉଛି । ଏପରି ହେଉଛି କାହିଁକି ?

ପାଲେଷ୍ଟାଇନକୁ ପଳାଇଯିବା ବଦଳରେ ପୋଲାଣ୍ଡରେ ରହିବାର ନିଷ୍ପତ୍ତି ତାଙ୍କ ମନ ଭିତରେ ଦୃଢ଼ରୁ ଦୃଢ଼ତର ହେଲା । ଏଥିପାଇଁ ସେ ନିଜର ଯୁକ୍ତିଗୁଡ଼ିକୁ ଅନେକ ମାନବିକତାର ସହ ବନ୍ଧୁମାନଙ୍କ ଆଗରେ ବାରମ୍ବାର ଉପସ୍ଥାପନକରି ନିଜକୁ ସାନ୍ତ୍ୱନା ଦେଇଛନ୍ତି । ସମାନ ଧାରାରେ ସେ ଗୋଟିଏ ପ୍ରକାର କଥା

ଲେଖିଛନ୍ତି—"ମୋର ସମସ୍ତ ପ୍ରିୟ ଜିନିଷକୁ ପଛରେ ପକାଇଦେଇ ପାଲେଷ୍ଟାଇନ୍ ଚାଲିଯିବା ଅର୍ଥ ମୋର ସବୁ ଆଦର୍ଶକୁ ଦେବାଳିଆ କରି ଚାଲିଯିବା । ଏପରି କରିବା ମୋ ଜୀବନ ପଥ ଏକ ବିପଦ ଯେଉଁଥିରୁ ମୁଁ କେବେ ନିଜକୁ ବଞ୍ଚାଇ ପାରିବି ନାହିଁ । ମୁଁ ଚାଲିଗଲେ କିଅଣ ଆଉ ମୋ ପିଲାଙ୍କ ଚକ୍ଷୁଯୁଗଳକୁ ଅନାଇ ପାରିବି ? ମୁଁ କିଅଣ ଏଠାରୁ ସବୁକିଛି ଝାଡ଼ିଝୁଡ଼ି ଦେଇ ଚାଲିଯାଇପାରିବି ? ପିଲାମାନଙ୍କର ଆଶା ଓ ଭରସାକୁ ନଗଣ୍ୟ ମନେକରି ସେମାନଙ୍କୁ ପ୍ରତାରଣା କରିବା ଅର୍ଥ ହିଁ ନିଜକୁ କ୍ଷତବିକ୍ଷତ କରିବା ।

ପାଲେଷ୍ଟାଇନ୍‌ରେ କିବୁତ୍‌ଗୁଡ଼ିକ ବୁଲୁଥିଲି ପରି ବର୍ତ୍ତମାନ ପୋଲାଣ୍ଡରେ ଥିବା ଗ୍ରେଟ ଗ୍ରେଟ ଟାଉନ୍ ଗୁଡ଼ିକୁ ବୁଲିଯିବା ପାଇଁ ମୋର ଇଚ୍ଛା ହେଉଛି । ବୋଧହୁଏ ମୁଁ କିଛି କରିପାରିବି, ଯଦ୍ୱାରା ଅନେକଙ୍କର ବୋଝ କିଛି ମାତ୍ରାରେ ଲଘବ ହେବ । ମୁଁ ଏ ଦେଶରେ ଅନେକ ପରିଶ୍ରମ କରି ଅନେକ ସ୍ୱତନ୍ତ୍ର ଉଦ୍ରେକକାରୀ କାମ ଆରମ୍ଭ କରିଥିଲି । ଆଦର୍ଶଗତ କାରଣ ପାଇଁ ଏ ଦେଶରେ ମୁଁ ପ୍ରାୟ ତିରିଶି ବର୍ଷକାଳ ଝାଳନାଳ ହୋଇ ଖଟିଛି । ଏ ଦେଶରେ ଯାହା ଘଟୁଛି, ସେସବୁ ପାଇଁ ମୁଁ ଦାୟୀ । ମୁଁ ମୋତେ ଓ ମୋ ଜୀବନକୁ ଏ ଦେଶ ସହ ଏପରି ବାନ୍ଧିଦେଇଛି ଯେ, ମୁଁ ଭାବି-ପାରୁନି ମୃତ୍ୟୁବ୍ୟତୀତ ଆଉ କିଏ ମୋତେ ଏଠାରୁ ଛିନ୍ନ କରିଦେଇପାରିବ । ମୁଁ ଅନେକ ଯୁବକଙ୍କ ଜୀବନ ପାଇଁ ନିଜକୁ ଦାୟୀ କରୁଛି, କାରଣ ଏଠାରେ ଥାଇ ମୁଁ ପିଲାମାନଙ୍କ ଅଧିକାରକୁ ରକ୍ଷା କରିପାରିଲି ନାହିଁ ।"

ହିଟ୍‌ଲର ପୋଲାଣ୍ଡ ଅକ୍ତିଆର କରିବାପୂର୍ବରୁ କୋର୍ଚାକଙ୍କ ଭିତରେ ଆଉଥରେ ପାଲେଷ୍ଟାଇନ୍ ଯିବାପାଇଁ ବାସନା ଜାଗ୍ରତ ହେଲା । ପାଲେଷ୍ଟାଇନ୍‌ରେ ଆଉ ତିନି ଚାରିମାସ କଟାଇବା ପାଇଁ ସେ ଇଚ୍ଛା କରୁଛନ୍ତି ବୋଲି ପ୍ରକାଶ କରିଥିଲେ । ୧୯୩୯ ମସିହା ଅଗଷ୍ଟ ମାସ ଆରମ୍ଭବେଳେ ଜୋସେଫ୍ ହେଲପର୍ଣ୍ଣଙ୍କୁ ଲେଖିଥିବା ଚିଠିରେ ସେ ତାଙ୍କର ଏହି ଇଚ୍ଛାକୁ ଜଣାଇଥିଲେ ।

ମାତ୍ର ଯୁଦ୍ଧ, ତାଙ୍କର ଆଶା ଓ ଆକାଂକ୍ଷାକୁ ଧୂଳିସାତ୍ କରିଦେଲା । ପୋଲାଣ୍ଡର ପିଲାମାନଙ୍କ ପାଇଁ, ବିଶେଷତଃ ତାଙ୍କ ଦାୟିତ୍ୱରେ ଥିବା ଦୁଇଶହ ଇହୁଦୀ ପିଲାଙ୍କ ପାଇଁ କୋର୍ଚାକଙ୍କ ମନରେ ଉଙ୍କିମାରୁଥିବା ସ୍ୱପ୍ନ ଏବଂ କାମନା ସବୁ କିଛି ଯୁଦ୍ଧ ସକାଶେ ନିଶେଷ ହୋଇଗଲା ।

# (୨୪) ବିଶ୍ୱସ୍ତ କର୍ମୀ

ଜାନୁସ୍ କୋର୍ଜାକ ଜୀବନର ଶୀର୍ଷ ଦେଶରେ ଉପନୀତ ହୋଇପାରିଥିଲେ । ସାରାଜୀବନ ନାନାପ୍ରକାର ବାଧାବିଘ୍ନ ଓ ଝଡ଼ଝଞ୍ଜାର ସମ୍ମୁଖୀନ ହୋଇ ସେ ସମ୍ପୂର୍ଣ୍ଣ ଟାଣ ହୋଇଯାଇଥିଲେ ଏବଂ ସେ କୌଣସି ପ୍ରକାର କଷ୍ଟକାମ ପ୍ରତି ସେ ଆଦୌ ବିମୁଖ ନଥିଲେ । ସବୁପ୍ରକାର ବିପଦକୁ ସହିନେବାର ଶକ୍ତି ତାଙ୍କର ଥିଲା ।

ପ୍ରଥମ ବିଶ୍ୱଯୁଦ୍ଧପରେ ସମ୍ମୁଖୀନ ହୋଇଥିବା ସମସ୍ୟାଗୁଡ଼ିକ ଭିତରୁ ଗୋଟିକର ଉଦାହରଣ ଦେଇ ସେ ଲେଖିଥିଲେ—ଯୁଦ୍ଧପରେ "ହୋମ୍"ର ପ୍ରତି କୋଣରୁ କ୍ଷୁଧା ଆଉ ଥଣ୍ଡା ଆମକୁ ଅଣନିଃଶ୍ୱାସୀ କରିଦେଉଥିଲା । ଅନାଥାଶ୍ରମରେ ସେତେବେଳକୁ ଶହେ ଜଣ ପିଲା ରହୁଥିଲେ । ମୁଁ ବା କଅଣ କରିପାରିବି ? କେହି ଧାର ସୂତରେ ଜିନିଷପତ୍ର ଦେବାକୁ ରାଜି ହେଉନଥିଲେ । ଯାହା କିଛି କିଣିବାକୁ ଗଲେ ନଗଦ ଧନ ଦରକାର । ଶୀତ ପଡ଼ିଯାଇଥାଏ; ମାତ୍ର ଏତେ ପ୍ରବଳ ହୋଇ-ନଥାଏ । ଏହି ସମୟରେ କୋଇଲା ଖାଦାନର ସଙ୍ଗଠନ ତରଫରୁ ଏକ ଟ୍ରକ୍ ବୋଝେଇ କୋଇଲା ପଠାଇ ଦିଆଗଲା । କୋଇଲା ଖଣିର ଶ୍ରମିକମାନଙ୍କର ହାତ ଯିନା ମଇଳା ମାତ୍ର ସେମାନଙ୍କର ଆତ୍ମା ସମ୍ପୂର୍ଣ୍ଣ ସ୍ୱଚ୍ଛ । ସେମାନେ ଗରିବ ହୋଇ-ଥାଇପାରନ୍ତି; ମାତ୍ର ସେମାନେ ଏତେ ଦୟାଳୁ ଯେ ପଥରକୁ ହଲାଇ ସେଥିରୁ ଲୁହ ଝରାଇ ଦେଇପାରିବେ । ଭଗବାନ ଏମାନଙ୍କୁ ଆଶୀର୍ବାଦ କରନ୍ତୁ ।

ଖାଦାନରୁ କୋଇଲା ଆସି ପହଞ୍ଚିଗଲା । ଆମେ ହଠାତ୍ ଧନୀ ହୋଇଗଲୁ । କୋଇଲାର ମୂଲ୍ୟ ତ ସୁନାଠାରୁ ଅଧିକ ଥିଲା । ବାସ୍ତବରେ କୋଇଲାକୁ "କଳାସୁନା" କୁହାଯାଉଥିଲା । ରେଳବାଇବାଲା ସଙ୍ଗେ ସଙ୍ଗେ ଟ୍ରକ୍‌ରୁ କୋଇଲା ଓହ୍ଲାଇ ଦେବାପାଇଁ ନିର୍ଦ୍ଦେଶ ଦେଇଥିଲେ । ମୋର ମନେପଡ଼ୁନି ସେମାନେ କାହିଁକି ଏପରି କରିଥିଲେ । ନିଶ୍ଚିତ ଭାବରେ ସେମାନେ ଆମର ମଙ୍ଗଳପାଇଁ ଏପରି କରିଥିଲେ । ସେମାନେ ସଙ୍ଗେ ସଙ୍ଗେ ଟ୍ରକ୍‌ରୁ କୋଇଲାତକ ଉତାରି ନେବାପାଇଁ ମୋତେ କହିଥିଲେ । ପାଖ ପଡ଼ିଶାରୁ ସମସ୍ତେ କାମରେ ଲାଗିପଡ଼ିଲେ । କେଉଁଠୁ ମାଲବୁହା ଘୋଡ଼ାଗାଡ଼ି ଚାଲିଆସିଲା । ଟ୍ରକ୍‌ରୁ କୋଇଲା ବୁହାହୋଇ ଅନାଥାଶ୍ରମରେ ରଖାଗଲା । ପିଲାମାନେ ଛୋଟ ଗୁଡିଆ ଗାଡ଼ିରେ, ଝୁଡ଼ିରେ ଓ ବାଲ୍‌ଟିରେ କୋଇଲା ବୋହିଲେ । କୁନି କୁନି ପିଲାମାନେ ସେମାନଙ୍କ ଆଞ୍ଚୁଳାରେ ସେମାନଙ୍କ ମୁଣ୍ଡ ଯେତିକି, ସେତିକି ବଡ଼ ଆକାରର କୋଇଲା ବୋହିବାଦ୍ୱାରା ନିଜ ନିଜକୁ ଲଗାଇଦେଲେ ।

ଆମ ପାଉଁରୁଟିବାଲା, ଅପ୍ରତ୍ୟାଶିତ ଭାବରେ ଆମ ଭାଗ୍ୟର ପରିବର୍ତ୍ତନ ଦେଖି ଆମ ପାଖକୁ ତଟକା ପାଉଁରୁଟି ପଠାଇଲା । ତା'ର ବିଶ୍ୱାସ ହେଲା ଯେ ମୁଁ ମୋ କଳାସୂନା ବିକ୍ରି କରି ତାକୁ ତା' ପାଉଁରୁଟିର ମୂଲ୍ୟ ଦେଇପାରିବି ।

ହ୍ୱିରବର୍ମର କୁନି ପିଲାଟିର ଗୋଡ଼ ଦୁଇଟି ରିକେଟ୍ ରୋଗରେ ଆକ୍ରାନ୍ତ ହୋଇ ବଙ୍କା ହୋଇଯାଇଥାଏ । ସେ ତା'ର କୋଇଲା ଧରିଥିବା କଳା ହାତରେ ପାଉଁରୁଟି-ଟିଏ ଧରି ଖାଉଥିଲା ଏବଂ ପୁଣି କୋଇଲା ଆଣିବା ପାଇଁ ଷ୍ଟେସନ ଆଡ଼କୁ ମୁହାଁଇଲା । ସେ ଖୁସିରେ ବଡ଼ ପାଟିକରି କହୁଥିଲା, "ମୁଁ ଏଥର ଶହେ ବାଲ୍ଟି କୋଇଲା ବୋହି ଆଣି ପାରିବି । ଆମେ କେହି ପିଲାଟିକୁ ନିରୁତ୍ସାହିତ କରିବାକୁ ଇଚ୍ଛା କଲୁନାହିଁ । ଯଦିଓ ଧନୁଭଳି ତା'ର ବଙ୍କା ଗୋଡ଼ ଦୁଇଟିକୁ ସିଧା କରିବାପାଇଁ ମୁଁ ନିୟମିତ କଡ୍ ଲିଭର ତେଲ ଖାଇବାକୁ ଦେଉଥିଲି ତଥାପି ତା' ଉତ୍ସାହରେ ଭଟ୍ଟା ପକାଇବାକୁ ମନ କଲିନାହିଁ । ତା'ପାଇଁ ଆଉ ଯୁକ୍ତି ନଥିଲା । ସେ ଏଡ଼େ ଶ୍ରେଷ୍ଠ ଥିଲା ଯେ ବାଲ୍ଟିଏ କୋଇଲା ବୋହିବା ତା'ପାଇଁ କଷ୍ଟକର ବ୍ୟାପାର । ତେଣୁ ଘରେ ପରିସ୍ରା ପକାଇବା ଉଦ୍ଦେଶ୍ୟରେ ରଖାଯାଇଥିବା ଖାଲି ପାତ୍ରଟିକୁ ନେଇ, ସେଥିରେ ମେଞ୍ଚାଏ ମେଞ୍ଚାଏ କୋଇଲା ବୋହିଆଣୁଥିଲା !

ନୈରାଶ୍ୟଜନକ ପରିସ୍ଥିତି ଭିତରେ ଏହି ପ୍ରକାର ଗୋଷ୍ଠୀଗତ ଉଦ୍ୟମ ଅନେକ ହତାଶାପୂର୍ଣ୍ଣ ମାନସିକତାକୁ ଦୂର କରିବାରେ ସକ୍ଷମ ହେଲା । ଦାର୍ଶନିକ କୋସାକ୍ ପରିସ୍ଥିତିର ପ୍ରପରେ ନୈରାଶ୍ୟବାଦ ଭିତରକୁ ଟାଣିହୋଇ ଯାଉଥିଲେ । ବାହାର ଦୁନିଆଠାରୁ ସେ ବହୁଦୂରକୁ ଚାଲିଯାଇଥିଲେ । ସମବୟସ୍କ ପୁରୁଷ କିମ୍ବା ମହିଳା ବନ୍ଧୁମାନଙ୍କ ସହ ସମ୍ପର୍କ ବହୁତ କମ୍ ରହୁଥିଲା । ପୋଲାଣ୍ଡର ପରିବର୍ତ୍ତନ ହେଲା । ମାତ୍ର କୋର୍ସାକ ତାଙ୍କ ଯୌବନ ଅବସ୍ଥାରେ ଯେପରି ଥିଲେ ପ୍ରାୟ ସେହିପରି ରହିଗଲେ ।

୧୯୦୭ ମସିହାରେ ତାଙ୍କ ଜୀବନର ପ୍ରଥମ ମୋଡ଼ ବଦଳିଲା । ଯେତେପ୍ରକାର ବିପ୍ଳବାତ୍ମକ କାର୍ଯ୍ୟକଳାପରେ ସେ ଜଡ଼ିତ ଥିଲେ, ସବୁଥିରୁ ସେ ନିଜକୁ ଓହରେଇ ନେଲେ । ଯେତେ ବଡ଼ ବଡ଼ ରାଜନୀତିକ ଆନ୍ଦୋଳନମାନ ଚାଲିଥିଲା, ସବୁଥିରୁ ସେ ତାଙ୍କର ସମ୍ପର୍କ ଛିଣ୍ଡାଇଦେଲେ । ବିଦ୍ରୋହର ଅଗ୍ନିସମ ରଣଧ୍ୱନି ଏବଂ ମୁକ୍ତିର ଆଶା ଭିତରେ ଭାରସାମ୍ୟ ରହିପାରିଲା ନାହିଁ କିମ୍ବା ଏହା ତାଙ୍କ ବିଷାଦ ଓ ନୈରାଶ୍ୟକୁ ଦୂର କରିପାରିଲା ନାହିଁ । ପ୍ରକୃତରେ ତାଙ୍କ ଭିତରେ ଯେଉଁ ନୈରାଶ୍ୟ ଦେଖାଯାଉ-ଥିଲା, ସେଥିପାଇଁ ସେ ସମୟରେ ପୋଲାଣ୍ଡ ବା ସାରପୃଥିବୀର ପରିସ୍ଥିତି ଯେତିକି ଦାୟୀ ନଥିଲା, ତା' ଅପେକ୍ଷା ଅଧିକ ଦାୟୀ ଥିଲା, ତାଙ୍କ ବଂଶାନୁଗତ ମାନସିକ କ୍ଳେଶ ।

ମାତ୍ର ୩୦ ବର୍ଷ ବୟସରେ କୋର୍ଯାକଙ୍କ ମୁହଁରୁ ଅତି ହତାଶଜନକ ଭାଷା ଶୁଣିବାକୁ ମିଳୁଥିଲା । ସେ ହତାଶାର ସହ କହୁଥିଲେ, "ମଣିଷ ହୋଇ ଜନ୍ମ ହେବାଠାରୁ ଆଉ ଅଧିକ ଦୁର୍ଭାଗ୍ୟ କିଛି ନାହିଁ ।" ପରେ ସେ ଏପରି ବି କହୁଥିଲେ, "ମଣିଷର ଦୁଃଖ ମୃତ୍ୟୁ ନୁହେଁ; ବରଂ ଜନ୍ମ ।" ସମୟ ଆଗକୁ ବଢ଼ିବା ସଙ୍ଗେ ସଙ୍ଗେ କୋର୍ଯାକଙ୍କ ମୁହଁରୁ ଏହିଭଳି କଥା ବାରମ୍ବାର ନିସୃତ ହେଉଥିଲା । ମାତ୍ର ତାଙ୍କ କାର୍ଯ୍ୟକଳାପ ସହ ଏହି କଥାର ବିଶେଷ ସମ୍ପର୍କ ଥିଲା ଭଳି ମନେହେଉନଥିଲା । କାରଣ ତାଙ୍କ କାର୍ଯ୍ୟଗୁଡ଼ିକ ଭିତରେ ଏତେ ଆଶା ଓ ଆଶାବାଦର ପ୍ରେରଣା ଭରି ରହିଥିଲା ଯେ ସେ ହତାଶା ଭିତରେ ଥିଲା ଭଳି ପ୍ରତୀତ ହେଉନଥିଲା । ବାହ୍ୟ ଆଚରଣ, ଚାଲିଚଳନ ଓ ହର୍ଷୋତ୍ଫୁଲ୍ଲତା ତାଙ୍କର ନୈରାଶ୍ୟ ସ୍ୱଭାବକୁ କେଉଁ ଅତଳ ଗହ୍ୱରରେ ଲୁଚାଇ ଦେଉଥିଲା ।

ବାସ୍ତବରେ କୋର୍ଯାକ୍ ଜୀବନକୁ ଅତି ନିବିଡ଼ ଭାବରେ ଭଲ ପାଉଥିଲେ । ଅନ୍ତତଃ ସେ ଏହାର ବିବିଧ ପରିପ୍ରକାଶକୁ ଖୁସିରେ ଉପଭୋଗ କରୁଥିଲେ । ୧୯୧୪ରୁ ୧୯୧୮ ମସିହା ଭିତରେ ଚାଲିଥିବା ଯୁଦ୍ଧ ସମୟର ଏକ ଘଟଣା—ସେତେବେଳେ କୋର୍ଯାକ ୟୁକ୍ରେନରେ ଥିଲେ । ରୁଷିଆର ଜଣେ ଋଷୀର ଘୋଡ଼ାଗାଡ଼ିରେ ବସି ଯେ ଯାଉଥିଲେ । କୋର୍ଯାକ ଗାଡ଼ିରେ ଥିବା ଓଡ଼ଶଙ୍କ ଦୌରାତ୍ମ୍ୟରେ ବଡ଼ ବ୍ୟତିବ୍ୟସ୍ତ ହୋଇପଡ଼ିଲେ । ଏଥିପାଇଁ ସେ ଅନେକବାର ଋଷୀକୁ ଅଭିଯୋଗଟି ଜଣାଇଲେ । ଋଷୀଜଣକ ଗାଡ଼ିର ଆଗପାଖ ଚୌକିରେ ବସିଥିଲେ । ଚୌକିଟିରେ ବି କିଛି କମ୍ ଓଡ଼ଶ ବସା ବାନ୍ଧିନଥିଲେ । ମାତ୍ର ଋଷୀଜଣକଙ୍କର ଓଡ଼ଶ ପ୍ରତି କୌଣସି ଖାତିର ନଥିଲା । କୋର୍ଯାକଙ୍କ ଅଭିଯୋଗରେ ସେ ଭୀଷଣ ରାଗିଗଲା । ଚିତ୍କାର କରି ଋଷୀ ଜଣକ କହିଲା, "ଓଡ଼ଶ ଗୋଟେ ମଣିଷ ନୁହେଁ । ଏହା ତୋର ସବୁ ରକ୍ତ ପିଇ-ଦେବ ନାହିଁ ।" ଏକଥା ଶୁଣି କୋର୍ଯାକଙ୍କୁ ଭାରି ମଜା ଲାଗିଲା । ସେ ଏ କଥାରେ ଏତେ ବିହ୍ୱଳ ହୋଇଗଲେ ଯେ ଓଡ଼ଶକୁ ନେଇ ସେ ଏକ ଗଳ୍ପ ଲେଖିବାକୁ ସ୍ଥିର କଲେ ।

ଏହିପରି ଭାବରେ ଜୀବନର ସବୁ ତିକ୍ତତା ତାଙ୍କ ବୁଦ୍ଧିମତ୍ତାର ସରଳଧାରା, ମୃଦୁହାସ୍ୟ ଓ ଅନ୍ତରର ଶାନ୍ତ ସ୍ୱଭାବ ଯୋଗୁଁ ଅଚିରେ ଦୂର ହୋଇଯାଉଥିଲା । ପ୍ରକୃତିକୋଳର ପ୍ରତ୍ୟେକ ଜୀବ, ଈଶ୍ୱରଙ୍କ ସୃଷ୍ଟିର ପ୍ରତି କଣିକାର ନିଜସ୍ୱ ଅନ୍ତର୍ମୂଲ୍ୟ ରହିଛି ଏବଂ ଜୀବନ ପ୍ରତି ସେମାନଙ୍କର ଅଧିକାର ରହିଛି—

କୋର୍ଯାକ ଏହି ସତ୍ୟଟିକୁ ବିଶ୍ୱାସ କରୁଥିଲେ । କୋର୍ଯାକ ତାଙ୍କ ପ୍ରାର୍ଥନା ବହିରେ ଲେଖିଥିଲେ, ସମାନ ମାଟିରୁ ବିକଶିତ ହୁଅନ୍ତି, ବିଛୁଆତି, ଜୁଇ, କାମୁକୋଲି କାଉସ୍ଥ ବଲ୍ଲଭ ଗଛ, ଓକ୍ ଗଛ, ବିହଙ୍ଗ, ସର୍ପ ଏବଂ ମୁଁ ନିଜେ ।"

କୃତଜ୍ଞତାର ପ୍ରଣତ ଡାଳି ସେ ଲେଖିଥିଲେ, "ହେ ପରମ ସ୍ରଷ୍ଟା, ତୁମର ମହିମା ଧନ୍ୟ, କାରଣ ତୁମେ ସ୍ତ୍ୟୁକୁ ଏମିତ ଅସୁନ୍ଦରିଆ କରି ଗଢ଼ିଛ, ହାତୀ ମୁହଁରେ ଏତେବଡ଼ ଅଲଗଣିଆ ଲମ୍ବା ନାକଟିଏ ଖଞ୍ଜିଦେଇଛ ଏବଂ ତୁମେ ହିଁ ସୃଷ୍ଟି କରିଛ ପଦ୍ମ ଏବଂ ମାନବର ହୃଦୟ ।······ତୁମେ ନିଗ୍ରୋମାନଙ୍କୁ ଦେଇଛ କଳା ମୁହଁ ଆଉ ବହ୍ନ୍ ମୂଳରେ ଭରିଦେଇଛ ମଧୁରତା । ତୁମକୁ ଧନ୍ୟବାଦ ଅର୍ପଣ କରୁଛି, କାରଣ ତୁମେ ଏକାବେଳକେ ସୃଷ୍ଟି କରିଛ ଭରତଆପକ୍ଷୀ, ନାଇଟିଙ୍ଗେଲ ପକ୍ଷୀ ଏବଂ ଓଡ଼ଣ । ଧନ୍ୟ ପ୍ରଭୁ ଧନ୍ୟ । ତୁମେ ସୃଷ୍ଟି କରିଥିବା ବାୟୁରେ ମାଛ ଶ୍ୱାସରୁଦ୍ଧ ହୋଇଯାଏ, ବଜ୍ରପାତରେ ମୁଁ ଭୀତ ଶଙ୍କିତ ହୋଇଯାଏ ଏବଂ ତୁମ କୋଳ ଖୋଜି ମୋ ପିଲା-ମାନେ ଏତେ ଖୁସି ହୁଅନ୍ତି······।

ତୁମେ ମୋ ଭିତରେ ତଥା ପଥର, ସାଗର ଏବଂ ଅନ୍ୟମାନଙ୍କ ଭିତରେ ନିଜସ୍ୱ ଗୁଣକୁ ଅଭିବ୍ୟକ୍ତ କରିବାପାଇଁ ଯେଉଁ ସାମର୍ଥ୍ୟ ଦେଇଛ ସେଥିପାଇଁ ତୁମକୁ ଧନ୍ୟବାଦ ।

ମଣିଷ ଆଖିରେ ବସ୍ତୁଟି ଯେତେ ଅସୁନ୍ଦର, କଦାକାର ବା କ୍ଷୁଦ୍ର ହୋଇଥାଉ ପଛକେ, ଈଶ୍ୱର ସୃଷ୍ଟି କୌଣସି ବସ୍ତୁକୁ ପ୍ରତ୍ୟାଖ୍ୟାନ କରିବାର ମାନସିକତାରେ ସେ ନଥିଲେ, ସବୁକିଛିକୁ ଆଦର ନେବାପାଇଁ ତାଙ୍କ ଭିତରେ ଆବେଗ ଭରିରହିଥିଲା । ଶ୍ରେଷ୍ଠ ବଡ଼, ସୁନ୍ଦର, ଅସୁନ୍ଦର ସବୁକିଛି ପାଇଁ ତାଙ୍କର ପ୍ରେମ ହିଁ ତାଙ୍କ ପ୍ରେରଣାର ଉତ୍ସ ହୋଇ ରହିଥିଲା ।

ଜୀବନସାରା ଗୋଟିଏ କଥା କହୁଥିଲେ, "ଜନ୍ମଗତ ସାମାଜିକ ପ୍ରବୃତ୍ତି ସଂଗ୍ରାମଦ୍ୱାରା ନିଜକୁ ପ୍ରତିନିଧିତ୍ୱ କରିପାରେ ନାହିଁ; ବରଂ ବୁଝିବାର ଇଚ୍ଛା ଏବଂ ସାହାଯ୍ୟ କରିବାର ପ୍ରବୃତ୍ତିଦ୍ୱାରା ଏହା ସମ୍ଭବ ହୋଇଥାଏ । ସେ ସର୍ବଦା ଆସ୍ତିକବାଦୀ ଏବଂ ନିଜ ବିଶ୍ୱାସରେ ଅତ୍ୟନ୍ତ ସାହସୀ ଥିଲେ । ସବୁ ମଣିଷ ସମ୍ମାନ ଏବଂ ନ୍ୟାୟ ପାଇଁ ସମସ୍ତଙ୍କର ସମାନ ଅଧିକାର ରହିଛି ଏହା ହିଁ ଥିଲା ତାଙ୍କ ବିଶ୍ୱାସର ମୂଳମନ୍ତ୍ର ।

ଯେତେବେଳେ ତାଙ୍କ ବୟସ ବଢ଼ିଲା ଏବଂ ସେ ସାମାଜିକ ତଥା ରାଜନୀତିକ ଜୀବନରୁ ଓହରି ଆସିଲେ, ସେତେବେଳେ ସେ ତାଙ୍କ ଯୌବନର ତଥା ବାମପନ୍ଥୀ ଚିନ୍ତାଧାରାର ଦୃଢ଼ ପ୍ରତ୍ୟୟଗୁଡ଼ିକୁ ମିଥ୍ୟା କହି ପ୍ରତ୍ୟାଖ୍ୟାନ କରିଦେଇନଥିଲେ । ସେ ଏ ସବୁର ଊର୍ଦ୍ଧ୍ୱକୁ ଉଠିଆସିଲେ । ତାଙ୍କର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ଥିଲା, କୌଣସି ରାଜନୀତିକ ବିଶ୍ୱାସ ଏବଂ ତତ୍ତ୍ୱକୁ ଅବଧାରଣା ନକରି ବିକାଶ ଏବଂ ପ୍ରଗତିକୁ ଅଙ୍ଗୀକାର କରିବା ଓ ତାହାକୁ ସହଯୋଗ କରିବା ।

ଅନେକ ସମୟରେ ଯାହାକୁ ସେ ପ୍ରଗତିଶୀଳ ବୋଲି ଭାବନେଉଥିଲେ, ତାକୁ ସେ ସାହାଯ୍ୟ କରିବାକୁ ଆଗେଇଯାଉଥିଲେ । ନିଜର କଳ୍ପନାଶକ୍ତି ଯୋଗୁଁ ସେ

ସୃଷ୍ଟିର ସବୁ ଜୀବଙ୍କ ଭିତରେ ପ୍ରବେଶ କରିପାରୁଥିଲେ ଏବଂ ସବୁ ମଣିଷଙ୍କ ସାଙ୍ଗରେ ନିଜ ଅନୁଭୂତିକୁ ବାଣ୍ଟି ଦେଇପାରୁଥିଲେ । ଯେତେବେଳେ ସେ ବହିଟିଏ ପଢ଼ୁଥିଲେ, ସେତେବେଳେ ନିଜ ଗୃହପରିବାର ଜୀବନ ଭିତରେ ବହିର ଲେଖାକୁ ଅନୁଭବ କରୁଥିଲେ । ବହିର ଚରିତ୍ରଗୁଡ଼ିକ ସହିତ ସେ ନିଜକୁ ଏକାତ୍ମ କରିଦେଉଥିଲେ ଏବଂ ବହିଟିର ମୁଖ୍ୟ ପ୍ରସଙ୍ଗଟିକୁ ହୃଦୟଙ୍ଗମ କରୁଥିଲେ ।

ସ୍ୱତଃସ୍ଫୂର୍ତ୍ତି ଭାବରେ ଏତେ କାମ ଭିତରେ ନିଜକୁ ନିୟୋଗ କରି ମଧ୍ୟ ସେ ଶିକ୍ଷା ତଥା କଳାତ୍ମକ ସାହିତ୍ୟରେ ମନୋନିବେଶ କରିବାପାଇଁ ସମସ୍ତ ବାହାର କାଢି-ପାରୁଥିଲେ । ତାଙ୍କର ଆଗ୍ରହ ଏବଂ ସମ୍ବେଦନାଗୁଡ଼ିକ ସର୍ବଦା ବିଶ୍ୱମୟ ଥିଲା । ନିଜେ ବିବାହ ନକରି ବି ଅବିବାହିତ ମହିଳାମାନଙ୍କର ଦୁଃଖ କଷ୍ଟ ପ୍ରତି ସେ ସମ୍ବେଦନଶୀଳ ଥିଲେ । ୧୯୦୫ ମସିହାରେ ସେ କାହାଣୀରେ କୁଆଁରୀମାନଙ୍କ ସପକ୍ଷରେ ଯୁକ୍ତି ଉପସ୍ଥାପନ କରିଥିଲେ । ସେ ପାରମ୍ପରିକ ରକ୍ଷଣଶୀଳ ପୋଷାକପତ୍ର ଓ ଆଦବ କାଇଦାକୁ ନିନ୍ଦା କରିଥିଲେ । କାରଣ ଏସବୁ ବିଧିବିଧାନରେ ଅଧିକ ଝିଅ ହେଉଥିବାରୁ ଗରିବ ଘରର ଝିଅମାନେ ବାହା ହୋଇପାରୁନଥିଲେ ।

କାହାଣୀରେ ଅବିବାହିତ ଝିଅଟିଏ କାନ୍ଦି କାନ୍ଦି କହୁଛି, "ମୁଁ ଘୋଡ଼ା ଚଢ଼ିବାକୁ ଚାହେଁ । ମୁଁ ସିଗାରେଟ୍ ପିଇବାକୁ ଚାହେଁ । ବିଶ୍ୱବିଦ୍ୟାଳୟକୁ ପାଠ ପଢ଼ି ଯିବାପାଇଁ ମୋର ଇଚ୍ଛା । ମୁଁ ମୋ କେଶକୁ ଛୋଟ ଛୋଟ କରି କାଟିବି ଏବଂ ମୋର ସ୍ୱାମୀ ଥାଆନ୍ତୁ ବା ନଥାଆନ୍ତୁ ମୁଁ ମାଆ ହେବି ।" ଯେତେବେଳେ ସେ ଏଭଳି ଚିନ୍ତାଧାରା ଉପରେ ନିଜର ଦସ୍ତଖତ ଦେଉଥିଲେ, ସେତେବେଳେ ଏହାକୁ ତାଙ୍କର ବନ୍ଦ-ପାଗଳାମୀ ବୋଲି ଅଭିହିତ କରାଯାଉଥିଲା । ବାସ୍ତବରେ ବିଚାର କରିବାକୁଗଲେ କୋହାକ ତାଙ୍କ ସମସ୍ତଙ୍କଠାରୁ ୫୦ ବର୍ଷ ଆଗରେ ରହି ଚିନ୍ତା କରୁଥିଲେ ।

୧୯୦୮ ମସିହାର "ସୋସାଇଟି" ପତ୍ରିକାରେ ପ୍ରକାଶିତ ଏକ ପ୍ରବନ୍ଧରେ ସେ ସାମୂହିକ ଗ୍ରୀଷ୍ମ ବିଦ୍ୟାଳୟ କଲୋନୀ ସମ୍ପର୍କରେ ଯୁକ୍ତି ବାଢ଼ିଥିଲେ । ଏହି କଲୋନୀ-ଗୁଡ଼ିକ ତମ୍ବୁ ପକାଇ କରାଯିବ ବୋଲି ସେ କହିଥିଲେ । ଫୁଲ ବ୍ୟାନର, ରଙ୍ଗରଙ୍ଗିଆ ପତାକା ଧରି ସମସ୍ତେ ଛୋଟ ଛୋଟ ଟାଉନ ଓ ଗାଁଗୁଡ଼ିକୁ ଯିବେ । ସେଠାରେ ଖେଳ, ଟୁର୍ଣ୍ଣାମେଣ୍ଟ, ଗୀତ ଆସର, ନାଟକ ଆଦି କରିବେ । ସେମାନଙ୍କ ସାଙ୍ଗରେ କେତେକ ଶିକ୍ଷକ ଓ ପ୍ରଶିକ୍ଷକ ଯିବେ । ଶିକ୍ଷକ ଓ ପ୍ରଶିକ୍ଷକମାନେ ଲୋକମାନଙ୍କୁ ପରିଷ୍କାର ପରିଚ୍ଛନ୍ନତା ବିଷୟରେ ବୁଝାଇବେ । ଏହି ସମୟରେ ପିଲାମାନେ ଗାଁ ଲୋକଙ୍କୁ ଫସଲ ଅମଳରେ ସାହାଯ୍ୟ କରିବେ, ଫଳ ଗୋଟାଇ ଆଣିବେ ଓ ଅନ୍ୟାନ୍ୟ କାର୍ଯ୍ୟରେ ଲାଗିଯିବେ ।

ସେତେବେଳେ ପୋଲଣ୍ଡରେ ସ୍ୱାଉଟ୍ ଆନ୍ଦୋଳନ ନଥିଲା । ଯେତେବେଳେ ସ୍ୱାଉଟ ଆନ୍ଦୋଳନ ଆରମ୍ଭ ହେଲା, ସେତେବେଳକୁ କୋର୍ଯାକ ତାଙ୍କର ଗ୍ରୀଷ୍ମାବକାଶ ଯୋଜନାରେ ସବୁକିଛି ଅନ୍ତର୍ଭୁକ୍ତ କରସାରିଥିଲେ ।

ଶିଶୁପ୍ରେମୀ କୋର୍ଯାକ ସମାଜର ଭଲ ଭଲ ଲୋକମାନଙ୍କର ପ୍ରଶଂସକ ଥିଲେ । ଯେଉଁମାନଙ୍କର ସମାଜରେ ମାହାତ୍ମ୍ୟ ରହିଛି, ସେମାନେ କୋର୍ଯାକଙ୍କ ପାଇଁ ନମସ୍ୟ ଥିଲେ । ଭୀଷଣ କଷ୍ଟ ସହି ସଫଳତା ହାସଲ କରିଥିବା ବୈଜ୍ଞାନିକ ଜେ. ପେିଦେଙ୍କ ଜୀବନୀ ଲେଖିଲାବେଳେ କୋର୍ଯାକ ଗ୍ରେଟ ଟାଉନ ଓ ଗାଁମାନଙ୍କର ପିଲାମାନଙ୍କ ବିଷୟରେ ଦଳେଖି ରହିପାରିନଥିଲେ । ନିଜ ପାଠକମାନଙ୍କୁ ସେ ଏ ବିଷୟରେ ବୁଝାଇ ଦେଇଥିଲେ ଯେ, ଆବଶ୍ୟକ ଯତ୍ନ ଓ ସୁଯୋଗ ପାଉଥିବା ପିଲାମାନେ ଏଭଳି ମହାତ୍ମାମାନଙ୍କ ସ୍ଥାନରେ ପଦାର୍ପଣ କରିପାରିବେ ।

ନିଜ ଅନାଥାଶ୍ରମ ପିଲାଙ୍କ ଭିତରେ କେତେଦୂର ଏହି ପ୍ରେରଣାର ଉତ୍ସ ହୋଇପାରିଛି ସେ ସମ୍ବନ୍ଧରେ କୋର୍ଯାକ ଅନେକ ସମୟରେ ସମୀକ୍ଷାମୂଳକ ଅନୁଚିନ୍ତା ଭିତରେ ବୁଡ଼ିଯାଉଥିଲେ । ଅନାଥାଶ୍ରମ 'ହୋମ୍'ରେ ଯେଉଁଠି ସମସ୍ତେ ଦେଖିପାରିବେ, ସେଠାରେ ସେ ଏକ କାଚପାତ୍ର ଭିତରେ ଝାଡ଼ୁଟିଏ ଓ ଡଷ୍ଟରଟିଏ ରଖିଥିଲେ । ଏହାର ପ୍ରତୀକ ଅର୍ଥ ଥିଲା ଶ୍ରମ । କାମଟି ଯାହା ହେଉନା କାହିଁକି ତାକୁ ଶ୍ରମର ମର୍ଯ୍ୟାଦା ଦେଇ ସମ୍ମାନ ଦେବାକୁ ହେବ—ଏହା ଥିଲା ଏହି ପ୍ରତୀକର ପ୍ରକୃତ ମର୍ମଧ୍ୱନି ।

୯୬-କ୍ରୋଚମାଲନା ଗଳିରେ ଥିବା କୋର୍ଯାକଙ୍କ ଅନୁଷ୍ଠାନର ଏକ ଫାର୍ମରେ ଜଣେ ବୃଦ୍ଧଲୋକ ଜଗୁଆଳୀ ଭାବରେ କାମ କରୁଥିଲେ । ଅବସର ଗ୍ରହଣ ପରେ ସେ ଆଉ ବେଶିଦିନ କାମ କରିପାରିନଥିଲେ । ସେତେବେଳେ କୋର୍ଯାକ ଏହି ବୃଦ୍ଧ ଜଗୁଆଳୀର ଜୀବନୀ ବିଷୟରେ ଏକ ପ୍ରଶଂସାଜନକ ପ୍ରବନ୍ଧ ଲେଖି 'ହୋମ୍'ର ଗାଜେଟ୍‌ରେ ପ୍ରକାଶ କରିଥିଲେ । ୧୯୪୦ ମସିହାରେ ଏହି ଲୋକଟି ପାଇଁ କୋର୍ଯାକ ବ୍ୟକ୍ତିଗତ ଅଭିମତ ଜଣାଇ କହିଥିଲେ, "ସେ ବହୁତ ଭଲ ଲୋକ, ସାହାଯ୍ୟକାରୀ ··· ··· ···ସେ ଜଣେ ଭଲ ଜଗୁଆଳୀ । ମୋର ଜଣେ ଉତ୍ତମ ବନ୍ଧୁ ।'

କୋର୍ଯାକଙ୍କ ଶେଷ ପ୍ରବନ୍ଧଟି ଥିଲା, "ମୁଁ କାହିଁକି ଟେବୁଲ ଉପରୁ ଅଇଁଠା ଖାଦ୍ୟ ସଂଗ୍ରହ କରେ ।" ପ୍ରବନ୍ଧଟିର ସାରକଥା ଥିଲା ଯେ 'ହୋମ୍'ରେ କୌଣସି କାମ ବଡ଼ ନୁହେଁ କି ଛୋଟ ନୁହେଁ । ହାତର କାମ ହେଉ ବା ମୁଣ୍ଡର କାମ ହେଉ, ସେଥିରେ କୌଣସି ପ୍ରଭେଦ ରଖିବା ଅନୁଚିତ । ଏହା ସେ 'ହୋମ୍'ର ସବୁ ସଦସ୍ୟଙ୍କୁ ମନେପକାଇଦେଉଥିଲେ ।

କୋର୍ଝାକଙ୍କ କଥା ଓ କାମ ଭିତରେ କୌଣସି ତାରତମ୍ୟ ରହୁନଥିଲା । ଯେଉଁ କାମଟି ଉପରେ ତାଙ୍କର ଦୃଢ଼ ବିଶ୍ୱାସ ଥିଲା, ତାହାକୁ ସେ ବାସ୍ତବ କ୍ଷେତ୍ରରେ କାର୍ଯ୍ୟକାରୀ କରଉଥିଲେ । ଜର୍ମାନ ଅଧିକୃତ ପୋଲାଣ୍ଡର ଥରେ ସେ ଏକ ବୋର୍ଡିଂ ସ୍କୁଲକୁ ପରିଦର୍ଶନରେ ଯାଇଥିଲେ । ଏହି ସମୟଟି ପୋଲାଣ୍ଡର ଲୋକଙ୍କ ପାଇଁ ଦୁର୍ଦ୍ଦିନର ସମୟ ଥିଲା । କିନ୍ତୁ, ଯେଉଁମାନେ ନିଜକୁ ସମ୍ଭ୍ରାନ୍ତ ତଥା ସର୍ବସାଧାରଣଙ୍କ-ଠାରୁ ଉଚ୍ଚ ବୋଲି ଭାବୁଥିଲେ ସେମାନେ ଏ ସମୟରେ ବି କୋର୍ଝାକଙ୍କୁ ତାଙ୍କର ଗୋଟିଏ କାମପାଇଁ କ୍ଷମା କରିନଥିଲେ । କୋର୍ଝାକ ପାହାଚ ଧୋଉଥିବା ସ୍ତ୍ରୀ ଲୋକଟି ସହ କରମର୍ଦ୍ଦନ କଲେ । କରମର୍ଦ୍ଦନ ବେଳେ ସ୍ତ୍ରୀଲୋକଟିର ହାତରୁ ମଇଳା ପାଣି ନିଗିଡ଼ି ପଡ଼ୁଥିଲା । କୋର୍ଝାକଙ୍କ ଏହି ମାନବିକ ବ୍ୟବହାରଟି ସେହି ସମ୍ଭ୍ରାନ୍ତମାନଙ୍କ ପକ୍ଷରେ ଅକ୍ଷମଣୀୟ ହୋଇପଡ଼ିଥିଲା ।

କୋର୍ଝାକ କହୁଥିଲେ, "ବଡ଼ବଡ଼ିଆମାନଙ୍କୁ ତୋଷାମଦ କରିବାକୁ ମୋତେ ଘୃଣା ଲାଗେ ।" ସେ ଏକଥା ଲେଖିକରି ରଖିଥିଲେ ଯେ "ମୁଁ ବେଳେ ବେଳେ ଡାକ୍ତର କେ. ଙ୍କ ସାଙ୍ଗରେ କରମର୍ଦ୍ଦନ କରିବାକୁ ଭୁଲିଯାଏ । ଏପରିକି ମୁଁ ଡାକ୍ତର "କ" କିମ୍ବା "ଖ"ଙ୍କର ଅଭିନନ୍ଦନ ପତ୍ରଗୁଡ଼ିକର ଉତ୍ତର ଦିଏନାହିଁ । ମନେହେବ ଏହା ଡାକ୍ତର କୋର୍ଝାକଙ୍କର ଏକପ୍ରକାର ଆସ୍ପର୍ଦ୍ଧା । ମାତ୍ର ଅନେକ ଦୃଷ୍ଟିରୁ ବିଚାର-କଲେ, ସେ ଏପରି କରି ଠିକ୍ କରୁଥିଲେ । ଯେତେବେଳେ ପୋଲାଣ୍ଡରେ ଶ୍ରମିକ ଶ୍ରେଣୀର ଲୋକମାନଙ୍କୁ ଓ ଗରିବ ପୋଲାଣ୍ଡବାସୀଙ୍କୁ ଉଚ୍ଚ ବର୍ଗର ଲୋକମାନେ ଘୃଣା କରୁଥିଲେ । ଜର୍ମାନମାନଙ୍କ ପ୍ରତି ସେମାନଙ୍କର ଦାସୋଚିତ ମନୋଭାବ ଯୋଗୁଁ ତଳସ୍ତରର ଲୋକମାନଙ୍କ ପ୍ରତି ତାଙ୍କ ସ୍ୱଭାବରେ ଏପରି ପ୍ରତିଫଳନ ହେଉଥିଲା ବୋଲି ଧରିନେବାକୁ ହେବ ।

କୋର୍ଝାକ ଲେଖିଥିଲେ, "ମୁଁ ସଚ୍ଚୋଟ ମୂଲିଆମାନଙ୍କୁ ସମ୍ମାନ ଦିଏ । ଯଦିଓ ସେମାନଙ୍କର ହାତ ଅପରିଷ୍କାର ଜଣାପଡ଼େ, ସେମାନଙ୍କର ହାତ ପ୍ରକୃତରେ ପରିଷ୍କାର । ମୁଁ ସେମାନଙ୍କର ମତାମତକୁ ସୁନାଠାରୁ ଅଧିକ ମୂଲ୍ୟ ଦେଇଥାଏ । ମୁଁ ବେଳେବେଳେ ମୂଲିଆମାନଙ୍କର ଅଭିଜ୍ଞତା ଓ ମତାମତ ଜାଣିବା ପାଇଁ କ୍ରୋଚ୍-ମାଲ୍ନା ଷ୍ଟ୍ରୀଟ୍‌ର ଅନାଥାଶ୍ରମରୁ ଜଣେ ମହିଳା ଦରଜୀ କିମ୍ବା ଜଣେ ବଢ଼େଇକୁ ଡକାଇ ଆଣିଥାଏ ।"

ବେଳେ ବେଳେ କୋର୍ଝାକ ଅତ୍ୟନ୍ତ କ୍ରୁଦ୍ଧ ହୋଇ କହୁଥିଲେ, "ଯିଏ ହାତରେ କରିଯାଉଥିବା କାମକୁ ମଇଳା କାମ ବୋଲି କୁହେ ସେ ମିଥ୍ୟାବାଦୀ । ଯେତେବେଳେ ଜଣେ ମିଥ୍ୟାବାଦୀ ତଥା ଠକଲୋକ ମଇଳା କାମରେ ହାତ ନ ଲଗାଇବା ପାଇଁ ମସୁଧାକରି ଗୁଳାକରେ ବାବୁକାମ ବାଛିନିଏ ଏବଂ କହେ ଯେ

କୌଣସି ପ୍ରକାର କାମ ପାଇଁ ତା'ର ସଙ୍କୋଚ ନାହିଁ—ସିଏ ସବୁଠାରୁ ମାରାତ୍ମକ ବ୍ୟକ୍ତି ଅଟେ ।

କୋର୍ଶାକ୍ ତାଙ୍କ ଜୀବନୀ ମୁଖରେ ଏହିପରି ଅନେକଗୁଡ଼ିଏ ମନ୍ତବ୍ୟ ଉଲ୍ଲେଖ କରିଛନ୍ତି । କୌଣସି ଏକ ସ୍ଥାନରେ ସେ ଲେଖିଛନ୍ତି, "ଦୁର୍ଭାଗ୍ୟ ଅତ୍ୟନ୍ତ ଯନ୍ତ୍ରଣା-ଦାୟକ । ମାତ୍ର ଏହା କାହାକୁ ବଞ୍ଚିତ କରେନାହିଁ ।" ଅନ୍ୟ ଏକ ସ୍ଥାନରେ ସେ ଲେଖିଛନ୍ତି—"ଜୀବନ ଏତେ ସହଜ ନୁହେଁ, ମାତ୍ର ଏହା ଅତ୍ୟନ୍ତ ଫଳପ୍ରସୂ ।" ଆଉ ଏକ ଜାଗାରେ ଅଧିକ ଜୋର୍ ଦେଇ ସେ ଲେଖିଛନ୍ତି, "ଯନ୍ତ୍ରଣାକୁ ନିଜପାଇଁ ଜ୍ଞାନର ଏକ କଣିକା କିମ୍ବା ଅନ୍ୟମାନଙ୍କ ପାଇଁ ଆନନ୍ଦରେ ପରିଣତ କରିବା ହେଉଛି ନିଜର ମିଥ୍ୟା ଉଚ୍ଚାକାଙ୍କ୍ଷା ଓ ଭୀରୁତାକୁ ପରିହାର କରିବା ।" ଏହିଭଳି କେତେ-ଗୁଡ଼ିଏ ନୀତିବାଣୀକୁ ଆତ୍ମସ୍ଥ କରି ସେ ନିଜକୁ ତଥା ଯେଉଁମାନେ ସାହାଯ୍ୟ ଖୋଜୁଥିଲେ ସେମାନଙ୍କୁ ବାଟ ଦେଖାଉଥିଲେ ।

କୋର୍ଶାକ ଜୀବନର ଅନ୍ତିମ ପର୍ଯ୍ୟାୟର ଲେଖାଗୁଡ଼ିକରେ କର୍ମପ୍ରତି ଆହ୍ୱାନ ଏବଂ କର୍ତ୍ତବ୍ୟ ପ୍ରତି ବିଶ୍ୱସ୍ତ ହେବା ସକାଶେ ଅଧିକ ଗୁରୁତ୍ୱ ଆରୋପ କରିଥିଲେ । ଏ ସବୁଥିରେ ସେ ପରାସ୍ତ ହେବା ଏବଂ ଲାଞ୍ଛନା ପାଇବାର ଗୁରୁ ଆଘାତକୁ ପ୍ରତିରୋଧ କରିବାପାଇଁ ଚେଷ୍ଟା କରିଥିଲେ । କାମ ତାଙ୍କ ପାଇଁ ଅଫିମପରି ଏକ ନିଶାରେ ପରିଣତ ହୋଇଯାଇଥିଲା । ଜର୍ମାନ୍ ସାଙ୍ଗରେ ପୁନର୍ବାର ସଂଗ୍ରାମ କରିବା ପାଇଁ କାମହିଁ ଥିଲା ଏକମାତ୍ର ଆୟୁଧ । କିନ୍ତୁ, ଦୁଃଖର କଥା ସେତେବେଳକୁ ଯୁଦ୍ଧ ସରିଯାଇଥିଲା ।

ଅନାଥଶିଶୁମାନଙ୍କ ପାଇଁ ସେ ସବୁଦିନେ ନିଜକୁ ବ୍ୟସ୍ତ ରଖୁଥିଲେ । ସେମାନଙ୍କୁ ପାଠ ପଢ଼ାଇବା ଓ ପରୀକ୍ଷା କରାଇବା ସକାଶେ ସେ ନିଜକୁ ପୁଙ୍ଖାନୁପୁଙ୍ଖ ଭାବରେ ପ୍ରସ୍ତୁତ କରୁଥିଲେ । ଏହି କର୍ମରତ ଜୀବନ ତାଙ୍କୁ ବଞ୍ଚିବା ସହିତ ସୁସ୍ଥ ମାନସିକଭାରେ ରଖିପାରିଥିଲା ।

ଜୋସେଫ୍ ହେଲପର୍ଣ୍ଣଙ୍କୁ ୧୯୩୮ ମସିହା ନଭେମ୍ବର ମାସରେ ପଠାଇଥିବା ଏକ ଚିଠିରେ ସେ ଲେଖିଥିଲେ, "ଜୀବନ ଦିବସର ଗୋଧୂଳି ସମସ୍ତ ଏବଂ ଏହାର ରଙ୍ଗୀନ ରହସ୍ୟ ଭିତରେ ଦୋଳାୟମାନ ହେଉଥାଏ । ଜଣେ ଏହାକୁ କିପରି ପ୍ରଶଂସା କରିବାକୁ ହେବ ଓ ଏଥିରେ କିପରି ବିମୁଗ୍ଧ ହୋଇପାରିବ ସେକଥା ଜାଣିବା ନିହାତି ଆବଶ୍ୟକ । ଆମେ ପର୍ଯ୍ୟବେକ୍ଷଣ କରୁଥିବା ପ୍ରକ୍ରିୟା ଆଗରେ ନମ୍ରଭାବ ଯୁକ୍ତ ପରିପାଟୀ ପରିଧାନ କରିବାକୁ ହେବ । ଗତ କାଲିର ଗୋଟିଏ ଦୃଶ୍ୟ ମୋତେ ବିମୂର୍ଚ୍ଛିତ କରିପକାଇଲା । ମୋଟା କାଗଜ ପଟି ଓ ମହମଦିଆ କାଗଜରେ ଆମ କୁନି କୁନି ବାଳକମାନେ ସିନେମାଟିଏ ପ୍ରସ୍ତୁତ କରି ତା ଉପରେ ଟର୍ଚ୍ଚ ଲାଇଟ୍

ପକାଇ ପରୀକ୍ଷା କରୁଥିଲେ । ସିନେମାଟି ଅତି ସରଳ, ଆଦିମ ଓ ଚଳମାନ ଥିଲା । କାଳେ ସେମାନଙ୍କର ଉଦ୍ୟମଟି ବିଫଳ ହେବ, ସେଥିପାଇଁ ସେମାନେ ବହୁତ ଉତ୍କଣ୍ଠିତ ଥିଲେ । ମାତ୍ର ଯେତେବେଳେ ସେମାନଙ୍କର ଉଦ୍ୟମଟି ସଫଳ ହେବାର ଦେଖିପାରିଲେ ସେତେବେଳେ ସେମାନେ ଖୁସିରେ ନାଚଉଠିଲେ । ସେମାନେ ଯେଉଁ ବାଦ୍ୟଯନ୍ତ୍ରଟି ବ୍ୟବହାର କରୁଥିଲେ, ତାହା ପାଣିରେ ଫୁଙ୍କି ବଜାଯାଇଥିଲା । ପ୍ରକୃତରେ ଏହା ଉଭୟ ପିଲାମାନଙ୍କ ପାଇଁ ମୋ ନିଜପାଇଁ ଅତ୍ୟନ୍ତ କୌତୂହଳପୂର୍ଣ୍ଣ ଥିଲା । ଏଥିରେ କାମ କରିବାର ପ୍ରଚେଷ୍ଟା ଭରିରହିଥିଲା । ଏଥିରୁ ଯେଉଁ ସଫଳତା ଲାଭ ହେଲା ତାହା ହେଉଛି "ବିଜୟର ଆନନ୍ଦ ।"

୧୯୩୯ ମସିହା ଅଗଷ୍ଟମାସ ଆରମ୍ଭ ହୋଇଥାଏ ଏବଂ ଗ୍ରୀଷ୍ମ ଅବକାଶ ଶେଷ ହୋଇଥାଏ । ଏହି ସମୟରେ କୋର୍ଚାକ ଜଣେ ଅଭିଭାବକର ଭୂମିକାରେ ଲେଖିଥିଲେ, "ଜୁଲାଇ ମାସଟା ଭାରି ଆନନ୍ଦଦାୟକ ଥିଲା । କୋଡ଼ିଏ ଜଣ ନୂଆପିଲା ପାଠ ପଢ଼ିବେ, ଦୁର୍ବୋଧ ବିଷୟ ବୁଝିବେ । ଏହି ପିଲାଗୁଡ଼ିକ ହେଉଛନ୍ତି ବୁଝିହେଉ-ନଥିବା ହସ୍ତାକ୍ଷରରେ ଲେଖାହୋଇଥିବା କୋଡ଼ିଏଟି ଅଲଗା ଅଲଗା ପୁସ୍ତକ ପରି ତଥା ମଟ୍ ରୁ ମଟ୍‌ରୁ ଚିରିଯାଇଥିବା ପୁରୁଣା ବହିପରି ।"

ପିଲାମାନେ ସର୍ବଦା ଡାକ୍ତରଙ୍କ ଉତ୍ସାହକୁ ଅଧିକ ତେଜସ୍ୱାନ କରିଦେଉଥିଲେ । ସେ କହୁଥିଲେ, "ମୁଁ କାଲିମାତ୍ର ଫେରିଛୁ । ଓଃ କେତେ ଖୁସି ! ବନ୍ ଗଛରେ ବନ୍ ଭର୍ତ୍ତି । ଗତକାଲି ରାତିରେ ଆମେ ପ୍ରକୃତିକୁ ଉପଭୋଗ କରୁଥିଲାବେଳେ ଅଧା-ସିଝାଏ ଜହ୍ନ ଆଲୁଅ ବିଗ୍ଭଡ଼ି ହୋଇପଡ଼ିଥିଲା । ଗଛଗୁଡ଼ିକର ଛାଇ ଯେତେ ଲମ୍ବା ହେବା କଥା କଥା ସେତେ ଲମ୍ବା ହୋଇପଡ଼ୁଥିଲା । ପିଲାମାନେ ଗୀତ ଆବୃତ୍ତି କରିବା ସଙ୍ଗେ ସଙ୍ଗେ ଗାଉଥିଲେ...... ।

ମୁଁ ସେମାନଙ୍କୁ ଲକ୍ଷ୍ୟ କରିବା ସାଙ୍ଗକୁ ବିଦାୟପାଇଁ ପ୍ରସ୍ତୁତ ହେଉଥିଲି । .........ବାଲି ଉପରେ କୁନି କୁନି ପାଦଚିହ୍ନ ଭର୍ତ୍ତି ହୋଇଯାଇଥିଲା ।" ଜଣେ ଷାଠିଏ ବର୍ଷ ବୟସ୍କ ବୃଦ୍ଧ ଏସବୁ କଥାରେ ଏତେ ଖୁସି ହେବା କେଡ଼େ ବିଚିତ୍ର ସତେ !

ମାତ୍ର କୋର୍ଚାକଙ୍କ ଉତ୍ସାହ ବେଶିଦିନ ଅକ୍ଷୁଣ୍ଣ ରହିପାରି ନଥିଲା । କୋର୍ଚାକ ବିଭିନ୍ନ ଦିଗରୁ ନୈରାଶ୍ୟ ଓ ବିଫଳତାର ସମ୍ମୁଖୀନ ହୋଇ ନିଜ କର୍ତ୍ତବ୍ୟରେ ଶିଥିଳ ହୋଇପଡ଼ିଲେ । ତାଙ୍କୁ ମନେହେଲା ସତେ ଯେପରି ସେ ଏକ ମଙ୍ଗହିନ ନୌକାରେ ଭ୍ରମଣ କରୁଛନ୍ତି ।

ସେ ନିଜ ପାଠକମାନଙ୍କୁ ତଥା ନିଜକୁ ପଚାରୁଥିଲେ, "ତୁମେ ସତରେ ବଞ୍ଚିଛ ? ତୁମେ କେତୋଟି ସିଆର ହଳ କରିଛ ? କେତୋଟି ପାଉଁରୁଟି ଭାଜିଛ ? କେତୋଟି

ଛଟା ଗଢ଼ିଛ ? କେତେ ଉନ୍ନତା ବି କରଣ କରିଛ ? ତୁମ ସେବାର ସ୍ୱଭାବ କଅଣ ଥିଲା ? ଜୀବନର ଅନେକ ଅଧ୍ୟାୟ ପାଇଁ ତୁମେ କି ପ୍ରକାର ନାମକରଣ କରିବାକୁ ଦାବି କରୁଛ ?''

୧୯୭୯ ମସିହାରେ ସ୍ୱତନ୍ତ୍ର ସ୍କୁଲ ପତ୍ରିକା ପାଇଁ ସେ ତାଙ୍କ ଶେଷ ପ୍ରବନ୍ଧ ପଠାଇଥିଲେ । ପ୍ରବନ୍ଧଟିର ନାଁ ଥିଲା, "ଚଳନ୍ତା ଶୂନ୍ୟତା" । ସେ ଅତି ଦୁଃଖର ସହ ବିକଳ ଭାବରେ ସମାଜରେ ଗଢ଼ିବା ଲୋକମାନଙ୍କର ଶିକ୍ଷାଗତମାନ ଉପରେ ଇଙ୍ଗିତ କରିଥିଲେ । ସେ ମନ୍ତବ୍ୟ ଦେଇଥିଲେ, "ନେତୃତ୍ୱ ନେବାପାଇଁ ଥିବା ଆକାଙ୍କ୍ଷା ଓ ଦାମ୍ଭିକତା ମଣ୍ଡନଗଲା, ସୌନ୍ଦର୍ଯ୍ୟ ବଦଳରେ ଅଦମ୍ୟ କାମୁକଭାବ ମାଡ଼ିବସିଲା, କାମନା, ପ୍ରବୃତ୍ତିକୁ ବାଟ ଛାଡ଼ିଦେଲା । ଆତ୍ମ ସଂଯମତା ବିନମ୍ରତା ଏବଂ ଧୈର୍ଯ୍ୟ ଆଦି ଶବ୍ଦଗୁଡ଼ିକ ଶିକ୍ଷା ଅଭିଧାନରୁ ଉଠିଗଲା··· ।''

ଏକଥା ନିଃସନ୍ଦେହ ଯେ କୋର୍ଚାକ ନିଜେ ଯାହା ଶିକ୍ଷା ଦେଉଥିଲେ, ଶେଷ ପର୍ଯ୍ୟନ୍ତ ସେ ସେଥିପ୍ରତି ବିଶ୍ୱସ୍ତ ଥିଲେ । ପିଲାଦିନର ଗୋଟିଏ ଘଟଣାକୁ ସ୍ମରଣ କରି ସେ ବର୍ଣ୍ଣନା କରିଥିଲେ, "ଓ୍ୱାରସୋରେ ସେଦିନର ସକାଳଟି ଭାରି ଥଣ୍ଡା ଓ ମେଘାଚ୍ଛନ୍ନ ଥିଲା । ଟ୍ରାମ୍ ଲାଇନ୍ ଓ ଘରକାନ୍ଥଗୁଡ଼ିକ ବରଫାବୃତ ହୋଇରହିଥିଲେ । ଗୋଟିଏ ପୁରୁଣାକାଳିଆ ଘୋଡ଼ାଟଣା ଟ୍ରାମ ବାଟରେ ଅଟକିଗଲା । ଟ୍ରାମ୍‌ଚାଳକ ଅଭଦ୍ର ଭାଷାରେ ଘୋଡ଼ାମାନଙ୍କୁ ଗାଳିଦେଇ ଚାବୁକରେ ପିଟୁଥିଲା । ସେତେବେଳେ ମୁଁ ସ୍କୁଲ ଛାତ୍ରଟିଏ ଥିଲି । ଛିଡ଼ାହୋଇ ଏ ଦୃଶ୍ୟ ଦେଖିଲାବେଳେ ମୋ ମନରେ ବଡ଼ ବିରକ୍ତି ଆସୁଥିଲା ଏବଂ ମୋତେ ସରମ ଲାଗିଲା । ମୁଁ ପଚାରିଲି, ତୁମେ ସେମାନଙ୍କୁ ପିଟୁଛ କାହିଁକି ? ଟ୍ରାମ ଚାଳକ ଅମାୟିକ ମୁହଁଟାଏ କରି ମୋତେ ଅନାଇ କହିଲା, ଏ ପଶୁମାନଙ୍କ ପାଇଁ ତୋ ହୃଦୟ ଯଦି ତରଳିଯାଉଛି, ତେବେ ତୁ ନିଜେ ଗାଡ଼ିଟାଣ । ଫଳରେ ଘୋଡ଼ାଙ୍କପାଇଁ କାମଟା ସହଜ ହୋଇଯିବ ।

ଏଇଟା ମୋପାଇଁ ଗୋଟିଏ ବଡ଼ ଶିକ୍ଷା ଥିଲା । ଯଦି ସାହାଯ୍ୟ କରିପାରିବ ନାହିଁ ବା ପରିସ୍ଥିତିକୁ ସଜାଡ଼ି ପାରିବ ନାହିଁ, ତେବେ ସେଥିରେ ମୁଣ୍ଡ ଖେଳାଇବ ନାହିଁ । ନଚେତ୍ ପିଠି ଦେଖାଇଦେଇ ଗାଡ଼ିଟାଣିବ, ଗାଡ଼ି ଜୋର୍‌ରେ ଟାଣିବ । ତୁମେ ଯେତେ ଜୋର୍‌ରେ ଟାଣିବ ତୁମକୁ ସେତେ ଭଲ ଲାଗିବ । କିନ୍ତୁ ତୁମେ ଟ୍ରାମ୍‌ଟିକୁ ଚଳାଇ ପାରିବ ନାହିଁ । ଏକାକୀ ଆଦୌ ପାରିବ ନାହିଁ ।''

ମାତ୍ର କୋର୍ଚାକଙ୍କର ନୈତିକ କର୍ତ୍ତବ୍ୟ ବୋଧ ଅତ୍ୟନ୍ତ ପରିଷ୍କାର ଥିଲା । ତୁମେ ଟ୍ରାମ ଟାଣ, ନଚେତ୍ ନୀରବ ରୁହ ।

## (୨୭) ମୁଠାଏ ଦାନା ଚେନାଏ ହସ

କୋର୍ଚାକଙ୍କୁ ସାରା ଜୀବନ କଷ୍ଟକ ସ୍ୱୀକାର କରିବାକୁ ପଡ଼ିଥିଲା । ଅନାଥାଶ୍ରମର ପିଲାମାନଙ୍କ ପାଇଁ ତଥା ନିଜ ପାଇଁ ମୁଠାଏ ଦାନା ଯୋଗାଡ଼ କରିବା ସକାଶେ ତାଙ୍କୁ ଅହରହ ସଂଗ୍ରାମ କରିବାକୁ ପଡ଼ୁଥିଲା । ତାଙ୍କ ଦ୍ୱାରା ପରିଚାଳିତ ଅନାଥାଶ୍ରମଗୁଡ଼ିକ ଯୁଦ୍ଧ, ବିପ୍ଳବ, କ୍ଷୁଧା ଏବଂ ଦୁଇ ବିଶ୍ୱଯୁଦ୍ଧର ମଧ୍ୟବର୍ତ୍ତୀ ବର୍ଷଗୁଡ଼ିକର ଯନ୍ତ୍ରଣାସହ ଭଲ ଭାବରେ ପରିଚିତ ଥିଲେ ।

୧୯୩୮ ମସିହାରେ ଅନାଥାଶ୍ରମଗୁଡ଼ିକୁ ଚଲାଇବା ପାଇଁ ସେ ପୁନର୍ବାର ଧନୀ ଇହୁଦୀମାନଙ୍କ ପାଖରେ ହାତ ପତାଇ ମାଗିବାକୁ ବାଧ୍ୟ ହେଲେ । ସେ କହୁଥିଲେ, ଏ ପୃଥିବୀର ସବୁଠାରୁ ବଡ଼ ଦୁଃଖ ହେଉଛି, ଯୁବ ଧନୀକ ଶ୍ରେଣୀର ଲୋକମାନେ । ସେମାନେ ବହୁତ ଲୋଭୀ ଏବଂ ସେମାନଙ୍କ ଭିତରେ ମଣିଷର ଦୁଃଖ ବୁଝିବା ପାଇଁ ହୃଦୟଟିଏ ନାହିଁ ।

ପରେ ଜୀବନସ୍ମୃତିରେ ସେ ଏକ ଖରାପ ସମୟର କଥା ଲେଖିଥିଲେ, "ଶୀତଦିନ ପାଖେଇ ଆସୁଛି । ବାକ୍ସରେ କିଛି ବି ରବର ବା କୋପେକ୍ ନାହିଁ । କିନ୍ତୁ, କାହିଁକି କିଛି ଅଲୌକିକ ଘଟଣା ନଘଟିବ ! କାହିଁକି ସବୁଠାରୁ ଖରାପ ଅବସ୍ଥା କଥା ଚିନ୍ତା କରିବାକୁ ହେବ ? କେହି କଅଣ କିଛି ଦେଇପାରିବେ ନାହିଁ ? ଆମ ସମୟରେ ଏହା ସମ୍ଭବ ନୁହେଁ । ମାତ୍ର କାହିଁକି ନୁହେ ? ଆମ ସମୟରେ ବି ଜଣେ ଅଲୌକିକତା ଦେଖାଇବା ନିହାତି ଆବଶ୍ୟକ ହେଉଛି । କିଛି ନହେଲେ ବି ଜଣେ ଚେଷ୍ଟା କରିବା ଦରକାର ।"

ଜୀବନରେ ହାରିଯାଇଥିବା ମଣିଷଟି ପରି ସେ ଲେଖିଲେ, "ଜଣାପଡୁଛି ବଞ୍ଚିବାର ଇଚ୍ଛା ମୋତେ ନିର୍ବାସିତ କରିଦେବ ।"

ଯୁଦ୍ଧ ହାଜର ହୋଇଗଲା । କୋର୍ଚାକଙ୍କୁ ଗୋଟିଏ ରକମର ଆଶ୍ୱସ୍ତି ମିଳିଗଲା ଦିନଗୁଡ଼ିକୁ ଅନ୍ଧକାର କରି ଯୁଦ୍ଧ ପ୍ରସ୍ତୁତ, ଏତେ ସମସ୍ୟାଧିକ୍ୟ ଲାଗିଲା ଯେ ମନେହେଲା ସାରା ବାତାବରଣ ପରିଷ୍କାର ହୋଇଯିବ । କୋର୍ଚାକ ଲେଖିଥିଲେ, "ଝଡ଼ ଆକାଶକୁ ଖୋଲିଦେଲା । ଶ୍ୱାସକ୍ରିୟା ଗଭୀର ହୋଇଗଲା । ଅମ୍ଳଜାନର ପରିମାଣ ବଢ଼ିଗଲା । ଏଇଟା କ'ଣ ଗୋଟିଏ ଅଲୌକିକ ଘଟଣା ନୁହେଁ ?" ବୃଦ୍ଧାବସ୍ଥା ଯୋଗୁଁ ୧୯୩୯ ମସିହା ସେପ୍ଟେମ୍ବର ମାସରେ ସେ ନିଜକୁ ସାହସୀ ଓ ବିଶ୍ୱାସୀ ମନେକଲେ ।

ପ୍ରଥମରୁ ହିଁ କୋର୍ଚାକ ନିଜ ଦେଶସେବା ବ୍ୟତୀତ ଆଉ କୌଣସି କଥାରେ ମନ ଦେଉନଥିଲେ । ଯୁଦ୍ଧର ପ୍ରାରମ୍ଭରେ ସେ ଭାବିଥିଲେ ଯେ ଏ ଯୁଦ୍ଧଟି ବି ୧୯୧୪ରୁ

୧୯୧୮ ମସିହା ଭିତରେ ହୋଇଥିବା ପ୍ରଥମ ବିଶ୍ୱଯୁଦ୍ଧ ପରି ଲାଗିରହିବ । ଏ ସମୟରେ କୋର୍ସାକଙ୍କ ଉପସ୍ଥିତି ଯେ ଅପରିହାର୍ଯ୍ୟ ଥିଲା, ଏକଥା ଆପାତତଃ ବୁଝାପଡ଼ିଯାଉ-ଥିଲା । ରେଡ଼ିଓରୁ ତାଙ୍କୁ ବିରକ୍ଷାସ୍ତ କରିଯାଇଥିଲା । ମାତ୍ର ବର୍ତ୍ତମାନ ତାଙ୍କୁ ପୁନର୍ବାର ଡକାଗଲା । ରେଡ଼ିଓରେ ସେ ତାଙ୍କ ପ୍ରିୟ ପୋଲାଣ୍ଡବାସୀଙ୍କୁ ଏହି ବିପଦ ସମୟରେ କିଛି ବାର୍ତ୍ତା ପରିବେଷଣ କରିବେ । କୋର୍ସାକ ବହୁତ ସୁନ୍ଦର ଭାବରେ ଆବେଗର ସହ ରେଡ଼ିଓରେ କହିଲେ । ନିଜ ପ୍ରିୟତମ କବିତାରୁ କିଛି ଉଦ୍ଧୃତାଂଶ ପାଠକଲେ । ଏହି କବିତାଟିକୁ ସେ ବିଗତ ପଚିଶ ବର୍ଷଧରି ବାରମ୍ବାର ଗାଇଛନ୍ତି । କୋର୍ସାକଙ୍କ ରେଡ଼ିଓ ଭାଷଣ ପୋଲାଣ୍ଡ ଜାତିକୁ ରଣହୁଙ୍କାର ଦେବାପାଇଁ ଉଦ୍ବୋଧକ ଭାବରେ କାମ କଲା । ପୋଲାଣ୍ଡବାସୀଙ୍କ ଶେଷ ରକ୍ତବିନ୍ଦୁର ବିରୋଧ ପର୍ଯ୍ୟନ୍ତ କୋର୍ସାକ୍ ପୋଲାଣ୍ଡବାସୀଙ୍କୁ ନିଜ ଭାଷଣ ମାଧ୍ୟମରେ ଦମ୍ଭ ଦେଇ ଚାଲିବେ । ବାହାରେ କାଠ ଭଙ୍ଗୁଡ଼ି ଭାଙ୍ଗିଯିବାର ଶବ୍ଦ, ବୋମା ମାଡ଼ର ଘୁ ଘୁ ଶବ୍ଦ ଭିତରେ ଡାକ୍ତରଙ୍କ ସ୍ୱର ଶୁଭୁଥିଲା । ମାତ୍ର ଯେତେବେଳେ ରେଡ଼ିଓ ଷ୍ଟେସନ ଉପରେ ସିଧାସଳଖ ଏକ ବୋମା ବର୍ଷଣ ହେଲା, ସେତେବେଳେ ଆଉ ଜନସାଧାରଣ ଡାକ୍ତରଙ୍କର ଆବେଗ-ଭରା କଣ୍ଠସ୍ୱର ଶୁଣିପାରିଲେ ନାହିଁ ।

ପୋଲାଣ୍ଡର ଦୁର୍ଦ୍ଦିନ ସମୟରେ ଘୂରିବୁଲୁଥିବା ପିଲାମାନଙ୍କୁ ଟିକିଏ ସାନ୍ତ୍ୱନା ତଥା ଟିକିଏ ସାହାଯ୍ୟ କରିପାରିବା ଆଶାରେ କୋର୍ସାକ ରାସ୍ତା ଉପରକୁ ଓହ୍ଲାଇ ଆସିଲେ । ସେ ପିଲାମାନଙ୍କୁ ଏକାଠି କରୁଥିଲେ ଏବଂ ଅପରିଚିତ ମୃତ ସୈନ୍ୟ-ମାନଙ୍କ କବର ଉପରେ ପୁଷ୍ପ ଅର୍ପଣ କରିବା ପାଇଁ ସେମାନଙ୍କୁ ଧାଡ଼ିକରି ନେଇ ଯାଉଥିଲେ । ଯେତେବେଳେ ସହରସାରା ଭୟ ଓ ଆଶଙ୍କାର କରାଳ ଛାୟା ଆଚ୍ଛନ୍ନ ହୋଇ ରହିଥିଲା, ଯେତେବେଳେ ସର୍ବତ୍ର ପରାଜୟର ଧ୍ୱନି ଗୁଞ୍ଜରିତ ହେଉଥିଲା, ସଂଶୟ ଓ ଦ୍ୱନ୍ଦ୍ୱର କୁହୁଡ଼ିତ ବାତାବରଣ ଘେରି ରହିଥିଲା, ସେତେବେଳେ କୋହାକ ନିଜ ଭିତରେ ଅଧିକ ଦୃଢ଼ ତଥା ସାହସୀ ଅନୁଭବ କରୁଥିଲେ । ସର୍ବୋପରି ତାଙ୍କର ଆବଶ୍ୟକତାକୁ ସମସ୍ତେ ଅନୁଭବ କରୁଥିଲେ । କୋର୍ସାକଙ୍କ ପାଇଁ ଏହାହିଁ ଥିଲା ଯଥେଷ୍ଟ ।

ଯେଉଁମାନେ ସେତେବେଳେ ମୃତ୍ୟୁ ମୁଖରୁ ବର୍ତ୍ତିଯାଇଥିଲେ, ସେମାନେ କୋର୍ସାକଙ୍କର ସେ ସମୟର ମହାନ୍ ଭୂମିକାକୁ ବର୍ଣ୍ଣନା କରି କହନ୍ତି, କୋର୍ସାକ ନିଜ ଜୀବନକୁ ପାଣି ଛଡ଼େଇ ମଜାମଜା କଥା କହି ଏବଂ ହସି ହସି ଏମିତି ବୁଝାଇ ଦେଉଥିଲେ ଯେ ଶେଷରେ ସେ ଦାରୁଣ କାରୁଣ୍ୟ ଭିତରୁ ବ୍ୟକ୍ତିକୁ ଉଦ୍ଧାର କରି ଆଣିପାରୁଥିଲେ । ଅନାଥାଶ୍ରମର ବାତାବରଣରେ ସେ ଶୃଙ୍ଖଳା ତଥା ହସଖୁସି ଫେରାଇ ଆଣିପାରୁଥିଲେ । ଯେତେବେଳେ ଆକାଶମାର୍ଗରୁ ବୋମା ବର୍ଷଣ ହେଉଥିଲା, ସେ ସେତେବେଳେ ମୃତାହତର ବିକ୍ଷିପ୍ତିକାମୟ ରାସ୍ତା ଉପରକୁ ଧାଇଁଯାଉଥିଲେ ।

ମୃତ, ଭୟଗ୍ରସ୍ତ, କ୍ଷୁଧିତ, କ୍ଷତବିକ୍ଷତ ପିଲାମାନଙ୍କୁ ସାଉଁଟିଆଣି ଅନାଥାଶ୍ରମକୁ ନେଇ ଆସୁଥିଲେ ।

ପୂର୍ବପରି ସେ ଏବେ ପୁଣି ଖାଦ୍ୟ, ବସ୍ତ୍ର, ଔଷଧ ଆଦି ମାଗିବା ପାଇଁ ଦାଣ୍ଡ ଦୁଆରେ ହାତପତାଇ ବୁଲିବାକୁ ଲାଗିଲେ । ସେ ଅକ୍ଳାନ୍ତ ପରିଶ୍ରମ କରୁଥିଲେ । ଶୋକ ଶୋଷ ଆଦି ଭୁଲିଯାଇ ନିରବଚ୍ଛିନ୍ନ ଉଦ୍ୟମ କରିଚାଲୁଥିଲେ । ବୋଧହୁଏ ତାଙ୍କ ଭିତରେ ସେହି ଅନ୍ତର୍ବୋଧ ଆସୁଥିଲା ଯେ ଏହି ଯୁଦ୍ଧ ପୃଥିବୀରୁ ମଇଳାତକ କାଢ଼ିଦେବ ଏବଂ ତା ପରେ ଏକ ପବିତ୍ର ତଥା ପରିବର୍ତ୍ତିତ ପୃଥିବୀ ଜନ୍ମ ନେବ । ନୈରାଶ୍ୟର କୁତ୍ସିତ ପରିବେଶ ଭିତରେ ଏକ ଆଶାର ଦିଗନ୍ତକୁ ଆଖିପକାଇବା ବୋଧହୁଏ କୋର୍ଜାକଙ୍କ ଭଳି ମହାପୁରୁଷଙ୍କ ପକ୍ଷରେ ହିଁ ସମ୍ଭବ । କୋର୍ଜାକ ଅନେକ ସମୟରେ କହୁଥିଲେ, ଅଲୌକିକ ଭାବରେ ଅଗ୍ନି ଜଳିଉଠିବ, ବରଫ ତରଳିଯିବ, ସବୁକିଛି ବିପର୍ଯ୍ୟସ୍ତ ହୋଇଯିବ ଯଦ୍ଦ୍ୱାରା ପାପୀ ଆଉ ଦୁଷ୍ଟମାନେ ଧ୍ୱଂସ ହୋଇଯିବେ, ପୃଥିବୀ ନବସୃଜନ ପାଇଁ ଉନ୍ମୁକ୍ତ ହୋଇଉଠିବ । ସେ କହୁଥିଲେ, ବିଦ୍ୟୁତ୍ ଶକ୍ତି ଏପରି ଏକ ମାଧ୍ୟମ ଯାହାକି ଯୁଦ୍ଧ ଭିଆଉଥିବା ଖରାପ ଓ ବିକୃତ ଶକ୍ତିଗୁଡ଼ିକୁ ପୋଡ଼ି ଜାଳିଦେବ ।

ଏକ ପରିବର୍ତ୍ତିତର ସ୍ୱର ସେ ସବୁ ସମୟରେ ଶୁଣୁଥିଲେ । ତାଙ୍କର ବିଶ୍ୱାସ ଥିଲା ଯେ ଇତିହାସର ବୃହତ୍ତର ଘଟଣାଗୁଡ଼ିକୁ ସେ ଭବିଷ୍ୟଦ୍ରଷ୍ଟା ଭାବରେ ଆଗରୁ ଜଣାଇ ଦେଇପାରିବେ । ତାଙ୍କର ଏହି ବିଶ୍ୱାସ ପଛରେ ଯଥେଷ୍ଟ କାରଣ ଥିଲା । ଅନେକ ବର୍ଷ ଧରି ସେ ଯାହା ଯାହା କହିଆସୁଥିଲେ ପ୍ରାୟ ସେହିପରି ଭାବରେ ଇତିହାସ ଏପର୍ଯ୍ୟନ୍ତ ଖେଳିଆସିଛି । କୋର୍ଜାକ ଲେଖିଥିଲେ, "ଋଷୀୟ, ଜାପାନୀ ଯୁଦ୍ଧରେ ମୁଁ ଦେଖିଥିଲି ପରାଜୟ । ମୁଁ ବୃହତ୍ ଇଉରୋପୀୟ ଯୁଦ୍ଧରେ ବି ଦେଖିଥିଲି ପରାଜୟ । ମୁଁ ଜାଣିପାରୁନାହିଁ ଏହା କିପରି ଏକ ବିଜୟଶ୍ରୀମଣ୍ଡିତ ସେନାବାହିନୀରେ ଦୈନ୍ୟଗ୍ରାହକତାକୁ ଅନୁଭବ କରୁଛି ।" ତା ପରେ ସେ ଲେଖିଥିଲେ, "ଯୁଦ୍ଧର ଡାଇଁ ତ ଆଗରୁ ନିର୍ଦ୍ଦିଷ୍ଟ ହୋଇସାରିଛି । ଏହାର ପରିଣତି କଅଣ ହେବ ତାହା ମୋତେ ସ୍ପଷ୍ଟ ଦିଶିଯାଉଛି ।"

ସେତେବେଳେ କୋର୍ଜାକଙ୍କର ବ୍ରିଟିଶ ଏବଂ ଫରାସୀ ସେନାଶକ୍ତି ଉପରେ ଦୃଢ଼ବିଶ୍ୱାସ ଓ ଭରସା ରହିଥିଲା । କେବଳ ଏଇଥିପାଇଁ ସେ ଭବିଷ୍ୟତକୁ ସାମନା କରିବାପାଇଁ ଏତେ ଆସ୍ଥା ଓ ବିଶ୍ୱାସର ସହିତ ଦମ୍ଭ ଧରିଥିଲେ ।

୧୯୪୦ ମସିହାର ଫରାସୀ ପରାଜୟକୁ କୋର୍ଜାକ ସହିବାପାଇଁ ପ୍ରସ୍ତୁତ ନଥିଲେ । ସେଭଳି ସହଜରେ ଜର୍ମାନ ସେନାଶକ୍ତି ଫରାସୀ ଶକ୍ତିକୁ ଭାଙ୍ଗିଦେଲେ ତାହା କୋର୍ଜାକଙ୍କ ପ୍ରତି ଏକ ଶକ୍ତ ଆଘାତ ଥିଲା । ତଥାପି ସେ ଶତ୍ରୁର ପରାଜୟ ନିଶ୍ଚିତ ହେବ ବୋଲି ବିଶ୍ୱାସ ରଖିଥିଲେ ।

ଅନାଥାଶ୍ରମ ଥିଲା ଡାକ୍ତରଙ୍କର ସର୍ବପ୍ରଥମ ଆଗ୍ରହ । ଏହା ତାଙ୍କର ସବୁ ସମୟ ନେଇଯାଉଥିଲା । ତା ଛଡ଼ା ଅନାଥାଶ୍ରମ ଅଧିକ ଉଦ୍‌ବେଗ ତଥା ଜଟିଳ ସମସ୍ୟାମାନ ଆଣି ଉପସ୍ଥାପିତ କରିଦେଉଥିଲା । ଯେତେବେଳେ ଓ୍ୱାର୍ସୋର ଦୁର୍ଗରକ୍ଷକମାନେ, ଧମକ ମାତ୍ରଆସୁଥିବା ଶତ୍ରୁପକ୍ଷ ପାଖରେ ଆତ୍ମସମର୍ପଣ କଲେ, ସେତେବେଳେ କୋର୍ଜାକ ଅନାଥାଶ୍ରମ ଅବସ୍ଥିତ ଥିବା ଓ୍ୱାର୍ସୋର ସେହି ଇଲାକାରେ ଅଧିବାସୀଙ୍କ ଉଦ୍ଦେଶ୍ୟରେ ଏକ ନିବେଦନ ପଠାଇଥିଲେ । ସେ ଏଥିରେ ଲେଖିଥିଲେ, "ଆମେ ଦୁଇ ଦୁଇଟି ସମ୍ପୂର୍ଣ୍ଣ ଇହୁଦୀ ହତ୍ୟାକାଣ୍ଡକୁ ପ୍ରତିହତ କରିଛନ୍ତି ଏବଂ ଆମେ ପ୍ରତିହତ କରିଛନ୍ତି ଉନନବେଜଟା ଲୁଣ୍ଠନ ଏବଂ ନାସ୍ତିଧର୍ମଣ । ମୋର ବର୍ତ୍ତମାନର ଚିନ୍ତା ଅନାଥାଶ୍ରମ । ଆମେ କେବେ ବି ଧ୍ୱଂସ ହୋଇଯିବୁ ନାହିଁ । ମୁଁ ଉନନବେଜଟା ବିପ୍ଳବରୁ ବଞ୍ଚିଆସିଛୁ । ଏଇଟା ମୋପାଇଁ ଚତୁର୍ଥ ଯୁଦ୍ଧ । କେବଳ ଦୁର୍ବଳ, ଭକ୍ତିହୀନ ପୁଣ୍ୟ ନ୍ୟକ୍ତିମାନେ କ୍ଷଣସ୍ଥାୟୀ ଦୁର୍ବିପାକ ଆଗରେ ଝୁଙ୍କିପଡ଼ନ୍ତି । ଆମ ପୃଷ୍ଠପୋଷକତା ତିଷ୍ଠି ରହିପାରିନାହିଁ । ଏହାର ଅନେକ ସଦସ୍ୟଙ୍କୁ ମାରିଦିଆଗଲାଣି । ଆଉ ଅନ୍ୟମାନେ ଦରିଦ୍ର ହୋଇଗଲେଣି । କେତେକ ଗ୍ରାମ ଛାଡ଼ି ଚାଲିଗଲେଣି । ଆଉ କେତେକ ଅହଂକାରର ବଶବର୍ତ୍ତୀ ହୋଇ ରହିଛନ୍ତି । ପିଲାମାନେ ଆମର ଭବିଷ୍ୟତ । ସେମାନେ ଆମ ସଂସ୍ଥାମାନଙ୍କର ରକ୍ଷାକର୍ତ୍ତା । ମୁଁ ଅର୍ଥ ଦାବି କରୁଛି । ତୁମ ସମସ୍ତଙ୍କଠାରୁ ମୁଁ ମାତ୍ର ଶହେ ଜ୍ଳୋଟି ଅନାଥାଶ୍ରମ ପାଇଁ ମାଗୁଛି । ଏଇ ଆସନ୍ତା ଅଳ୍ପଦିନ ଭିତରେ ମୁଁ ବ୍ୟକ୍ତିଗତ ଭାବରେ ତୁମମାନଙ୍କ ନିକଟରେ ଅର୍ଥ ସଂଗ୍ରହ ପାଇଁ ପହଞ୍ଚିବି । ଆଉ ମୁଁ ଆଶା କରୁଛି କାହାଠାରୁ ନାହିଁର ଉତ୍ତର ପାଇବି ନାହିଁ ।"

ସହରରେ ସର୍ବତ୍ର ବିଶୃଙ୍ଖଳା ଓ ପରାଜୟର ଆଶଙ୍କା ଆଚ୍ଛନ୍ନ ଥିଲାବେଳେ ଏବଂ ସଙ୍ଗଠିତ ଅତ୍ୟାଚାରରେ ସମସ୍ତେ ନିଷ୍ପେଷିତ ହେଉଥିଲାବେଳେ କୋର୍ଜାକ୍ ଅଭିଭାବକ ଓ ବନ୍ଧୁର ଭୂମିକା ନେଉଥିଲେ । ପିଲାମାନେ କୋର୍ଜାକଙ୍କୁ ସମସ୍ତଙ୍କଠାରୁ ଅଧିକ ଲୋଡ଼ୁଥିଲେ । ବାସ୍ତବିକ କୋର୍ଜାକ ପିଲାମାନଙ୍କର ପ୍ରକୃତ ବନ୍ଧୁ ।

ପ୍ରଥମେ ପ୍ରଥମେ ଯେତେବେଳେ ଜର୍ମାନ ପୋଲାଣ୍ଡକୁ ଅଧିକାର କରିବାକୁ ବସିଲା ଏବଂ ନିର୍ଯ୍ୟାତନାର ପ୍ରଭାବ ଏତେ ଜଣାପଡ଼ିନଥିଲା, ସେତେବେଳେ ବି ଓ୍ୱାର୍ସୋର ଇହୁଦୀ ସମ୍ପ୍ରଦାୟ ଦୁଃଖ ଦାରିଦ୍ର୍ୟ ଓ ହତାଶା ଭିତରେ କବଳିତ ହୋଇ ରହିଥିଲା । ଏହି ସମ୍ପ୍ରଦାୟ ଭିତରେ ସବୁଠାରୁ ନିରୀହ ଥିଲେ ପିଲାମାନେ । ସମାଜ ମଙ୍ଗଳ ସଙ୍ଗଠନଗୁଡ଼ିକୁ ଯେତେବେଳେ ଜର୍ମାନ ସରକାର ନିଜର ହାତବାରିସି ଭାବରେ ବ୍ୟବହାର କରୁଥିଲେ । ଏହି ସଙ୍ଗଠନଗୁଡ଼ିକ ପ୍ରକୃତରେ ଦେଶ ରକ୍ଷା ପାଇଁ ଉଦ୍ଦିଷ୍ଟ ଥିଲେ । ଯାହା ଅନୁଦାନ ମିଳିବ, ଏହି ସଙ୍ଗଠନମାନେ ତାହାଦ୍ୱାରା ଲୋକଙ୍କୁ ସୁବିଧା ସୁଯୋଗ ଯୋଗାଇଦେବେ ବୋଲି ବ୍ୟବସ୍ଥା ହୋଇଥିଲା । ଦୁଃଖର କଥା

ଏହି ସଙ୍ଗଠନଗୁଡ଼ିକଦ୍ୱାରା ବିଶେଷକିଛି କରାଯାଇପାରିନଥିଲା । ଆଗରୁ ଏମାନେ ଅନେକ କିଛି କାର୍ଯ୍ୟକ୍ରମ କରୁଥିଲେ । ମାତ୍ର ଜର୍ମାନ କର୍ତ୍ତୃପକ୍ଷ ଯେତେବେଳେ ଏହା ଉପରେ ଅଙ୍କୁଶ ଜାହିର ରଖିଲେ, ସେତେବେଳେ ସାହାଯ୍ୟ କରିବାର ଇଚ୍ଛା ପଛରେ କୌଣସି ମହତ୍ତ ଆକାଙ୍‌କ୍ଷା ନଥିଲା ।

କୋର୍ଯାକ ଭଲଭାବରେ ଅନୁମାନ କରିପାରୁଥିଲେ ଯେ ଜର୍ମାନର ଅଧିକାର ଦ୍ୱାରା ଅନେକ କିଛି କଷ୍ଟକର ଲାଗୁହେବ । ମାତ୍ର ଏଥିପାଇଁ ସେ ଆଦୌ ବିଚଳିତ ହେଉନଥିଲେ । ଜର୍ମାନମାନେ ଯେତେବେଳେ ଓ୍ୱାର୍ସୋକୁ ଅଧିକାର କରିନେଲେ, ସେତେବେଳେ କୋର୍ଯାକ ତାଙ୍କ ଡାକ୍ତରୀ ୟୁନିଫର୍ମ ପୋଷାକକୁ ବର୍ଜନ କରିନଥିଲେ । ବରଂ ସେ ଭାବୁଥିଲେ, ଯେତେଦିନ ପର୍ଯ୍ୟନ୍ତ ସେ ଏହି ପୋଷାକ ପରିଧାନ କରିବାକୁ ସକ୍ଷମ ହେବେ ସେତେଦିନ ପର୍ଯ୍ୟନ୍ତ ଏହାକୁ ସେ କାମରେ ଲଗାଇବେ ।

ଆଦୌ ବିଚଳିତ ନହୋଇ ଏବଂ ଜର୍ମାନମାନଙ୍କୁ ସମ୍ପୂର୍ଣ୍ଣ ଭାବରେ ବେଖାତିର କରି କୋର୍ଯାକ ଭାଙ୍ଗିପଡ଼ିଥିବା ଅବହେଳିତ ଓ୍ୱାର୍ସୋ ସହରର ରାସ୍ତା ଉପରେ ବୁଲୁଥିଲେ । ଅସୁସ୍ଥ, କ୍ଷତବିକ୍ଷତ ଏବଂ ନିର୍ବାସିତ ପିଲାମାନଙ୍କୁ, ସେମାନଙ୍କର କଣ୍ଢେଇ, ଯୋଷା ପଶୁପକ୍ଷୀଙ୍କ ସହ ସାଉଁଟି ଆଣୁଥିଲେ । ଅସହାୟ ପିଲାମାନଙ୍କର ସଂଖ୍ୟା ଦିନକୁଦିନ ଅନାଥାଶ୍ରମରେ ବୃଦ୍ଧି ପାଇବାରେ ଲାଗିଥିଲା, ସେମାନଙ୍କ ପେଟକୁ ମୁଠାଏ ଦାନା ଓ ଦେହକୁ ଖଣ୍ଡେ କନା ଯୋଗାଡ଼ କରିବାପାଇଁ ସେ ଅର୍ଥ ସଂଗ୍ରହ ପାଇଁ ବଦାନ୍ୟ ବ୍ୟକ୍ତି ଓ ଅନୁଷ୍ଠାନମାନଙ୍କ ପାଖରେ ହାତପତାଇ ମାଗି ବୁଲୁଥିଲେ । ଯେଉଁ ପିଲାମାନଙ୍କୁ ସେ ଗ୍ରହଣ କରୁଥିଲେ, ସେମାନେ ପ୍ରକୃତରେ ଅନାଥ କି ନୁହେଁ, ସେଥିପ୍ରତି ସେ ଗୁରୁତ୍ୱ ଦେଉନଥିଲେ । ପିଲାଟିଏ ଅସୁବିଧାରେ ରହିଛି, ଏତିକି ଥିଲା ତାଙ୍କପାଇଁ ଯଥେଷ୍ଟ ।

ବିଜୁଳି ଆଲୁଅ ଅଭାବରୁ ଓ୍ୱାର୍ସୋ ଗଳି ରାସ୍ତାଗୁଡ଼ିକ ଅନ୍ଧକାରରେ ବୁଡ଼ିଥିଲା । ମାତ୍ର ସୂର୍ଯ୍ୟୋଦୟଠାରୁ ମଧ୍ୟରାତ୍ରି ପର ପର୍ଯ୍ୟନ୍ତ କୋର୍ଯାକ ସେହି ପିଲାମାନଙ୍କୁ ଅନୁସନ୍ଧାନରେ ବୁଲୁଥିଲେ । ସେ ଅତ୍ୟନ୍ତ ଚିନ୍ତା ସହକାରେ ବିକଳ ହୋଇ ସେମାନଙ୍କୁ ଖୋଜିବୁଲୁଥିଲେ, ଯଥା ଯେପରି ଜଣେ ମାଆ ତା'ର ଗୋଟିଏ ବୋଲି ସନ୍ତାନକୁ ହଜାଇ ଦେଇଛି । ସେ ପାଗଳ ଭଳି ଅନୁଦାନ ଯୋଗାଡ଼ରେ ଘୂରି-ବୁଲୁଥିଲେ । କେତେବେଳେ କେଉଁ ଧନୀକର ପ୍ରାସାଦ ଉପରକୁ ପାହାଚରେ ଚଢ଼ି-ଯାଉଥିଲେ ତ କେତେବେଳେ କେଉଁ ବ୍ୟବସାୟୀଙ୍କ ପାଖରେ ପହଞ୍ଚି ଯାଉଥିଲେ । ଆଉ କେତେବେଳେ କଫି ଓ ଟି' ଦୋକାନରେ ଗୁଲଗପ କରିବାକୁ ଆସିଥିବା ସଂଭ୍ରାନ୍ତମାନଙ୍କ ନିକଟରେ ହାଜର ହୋଇଯାଉଥିଲେ । ବିଭିନ୍ନ ଦଳ ବା ଗୋଷ୍ଠୀଙ୍କ ତରଫରୁ ଖାଇବାପାଇଁ ଆସୁଥିବା ନିମନ୍ତ୍ରଣକୁ ସେ ରକ୍ଷା କରୁନଥିଲେ; ମାତ୍ର

ଅନୁଦାନପାଇଁ ସେମାନଙ୍କ ପାଖରେ ହାତ ପତାଇ ଛିଡ଼ାହୋଇ ଯାଉଥିଲେ । କେବେ ବି ସେ କେଉଁଠାରୁ ନିରାଶ ହୋଇ ଫେରିନଥିଲେ । ଖାଲି ହାତରେ କୌଣସି ଖାଇବା ଟେବୁଲରୁ ସେ ଫେରିନଥିଲେ । ଦୋକାନ ଆଗରେ ସଉଦା କିଣିବାକୁ ଅପେକ୍ଷା କରି ଛିଡ଼ା ହୋଇଥିବା ଗ୍ରାହକମାନେ ଭଲଭାବରେ ଜାଣିଥିଲେ ଯେ ତାଙ୍କରଙ୍କୁ କିଛି ନଦେଲେ ନିସ୍ତାର ନାହିଁ । କେବେ ବି କୌଣସିଠାରେ କୋର୍ଚ୍ଚାକ ଟୋକେ ଚା' ବା କଫି ପିଇବାପାଇଁ ବସି ପଡ଼ୁନଥିଲେ । ସେ ନିଜ ପିଲମାନଙ୍କର ଦୁଃଖ ଦୁର୍ଦ୍ଦଶାର ଅବସ୍ଥା ପ୍ରତି ଗମ୍ଭୀର ଭାବରେ ସଚେତନ ଥିଲେ ଏବଂ ତାଙ୍କ ପାଇଁ ବିଳାସବ୍ୟସନ ଆଉ ହସ ଖୁସି ପ୍ରକାଶେ ସାମାନ୍ୟତମ ଅବସର ସମସ୍ତ ନଥିଲା । ଅତି ସରଳ ନିଷ୍କପଟ ଭାବରେ ଦୁଃଖଭରା ସ୍ମିତହାସ୍ୟ ବଦନରେ ସେ ଉପସ୍ଥିତ ଥିବା ଭଦ୍ରବ୍ୟକ୍ତିମାନଙ୍କୁ ପଚାରୁଥିଲେ, ତୁମେ କୌଣସିମତେ ବିସ୍ତାଏ ଆଳୁ ଦେଇ-ପାରିବକି ? ସତେରେ ଦେଇପାରିବ ?''

କୋର୍ଚ୍ଚାକ ତାଙ୍କ ଠିକଣା ଲେଖାଥିବା ସ୍ଲେଟ ଚିରକୁଟଟି ବଢ଼ାଇଦେଇଥିଲେ । ତା'ପରେ ଆଉସବୁ ତାଙ୍କ ପାଇଁ ସହଜ ହୋଇଯାଉଥିଲା । କୋର୍ଚ୍ଚାକଙ୍କ ଅନୁଗାମୀ-ମାନେ ଖବର ପାଇ ଠିକଣା ଜାଗାରୁ ଜିନିଷପତ୍ର ଓ ଅର୍ଥ ସଂଗ୍ରହ କରି ନେଇ ଆସୁଥିଲେ । ଏମାନଙ୍କ ଭିତରୁ ଅଧିକାଂଶ ଥିଲେ କୋର୍ଚ୍ଚାକଙ୍କର ପୂର୍ବତନ ଛାତ୍ରଛାତ୍ରୀ, ଯେଉଁମାନଙ୍କୁ ଟାଉନ୍‌ର ଜର୍ମାନ୍‌ମାନେ ଅଟକ ରଖିଥିଲେ । କୋର୍ଚ୍ଚାକ ହସି ହସି ବଡ଼ ବଡ଼ ବ୍ୟବସାୟୀଙ୍କ ନିକଟରେ ହାତ ପତାଉଥିଲେ । ସେମାନେ କିଏ କଅଣ କହୁଥିଲେ । ମାତ୍ର କାହା ପ୍ରତି ତାଙ୍କର ଅସୂୟାଭାବ ନଥିଲା ।

ଥରେ ଜଣେ ଶେଯ ବ୍ୟବସାୟୀଙ୍କ ମୁଖ୍ୟ କିଛି ଅନୁଦାନ ଦେବାକୁ ମନା-କରିଦେଲେ । ବ୍ୟବସାୟୀ ମୁଖ୍ୟ ଜଣକ କୋର୍ଚ୍ଚାକଙ୍କୁ ପଚାରିଲେ, "କୋର୍ଚ୍ଚାକ ପ୍ରଥମେ ଯେତେବେଳେ ତୁମେ ତୁମ ଅନାଥାଶ୍ରମରେ ଖଟିଆ ଶେଯ ଆଦି ଲଗାଇଥିଲ, ସେ କଥା ମନେଅଛି ? କୋର୍ଚ୍ଚାକ ଉତ୍ତରଦେଲେ, "ହଁ ମନେଅଛି ।" ବ୍ୟବସାୟୀ ମୁଖ୍ୟ କହିଲେ, 'ତା'ହେଲେ ତୁମର ମନେଥିବ ଯେ ତୁମେ ସେତେବେଳେ ତୁମ ଖର୍ଚ୍ଚ ଓ ଶେଯ ସବୁ କୋନ୍ରାଡ଼ ଏବଂ ଜାର୍‌ନୁସ କର୍ଓ୍ୱିଜ୍‌ରୁ ଆଣିଥିଲ । ତୁମେ କାହିଁକି ଆମଠାରୁ କିଣିନଥିଲ ? କୋର୍ଚ୍ଚାକ ଉତ୍ତର ଦେଇଥିଲେ, "ହଁ ହଁ, ମୋର ମନେପଡ଼ୁଛି । ଆମେ ଯେତେବେଳେ ୧୯୧୧ ମସିହାରେ ଅନାଥାଶ୍ରମ କାମ ଶେଷ କଲୁ, ସେତେବେଳେ କୋନ୍ରାଡ଼ ଏବଂ ଜାରନୁସକର୍ଓ୍ୱିଜ୍‌ରୁ ଆମର ଖଟ ଓ ଶେଯ ସବୁ ଆଣିଥିଲୁ । ମାତ୍ର ୧୯୨୦ ମସିହାରେ ଯେତେବେଳେ ଅନାଥାଶ୍ରମକୁ ବଢ଼ାଇଲୁ, ସେତେବେଳେ ତୁମଠାରୁ କିଛି ଖଟିଆ କିଣିଥିଲୁ । ବ୍ୟବସାୟୀ ଜଣକ ଚୁପ୍ ରହିଲେ । ତାପରେ କୋର୍ଚ୍ଚାକ କହିଲେ, ବର୍ତ୍ତମାନ ତୁମେ ଯଦି ମୋ ସାଙ୍ଗରେ ୯୨-କ୍ରୋଚ ମାନାଲ୍ ଗଳିର ଅନାଥାଶ୍ରମକୁ ଯିବ, ତୁମେ ଦେଖିପାରିବ କୋନ୍ରାଡ଼୍ ଏବଂ

ଜାର୍‌ନୁସ୍ କର୍ଚ୍ଚିକ୍‌ରୁ ଅଣାଯାଇଥିବା ଖଟିଆ ଓ ଶେଯ ଏ ପର୍ଯ୍ୟନ୍ତ ସମ୍ପୂର୍ଣ୍ଣ ଭାବରେ ଠିକ୍ ଅଛି । ମାତ୍ର ତୁମଠାରୁ ଅଣାଯାଇଥିବା ଖଟିଆ କେତେଦିନରୁ କଳଙ୍କି ଲାଗି ନଷ୍ଟ ହୋଇଗଲାଣି ଏବଂ ଆମେ ସେ ସବୁକୁ ବଦଳେଇ ଦେଲୁଣି । ଏବେ ବୋଧହୁଏ ତୁମେ ବୁଝିଥିବ ଆମେ କାହିଁକି ଆମ ଶେଯ ଖଟିଆ ସେଆଡ଼ୁ ଆଣିଲୁ । ତୁମେ ବୋଧହୁଏ ଆହୁରି ଭଲଭାବରେ ବୁଝୁଥିବ କାହିଁକି ସେମାନେ ଦେବାଳିଆ ହୋଇ-ଗଲେ, ଆଉ ତୁମେ ପାଞ୍ଚ ମହଲା କୋଠାରେ ତୁମ ଅଫିସ ଚଳାଉଛ ।'' ଏତେକଥା କହିସାରି ସେ ଦାନ୍ତ ଦେଖାଇ କହିଥିଲେ, "ତା'ପରେ କଅଣ ହେଲା ଆଉ ମୋର ମନେନାହିଁ । ମାତ୍ର ମୁଁ ତଳ ମହଲାରେ ପହଞ୍ଚିଲାପରେ ଦେହସାରା ଖଣ୍ଡିଆଖାବରା ହୋଇଯାଇଥିଲା ।''

ବହୁତ ଖୁସିରେ ସେ ଆଉ ଗୋଟିଏ ଘଟଣାକୁ ଉପସ୍ଥାପନ କଲେ । ସେ ଜଣେ ଇହୁଦୀ ବଣିକ ପାଖକୁ ଯିବାକୁ ନିଷ୍ପତ୍ତି କଲେ । ବଣିକ ଜଣକ ବହୁତ ଧନୀ ଏବଂ ବହୁତ ଅର୍ଥଲୋଭୀ । ଯେତେବେଳେ କୋର୍ଚାକ ବୁଢ଼ା ବଣିକ ପାଖରେ ପହଞ୍ଚି ନିଜ ଆସିବାର ଅଭିପ୍ରାୟ ଜଣାଇଲେ, ବୁଢ଼ାବଣିକ କହିଲେ, 'କୋର୍ଚାକ୍, ତୁମେ ତୁମ ପିଲାମାନଙ୍କୁ ବହୁତ ଭଲପାଅ, ନୁହେଁ ? କୋର୍ଚାକ ଉତ୍ତରଦେଲେ, ''ହଁ ବହୁତ ଭଲପାଏ । ମାତ୍ର ମୋର ଏଠାକୁ ଆସିବା ସହ ସେ କଥାକୁ କାହିଁକି ଯୋଡ଼ୁଛନ୍ତି ?'' ବଣିକ ଜଣକ କହିଲେ, ''ବହୁତ କିଛି ସାମଞ୍ଜସ୍ୟ ଅଛି ଡାକ୍ତରବାବୁ ! ମୋର ପ୍ରତ୍ୟେକ ଏକଶତ ଜୋଲ୍‌ଟି ମୋ ପାଇଁ ମୋର ଗୋଟିଏ ଗୋଟିଏ ପିଲା । ତୁମେ ତୁମ ପିଲାମାନଙ୍କୁ ଯେପରି ଭଲପାଅ, ମୁଁ ବି ମୋ ପିଲାମାନଙ୍କୁ ସେପରି ଭଲପାଏ । ସେମାନଙ୍କ ଭିତରୁ କାହାଠାରୁ ମୁଁ ବଞ୍ଚିତ ହୋଇ ରହିବାକୁ ସହ୍ୟ କରିପାରିବି ନାହିଁ ।''

କିଛି ସମୟ ନିସ୍ତବ୍ଧତା ପରେ—''ତୁମେ ଯେପରି ତୁମ ପିଲାମାନଙ୍କଠାରୁ ବଞ୍ଚିତ ହେବାକୁ ଚାହଁନାହିଁ, ସେହିପରି ମୁଁ ମୋ ପିଲାଙ୍କ ପାଖରୁ ବଞ୍ଚିତ ହୋଇ ରହିବାକୁ ଚାହେଁ ନାହିଁ ।'' ତା'ପରେ ବଣିକ ଜଣକ ତାଙ୍କ ଗମ୍ଭୀର ଘରକୁ ଯାଇ ଆଲ୍‌ମିରା ଖୋଲିଲେ ଓ କେତେଗୁଡ଼ିଏ ବ୍ୟାଙ୍କ ନୋଟ୍ ଆଣି କୋର୍ଚାକଙ୍କ ହାତକୁ ବଢ଼ାଇ-ଦେଇ କହିଲେ, ''ତୁମେ ମୋର କେତେଗୁଡ଼ିଏ ଛୁଆକୁ ପାଇଲ । ମୁଁ ଜାଣିଛି, ତୁମେ ସେମାନଙ୍କର ଯତ୍ନ ମୋଠାରୁ ଅଧିକ ଭଲଭାବରେ ନେଇପାରିବ ।''

କୋର୍ଚାକ ତାଙ୍କ ଜୀବନରେ ଏଭଳି ଅନେକ ଅବିସ୍ମରଣୀୟ ମଜା ମଜା ଘଟଣାକୁ ଅନେକବାର ଦୋହରାଉଥାନ୍ତି ଓ ମନେପକାଇ ହସିଥାନ୍ତି । ଆଉ ଗୋଟିଏ ଘଟଣା । ଓ୍ୱାର୍ସୋରେ ଜଣେ ଇହୁଦୀ ବୁଢ଼ୀଙ୍କର ଗୋଟିଏ ବଡ଼ ଜୋତାଫ୍ୟାକ୍ଟ୍ରି କାରଖାନା ଥିଲା । ବୁଢ଼ୀଜଣକ ନିୟୁସପୁର ବଧିର ଥିଲେ । ଯେତେବେଳେ କୋର୍ଚାକ

ଯାଇ ବୁଢ଼ୀଙ୍କୁ କିଛି ଅର୍ଥ ମାଗିଲେ, ବୁଢ଼ୀ ଚିତ୍କାର କରିଉଠିଲେ। "ତୁ କି ଅନାଥାଶ୍ରମ କଥା କହୁଛୁ ! ମୁଁ ତୋତେ ଭଲ ଭାବରେ ଶୁଣିପାରୁନି । ତୁ ଜାଣିଛୁ ମୁଁ ଟିକିଏ କାଲୁଣୀ । ଏଇଟା କଅଣ ଗୋଟାଏ କ୍ୟାଥୋଲିକ୍ ଅନାଥାଶ୍ରମ ।" କୋର୍ଚାକ ବୁଢ଼ୀର କାନତଳେ କହିଲେ, ନା, ଏଇଟା କାଥୋଲିକ୍ ଅନାଥାଶ୍ରମ ନୁହେଁ । କାଲୁଣୀ ବୁଢ଼ୀ ଆଶ୍ଚର୍ଯ୍ୟ ହୋଇ କହିଲା, ତାହାହେଲେ ! ପୋଲଣ୍ଡର ଜଣେ ସେନା-ବାହିନୀର ମେଡ଼ିକାଲ ଅଫିସର, ପୁନଶ୍ଚ ଯାହାର ଦେଶଟା ବର୍ତ୍ତମାନ ଜର୍ମାନ କର୍ତ୍ତୃତ୍ୱାଧୀନ, ସେ ପୁଣି ସହରସାରା ବୁଲିବୁଲି ଇହୁଦୀ ଅନାଥାଶ୍ରମ ପାଇଁ ଅର୍ଥ ସଂଗ୍ରହ କରୁଛି !"

ପରିଶେଷରେ ବୁଢ଼ୀ କୋର୍ଚାକ୍‌ଙ୍କୁ ଆଦେଶଦେଲେ, "ବୁଲିପଡ଼ ଓ ଅଫିସର ସେଇ କୋଣକୁ ଯାଅ । ସେଠାରେ ଥିବା ଓଜନିଆ ପୋଷାକ ଥାକ ଉଠାଅ ।" ବୁଢ଼ୀର କଥାନୁସାରେ କୋର୍ଚାକ୍ ପୋଷାକ ଥାକଟିକୁ ଉଠାଇଲେ । ବୁଢ଼ୀ ପୋଷାକ ଥାକ ତଳୁ ଥାକେ ବ୍ୟାଙ୍କ ନୋଟ୍ କାଢ଼ି ଡାକ୍ତରଙ୍କ ହାତକୁ ବଢ଼ାଇଦେଲେ ।

ଦୃଢ଼ମନା, ଅଧ୍ୟବସାୟୀ ଡାକ୍ତର କୋର୍ଚାକଙ୍କର ନିରବଚ୍ଛିନ୍ନ ଉଦ୍ୟମ କେବେ ବି ବିଫଳ ହୋଇନି । ସେ ତାଙ୍କ ପିଲାମାନଙ୍କ ପାଇଁ ଶୀତ ଦିନର ଆବଶ୍ୟକ ଜିନିଷ, ଯଥା—ଆଳୁ, ଗେଞ୍ଜି, ଗରମ ପୋଷାକ, କୋଇଲା ଓ ଅନ୍ୟାନ୍ୟ ଅତ୍ୟାବଶ୍ୟକ ସାମଗ୍ରୀ ସବୁ ଆବଶ୍ୟକ ମୁତାବକ ଯୋଗାଡ଼ କରିପାରିଲେ । ଜର୍ମାନମାନଙ୍କ ଆଗମନ ସମୟରେ ଯୁଦ୍ଧରେ ଅନାଥାଶ୍ରମର ଝରକା ଗୁଡ଼ିକ ଭାଙ୍ଗି ଯାଇଥିଲା । ସଂଗୃହୀତ ସଂବଳରେ ଏହି ଝରକା ଗୁଡ଼ିକୁ ନୂଆକରି ଲଗାଇ ଦିଆଗଲା । ଭଙ୍ଗା କବାଟ ଗୁଡ଼ିକୁ ମରାମତି କରିଦିଆଗଲା । କୋଠାଟିକୁ ପୁଣି ବାସପୋଯୋଗୀ କରିଦିଆଗଲା ।

ଜର୍ମାନମାନେ ସବୁବେଳେ ପୋଲଣ୍ଡ ତଥା ରାଜଧାନୀ ଓ୍ୱାର୍ସୋ ଉପରେ ସେମାନଙ୍କ ହାତମୁଠାକୁ ଦୃଢ଼କରି ରଖୁଥିଲେ । ସେମାନେ ଯୋଜନାବଦ୍ଧ ଭାବରେ ଅତ୍ୟାଚାର ତଥା ଶୋଷଣ କରୁଥିଲେ ଏବଂ କ୍ରମେ କ୍ରମେ ଅଧିକରୁ ଅଧିକ ନିର୍ଦ୍ଦୟ ହୋଇଉଠୁଥିଲେ । ସାମାଜିକ ଅନୁଷ୍ଠାନ ଗୁଡ଼ିକୁ ଦିଆଯାଉଥିବା ସୁବିଧା ସୁଯୋଗ ଗୁଡ଼ିକ କେଉଁଆଡ଼େ ଉଭେଇ ଯାଉଥିଲା । କୋର୍ଚାକ ନୂତନ ଆଇନ ସବୁକୁ ଅମାନ୍ୟ କରି ଗତିପଥ ବଦଳାଇ ଚାଲିଯିବା ପାଇଁ ସବୁ ପ୍ରକାର ପ୍ରଚେଷ୍ଟା କରୁଥିଲେ । ବେଳେ ବେଳେ ସେ ଏସବୁକୁ ଅତି ସରଳ ଭାବରେ ବେଖାତିର କରି ନିଜ ବାଟରେ ଆଗକୁ ଯାଉଥିଲେ । ଉଦାହରଣ ସ୍ୱରୂପ, ଯେତେବେଳେ ଜର୍ମାନମାନେ ଆଦେଶ ଦେଲେ ଯେ ସବୁ ଇହୁଦୀ ହାତବଲା ପିନ୍ଧିବେ, କୋର୍ଚାକ୍ ଏହି ଆଦେଶକୁ ମାନିଲେ ନାହିଁ । ସେ ଏପରି ବ୍ୟବହାର କରୁଥିଲେ, ଯେତେଯେପରି ସେ ନିୟମରେ ଅନ୍ତର୍ଭୁକ୍ତ ନୁହଁନ୍ତି । ଯେତେବେଳେ ଜଣେ ଜର୍ମାଣୀ ସଂଶୟବଶତଃ କୋର୍ଚାକଙ୍କୁ ତାଙ୍କ ସମ୍ପ୍ରଦାୟ ଓ

ଜାତୀୟତା ସମ୍ପର୍କରେ ପଚାରିଲେ, କୋର୍ସାକ ତାଙ୍କୁ ଉତ୍ତର ଦେଲେ, "ପୋଲାଣ୍ଡ ମୋର ଦେଶ ।" କର୍ମଚାରୀ ପାଟିକରି ପଚାରିଲେ, "ଜାତି କଅଣ ?" କୋର୍ସାକ କୌଣସି ଉତ୍ତର ଦେଲେ ନାହିଁ । ତାପରେ କର୍ମଚାରୀ ପଚାରିଲେ, "ତୁମ ଧର୍ମ କଅଣ ।" କୋର୍ସାକ୍ ଉତ୍ତର ଦେଲେ, "ମୋ କାଗଜପତ୍ରରେ ଲେଖାହୋଇଛି ଇହୁଦୀ ।" କର୍ମଚାରୀ କହିଲେ, "ତାହାହେଲେ ତୁମେ କାହିଁକି ହାତବନ୍ଧା ପିନ୍ଧୁନାହଁ ? କୋର୍ସାକ୍ ଉତ୍ତର ଦେଲେ, "ମଣିଷ ତିଆରି ନିୟମଗୁଡ଼ିକ ଅସ୍ଥିର ଏବଂ ଅସ୍ଥାୟୀ । ଈଶ୍ୱର ନିର୍ଦ୍ଦେଶିତ ଆଇନ ଗୁଡ଼ିକ ହିଁ ଶାଶ୍ୱତ । ମୁଁ କେବଳ ଈଶ୍ୱରଙ୍କ ନିୟମକାନୁନକୁ ବିଶ୍ୱାସ କରେ ଓ ମାନିଥାଏ ।"

ଏ ସମୟରେ ଏପରି ଦୁଃସାହସ ଦେଖାଇବା ଅର୍ଥ ମୃତ୍ୟୁକୁ ଆମନ୍ତ୍ରଣ କରିବା ସଙ୍ଗେ ସମାନ । ମାତ୍ର କୋର୍ସାକଙ୍କର ସେମାନେ କିଛି କ୍ଷତି କରିପାରିଲେ ନାହିଁ । ଏହାର ଅତି ସରଳ କାରଣ ହେଉଛି, ଜର୍ମାନମାନେ ସାହସିକତାକୁ ସମ୍ମାନ ଦେଇ ଶିଖିଥିଲେ । ସାହସିକତା ପ୍ରଦର୍ଶନ କରିବାକୁ ଯେଉଁମାନେ କୁଣ୍ଠିତ ହେଉଥିଲେ, ସେମାନଙ୍କୁ ଜର୍ମାନମାନେ ଭୟ କରୁଥିଲେ ।

ଏ ସମୟରେ ଜଣେ ସ୍ୱାଧୀନ ଭାବରେ କିଛି କରିପାରୁ ନଥିଲା । ମାତ୍ର ଆଉସବୁ ଚିନ୍ତା ପାଇଁ କୌଣସି ପ୍ରତିବନ୍ଧକ ନଥିଲା । ଚାରିଆଡ଼େ ଦୁଶ୍ଚିନ୍ତାର କଳାମେଘ ଘୋଡ଼ାଇ ହୋଇ ରହିଥିଲା । କୋର୍ସାକଙ୍କ ପାଇଁ ମୁଖ୍ୟ ସମସ୍ୟା ଥିଲା, ଅନାଥାଶ୍ରମର ଦୁଇଶହ ଜଣ ପିଲାଙ୍କ ପାଇଁ ମୁଠାଏ ଦାନା ଯୋଗାଡ଼ କରିବା । ସେ କୌଣସି ନିୟମ ବା କାନୁନ୍‌କୁ ଖାତିର କରି ଚଳୁ ନଥିଲେ । ଅକ୍ଳାନ୍ତ ପରିଶ୍ରମ ସତ୍ତ୍ୱେ ସବୁଦିନ ଆହୁରି ଅନେକ କାମ କରିବାକୁ ବାକି ରହିଯାଉଥିଲା ।

ସଂଧ୍ୟାର ବିଳମ୍ବ ପ୍ରହରରେ କୋର୍ସାକ୍ ରାସ୍ତା ମଝିରେ ପଦଚାରଣ କରୁଥିଲେ । ଅନେକ ସମୟରେ ପୋଲିସ ପହରା ଦେଉଥିବା ଜାଗାକୁ ସେ ସିଧା ଚାଲି ଯାଉ-ଥିଲେ । ସେ ଜଣେ ମାତାଲ ମଦ୍ୟପ ଭଳି ଛଳନା କରୁଥିଲେ । ମଦ୍ୟପଙ୍କ ଭଳି ମାତାଲ ଗୀତ ଗାଉଥିଲେ । ପୋଲାଣ୍ଡର ଜନପ୍ରିୟ ନାଉରିଆ ଗୀତର ସୁର୍ ଧରୁଥିଲେ—

...ଯେତେବେଳେ ଆମ ଚାରିପାଖେ ଝଡ଼ବତାସ ଗର୍ଜିଉଠେ...

ଥରେ ପୋଲିସ ପହରା ଦେଉଥିଲାବେଳେ, କୋର୍ସାକ ଗ୍ଲୋଣ୍ଡା ଗଳିର ଗୋଟିଏ କଫି ଦୋକାନର ଟେବୁଲ ପାଖରେ ଏକୁଟିଆ ବସିଥିଲେ । ପୋଲିସ ଆଡ଼କୁ କୌଣସି ନଜର ନଦେଇ ସେ ଜଣେ ପାଗଳ ଦାର୍ଶନିକ ଭଳି ଟେବୁଲ ପୋଛୁଥିଲେ । ସିଗାରେଟ୍ ଖୋଳକୁ ଫୁଙ୍କି ବଜାଉଥିଲେ । ତାଙ୍କର ଏଭଳି ପାଗଳା କାର୍ଯ୍ୟମାନ

ଦେଖି ପୋଲିସ ଗିରଫ କଲେନାହିଁ । ଏପରିକି ପୋଲିସ ସେ ଟେବୁଲ ପାଖକୁ ଗଲାପରେ ବି କୋର୍ଝାକ୍ଙ୍କ ମୁହଁରେ କୌଣସି ଅସ୍ୱାଭାବିକତା ଦେଖାଗଲା ନାହିଁ କି ସେ ଭୟଭୀତ ହେଲେ ନାହିଁ । ଏଭଳି ଆଚରଣ ଦେଖି ପୋଲିସ ତାଙ୍କୁ ପାଗଳ ଲୋକଟିଏ ବୋଲି ଭାବିଲେ ଏବଂ ଘଟଣାର ଦୋଷୀ ତାଲିକାରୁ ବାଦ୍ ଦେଲେ ।

ବିପଦ ସମୟରେ ନିଜକୁ କିପରି ରକ୍ଷା କରିହେବ, କୋର୍ଝାକ ଏଥିପାଇଁ ମଣିଷର ବ୍ୟବହାର ଓ ସ୍ୱଭାବକୁ ପର୍ଯ୍ୟବେକ୍ଷଣ କରି ସଦ୍ୟ ଉପାୟମାନ ବାହାର କରୁଥିଲେ । କୋର୍ଝାକଙ୍କର ମନସ୍ତାତ୍ତ୍ୱିକ ବ୍ୟାବହାରିକ ଜ୍ଞାନ ଅତ୍ୟନ୍ତ ଦୃଢ଼ଥିଲା ଏବଂ ସେ ଏହି ଜ୍ଞାନକୁ ସବୁକ୍ଷେତ୍ରରେ ପ୍ରୟୋଗ କରୁଥିଲେ । ଏସବୁ ଅତ୍ୟନ୍ତ ବିପଦପୂର୍ଣ୍ଣ ବୋଲି ଜାଣି ମଧ୍ୟ ସେ ପାଗଳାମି ଭଳି ନାନା ପ୍ରକାର ଛଳନା କରି ଖସି ପଳାଇ ଯିବାରେ ମଜା ପାଉଥିଲେ ।

ନିକଟ ଭବିଷ୍ୟତରେ ଘଟିବାକୁ ଯାଉଥିବା ଘଟଣାଗୁଡ଼ିକୁ କୋର୍ଝାକ୍ ଅତି ସ୍ପଷ୍ଟ ଓ ତୀକ୍ଷ୍ଣ ଭାବରେ ଅନୁମାନ କରିପାରୁଥିଲେ । ସେ ଭଲ ଭାବରେ ଜାଣିଥିଲେ ଯେ ହତ୍ୟାକାଣ୍ଡ, ଚୋରି, ଡକାୟତି, ନାରୀଧର୍ଷଣ, ସଂକ୍ରାମକ ରୋଗ ଏବଂ ସମସ୍ତ ପ୍ରକାର ନିର୍ଯ୍ୟାତନା ପୋଲାଣ୍ଡ ପ୍ରତି ଏବଂ ବିଶେଷକରି ଇହୁଦୀମାନଙ୍କ ପ୍ରତି ଅପେକ୍ଷାକରି ରହିଛି । ଯେଉଁଭଳି ଭାବରେ ଏସବୁ ଘଟିବ, ସେସବୁକୁ ସେ ସ୍ପଷ୍ଟ ଭାବରେ ଦେଖି-ପାରୁଥିଲେ । ବହୁବାର ସେ ସତର୍କ ସୂଚନାମାନ ପ୍ରଦାନ କରୁଥିଲେ ଯେ, ଯୁଦ୍ଧର ଏସବୁ କଠିନ ଆଇନଗୁଡ଼ିକ ଇହୁଦୀମାନଙ୍କ ଉପରେ ପରୀକ୍ଷା କରାଯିବ ।

ଯୁଦ୍ଧ ଚାଲିଥାଏ । ଶୀତଋତୁ ପରେ ବସନ୍ତର ଆଗମନ ହେଲା । କୋର୍ଝାକ୍ ଆଗରୁ ଯେଉଁସବୁ ଭବିଷ୍ୟବାଣୀ ଶୁଣାଇଥିଲେ ପ୍ରଥମ ବସନ୍ତରେ ସେସବୁ ଗୋଟି ଗୋଟି କରି ଘଟିବାକୁ ଲାଗିଲା । ସର୍ବପ୍ରଥମେ ଇହୁଦୀମାନଙ୍କୁ ରାସ୍ତା ଉପରେ ଏକଜୁଟ କରାଗଲା । ତାପରେ ଜର୍ମାନମାନେ ଇହୁଦୀମାନଙ୍କୁ ଏକ ସ୍ୱତନ୍ତ୍ର ରୋଟି ଦେବାକୁ ଆରମ୍ଭ କଲେ । ଏହି ରୋଟି ଗୁଡ଼ିକ ସାଧାରଣ ରୋଟି ଅପେକ୍ଷା ଅଧିକ ଓଜନଆ ଥିଲା । ଦେଖିବାକୁ ଲୁଦୁଅ ରୋଟି ଭଳି ଏବଂ ଏଥିରେ ବିଷାକ୍ତ ଜିନିଷ ମିଶାଯାଇଥିଲା । ଇହୁଦୀମାନଙ୍କୁ କେବଳ ଏହି ପ୍ରକାର ରୋଟି ଓ୍ୱାର୍ସୋ ସହରରେ ବିତରଣ କରା-ଯାଉଥିଲା । ଏହାକୁ ଏତେ କମ୍ ପରିମାଣରେ ଦିଆଯାଉଥିଲା ଯେ, ଯେଉଁମାନେ କେବଳ ଏହା ଉପରେ ନିର୍ଭର କରିବେ, ସେମାନେ ଆଦୌ ଚଳିପାରିବେ ନାହିଁ । ପୁଣି ଅଧିକ ପରିମାଣରେ ଏହି ବିଷାକ୍ତ ରୋଟି ଖାଇବା ଅର୍ଥ ମୃତ୍ୟୁର ଶୀକାର ହେବା ।

ସବୁଠାରୁ କଦର୍ଯ୍ୟ କଥା ହେଲା ଯେ, ଇହୁଦୀମାନଙ୍କ କ୍ୱାର୍ଟରଗୁଡ଼ିକୁ ଲଗି ମୋଟା ମୋଟା ଉଚ୍ଚ କାନ୍ଥସବୁ ତିଆରି କରି ଘେରାଇ ଦିଆଗଲା । ଶତ୍ରୁତା ଓ ଘୃଣା-

ଭାବ, ଇହୁଦୀ ବିରୋଧୀ ଏବଂ ଗଣହତ୍ୟା ଅଭିଯାନର କଥା ଶୁଣି ପ୍ରଚାର କରାଗଲା । ଇହୁଦୀମାନଙ୍କ ପ୍ରତି ଘୃଣାଭାବ ଦିନକୁ ଦିନ ବଢ଼ିବାରେ ଲାଗିଲା । ଡାକ୍ତର କୋର୍ଯାକ ଠିକ୍ ଏହି କଥାଗୁଡ଼ିକ ଘଟିବ ବୋଲି ଆଗରୁ ଭବିଷ୍ୟବାଣୀ ଶୁଣାଇଥିଲେ । କ୍ରମେ ଲୋକମାନେ ନିଜ ସ୍ୱାର୍ଥକୁ ରକ୍ଷାକରିବା ପାଇଁ ଲାଗିପଡ଼ିଲେ ।

ଏହିଭଳି ଦୁର୍ଦ୍ଦିନ କାଳରେ କୋର୍ଯାକ ଜଣେ କୁଞ୍ଚୁକୁଞ୍ଚିଆ କେଶଧାରୀ ଇହୁଦୀ ଅନାଥ ପିଲାକୁ ଜଣେ ଧନୀ ବନ୍ଧୁଙ୍କ ପାଖକୁ ପଠାଇଲେ । ବାଳକଟି ସାଙ୍ଗରେ ଏକ ଗୋଲାପ ଫୁଲଗୁଚ୍ଛ ନେଇଯାଇଥିଲା । ଏହି ଫୁଲଗୁଚ୍ଛ ଉପରେ ଲେଖାଥିଲା, ଯେତେବେଳେ ଜଙ୍ଗଲରେ ଦାବାନଳ ଜଳିଉଠିଛି ସେତେବେଳେ ଗୋଲାପ ଗଛଟିକୁ ଆମେ ଭୁଲିଯିବା ଅନୁଚିତ ।'' ଏହି ଧନୀ ବନ୍ଧୁ ଜଣକ ଆଗରୁ ଅନାଥାଶ୍ରମକୁ ମୁକ୍ତହସ୍ତରେ ଦାନକରି ଆସୁଥିଲେ । ଏଥର ତାଙ୍କୁ ପୋଲାଣ୍ଡର ବିଖ୍ୟାତ କବି ଦେଶପ୍ରେମୀ ଏବଂ ଦ୍ରଷ୍ଟା ଜୁଲିୟସ ସ୍ଲୋଆକଙ୍କ ଏକ ବାଣୀ ମନେପକାଇ ଦେବାପାଇଁ କୋର୍ଯାକ୍ ଏପରି ପୁଷ୍ପଗୁଚ୍ଛ ପଠାଇଥିଲେ । କବିଙ୍କର ବାଣୀଟି ଏହିପରି ଥିଲା, ଯେତେବେଳେ ଜଙ୍ଗଲ ପୋଡ଼ିଯାଉଛି, ସେତେବେଳେ ଗୋଲାପ ଫୁଲକୁ ମନେପକାଇବା ପାଇଁ କାହାର ସମୟ ନାହିଁ ।'' ଅବଶ୍ୟ କବି ଏଠାରେ କହୁଥିଲେ ଯେ ଯଦି ଜଣକର ଜୀବନ ଉତ୍ସର୍ଗଦ୍ୱାରା ସମୂହର ମଙ୍ଗଳସାଧନ ହେଉଥାଏ, ତେବେ ଏହା ଅତ୍ୟନ୍ତ ମହନୀୟ ଏବଂ ସମୁଚିତ କାର୍ଯ୍ୟ ଅଟେ । କୋର୍ଯାକଙ୍କ ପାଇଁ ପିଲାମାନେ ଥିଲେ ଗୋଲାପ ଏବଂ ସେମାନଙ୍କର ଜୀବନ ଥିଲା ଜଙ୍ଗଲଠାରୁ ଅଧିକ ମୂଲ୍ୟବାନ । ତେଣୁ ସେ ଅନାଥ ପିଲାଟିକୁ ଧନୀ ବନ୍ଧୁଙ୍କ ପାଖକୁ ପଠାଇଥିଲେ ଏବଂ ଆଶା କରିଥିଲେ, ସେଠାରେ ପିଲାଟି ସୁରକ୍ଷିତ ରହିବ ।

କୋର୍ଯାକ୍ ନିଜର ଅଭିପ୍ରାୟଗୁଡ଼ିକୁ ପ୍ରତୀକ ଜରିଆରେ ପ୍ରକାଶ କରୁଥିଲେ ଏବଂ ପ୍ରତୀକଗୁଡ଼ିକ ଥିଲା ଡାକ୍ତରଙ୍କର ସ୍ୱାତନ୍ତ୍ର୍ୟ । ସେ ଯାହାକୁ ବିଶ୍ୱାସକରି ତଥା ଆଧାର କରି ଚାଲୁଥିଲେ ଫୁଲଗୁଡ଼ିକ ସେସବୁର ପ୍ରତୀକ ଥିଲେ । ତାଙ୍କ ଉପରେ ଯେଉଁସବୁ ନିୟମ ଲଦିଦିଆଯାଉଥିଲା, ସେସବୁକୁ ସେ ଆଦୌ ଖାତିର କରୁନଥିଲେ । ସମସ୍ତ ବ୍ୟକ୍ତିଗତ ଭୁଲଭ୍ରାନ୍ତିକୁ ସେ ଧୀର ତଥା ନମ୍ର ଭାବରେ ସହିଯାଉଥିଲେ ଏବଂ ତାଙ୍କର ବିଶ୍ୱାସ ଥିଲା ଯେ ସେ ହିଁ ପରିଶେଷରେ ବିଜୟୀ ହେବେ ।

ଯେତେବେଳେ ବିପଦ ଘନେଇ ଆସୁଥିଲା, ହତ୍ୟାକାଣ୍ଡ, ଲୁଣ୍ଠିତା ଆଦି ଅଧିକରୁ ଅଧିକ ସଂକେନ୍ଦ୍ରିତ ହୋଇଉଠୁଥିଲା, ସେତେବେଳେ କୋର୍ଯାକଙ୍କ ଭିତରେ ଏକ ଅଦ୍ଭୁତ ଇଚ୍ଛା ଜାଗ୍ରତ ହେଉଥିଲା । ଏହାର ଯୌକ୍ତିକତାକୁ ସେ ବୁଝାଇ ପାରୁନଥିଲେ । ତାଙ୍କର ଇଚ୍ଛାଥିଲା ପିଲାଙ୍କୁ ଗୋଟିଏ ସ୍କୁଲ ବ୍ୟାନର ଦେବେ । ଏହା ନିଃସନ୍ଦେହ ଯେ ଏହା ଥିଲା ତାଙ୍କ ପ୍ରେମର ଏକ ପ୍ରତୀକ । ଏହି ଇଚ୍ଛାଟି ନିହାତି

ପୂରଣ ହେବା ଆବଶ୍ୟକ ବୋଲି ସେ ଅନୁଭବ କରୁଥିଲେ । ଅନାଥ ପିଲାମାନଙ୍କ ଭିତରେ ଏକତା, ସହୃଦ ଏବଂ ଅନୁରକ୍ତି ପ୍ରକାଶ କରିବା ପାଇଁ ସେ ଏହି ଗୌରବର ମୁହୂର୍ତ୍ତଟିକୁ ଖୋଜୁଥିଲେ । ସେ କେଉଁ ପ୍ରକାର ପ୍ରତୀକ ବ୍ୟବହାର କରି ତାଙ୍କ ମନର ଭାବଟିକୁ ବୁଝାଇପାରିବେ, ସେ ବିଷୟରେ ଗମ୍ଭୀର ଭାବରେ ଚିନ୍ତା କରୁଥିଲେ ।

ବ୍ୟାନର ରଙ୍ଗ ସବୁଜ ହେବ । ସେ "କିଙ୍ଗ୍ ମ୍ୟାଟ୍ ଦ ଫାଷ୍ଟ" ବହିରେ "ଲିଟିଲ କିଙ୍ଗ୍ ମ୍ୟାଟ୍" ବ୍ୟାନରର ରଙ୍ଗ ସବୁଜ ହେବ ବୋଲି ସ୍ୱପ୍ନ ଦେଖିଥିଲେ । ବୋଲି ବର୍ଣ୍ଣନା କରିଥିଲେ । ସବୁଜ ପୃଷ୍ଠଭୂମି ଉପରେ ଶାଶ୍ୱତ ପ୍ରସ୍ଫୁଟନର ପ୍ରତୀକ ସ୍ୱରୂପ ରହିବ ଚେଷ୍ଟନଟ୍ ଫୁଲର ଚିତ୍ର । ବ୍ୟାନରର ଅନ୍ୟ-ପାର୍ଶ୍ୱଟି ଧଳା । ଏହି ଧଳା-ପୃଷ୍ଠଭୂମି ଉପରେ ଅଙ୍କିତ ହେବ ପଞ୍ଚଶିରାର ପ୍ରତୀକ ସ୍ୱରୂପ ଡାଭିଡ୍‌ଙ୍କ ନୀଳନକ୍ଷତ୍ର । କୋର୍ଯାକଙ୍କ ପାଇଁ ଡାଭିଡ୍‌ଙ୍କ ନୀଳନକ୍ଷତ୍ର ଥିଲି ଅସ୍ଥାୟୀ ଯନ୍ତ୍ରଣା ଓ ଶାଶ୍ୱତ ଉଜ୍ଜୀବର ପ୍ରତୀକ । ଏହା ଦୁଃଖନାଶନ ମହାନତା ଏବଂ ଇହୁଦୀ ଧର୍ମର ଦାମ୍ଭିକତାକୁ ଅନୁସୂଚିତ କରୁଥିଲି ।

ଇହୁଦୀମାନଙ୍କ ଉପରେ ଜର୍ମାନମାନଙ୍କର ଆକ୍ରମଣ ପ୍ରବଳରୁ ପ୍ରବଳତର ହେଲି । ଇହୁଦୀ ସାହିତ୍ୟକୁ ପୋଡ଼ିଦିଆଗଲି । ଏହି ସାହିତ୍ୟ ଭିତରେ ରହିଥିଲି, ମହାନ କବି ଜୁଲିୟସ ସ୍ଲୋଆକଙ୍କ ସମସ୍ତ କବିତା ସଙ୍କଳନ । ଏପରି ଦୁଃଖଦ ଘଟଣା ଘଟିବ ବୋଲି କୋର୍ଯାକ ଆଗରୁ ଜାଣିପାରିଥିଲେ । ଫଳରେ ତାଙ୍କ ରଚିତ ଅଳ୍ପ କିଛି ବହି ଅନାଥାଶ୍ରମ "ହୋମ୍‌ରେ" ରହିଗଲି । ଆଉ କିଛି ବଲାନୀରେ ଥିବା ଅନାଥାଶ୍ରମ "ଆମ ଘର"ର କାନ୍ଥରେ ଲୁଚାଇ ରଖାଯାଇଥିଲି ।

ଅକ୍ଟୋବର ମାସରେ ଜର୍ମାନ ଆଦେଶନାମା ଜାରି ହେଲି ଯେ ଇହୁଦୀମାନେ ଗୋଟିଏ ନିର୍ଦ୍ଦିଷ୍ଟ ଇଲାକାରେ ରହିବେ । ଇହୁଦୀ ବସ୍ତିର ଚାରିପାଖରେ ଇଟାର ଏକ ପାଚେରୀ ତିଆରି କରି ଦିଆଗଲି । ଅନ୍ୟାୟ ଆଗରେ ମୁଣ୍ଡ ନୁଆଁଇ ଛିଡ଼ା ନ ହେବା ପାଇଁ କୋର୍ଯାକ ପୂର୍ବପରି ନିଜ ସ୍ୱଭାବରେ ଅଟଳ ରହିଲେ । ପାଚେରୀ ସେ ପାଖରେ ଥିବା ଆର୍ଯ୍ୟ ଇଲାକାର ବନ୍ଧୁମାନଙ୍କୁ ବିଦାୟ ଜଣାଇ କୋର୍ଯାକ ବେଖାତିରିଆ ଢଙ୍ଗରେ ବୁଲାବୁଲି କଲେ ।

ଘରକାନ୍ଥର ନିକଟ ଇଲାକାକୁ ଯିବା ପୂର୍ବରୁ କୋର୍ଯାକ ବନ୍ଧୁମାନଙ୍କୁ ଗୋଟିଏ ଅନୁରୋଧ କଲେ । ତାହା ହେଲା, ଅନାଥାଶ୍ରମ ପାଇଁ ଜର୍ମାନମାନେ ଦେଇଥିବା କ୍ୱାର୍ଟରଗୁଡ଼ିକୁ ରଙ୍ଗୀନ କାଗଜ ଓ ରଙ୍ଗ ତୂଳୀରେ ଚିତ୍ର ଆଙ୍କି ସଜାଇଦେବା । ଯେଉଁ କ୍ୱାର୍ଟରଗୁଡ଼ିକୁ ତରୁଣମାନଙ୍କର ବନ୍ଦୀଶାଳା ଭାବରେ ବ୍ୟବହାର କରାଯାଉଥିଲି, ସେହି କ୍ୱାର୍ଟରଗୁଡ଼ିକୁ ଅନାଥାଶ୍ରମ ପାଇଁ ଦିଆଯାଇଥିଲି । ତେଣୁ ଏହି କ୍ୱାର୍ଟର-ଗୁଡ଼ିକର ଚେହେରା ବଦଳାଇ ଦେବାପାଇଁ କୋର୍ଯାକ କାନ୍ଥଗୁଡ଼ିକୁ ଚିତ୍ରକଳା

ଆଦରେ ରଙ୍ଗେଇ ଉଜ୍ଜ୍ୱଳ କରି ଦେଖାଇବା ସକାଶେ ଇଚ୍ଛା କରୁଥିଲେ । ଯେତେବେଳେ ପରିଜନଙ୍କର ସମସ୍ତ ଆସି ଉପନୀତ ଏବଂ ଯେତେବେଳେ ତାଙ୍କର ମହାନ କାର୍ଯ୍ୟଧାରାଟି ଧ୍ୱଂସ ହେବାକୁ ଅପେକ୍ଷାରତ, ସେତେବେଳେ ତାଙ୍କର ଏହି ପଦକ୍ଷେପ ସାହସ ଓ ଦାୟିତ୍ୱବୋଧର ପ୍ରତୀକ ଭାବରେ କାମ କରିବ ବୋଲି କୋର୍ଜାକ ଆଶା ବାନ୍ଧିଥିଲେ ।

## (୨୭) ସ୍ୱପ୍ନ ଏବଂ ବାସ୍ତବତା

୧୯୪୦ ମସିହା ଅକ୍ଟୋବର ୧୪ ତାରିଖରେ ଜର୍ମାନ ନିର୍ଦ୍ଦେଶନାମା ପ୍ରକାଶ ପାଇଲା ଯେ ସବୁ ଇହୁଦୀ ଓ୍ୱାର୍ସୋ ଟାଉନ୍‌ର ଗୋଟିଏ ପାର୍ଶ୍ୱରେ ବାସକରିବେ । ରାସ୍ତାରେ ଡାକବାଜା ସାହାଯ୍ୟରେ ଏହା ଘୋଷଣା କରାଯାଇଥିଲା । କାନ୍ଥମାନଙ୍କରେ ବିଜ୍ଞାପନମାନ ଟାଙ୍ଗିଦିଆଗଲା । ଦୁଇ ସପ୍ତାହ ଭିତରେ ଏହି ନିର୍ଦ୍ଦେଶକୁ କାର୍ଯ୍ୟକାରୀ କରିବା ପାଇଁ ଇହୁଦୀମାନଙ୍କ ଉପରେ ହୁକୁମ ଜାହିର କରାଗଲା । ଶେଷ ତାରିଖଟିକୁ ଆଉ ଦୁଇ ସପ୍ତାହ ପାଇଁ ବଢ଼ାଇ ଦିଆଗଲା । ନଭେମ୍ବର ୧୧ ତାରିଖରେ ଇହୁଦୀ ବସ୍ତିଟିକୁ ସୁରକ୍ଷିତ ବନ୍ଦ କରିଦିଆଗଲା ।

କୋର୍ଜାକଙ୍କର ଅନାଥାଶ୍ରମଟି ସହରର ଆର୍ଯ୍ୟ ଇଲାକାରେ ଅବସ୍ଥିତ ଥିଲା । ୯୨—କ୍ରୋଚ୍‌ମାଲ୍‌ନା ଗଳିରେ ଅନାଥାଶ୍ରମଟିକୁ ରଖିବା ସକାଶେ କୋର୍ଜାକ ପ୍ରାଣମୂର୍ଚ୍ଛା ଉଦ୍ୟମ କରି ଶେଷରେ ବିଫଳ ହେଲେ । ଜର୍ମାନର କଡ଼ା ନିର୍ଦ୍ଦେଶକୁ ଅମାନ୍ୟ କରିବା ସମ୍ଭବ ନଥିଲା । ଜର୍ମାନ ପ୍ରଶାସକଙ୍କ ସହ କୋର୍ଜାକଙ୍କର ଯୁକ୍ତିତର୍କ ଆଦି ନିରର୍ଥକ ଥିଲା । ଶେଷରେ ବାଧ୍ୟହୋଇ କୋର୍ଜାକ ଅନାଥାଶ୍ରମଟିକୁ ଏକ ଉପଯୁକ୍ତ ଜାଗାକୁ ଉଠାଇନେବା ପାଇଁ ସ୍ଥିର କଲେ । ଦୁର୍ଭାଗ୍ୟକ୍ରମେ ଗ୍ରେସ୍‌ଲର୍‌ଙ୍କ ଟେକ୍‌ନିକାଲ କଲେଜ ସହ ଏକ ଚୁକ୍ତିନାମା ଲେଖାହେଲା । ଟେକ୍‌ନିକାଲ କଲେଜଟି ୯୨—କ୍ରୋଚ୍‌ମାଲ୍‌ନା ଗଳିକୁ ଅକ୍ତିଆର କରିବାର କୌଣସି ଯୋଜନା ନଥିଲା । ଅନାଥାଶ୍ରମଟି ଇହୁଦୀବସ୍ତି ପରିସୀମା ଭିତରେ ଥିବା ଗ୍ରେଜ୍‌ନା ଗଳିର ସ୍କୁଲ କ୍ୟାମ୍ପସକୁ ସ୍ଥାନାନ୍ତରିତ କରିବା ପାଇଁ ସେ ଭାବିଲେ ।

ଡାକ୍ତର କୋର୍ଜାକ, ଷ୍ଟିଫା ଓ୍ୱିଲିଜ୍‌ନ୍‌ସ୍କା, ସେମାନଙ୍କର ଶାନ୍ତଶିଷ୍ଟ ସ୍ୱଭାବସୁଲଭ ଢଙ୍ଗରେ ଅତି ଶୃଙ୍ଖଳା ତଥା ଦକ୍ଷତାର ସହ ଅନାଥାଶ୍ରମଟିକୁ ସ୍ଥାନାନ୍ତର କରାଇବା ପାଇଁ ବ୍ୟବସ୍ଥା କଲେ । ନିଜେ ଡାକ୍ତର ପିଲମାନଙ୍କୁ ଅତି ଯତ୍ନର ସହ ପ୍ରସ୍ତୁତ କରାଇନେଲେ । ହସ ଖୁସିରେ ଅନୁଷ୍ଠାନଟି ସ୍ଥାନାନ୍ତରିତ ହେଲା । ପ୍ରକୃତରେ

ଏ ସମୟରେ ଅନାଥାଶ୍ରମ ତରଫରୁ ଗୋଲ୍ଡାଓ୍ୱେକୁ ବାର୍ଷିକ ଗ୍ରୀଷ୍ମାବକାଶ ଅବ-ସରରେ ଯିବାର ଥିଲା ।

ଅନାଥାଶ୍ରମ ତଥା ପିଲାମାନଙ୍କ ପ୍ରତି ପଡ଼ିଥିବା ବିପଦର କଷାଘାତରେ କୋର୍ଚ୍ଚାକଙ୍କ ହୃଦୟ ବିଦୀର୍ଣ୍ଣ ହୋଇଯାଉଥିଲା । ଘୃଣା ତଥା ବିରକ୍ତିରେ କୋର୍ଚ୍ଚାକଙ୍କ ଭିତରଟା ଜଳିଉଠୁଥିଲା । କିନ୍ତୁ, ଏହି ଅପ୍ରୀତିକର ପରିସ୍ଥିତିରେ ଆଉ କୌଣସି ପ୍ରକାର ପ୍ରତିକାର କରିବାର କ୍ଷମତା ତାଙ୍କ ପାଖରେ ନଥିଲା ସେ କଥାଟିକୁ ହାଲୁକା କରିଦେବା ପାଇଁ ଆପ୍ରାଣ ଚେଷ୍ଟା କରୁଥିଲେ । ଜର୍ମାନମାନଙ୍କ କାର୍ଯ୍ୟଧାରାରେ ନିଜେ ଅତ୍ୟଧିକ ଚକିତ ହୋଇ ପଡ଼ୁଥିବାରୁ ସେ ନିଜକୁ ପରିହାସ ତଥା ଭର୍ତ୍ସନା କରୁଥିଲେ ।

କୋର୍ଚ୍ଚାକ ବନ୍ଧୁ ହାନାଓଲ୍‌କଜାଙ୍କ ନିକଟକୁ ତାଙ୍କର ଯୋଜନା ସମ୍ପର୍କରେ ଲେଖିଥିଲେ । ଅନାଥାଶ୍ରମକୁ ସେ କିପରି ସ୍ଥାନାନ୍ତରିତ କରିବେ ସେ ସମ୍ପର୍କରେ ବର୍ଣ୍ଣନା କରିଥିଲେ । ଗୋଟିଏ ନାଟପାଟି ଯେପରି ତା ଦଳବଳକୁ ଗୋଟିଏ ଜାଗାରୁ ଆଉ ଗୋଟିଏ ଜାଗାକୁ ନାଟ୍ୟ ପ୍ରଦର୍ଶନ ପାଇଁ ଉଠାଇନିଏ, ତଥା ବାଟରେ ଏଥିପାଇଁ ବିଭିନ୍ନ ପ୍ରକାର ପ୍ରଚାର କରିଥାଏ, ସେ ଅନାଥାଶ୍ରମଟିକୁ ଠିକ୍ ସେହିପରି ସ୍ଥାନାନ୍ତର କରାଇବେ । ପିଲାମାନଙ୍କୁ ନେଇ ଏକ ପଥପ୍ରାନ୍ତ ନାଟକ କରାଇବା ପାଇଁ ସେ ଯୋଜନା କରିଥିଲେ । ଏଥିରେ ପିଲାମାନେ ଲମ୍ବାଧାଡ଼ିରେ ସୈନ୍ୟବାହିନୀ ଭଳି ପାଦପକାଇ ଚାଲିବେ । ହାତରେ ଦୀପ, ଚନ୍ଦକଳା, ଶେଯଚଦର, ପୋଷା ପଶୁପକ୍ଷୀ ରଖାଯାଇଥିବା ପିଞ୍ଜରା ଆଦି ଧରିଥିବେ ।

କେତେଦୂର ତାଙ୍କର ଏହି ଯୋଜନା କାର୍ଯ୍ୟକାରୀ ହୋଇପାରିଲା, ତାହା କାହାରିକୁ ଜଣାନାହିଁ । ମାତ୍ର ଏ କଥା ସତ୍ୟ ଯେ ସେ ୧୬ କ୍ରୋଚ୍‌ମାଲ୍‌ନା ଗଳିର ଭଲାବକାରୀଙ୍କଠାରୁ ଯେଉଁ ଶେଷ ଟ୍ରକ୍ ଆଳୁ ନେଇଆସୁଥିଲେ, ତାହାକୁ ଜର୍ମାନ କର୍ତ୍ତୃପକ୍ଷ ଅଟକାଇଥିଲେ ଏବଂ ଏଥିପାଇଁ କୋର୍ଚ୍ଚାକଙ୍କୁ ଦଣ୍ଡ ଦେଇଥିଲେ । କୋର୍ଚ୍ଚାକ ସଙ୍ଗେ ସଙ୍ଗେ ଓ୍ୱାହୋର ଗେଷ୍ଟାପୋଙ୍କ ମୁଖ୍ୟ ଦପ୍ତର ବ୍ଲାଙ୍କ ରାଜପ୍ରାସାଦକୁ ଯାଇଥିଲେ ଏବଂ ଆଳୁଟ୍ରକ୍‌ଟିକୁ ଛାଡ଼ିଦେବାପାଇଁ ଦାବି କରିଥିଲେ । ଏ ସମୟରେ ସେ ଯେ ପୋଲଣ୍ଡ ସେନାଶ୍ରେଣୀର ମେଡ଼ିକାଲ ଅଫିସର ପୋଷାକ ପିନ୍ଧି ବାହାରି ଯାଇଥିଲେ । ଇହୁଦୀମାନଙ୍କୁ ଯେଉଁ ପୋଷାକ ପିନ୍ଧିବାକୁ ନିର୍ଦ୍ଦେଶ ଦିଆଯାଇଥିଲା, ତାହା କୋର୍ଚ୍ଚାକ ଛାଡ଼ିଯାଇଥିଲେ । ନିଜର ନୀତି ଦୃଷ୍ଟିରୁ ସେ ଏହି ନିୟମଟିକୁ ଜାଣିଶୁଣି ମାନୁନଥିଲେ ।

କୋର୍ଚ୍ଚାକ ପାଇଁ ସେଦିନଟି ଥିଲା ଏକ ଦୁର୍ଦ୍ଦିନ । ଜର୍ମାନମାନେ କୋର୍ଚ୍ଚାକଙ୍କୁ ଇହୁଦୀ ବୋଲି ଜାଣି ବହୁତ ଅପମାନିତ କରିଥିଲେ, ପିଟିଥିଲେ ଏବଂ କୁତ୍ସିତ

ପାଓ୍ୱିକ ବନ୍ଦୀଶାଳାରେ ଭର୍ତ୍ତି କରିଥିଲେ । ରାଜଧାନୀରେ ଏହି ବନ୍ଦୀଶାଳାଟି ସବୁଠାରୁ ବଡ଼ ଜଘନ୍ୟ ବନ୍ଦୀଶାଳା ଭାବରେ ପରିଚିତ ଥିଲା । ଏହି ବନ୍ଦୀଶାଳାଟି ସାଧାରଣତଃ ଦୁର୍ଦ୍ଦାନ୍ତ ଅପରାଧୀମାନଙ୍କ ପାଇଁ ଉଦ୍ଦିଷ୍ଟ ଥାଏ । ଏହି ବନ୍ଦୀଶାଳାରେ କୋଟାକ କିଛିମାସ ବନ୍ଦୀ ଭାବରେ ରହିଲେ ।

ଇହୁଦୀମାନେ ଯେତେବେଳେ ତାଙ୍କୁ ଜାମିନରେ ଆସିବେ କି ବୋଲି ପଚାରିଲେ, ସେ ମନାକରିଦେଲେ । ମାତ୍ର କିଛି ମାସ ପରେ ତାଙ୍କର ତିନିଜଣ ପୁରାତନ ଛାତ୍ର, ବେଞ୍ଜାମିନ୍ କ୍ରକର, ହାରି କାଲସ୍‌ଜର ଏବଂ ଜାଏମ୍ ବ୍ରୁରେଜିଥ୍ ତିନିହଜାର ଜ୍ଲୋଟି ଯୋଗାଡ଼କରି ତାଙ୍କୁ ବନ୍ଦୀଶାଳାରୁ ଜାମିନ୍‌ରେ ଆଣିଥିଲେ ।

ମାତ୍ର ୧୯୪୧ ମସିହା ମାର୍ଚ୍ଚ ୧୪ ତାରିଖରେ ଯେତେବେଳେ ତାଙ୍କର ବିଚାର ହେଲା, ସେତେବେଳେ ଆଉ ତିନି ହଜାର ଜ୍ଲୋଟି ଜୋରିମାନା ଦେବାପାଇଁ ନିର୍ଦ୍ଦେଶ ଦିଆଗଲା । କାଳେ ଡାକ୍ତର କୋର୍ଯାକ ଏ ଅର୍ଥ ଯୋଗାଡ଼ କରିପାରିବେ, ଏହି ଆଶା ନେଇ ପୋଲଣ୍ଡୀୟ ପୋଲିସ୍ ଜଣଙ୍କ ଯେତେଦୂର ସମ୍ଭବ ଆଦେଶନାମାଟିକୁ ଡାକ୍ତରଙ୍କୁ ଦେବାରେ ବିଲମ୍ବ କରିଥିଲେ । ମାତ୍ର ବାଧ୍ୟହୋଇ ଶେଷ ତାରିଖର ପୂର୍ବଦିନ (ମେ ୩୧ ତାରିଖରେ) ସେ ଏହି ନିର୍ଦ୍ଦେଶଟିକୁ ଡାକ୍ତରଙ୍କ ହାତକୁ ବଢ଼ାଇ ଦେଇଥିଲେ । ଯଦିଓ ଏହି ଜୋରିମାନାର ଅର୍ଥକୁ ମାସକୁ ମାସ କିସ୍ତିରେ ଦେବାକୁ ଅନୁମତି ମିଳିଥାନ୍ତା, ତଥାପି କୋର୍ଯାକ ଏତେ ପରିମାଣର ଅର୍ଥ ଭରଣା କରିବାକୁ ଅସମର୍ଥ ହୋଇଥାନ୍ତେ । ତେଣୁ ଡାକ୍ତରଙ୍କ ପାଖରେ ଆଉ କୌଣସି ପ୍ରକାର ଉପାୟ ନଥିଲା । ସେ ପୁନର୍ବାର ବନ୍ଦୀଶାଳାକୁ ପ୍ରତ୍ୟାବର୍ତ୍ତନ କଲେ ।

ଶୀତଦିନର ଶେଷଆଡ଼କୁ କୋର୍ଯାକଙ୍କୁ ବନ୍ଦୀଶାଳାରୁ ମୁକ୍ତ କରିଦିଆଗଲା । ସେ ଇହୁଦୀ ବସ୍ତିରେ ଥିବା ଅନାଥାଶ୍ରମକୁ ଫେରିଆସିଲେ । ତାଙ୍କ ଅନୁପସ୍ଥିତିରେ ଷ୍ଟିଫାଇଦୀ ଅନାଥାଶ୍ରମର ଟିକିନିଖି ଦାୟିତ୍ୱ ତୁଲାଉଥିଲେ । ସତେ ଯେପରି ସେ ଏକ ଐଶ୍ୱରୀୟ ଶକ୍ତି ଧାରଣ କରି ଏକ ଦୃଢ଼ ଖମ୍ବ ଭାବରେ ଛିଡ଼ାହୋଇ ଦକ୍ଷତାର ସହ ସବୁକିଛି ସମ୍ଭାଳି ନେଇଯାଉଥିଲେ ।

କ୍ରୋଲ୍‌ନ୍‌ଡ଼ା ଗଳିର ନୂଆ ଜାଗାଟିରେ ପିଲମାନେ ଅପେକ୍ଷାକୃତ ଭଲରେ ଅପେକ୍ଷାକୃତ ଭଲରେ ରହିଥିଲେ । କିନ୍ତୁ ୧୯୪୧ ମସିହାରେ ଅନାଥାଶ୍ରମଟିକୁ ପୁନର୍ବାର ସ୍ଥାନାନ୍ତରିତ କରିବାପାଇଁ ଜର୍ମାନରୁ ନିର୍ଦ୍ଦେଶ ଆସିଲା । ଏଥର ଅନାଥାଶ୍ରମକୁ "କ୍ଷୁଦ୍ର ଇହୁଦୀ" ବସ୍ତିକୁ ସ୍ଥାନାନ୍ତର କରିବାକୁ ପଡ଼ିଥିଲା । ଏଠାରେ ଅନାଥାଶ୍ରମର ଅବସ୍ଥା ଏତେ ଭଲ ନଥିଲା ।

ଅନାଥାଶ୍ରମଟି ୯-ସ୍ଲିସ୍କା ଗଳି ଓ ୧୬ ସିଏନ୍ନା ଗଳିର ବୃହତ୍ ଖଣ୍ଡରେ ଅବସ୍ଥିତ ଥିଲା । ଅନାଥାଶ୍ରମଟି ଏତେବଡ଼ କୋଠାର ଦୁଇଟି ମହଲକୁ ଅଧିକାର କରିଥିଲା ।

ହଲ୍‌ଗୁଡ଼ିକ ବହୁତ ବଡ଼ ବଡ଼ ଥିଲା । ବାସ୍ତବରେ ଗୋଟିଏ ହଲ୍ ଥିଲା ଏକ ରଙ୍ଗମଞ୍ଚ । ଏଥିରେ ଦର୍ପଣ ଓ ସ୍ତମ୍ଭମାନ ଟଙ୍ଗାଯାଇଥିଲା । ଏଭଳି ଏକ ହଲ୍‌ରେ ୨୦୦ ଜଣ ପିଲାଙ୍କୁ ରଖିବା ବଡ଼ କାଠିକର ପାଠ ଥିଲା । ସେମାନଙ୍କୁ ସାମାନ୍ୟ ଆରାମ ଯୋଗାଇ ଦେବାପାଇଁ ସମ୍ଭବ ହୋଇ ପାରୁନଥିଲା ।

ବହୁତ ଅସୁବିଧା ସତ୍ତ୍ୱେ ଷ୍ଟିଫା ଓ୍ୱିଲ୍‌ଜ୍‌ନ୍‌ସ୍କା ଅନେକ କଷ୍ଟ ସ୍ୱୀକାର କରି ହଲ୍‌ଟିକୁ ସଜାଡ଼ି ଦେଇଥିଲେ ଯଦ୍ୱାରା ଏହା ଏକ ଡରମିଟୋରୀ ଭଳି କାମ କରି-ପାରିଲା । ପିଲାମାନେ ରାତିରେ ଏଠାରେ ଶୋଉଥିଲେ ଏବଂ ଦିନବେଳା ପାଠଶାଳାକୁ ଭୋଜନାଳୟ ଭାବରେ ଏହା ବ୍ୟବହୃତ ହେଉଥିଲା । ଷ୍ଟିଫା ଉପର ହଲ୍‌ରେ ଅଫିସ୍ କରି ରହୁଥିଲେ । ଡାକ୍ତର କେତୋଟି ରୋଗୀଣା ପିଲାଙ୍କ ସାଙ୍ଗରେ ଗୋଟିଏ ଏକଣା ଘରେ ଶୋଉଥିଲେ ଏବଂ ରାତିରେ ଏହି ରୋଗୀଣା ପିଲାଙ୍କର ସେବା ଶୁଶ୍ରୂଷା କରୁଥିଲେ । ଦିନବେଳା ଡାକ୍ତରଙ୍କ ପାଇଁ ଅଲଗା କୋଠରି ଦରକାର ହେଉନଥିଲା । କାରଣ ଦିନବେଳା ସେ ବାହାରକୁ ଚାଲିଯାଉଥିଲେ । ଦୁଇଶହ ଅନାଥ ପିଲାଙ୍କପାଇଁ ଖାଦ୍ୟ ଯୋଗାଡ଼ କରିବା ସକାଶେ କେଉଁଠି ଯୁକ୍ତି ତର୍କ କରୁଥିଲେ, ଆଉ କେଉଁଠି କାହାକୁ ଭୟ ଦେଖାଉଥିଲେ, କାହାକୁ ବୁଝାଉଥିଲେ, ଆଉ କେଉଁଠି ଭିକ୍ଷାଥାଳି ଧରି ହାଜର ହେଉଥିଲେ ତ ଆଉ କେତେବେଳେ ସନ୍ତାପିତ ହୃଦୟରେ ମୃତ୍ୟୁକୁ ଅପେକ୍ଷା କରୁଥିଲେ ।

ଡାକ୍ତରଙ୍କ ତତ୍ତ୍ୱାବଧାନରେ ଚଉଦ ବର୍ଷରୁ ସାନ ଅଳ୍ପ କେତେଜଣଙ୍କୁ ରଖାଯାଇଥିଲା । ଏହା ସତ୍ତ୍ୱେ ତାଙ୍କୁ ପୂର୍ବ ଅପେକ୍ଷା ଅଧିକ ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼ୁଥିଲା । ଇହୁଦୀ ପରିଷଦ, ଇହୁଦୀ ବସ୍ତି ପରିଚାଳନା ପାଇଁ ଜର୍ମାନ ପାଖରେ ଉତ୍ତରଦାୟୀ ଥିଲା । ପ୍ରକୃତରେ କହିବାକୁ ଗଲେ ସେମାନଙ୍କୁ ଗେଷ୍ଟାପୋଙ୍କ ହାତବାରିସୀ ଭାବରେ କାମ କରିବାକୁ ପଡ଼ୁଥିଲା । ଜର୍ମାନର କଟକଣାଗୁଡ଼ିକ ଯେପରି ଇହୁଦୀମାନଙ୍କ ପାଖରେ ଲାଗୁ ହେବ, ସେଥିପାଇଁ ଇହୁଦୀ ପରିଷଦକୁ ବ୍ୟବହାର କରାଯାଉଥିଲା ।

ଇହୁଦୀ ପରିଷଦର ଦାୟିତ୍ୱ ଥିଲା ଖାଦ୍ୟ, ଦ୍ରବ୍ୟ ଭାଗକରି ବଣ୍ଟନ କରିବା । ମାତ୍ର ଜର୍ମାନମାନଙ୍କଠାରୁ ଯେତିକ ଖାଦ୍ୟ ପାଇଁ ଅନୁମତି ମିଳୁଥିଲା ତାହା ନିଅଣ୍ଟ ପଡ଼ୁଥିଲା । ଖାଦ୍ୟଦ୍ରବ୍ୟ ଅତ୍ୟନ୍ତ ନିମ୍ନମାନର ଥିଲା । ଇହୁଦୀ ପରିଷଦ ସାଙ୍ଗରେ ବି କୋର୍ଚାକଙ୍କୁ ଖାଦ୍ୟପାଇଁ କସରତ କରିବାକୁ ପଡ଼ୁଥିଲା । ଏହାଛଡ଼ା ସେ ଅନ୍ୟଆଡ଼େ ବି କିଛି ପାଇବା ପାଇଁ ହାତ ପତାଉଥିଲେ । ତାଙ୍କ ସ୍ୱାଭାବିକ ବଳବୀର୍ଯ୍ୟ, ଉତ୍ସାହ ସବୁକିଛି ନିଃଶେଷ ହୋଇଯାଉଥିଲା । ବନ୍ଦୀଶାଳାରେ ଏତେଦିନ ରହିବା, ଉପଯୁକ୍ତ ଖାଦ୍ୟାଭାବ, ଆସନ୍ନ ଭାବୀ ବିପଦର ଆଶଙ୍କା ଆଦି ତାଙ୍କୁ ନିରାଶ କରୁଥିଲା ।

ଯାନ ଇହୁଦୀ ବସ୍ତିରେ ଏତେ ପିଲାଙ୍କୁ ଖାଇବାକୁ ଦିଆଯିବ ଏବଂ ବାହାରୁ କିଛି ମିଳିବାର ବି ଆଶା ନାହିଁ—ଏଭଳି ପରିସ୍ଥିତି କୋର୍ଯାକଙ୍କୁ ହତାଶାର ଚକ୍ରବ୍ୟୂହ ଭିତରକୁ ଟାଣି ନେଉଥିଲା । ମାତ୍ର ଏହା ବେଶୀ ସମୟପାଇଁ ରହୁନଥିଲା । ନିଜର ସମସ୍ତ କଷ୍ଟ ଯନ୍ତ୍ରଣାକୁ ଭ୍ରୂକ୍ଷେପ ନକରି ସେ ପିଲାମାନଙ୍କ ପାଇଁ ଉଦ୍ଯତ ରହୁଥିଲେ । ତାଙ୍କ ଆଖି ଆଗରେ ନାଚଉଠୁଥିଲେ ପିଲାମାନେ । ପିଲାମାନେ ହିଁ ଥିଲେ ତାଙ୍କ ପ୍ରେରଣାର ଉତ୍ସ । ପିଲାମାନଙ୍କର ଜୀବନ ତାଙ୍କର ଦାୟିତ୍ୱ ବୋଲି ସେ ଗ୍ରହଣ କରି-ନେଇଥିଲେ ଏବଂ ସେହି ଅନୁଯାରେ ନିଜକୁ କାମରେ ଲଗାଇ ଦେଉଥିଲେ । ଜଣେ ଡାକ୍ତର ହିସାବରେ ସଂଗ୍ରାମରତ ଦୈନନ୍ଦିନ ଜୀବନର ପ୍ରତିଟି କଥାକୁ ବୁଝିବା ତାଙ୍କର ଅନ୍ୟତମ ଅଭ୍ୟାସ ଥିଲା ।

ଇହୁଦୀ ବସ୍ତିରେ ପିଲାମାନଙ୍କ ସାଙ୍ଗରେ ଥିଲାବେଳେ ସେ ହାସକୌତୁକ ମାଧ୍ୟମରେ ପିଲାଙ୍କ ମନକୁ ଫୁର୍ତ୍ତି କରାଇ ରଖୁଥିଲେ । ମନେହେଉଥିଲା, ସତେ ଯେପରି ଏହି ବିଚିତ୍ର ମଣିଷଟିକୁ ଘୂରପାଟରେ ଘେରିରହିଥିବା ଦୁଃଖ ଯନ୍ତ୍ରଣା, ଦୀନହୀନ ଅବସ୍ଥା ଆଦି ଆଦୌ ପ୍ରବେଶ କରିପାରୁନଥିଲା । ଡାକ୍ତରଙ୍କର ଜୀବନ ସଂଗ୍ରାମରେ ଚିରସହଚରୀ ହୋଇ କାମ କରୁଥିବା ଦିଦୀ ଷ୍ଟିଫା ଓ୍ୱିଲିକନ୍ସ୍କାଙ୍କ ଭାଷାରେ "—କୋର୍ଯାକ୍ କି ପ୍ରକାର ଦୁଃଖଯନ୍ତ୍ରଣାଦି ସହ୍ୟ କରି ଚାଲିଛନ୍ତି, ତାହା କେବଳ ଈଶ୍ୱର ହିଁ ଜାଣନ୍ତି ।"

ଇହୁଦୀ ବସ୍ତିରେ ଅନେକ କିଛିର ଆତ୍ମାହୁତି ସତ୍ତ୍ୱେ ଅବସ୍ଥା ଅଧିକ ସମସ୍ୟାବହୁଳ ହୋଇପଡ଼ୁଥିଲା । ସତେ ଯେପରି ଛାତ ନଥିବା ଏକ ବନ୍ଦୀଶାଳାରେ ଅନେକ ଲୋକ ବନ୍ଦୀ ଭାବରେ ରହିଥିଲେ । ସମସ୍ତେ ମୃତ୍ୟୁର ଛାୟାରେ ଜୀବନ ବିତାଉଥିଲେ । ନିଃସଙ୍ଗତାରେ ଛଟପଟ ହେଉଥିଲେ । ବଞ୍ଚିବାର ବାସନା ସେମାନଙ୍କୁ ଅଧିକରୁ ଅଧିକ ସ୍ୱାର୍ଥପର ତଥା ଆତ୍ମକୈନ୍ଦ୍ରିକ କରିପକାଉଥିଲା । ଅନେକ ଅତ୍ୟନ୍ତ ଲୋଭଖୋର ହୋଇ ପଡ଼ିଥିଲେ । ସେମାନେ ପାଖ ଲୋକଙ୍କ ନିହାତି ଆବଶ୍ୟକ ଜିନିଷପତ୍ରକୁ ନିଜ ସୁବିଧାପାଇଁ ଉଠେଇ ନେବାପାଇଁ ପଛାଉନଥିଲେ । ଆଉ କେତେକ ହିଂସ୍ର ପ୍ରକାର କାମପାଇଁ ଲାଗିଯାଉଥିଲେ । ସର୍ବସାଧାରଣଙ୍କ ମଙ୍ଗଳପାଇଁ ଯେତେବେଳେ ସମସ୍ତଙ୍କୁ ଏକାଠି କରିବାକୁ ପଡ଼ୁଥିଲା, ସେତେବେଳେ ସେମାନେ ଲାଗିପଡ଼ୁଥିଲେ ।

ଏହିଭଳି ଏକ ଅଦ୍ଭୁତ ବାତାବରଣ ଭିତରେ କୋର୍ଯାକ୍ ତାଙ୍କ ପିଲାମାନଙ୍କ ପାଇଁ ସଂଗ୍ରାମ ବଜାୟ ରଖିଥିଲେ । ଏଥିପାଇଁ ସେ ବେଳେବେଳେ ଅତ୍ୟନ୍ତ ଦୟନୀୟ ପରିସ୍ଥିତି ଭିତର ଦେଇ ଗତି କରୁଥିଲେ । ପ୍ରତିଦିନ ଖାଦ୍ୟରେ ଟଣ୍ଡେ ପାଉଁରୁଟି, ଖଣ୍ଡେ ବନ୍ଧ, ଗ୍ଲେଟ ଗିନାରେ ଗିନାଏ କଟା କନ୍ଦାକୋବି, ଆଉ ସିଝା ଆଳୁ ଟିକିଏ ଛଡ଼ା ଅନ୍ୟ କୌଣସି ଖାଦ୍ୟ ମିଳୁନଥିଲା । କୋର୍ଯାକଙ୍କ ସଂଗ୍ରାମ କେତେ କଷ୍ଟଦାୟକ ଥିଲା, ତାହା ନ ଦେଖିଲେ ଲୋକ ଆଦୌ ବିଶ୍ୱାସ କରିପାରିବ

ନାହିଁ । ଔଷଧ, ଭିଟାମିନ୍ ଆଦି କିଛି ମିଳୁ ନଥିଲା । ସେ କେବଳ ଅଳ୍ପ କିଛି ଅଧିକ ପରିମାଣର ଖାଦ୍ୟ ଯୋଗାଡ଼ କରିପାରୁଥିଲେ । ବେଳେବେଳେ ତାଙ୍କ କାର୍ଯ୍ୟଶୈଳୀ ଅତ୍ୟନ୍ତ ଚମତ୍କାର ଭାବରେ, ଫଳପ୍ରଦ ହେଉଥିଲା । ସେ ଅନେକ ଚିଠି ଲେଖୁଥିଲେ, ଭିକ୍ଷା ମାଗୁଥିଲେ, ଜବରଦସ୍ତ କରୁଥିଲେ ଏବଂ ଭୟ ଦେଖାଉଥିଲେ । ବେଳେବେଳେ ତାଙ୍କ ଅଭିପ୍ସା ପୂରଣ ହୋଇଯାଉଥିଲା ।

ଅନେକ ସମୟରେ କୋର୍ଜାକ ଜାଣିଶୁଣି ଯିହୁଦୀ ସାଧାରଣ ପରିଷଦରେ ନିଷ୍ପତ୍ତି ନେବାକୁ ଥିବା ବିଷୟବସ୍ତୁକୁ ଅନାଥାଶ୍ରମ ଭିତରକୁ ଟାଣି ଆଣୁଥିଲେ । ଏଥିପାଇଁ ତାଙ୍କ ବିରୋଧରେ ଅଭିଯୋଗମାନ ଉଠାଯାଉଥିଲା । ଅଭିଯୋଗଗୁଡ଼ିକ ସତ୍ୟବୋଲି କୋର୍ଜାକ ମାନିଯାଉଥିଲେ । ମାତ୍ର ଏସବୁ ସେ ପିଲାଙ୍କ କଲ୍ୟାଣପାଇଁ କରୁଥିଲେ ବୋଲି ସମସ୍ତେ ଜାଣିଥିଲେ ।

ବେଳେବେଳେ ଯିହୁଦୀ ବସ୍ତିର ପରିସ୍ଥିତି ଅତ୍ୟନ୍ତ ଭୟଙ୍କର ହୋଇଉଠୁଥିଲା । ହିଂସାକାଣ୍ଡର ଉନ୍ମତ୍ତତାରେ ପରିସ୍ଥିତି ଅସମ୍ଭାଳ ହୋଇପଡ଼ୁଥିଲା । ଏ ସମୟର ସମସ୍ତ ଘଟଣାକୁ ବର୍ଣ୍ଣନା କରି ସେ ଜଣେ ବନ୍ଧୁଙ୍କ ପାଖକୁ ଚିଠିଟିଏ ଲେଖିଥିଲେ । ଚିଠିରେ ଲେଖିଥିଲେ ଯେ ସମସ୍ତ ପ୍ରକାର ପ୍ରତିକୂଳତା ଭିତରେ ସେ ବେଳେବେଳେ ହସିଯାଉଥିଲେ । ବସ୍ତିର ଯିହୁଦୀ ପରିଷଦର ଉପର କର୍ମକର୍ତ୍ତାଙ୍କୁ ଖରାପ ଭାଷାରେ ଚିଠି ଦେଲାପରେ ଜୀବନ ବଞ୍ଚାଇବାର ଇଞ୍ଜେକ୍ସନ ସ୍ୱରୂପ ମୁଁ ପିଲାମାନଙ୍କ ପାଇଁ ମାଂସର କବାବ, ଶୁଖିଲା ତଥା ଲୁଣ ମିଶା ଘୁଷୁରି ଜଂଘର ମାଂସ ଏବଂ ଶହେଟି କେକ୍ ପାଇଥିଲି । ଏହି ଖାଦ୍ୟରୁ ପ୍ରତି ପିଲାପାଇଁ ଅଳ୍ପଟିକିଏ ଭାଗ ପଡ଼ୁଥିଲା । ମାତ୍ର ମୋ କଳଗୋଳର ଆଉ ଏକ ଚମତ୍କାରିତା ଥିଲା । ତାହାହେଲା ମୁଁ ପରେ ଆଶାତୀତ ଭାବରେ ଦୁଇଶହ କଲୋଗ୍ରାମ ଆଳୁ ପାଇଥିଲି । କିନ୍ତୁ, ଏଭଳି ମରୀଚିକା ପଛରେ ଧାଇଁ ମୁଁ ସନ୍ତୁଷ୍ଟ ହୋଇ ପାରୁନଥିଲି । ଘନେଇ ଆସୁଥିବା ବିପଦ ଆଗରେ ମୁଁ ଆଶାବାଦ କୁହେଳିକା ଭିତରେ ପ୍ରବେଶ କରି ନିଜ ସ୍ନାୟୁକୁ ନିସ୍ତେଜ କରିଦେବା ପାଇଁ ଇଚ୍ଛା କରୁନଥିଲି । ସତର୍କ ଦୃଷ୍ଟିଭଙ୍ଗୀ ବା ଜାଗ୍ରତ ଭାବକୁ ବଜାୟ ରଖୁଥିଲି । ମୋର ଚେଇଁ ରହିବାର ପ୍ରବୃତ୍ତିକୁ ଶୁଆଇ ଦେବାପାଇଁ ଅନ୍ୟମାନେ ଚାତୁରତାର ସହ ଗୁହ୍ଟୁଥିଲେ । ମାତ୍ର ଦୁଇଶହ ନିରୀହ ପିଲାଙ୍କ ଜୀବନପାଇଁ ମୋତେ ସଦାସର୍ବଦା ଚେଇଁ ରହିବାକୁ ହିଁ ପଡ଼ୁଥିଲା ।

ପୋଲାଣ୍ଡର ଯେଉଁ ସଂସ୍କୃତିସଂପନ୍ନ ବ୍ୟକ୍ତିମାନଙ୍କ ସହ ଯୁଦ୍ଧ ପୂର୍ବରୁ କୋର୍ଜାକଙ୍କର ଏତେ ଭଲ ସଂପର୍କ ଥିଲା, ସେମାନଙ୍କୁ ଯେତେବେଳେ କୋର୍ଜାକ ପରେ ସାକ୍ଷାତ କରିଛନ୍ତି, ସେମାନେ ତାଙ୍କୁ ଅପମାନିତ କରି ବିଦାୟ କରିବାକୁ ପସନ୍ଦ କରିନାହାନ୍ତି । ଗୋଟିଏ ଦିନକୁ ସେ ବର୍ଣ୍ଣନା କରି ଉଲ୍ଲେଖ କରିଛନ୍ତି—କଲ୍ୟାଣ କେନ୍ଦ୍ରର

ଦୁଇଜଣ ଉଚ୍ଚ କର୍ମକର୍ତ୍ତାଙ୍କ ସହ ଏକ କନ୍‌ଫରେନ୍‌ସ ଥିଲା । ପରେ ଥିଲା ଆଉ ଦୁଇଟି ସାକ୍ଷାତକାର । ଏହି ସାକ୍ଷାତକାର ଭିତରୁ ଗୋଟିଏ ସାକ୍ଷାତକାର ମାତ୍ର ଗୋଟିଏ ଧାଡ଼ିରେ ଶେଷ ହୋଇଗଲା·········ତାପରେ ଥିଲା ପରିଷଦର ବୈଠକ ।

କୋର୍ଯାକଙ୍କ ବ୍ୟସ୍ତତା, ଦୁଶ୍ଚିନ୍ତା ତାଙ୍କ ଜୀବନୀ ସୂତ୍ରର ବିଭିନ୍ନ ଜାଗାରେ ପ୍ରକାଶ ପାଇଥିଲା । ଗୋଟିଏ ଜାଗାରେ ସେ ଲେଖିଥିଲେ, "ମୁଁ ଭୁଲି ଆସିଲି । ସବୁ ମିଶି ଥିଲା ସାତ । ଅର୍ଥାତ୍ ସାତୋଟି ଭାଷଣ । ସାତୋଟି ପାହାଚ, ସାତ ଥରକୁ ସାତୋଟି ପ୍ରଶ୍ନ । ଏହା ଫଳସ୍ୱରୂପ ମିଳିଥିଲା ପଚିଶ ଜ୍ଲୋଟି ଏବଂ ଆଉ ଅଧିକ ପାଞ୍ଚୋଟି ମିଳିବ ବୋଲି ପ୍ରତିଶ୍ରୁତି ଦିଆଯାଇଥିଲା । ମାତ୍ର ପୁଅ ଝିଅ ମିଶି ଦୁଇଶହ ପିଲାଙ୍କୁ ଏତିକରେ କପର ରଖିହେବ । ସମସ୍ତେ ବଢ଼ିଲା ବୟସରେ ଉପନୀତ ଏବଂ ସେହି ଅନୁସାରେ ସେମାନଙ୍କର କ୍ଷୁଧା ବି ଅଧିକ ।"

ଏହି ହତଭାଗ୍ୟ କ୍ଷୁଧିତ ଅନାଥ ପିଲାମାନଙ୍କର ଅଭିଭାବକ ଥିଲେ ଡାକ୍ତର ଜାନୁସ କୋର୍ଯାକ୍ । ପିଲାମାନଙ୍କର ପେଟକୁ ମୁଠାଏ ଦାନା ଦେବାକୁ ବସ୍ତୁ ଯୋଗାଡ଼ କରିବା ପାଇଁ ସେ ନିଜର ପନ୍ଥା ଖୋଜୁଥିଲେ । ଯେଉଁଠି ଟିକିଏ ଆଶା ଦିଶୁଥିଲା ସେଇଠି ସେ ହାଜର ହୋଇଯାଉଥିଲେ ଏବଂ ପିଲାଙ୍କ ସକାଶେ କିଛି ମାଗୁଥିଲେ । ଯେଉଁଠି କିଛି ମିଳିବ ବୋଲି ଅନ୍ୟମାନେ ଚିନ୍ତା କରିପାରନ୍ତି ନାହିଁ । କୋର୍ଯାକ୍ ସେହିଭଳି ଜାଗାରେ ପହଞ୍ଚି ହାତ ପତାଇ ଦେଉଥିଲେ । ପିଲାଙ୍କ ସର୍ବନିମ୍ନ ଆବଶ୍ୟକତାକୁ ମେଣ୍ଟାଇବା ଉଦ୍ଦେଶ୍ୟରେ କୋର୍ଯାକ୍ ଅତି ତଳସ୍ତରର ଲୋକମାନଙ୍କ ପାଖରେ ହାଜର ହେବାକୁ ପଛାଉନଥିଲେ । ୧୩-ଲେସ୍‌ନୋ ଗଳିର ଘର ଦୁନାମ ଥିଲା । ଏଠାରେ କୋନ୍ ଏବଂ ହେଲର୍ ଦୁଇଜଣ କଳାବଜାରୀ ରହୁଥିଲେ । ସମସ୍ତ ପ୍ରକାର କଳାବଜାରୀ କାମ ଏ ଦୁଇଜଣଙ୍କ ହାତମୁଠାରେ ଥିଲା । ସେମାନେ ଗୁଣ୍ଡା ଶ୍ରେଣୀର ଲୋକ ଥିଲେ । ଏଥିପାଇଁ ଇହୁଦୀ ବସ୍ତିର ସମସ୍ତେ ଏମାନଙ୍କୁ ଖୁବ ଘୃଣା କରୁଥିଲେ । ଘରର ଚାରିକାନ୍ଥ ଭିତରେ ଥାଇ ସେମାନେ ସାଧାରଣ ଲୋକଙ୍କ ଧନ ଜୀବନ ପରୋକ୍ଷ ଭାବରେ ଲୁଟି ନେଉଥିଲେ । ଇହୁଦୀ ବସ୍ତିର ଏକ ବଡ଼ ସର୍ଭିସ୍ ଏମାନଙ୍କର ଥିଲା । ପରୋକ୍ଷରେ ହେଉ ବା ପ୍ରତ୍ୟକ୍ଷରେ ହେଉ ସେମାନେ ଇହୁଦୀମାନଙ୍କୁ ଶୋଷଣ କରୁଥିଲେ ।

ଏହି ଗୁଣ୍ଡା ତଥା ଧୂର୍ତ୍ତ ଲୋକମାନଙ୍କର କାର୍ଯ୍ୟକଳାପକୁ କୋର୍ଯାକ୍ ବିରୋଧ କରୁଥିଲେ । ମାତ୍ର ଯେତେବେଳେ ଦୁଇଶହ ଅନାଥ ଶିଶୁଙ୍କ ମୁହଁ ଦିଶିଯାଉଥିଲା, ସେତେବେଳେ ସେ ହତାଶ ଏବଂ କିଂକର୍ତ୍ତବ୍ୟବିମୂଢ଼ ହୋଇଯାଉଥିଲେ । ତାଙ୍କ ପାଖରେ ଭଲମନ୍ଦ ବିଚାର କରିବାକୁ ଆଉ କୌଣସି ବାଟ ନଥିଲା । ତାଙ୍କ ଆଖି

ଆଗରେ ଖାଇବାକୁ ନପାଇ ପିଲାମାନେ ମୃତ୍ୟୁର ଶୀକାର ହେବେ ଏକଥା ସେ ଆଦୌ ସହ୍ୟ କରିପାରୁ ନଥିଲେ । ପରିଶେଷରେ ସେ କେବଳ ପିଲାମାନଙ୍କ ଜୀବନ ପାଇଁ ଏହି ଧୂର୍ତ୍ତ କଳାବଜାରୀଙ୍କ ପାଖରେ ଶରଣାଗତ ହେବାକୁ ପଛାଉ-ନଥିଲେ ।

ପ୍ରତିଦିନ ୨୦୦ ପିଲାଙ୍କ ପାଇଁ ଖାଦ୍ୟ ଯୋଗାଇବା ଆବଶ୍ୟକ । ଏଥିପାଇଁ ଆନ୍ତରିକତାର ସହ ଡାକ୍ତର କୋର୍ଜାକ୍ ସମସ୍ତ ପ୍ରକାର ପ୍ରଚେଷ୍ଟା ଚଳାଇ ଚାଲିଥିଲେ । ମାତ୍ର ପିଲାଙ୍କର କ୍ଷୁଧା ବଢ଼ିବାରେ ଲାଗିଥିଲା । ଅଭାବ ଅନଟନର ଭୟଙ୍କର ପଦଧ୍ୱନି କର୍ଣ୍ଣଗହ୍ୱରକୁ ଆନ୍ଦୋଳିତ କରି ପକାଉଥିଲା । ଦିନକୁ ଦିନ ପିଲାମାନେ ଦୁର୍ବଳ ହୋଇପଡ଼ୁଥିଲେ । ହାତଗୋଡ଼ ସବୁ କ୍ଷୀଣ ହୋଇଯାଉଥିଲା । ସୁନ୍ଦର ତଥା କୋମଳ ଗାଲଗୁଡ଼ିକ ଠାକରା ପଡ଼ିଯାଉଥିଲା । ରାତିରେ ପିଲାମାନେ ଶୋଇବା ଅବସ୍ଥାରେ ବାତୁଳି ଚାତୁଳି ହୋଇ କହୁଥିଲେ, ଖାଇବାକୁ ଦିଅ, ଖାଇବାକୁ ଦିଅ । ଦିନରାତି ପିଲାମାନଙ୍କର କ୍ଷୁଧାଗ୍ରସ୍ତ କ୍ରନ୍ଦନ ଧ୍ୱନି ଡାକ୍ତରଙ୍କୁ ଯନ୍ତ୍ରଣା ଦେଉଥିଲା ।

କେବଳ ସେହି ବାପାମାଆମାନେ ଡାକ୍ତର କୋର୍ଜାକ୍‌ଙ୍କର ଅନ୍ତର ବେଦନାକୁ ଅନୁଭବ କରିପାରିବେ, ଯେଉଁମାନଙ୍କର ସନ୍ତାନମାନେ ଖାଇବାକୁ ନପାଇ ଭୋକରେ ଆହୁଟୁ ପାହୁଟୁ ହେଉଥିବେ; ମାତ୍ର ସେମାନେ କିଛୁ କରିପାରୁ ନଥିବେ । ଦୁଇଶହ ଅନାଥ ପିଲାଙ୍କର ବାପାମାଆ ଭାବରେ ପରିଚୟ ଦେଉଥିବା ବିଚରା ଡାକ୍ତରଙ୍କର କରୁଣ ବେଦନା କେବଳ ତାଙ୍କ ଛଡ଼ା ଆଉ କିଏ ସହିପାରିବ !

ଏହିସବୁ ସମସ୍ୟାବହୁଳ ବିପଦପୂର୍ଣ୍ଣ ପରିସ୍ଥିତିରେ ଡାକ୍ତର କୋରାକ୍ "ଅନାଥ ଆଶ୍ରୟ ସ୍ଥଳ"ର ଦାୟିତ୍ୱ ନେବାପାଇଁ ରାଜି ହୋଇଗଲେ । ଏହି ଅନୁଷ୍ଠାନଟି ଡାକ୍ତରଙ୍କର ଅନାଥାଶ୍ରମ ପରି । ଓଲା ବା ଜର୍ମାନମାନେ ଓ୍ୱାର୍ସୋର ଯାହାକୁ ଆର୍ଯ୍ୟ ଅଞ୍ଚଳ ବୋଲି କହୁଥିଲେ, ସେଠାରୁ ଏହି ଅନୁଷ୍ଠାନଟିକୁ ଇହୁଦୀ ବସ୍ତିର ୩୯-କ୍ରିଏଲନା ଗଳିକୁ ସ୍ଥାନାନ୍ତରିତ କରାଯାଇଥିଲା ।

୧୯୩୯ ମସିହା ସେପ୍‌ଟେମ୍ବର ମାସ ବେଳକୁ ନୂଆ ନୂଆ କରି ଯୁଦ୍ଧ ଆରମ୍ଭ ହେଉଥାଏ । ସେତେବେଳେ ଏହି ଅନାଥାଶ୍ରମକୁ କ୍ଷତ ବିକ୍ଷତ ହୋଇଆସୁଥିବା ପିଲାଙ୍କର ଆଶୁଚିକିତ୍ସା ନିମିତ୍ତ ଅସ୍ଥାୟୀ ଡାକ୍ତରଖାନା ଭାବରେ ବ୍ୟବହାର କରାଯାଉଥିଲା । ୩୯-କ୍ରିଏଲନା ଗଳିରେ ଜାଗା ଅଭାବରୁ ସେଠିକାର ଅନେକ ପିଲାଙ୍କୁ ଅନାଥାଶ୍ରମରେ ରଖାଯାଇଥିଲା । ଏଥିରୁ ଅଧିକାଂଶ ପିଲା ଅସୁସ୍ଥ ହୋଇ ଶଯ୍ୟାଶାୟୀ ଥିଲେ ଏବଂ ସେମାନେ କୌଣସି ଏକ ଡାକ୍ତରଖାନାକୁ ସ୍ଥାନାନ୍ତରିତ ହେବା ଆବଶ୍ୟକ ଥିଲା ।

ଅନୁଷ୍ଠାନଟି ମୁନସିପାଲିଟିର ଦାୟିତ୍ୱରେ ଥିଲା । ଏଥିପାଇଁ ଆବଶ୍ୟକତାଠାରୁ ଅଧିକ ସଂଖ୍ୟାରେ କର୍ମଚାରୀ ନିଯୁକ୍ତ ଥିଲେ । ଓ୍ୱାର୍ସୋରେ ସେପ୍‌ଟେମ୍ବର ଯୁଦ୍ଧ ଶେଷ ହୋଇଗଲାବେଳକୁ କେଇମାସ ଧରି ଏତେ ଲୋକଙ୍କୁ ସେମାନଙ୍କର ଦରମା ଦିଆ-ଯାଇନଥିଲା । ଫଳରେ ସେମାନେ ଅନାଥାଶ୍ରମର ସ୍ୱାର୍ଥ ଉପରେ ସେମାନଙ୍କର ଅଧିକାର ସାବ୍ୟସ୍ତ କଲେ । ଅନାଥାଶ୍ରମ ପ୍ରତି ଏହା ଅନେକ କ୍ଷତିସାଧନ କଲା । ଖାଦ୍ୟବସ୍ତୁ ତଥା ଅନ୍ୟାନ୍ୟ ଆବଶ୍ୟକ ଦ୍ରବ୍ୟମାନ ଅନାଥାଶ୍ରମକୁ ପହଞ୍ଚିପାରୁନଥିଲା । ଯଦିଓ କିଛି କାମ କରୁନଥିଲେ ଷ୍ଟାଫ୍‌ମାନେ ସେମାନଙ୍କ ଦରମା ମିଳୁନଥିବା ଆଳରେ ଏସବୁ ନେଇଯାଉଥିଲେ । ଏହିଭଳି ଏକ ଦୂଷିତ ପରିବେଶ ଓ ପରିସ୍ଥିତି ଭିତରେ ସୌନ୍ଦର୍ଯ୍ୟ, ଶୃଙ୍ଖଳା, ସାଧୁତା ପିଲାଙ୍କ ପ୍ରତି ସ୍ନେହ ମମତା ଆଦି ବିଷୟରେ କହିବା, ପାଗଳାମି ଛଡ଼ା ଆଉ କ'ଣ ହୋଇପାରେ ! ୧୯୩୬ ମସିହାରେ କୋର୍ଯାକ ଏହି ଅନୁଷ୍ଠାନଟିକୁ ନିଜ ସଂସ୍ଥା ଭାବରେ ଗ୍ରହଣ କରିବା ପାଇଁ ମନାକରି ଦେଇଥିଲେ । ମାତ୍ର ବର୍ତ୍ତମାନ ଏହାକୁ ସେ ନିଜ କର୍ତ୍ତବ୍ୟର ଆହ୍ୱାନ ଭାବରେ ଗ୍ରହଣ କରିନେଲେ ।

କହିବାକୁ ଗଲେ ରୁଦ୍ଧ ଦ୍ୱାର ଭିତରୁ ମୁକ୍ତି ଖୋଲି ପଡ଼ିଆକୁ ଚାଲିଆସିଲା । ବାସ୍ତବରେ ଏହା ଯୁଦ୍ଧଠାରୁ ଅଧିକ ଭୟଙ୍କର ଥିଲା । ମାସ ମାସ ଧରି ୫ ସଂଗ୍ରାମ ଚାଲୁରହିଲା; ମାତ୍ର ବିଜୟର ମାଟି ଟିକିଏ ମିଳିପାରିନଥିଲା । ୩୯-କ୍ରିଏଲନା ଗଳିରେ କୋର୍ଯାକ ଅନେକ ଦିନ କଟାଇଲେ । ପିଲାଙ୍କ ପାଇଁ ଦୁଶ୍ଚିନ୍ତା, ଦୁଃଖ ଯନ୍ତ୍ରଣା, ହତାଶାରେ ତାଙ୍କ ହୃଦୟ ବିଦୀର୍ଣ୍ଣ ହେବାକୁ ଲାଗିଲା ।

୧୯୪୨ ମସିହା ମାର୍ଚ୍ଚ ୯ ତାରିଖରେ ୩୯-କ୍ରିଏଲନା ଗଳିର "ଅନାଥ ଆଶ୍ରୟସ୍ଥଳର" ଦାୟିତ୍ୱ ନେବାପରେ ସେ ଯେଉଁ ଲେଖାଟି ଛାପିବା ପାଇଁ ଦେଇଥିଲେ, ସେଥିରେ ଏହି ଅନୁଷ୍ଠାନଟିକୁ ସେ ବର୍ଣ୍ଣନା କରି ଲେଖିଥିଲେ, ଏହା ଏକ କଶୋର ମାରଣ ଗୃହ ତଥା ଶିଶୁମାନଙ୍କ ପାଇଁ ଏକ ଅସ୍ଥାୟୀ ଗୃହ ଯେଉଁଠି ଶିଶୁମାନେ ଗୁରୁଣ୍ଡୁଥାନ୍ତି । ସତରେ କହିବାକୁ ଗଲେ, ଡାକ୍ତରଙ୍କ ନିଜ ଅନୁଷ୍ଠାନ, ଯେଉଁଠି ସବୁପ୍ରକାର ବ୍ୟବସ୍ଥା ଥିବା ସତ୍ତ୍ୱେ ଅବସ୍ଥା ଏପରି ଖରାପ । ଏହି ଅନୁଷ୍ଠାନ ଯେଉଁଠି ଷ୍ଟାଫ୍‌ମାନେ ପିଲାଙ୍କ ଖାଦ୍ୟ, ବସ୍ତ୍ର ଆଦି ନେଇଯିବାରେ ବ୍ୟସ୍ତ, ସେଠାରେ ପିଲାଙ୍କ ଅବସ୍ଥା କେତେ ଜଘନ୍ୟ ହୋଇନଥିବ !

ଅନୁଷ୍ଠାନଟିକୁ ଏକ ସମ୍ବେଦନଶୀଳ ତଥା ସୁସ୍ଥ ଅବସ୍ଥାକୁ ଆଣିବା ସକାଶେ କୋର୍ଯାକ ଅନେକ ଅସୁବିଧା ଓ ସମସ୍ୟାକୁ ସାମନା କରିଥିଲେ । ଏଥିପାଇଁ ଷ୍ଟାଫ୍-ମାନଙ୍କ ପ୍ରତି ତାଙ୍କ ବାକ୍ୟବାଣ ଅତ୍ୟନ୍ତ କଠୋର ହୋଇପଡ଼ୁଥିଲା । ସେ ଷ୍ଟାଫ୍‌ମାନଙ୍କୁ ଲକ୍ଷ୍ୟକରି କହୁଥିଲେ, "ଏମାନେ ସମସ୍ତେ ଜଘନ୍ୟ ଅପରାଧୀ—ଜନ୍ମରୁ ଏମାନେ

ନିର୍ବୋଧ, ଏମାନେ ସମସ୍ତେ ଲୁଣ୍ଠନକାରୀ ଯେଉଁମାନେ ରୋଗକ୍ଲିଷ୍ଟ ପିଲାଙ୍କ ପାଖରୁ ଖାଦ୍ୟ ଛଡ଼ାଇ ଆଣିବା ପାଇଁ ପ୍ରସ୍ତୁତ ନାହିଁ । ଏମାନେ ନିଜ କଡ଼େଇରେ ଚର୍ବି ଭାଜିବା ପାଇଁ ଏକ ଆଉନ୍‌ସ ଚର୍ବି ସକାଶେ ନିଜ ପିଲାଙ୍କୁ ହତ୍ୟା କରିଥାନ୍ତି । ପରିଶେଷରେ ସେମାନେ ନିଜକୁ ନିଜେ ବି ଏହି କଡ଼େଇରେ ଭାଜିଦେବେ ।''

ପରେ କୋର୍ଝାକ କହିଥିଲେ, "ମୁଁ ଆଶା କରୁଛି, ଏହି ଅପରାଧୀମାନେ ଯେତେବେଳେ ହୃଦୟଙ୍ଗମ କରିବେ ଯେ ଏହିଭଳି ଅପରାଧମୂଳକ କାର୍ଯ୍ୟ ଧାରାରେ ସେମାନେ ଆଉ ତିଷ୍ଠି ପାରିବେ ନାହିଁ, ସେମାନେ ସେତେବେଳେ ଆପେ ଆପେ ଏହି ପଚାସଢ଼ି ଯାଇଥିବା ବସ୍ତି ଭିତରୁ ଉଡ଼ି ପଳାଇଯିବେ ।'' "ଅନାଥ ଆଶ୍ରୟ ସ୍ଥଳର'' ପିଲାମାନେ ସେମାନଙ୍କର ନୈତିକ ବଳ ହରାଇ ସାରିଥିଲେ । ରୋଗଗ୍ରସ୍ତ ଓ କ୍ଷୁଧା-ଜନିତ କାରଣରୁ ଅନେକ ମୃତ୍ୟୁବରଣ କରୁଥିଲେ । ସବୁଠାରୁ ବେଶି ସଂଖ୍ୟାରେ ମୃତ୍ୟୁବରଣ କରୁଥିଲେ ନବଜାତ ଶିଶୁମାନେ । ନବପ୍ରସୂତ ମାଆମାନେ ଯେଉଁମାନେ ପିଲାଟିକୁ ପ୍ରତିପୋଷଣ କରିପାରିବେ ନାହିଁ ସେମାନେ ଅନାଥାଶ୍ରମର ପାହାଚ ଉପରେ ପିଲାକୁ ଛାଡ଼ି ଚାଲିଯାଇଥିଲେ । କୋର୍ଝାକ ଏସବୁ ଦୁଃଖଦ ଘଟଣାଗୁଡ଼ିକୁ ସ୍ୱଚକ୍ଷୁରେ ଏବଂ କୋହଭରା ହୃଦୟରେ ସହିବାକୁ ବାଧ୍ୟ ହେଉଥିଲେ । ଏ ସବୁର ନିରାକରଣ ପାଇଁ ସେ କିଛି କରିପାରିବାର ଅବସ୍ଥାରେ ହିଁ ନଥିଲେ । ତେଣୁ ତାଙ୍କର ଡାକ୍ତରୀ ତଥା ସମ୍ବେଦନଶୀଳ ମଣିଷ ହୃଦୟ ନିଜକୁ ସାନ୍ତ୍ୱନା ଦେଉଥିଲା ଯେ, ଏଭଳି ପରିସ୍ଥିତିରେ ସବୁଠାରୁ ଶିଘ୍ର ସାନ ସେ ଆଗ ସଂସାର ଛାଡ଼ି ଚାଲିଯିବା ଶ୍ରେୟସ୍କର ।

ଡାକ୍ତରଖାନା ତଥା କ୍ଲିନିକ୍‌ର ପରିଚାଳନା ସମିତି ସହ ଡାକ୍ତରଙ୍କର ଯୁକ୍ତିତର୍କ ଲାଗିରହିଥିଲା । ଅଳ୍ପ ପରିମାଣରେ ଆସୁଥିବା ଔଷଧ, କଡ଼ଲିଭର ତେଲକୁ ଭାଗ ବାଣ୍ଟି ପଠାଇବାର ଦାୟିତ୍ୱ ଏହି କମିଟିର ଥିଲା । ଅନେକ ସମୟରେ ଅନାଥାଶ୍ରମ ଅନୁଷ୍ଠାନ ଗୁଡ଼ିକର ମୁଖ୍ୟ ଭାବରେ କୋର୍ଝାକଙ୍କ ମତ ଓ ଯୁକ୍ତିକୁ କମିଟି ବିରୋଧ କରୁଥିଲା । ସର୍ବସାଧାରଣଙ୍କ ସ୍ୱାର୍ଥକୁ ବିଚାର କରି କମିଟି ନିଷ୍ପତ୍ତି ଗ୍ରହଣ କରୁଛି ବୋଲି ଯୁକ୍ତି ବାଢ଼ୁଥିଲା ।

ମୃତ୍ୟୁଗନ୍ଧମୟ ଦୁଃଖଯନ୍ତ୍ରଣାର ମରୁଭୂମି ଭିତରେ ଅନାଥାଶ୍ରମ ହିଁ ମରୁଦ୍ୟାନ ଭାବରେ ଛିଡ଼ା ହୋଇଥିଲା । ଡାକ୍ତରବାବୁ ପ୍ରତିଦିନ ଭିକ୍ଷାଥାଳି ଧରି ଅର୍ଥ ଯୋଗାଡ଼ ସକାଶେ ରାସ୍ତାଘାଟରେ ବାହାରି ଯାଉଥିଲେ । ଇହୁଦୀ ବସ୍ତିର ଡାକ୍ତରମାନଙ୍କ ସହ ତାଙ୍କର ପ୍ରତିଦିନ ଆଲୋଚନା ଚାଲୁଥିଲା । ଇଷ୍ଟ, ରୋଗ ପ୍ରତିଷେଧକ ଖାଦ୍ୟ, ଭିଟାମିନ୍ ଆଦି ବିଷୟରେ ଦୀର୍ଘ ସମୟ ଧରି କଥାବାର୍ତ୍ତା ଚାଲୁରହୁଥିଲା । ସବୁବେଳେ ଗୋଟିଏ ପ୍ରଶ୍ନ ଆସି ଧକ୍‌କା ମାରୁଥିଲା । "ଏସବୁ ମିଳିବ କିପରି ? କେଉଁଠାରୁ ଆସିବ ? କାହାଦ୍ୱାରା ଆସିବ ?'' ଅତି ବ୍ୟସ୍ତତାର ସହ ସେ ଡାକ୍ତରମାନଙ୍କୁ

କହୁଥିଲେ, "ଏପରିକ ଘୋଡ଼ାଘାସକୁ ଜାଉ ସହ ମିଶାଇ ଖାଇବାକୁ ଦେଲେ ପିଲା-ମାନଙ୍କୁ କିଛି ପରିମାଣରେ ଶକ୍ତି ମିଳିଯିବ।"

ଇହୁଦୀ ବସ୍ତିରୁ କୋର୍ଜାକ ଜଣେ ମହିଳା ଡାକ୍ତର ରେମୋଲ ଜେଓ୍ୱାସ୍କାଙ୍କୁ ତାଙ୍କ ଶେଷ ଟେଲିଫୋନ କଥାବାର୍ତ୍ତାରେ ପିଲାମାନଙ୍କ ଖାଦ୍ୟ ସମ୍ବନ୍ଧରେ ଅବଗତ କରାଇଥିଲେ। ସେ ମହିଳା ଡାକ୍ତରଙ୍କୁ ଅନୁରୋଧ କରିଥିଲେ ଯେ ତାଙ୍କ ପୂର୍ବତନ ଛାତ୍ର ଓ୍ୱାର୍ଜ କୋସ୍କିଙ୍କୁ କିଛି ପନିପରିବା ଓ ଆଳୁ ପଠାଇଦେବା ସକାଶେ ଖବର ଦେଇଦେବେ।

ଏହି ସମୟରେ କୋର୍ଜାକଙ୍କ ଭଉଣୀ ଅଭିମାନ କରି ଅଭିଯୋଗ କରିଥିଲେ ଯେ ଅନ୍ୟ ସବୁଆଡ଼େ ଭାଇଙ୍କର ସମୟ ଅଛି, ମାତ୍ର ଭଉଣୀ ପାଖକୁ ଆସିଲାବେଳକୁ। କୋର୍ଜାକ ଭଉଣୀ ପାଖକୁ ଉତ୍ତରରେ ଲେଖିଥିଲେ, "ପ୍ରିୟ ଭଉଣୀ; କେଉଁଠିକି ବୁଲିଯିବା ପାଇଁ ମୋ ପାଖରେ ଆଦୌ ସମୟ ନାହିଁ। ମୁଁ ଭିକ୍ଷା ମାଗିବାକୁ ଚାରିଆଡ଼େ ଯାଉଛି। ମୁଁ ମାଗୁଛି ଅର୍ଥ, ଏବଂ ଅନୁସନ୍ଧାନ କରୁଛି, ଆଉ କେଉଁଠି କିଛି ମିଳିବ ବୋଲି, ମୁଁ ଲୋଡ଼ୁଛି ସାନ୍ତ୍ୱନା, ମୁଁ ଖୋଜୁଛି ଉପଦେଶ। ଯଦି ଏ ସବୁକୁ ତୁ ଭାବୁଥାଉ ମୋର ବୁଲିବା, ତେବେ ଏହା ଅତ୍ୟନ୍ତ କଷ୍ଟଦାୟକ, କୃତଜ୍ଞତାହୀନ ବିନମ୍ର କାମ। ଏସବୁ କାମପାଇଁ ମୁଁ ଟିକିଏ ସୁନ୍ଦରିଆ, ହସଖୁସିଆ ତଥା ସତେଜ ଦିଶିବା ଆବଶ୍ୟକ। କାରଣ ଲୋକମାନେ ନିରସିଆ, ମଳିଧୂଳିଆ ଲୋକଙ୍କୁ ଦାନ କରିବାକୁ ଭଲପାଆନ୍ତି ନାହିଁ।

ଏହିପରି କଷ୍ଟକର କାମଗୁଡ଼ିକୁ ଡାକ୍ତର କୋର୍ଜାକ ନିଜ ଉପରେ ଲଦିଦେଉ-ଥିଲେ। ମାତ୍ର ଏ ସବୁର ଉତ୍ତମ ପ୍ରଭାବ ତାଙ୍କ ଉପରେ ପଡ଼ୁଥିଲା। ଆତ୍ମସମାଧାନ ପାଇଁ ତାଙ୍କୁ କିଛି ମିଳିଯାଉଥିଲା। ନୈରାଶ୍ୟଜନକ ପରିସ୍ଥିତି ତଥା ଇହୁଦୀମାନଙ୍କ ଦୁଃଖ ଯନ୍ତ୍ରଣା ଭିତରୁ ତାଙ୍କ ଦୃଷ୍ଟି ଅନ୍ୟ ଆଡ଼କୁ ଚାଲିଯାଇପାରୁଥିଲା। ଯେତେ କ୍ଷୁଦ୍ର ହେଲେ ବି ସେ କିଛି ବାସ୍ତବ ସଫଳତା ହାସଲ କରିବା ପାଇଁ ଅତ୍ୟନ୍ତ ବ୍ୟଗ୍ରଭାବରେ ସକ୍ରିୟ ହୋଇଉଠୁଥିଲେ। ଏହି କାମଦ୍ୱାରା ଭୟ, ଦୁଶ୍ଚିନ୍ତା ଓ ହତାଶାରୁ ତାଙ୍କୁ ରକ୍ଷା ମିଳିଯାଉଥିଲା। ଯଦି ଏସବୁ ତାଙ୍କ ପିଲାମାନଙ୍କ ଉଦ୍ଦେଶ୍ୟରେ ସେ କରୁ ନଥାନ୍ତେ, ତେବେ ତାଙ୍କର ସମ୍ବେଦନଶୀଳ ହୃଦୟଟା କେତେଦିନ ଏ ଯନ୍ତ୍ରଣାଦାୟକ ଚାପକୁ ସମର୍ଥନ କରିପାରିଥାନ୍ତା। ଏପଟେ ଘରିକାନ୍ଥ ଦ୍ୱାରା ଘେରା ଇହୁଦୀ ବସ୍ତି ଭିତରେ କ୍ଷୁଧା, ଅଭାବ, ଅନଟନ ଏବଂ ନୀରବ ମୃତ୍ୟୁର ଭୟାବହତା ପୂରି-ରହିଥାଏ।

ଡାକ୍ତରଙ୍କ ଜୀବନୀ ପୁସ୍ତକରେ ବର୍ଣ୍ଣିତ ବାସ୍ତବ ଦୃଷ୍ଟାନ୍ତଗୁଡ଼ିକ ଅତ୍ୟନ୍ତ ହୃଦୟ-ବିଦାରକ। ସେ ଲେଖିଛନ୍ତି, ମୁଁ ପାଦଚଲା ରାସ୍ତା ଉପରେ ଗୋଟିଏ ଲୁନ ବାଳକକୁ

ଦେଖିଲି । ବାଳକଟି ମୃତ୍ୟୁସହ ସଂଗ୍ରାମ କରୁଥିଲା । ସେହି ଜାଗାରେ ଆଉ ତିନି ଜଣ ପିଲା ଘୋଡ଼ା ଖେଳ ଖେଳୁଥିଲେ । ସେମାନେ ଘୋଡ଼ାର ବାଗା ପାଇଁ ଯେଉଁ ଦଉଡ଼ିଟି ବ୍ୟବହାର କରୁଥିଲେ ତାହା ମୁମୂର୍ଷୁ ବାଳକର ବେକରେ ଲାଗିଗଲା । ପିଲାମାନେ ଜଉଡ଼ିକୁ ଟାଣି ସିଧା କରିବାକୁ ଚେଷ୍ଟାକଲେ । ମାତ୍ର ଯେତେବେଳେ ସେମାନେ ପାରିଲେ ନାହିଁ ମୁମୂର୍ଷୁ ପିଲାଟିକୁ ଗୋଇଠାଏ ପକାଇଲେ । ତାପରେ ସେମାନଙ୍କ ଭିତରୁ ଜଣେ କହିଲା, "ଚାଲ ଆଉ ଟିକିଏ ଆଗକୁ ଯିବା । ସେ ବାଟରେ ଅଛି ।"

ସେ ଆଉ ଏକ ଜାଗାରେ ଲେଖିଛନ୍ତି, ଶଳ୍ପା ଟାଣୁଥିବା ଗରିବ ପିଲାମାନଙ୍କ ଶ୍ମଶାନକୁ ଅଳ୍ପ କେତେକ ଧନୀ, ହୃଦୟହୀନ ବ୍ୟକ୍ତି ଠକିଦେଇ ଯିବାର ଦୃଶ୍ୟ ମୁଁ ଦେଖିଛି । କୋର୍ଜାକ ପ୍ରତିଦିନ ପାନଦୈନ୍ୟଭରା, ମୃତ୍ୟୁସହ ସଂଗ୍ରାମ କରୁଥିବା ପରିବାରଗୁଡ଼ିକୁ ଦେଖିବାକୁ ଯାଉଥିଲେ । କୋର୍ଜାକଙ୍କ ପାଇଁ ଏସବୁ ଏ ଧରାଧାମରେ ବାସ୍ତବ ନର୍କ ଥିଲା । ଗୋଟିଏ ପକ୍ଷରେ ଥିଲା ଧନୀକ ତଥା ଭାଗ୍ୟବାନମାନଙ୍କର ସ୍ୱାର୍ଥ-ପରତା, କାରଣ ସେମାନେ ଭବିଷ୍ୟତକୁ ଭସ୍ମକରି ନିଜ ସ୍ୱାର୍ଥପାଇଁ ଅନେକ କୁତ୍ସିତ ନୀତିହୀନ ସ୍ୱାର୍ଥପର କାମରେ ଜଡ଼ିତ ରହୁଥିଲେ ଅନ୍ୟ ପକ୍ଷରେ ମୃତ୍ୟୁ ସହ ଲଢ଼ୁଥିବା ପିତାମାତାଙ୍କ ହତାଶାର ପ୍ରତିଧ୍ୱନି । କାରଣ ସେମାନେ ସେମାନଙ୍କ ପିଲାଙ୍କ ଭବିଷ୍ୟତ ସୁରକ୍ଷା ସକାଶେ କିଛି ବି ଯୋଗାଡ଼ କରିପାରୁନଥିଲେ ।

ଜଣେ ମୁମୂର୍ଷୁ ମାଆ ପାଇଁ ଏହା ଥିଲା ସବୁଠାରୁ ବଡ଼ ସାନ୍ତ୍ୱନା ଯେ ତା ମୃତ୍ୟୁପରେ ତା ସନ୍ତାନଟି କୋର୍ଜାକଙ୍କ ଅନାଥାଶ୍ରମରେ ସ୍ଥାନ ପାଇବ । ଯଦି ମନା କରିଦିଆଯାଉଥିଲା, ତେବେ ତାହା ଥିଲା ପିଲାଟି ପାଇଁ ମୃତ୍ୟୁଦଣ୍ଡ । ଇହୁଦୀ ବସ୍ତିର ପିଲାମାନଙ୍କ ପାଇଁ ଗୁରୁବାର ଦିନଟି ଥିଲା ଭାଗ୍ୟପରୀକ୍ଷାର ଦିନ । ସେହିଦିନ କୋର୍ଜାକ ସଂଜବନୀର ସମ୍ବାଦ ପରିବେଷଣ କରି ଆସୁଥିଲେ ଯେ ତାଙ୍କ ଅନାଥାଶ୍ରମରେ ଆଉ କେତେ ଜଣଙ୍କ ପାଇଁ ସ୍ଥାନ ଅଛି । ସପ୍ତାହରେ ଅନ୍ୟ ସବୁ ଦିନେ ଯେହେତୁ ବାଧ୍ୟ ହୋଇ ସମସ୍ତଙ୍କୁ ମନା କରାଯାଉଥିଲା, ସେଥିପାଇଁ ସେ ନିଜେ ତଥା ଷ୍ଟିଫା ଓ୍ୱିଲିକ-ନସ୍କା ଅସୁସ୍ଥ ହୋଇପଡ଼ୁଥିଲେ ।

୧୨-ଖୋଚ୍‌ମାଲ୍‌ନା ଗଳିର ଅନାଥାଶ୍ରମ ତୁଳନାରେ କୋର୍ଜାକ୍ ଏହି ଅନାଥାଶ୍ରମଟିକୁ "ଅନାଥାଶ୍ରମ-ବାରିକ୍" ବୋଲି କହୁଥିଲେ । ସେ ଲେଖିଛନ୍ତି ଯେ ଅନାଥାଶ୍ରମ "ହୋମ୍" ବୃଦ୍ଧ ଲୋକଙ୍କର ହୋମ୍ ପରି ମନେହେଉଛି । କୋର୍ଜାକ ସକାଳେ ପିଲାମାନଙ୍କ ସହ ଏହିପରି ଭାବରେ କଥାବାର୍ତ୍ତା କରୁଥିଲେ—"ତୁମ ଜର କେମିତି ଅଛି ? କାହାକୁ ଆଜି ସବୁଠାରୁ ଖରାପ ଲାଗୁଛି ? କିଏ ରାତିରେ ଶୋଇ ପାରିନି ? ଦୁର୍ବଳତା ଓ ଅସୁସ୍ଥତା ଯୋଗୁଁ ପିଲାମାନଙ୍କ କଥାବାର୍ତ୍ତାରେ ସତେଜତା ନଥିଲା ।

କୋର୍ଯାକ ତାଙ୍କର ଡାକ୍ତରୀ ବିଦ୍ୟା ଓ ବିଜ୍ଞାନ ପ୍ରତି ବିଶ୍ୱସ୍ତ ଥିଲେ । ସେ ପୂର୍ବ ପରି ପ୍ରତି ସପ୍ତାହରେ ପିଲମାନଙ୍କର ଓଜନ, ଉଚ୍ଚତା ଓ ତାପମାତ୍ରା ମାପୁଥିଲେ । ନାଡ଼ ପରୀକ୍ଷା କରୁଥିଲେ । ପ୍ରଥମରୁ ଶେଷପର୍ଯ୍ୟନ୍ତ କୋର୍ଯାକ ବିଶ୍ୱାସ କରୁଥିଲେ ଯେ ଏଭଳି ଗବେଷଣାରେ ଅନେକ ମହତ୍ତ୍ୱ ରହିଛି । ଆଜି ନହେଲେ ଏହା ଭବିଷ୍ୟତ ବଂଶଧରଙ୍କ ପାଇଁ ନିଶ୍ଚୟ ଉପକାରରେ ଆସିବ ।

କୋର୍ଯାକ ଲେଖିଥିଲେ, ପିଲମାନେ ଏଣେତେଣେ ଗୁରୁଣ୍ଡି ବୁଲୁଛନ୍ତି । କେବଳ ସେମାନଙ୍କର ଚର୍ମ ଯାହା ସୁସ୍ଥ ଜଣାପଡ଼ୁଛି । ମାତ୍ର ସେମାନଙ୍କର ଚର୍ମ ତଳେ ଭରି-ରହିଛି କ୍ଲାନ୍ତି, ବିଦ୍ରୋହ, କ୍ରୋଧ, ଆତ୍ମବିଶ୍ୱାସର ଅଭାବ, ଦୁଃଖ ଏବଂ ଅନେକ ପିପାସା । ଜୀବନ ସ୍ମୃତିର ଆଉ ଗୋଟିଏ ଜାଗାରେ ସେ ଲେଖିଛନ୍ତି, "ଓଃ, ସେମାନଙ୍କର ଧନଲିପି ଖାତା ଗୁଡ଼ିକରେ କି ଦୟନୀୟ ଅବସ୍ଥା !"

କୋର୍ଯାକ ପିଲମାନଙ୍କ ସାଙ୍ଗରେ ଆତ୍ମବିଶ୍ୱାସର ସନ୍ଦେଶ ନେଇ କଥାବାର୍ତ୍ତା କରୁଥିଲେ । ସେ ଏଥିପାଇଁ ପିଲଙ୍କୁ ନିଜସହ ସମକକ୍ଷ ବୋଲି ବିଚାର କରୁଥିଲେ । ଜୀବନୀ ସ୍ମୃତିର ଶେଷ ଆଡ଼କୁ ସେ ଲେଖିଛନ୍ତି, ଥରେ ବୁଲିବା ସମୟରେ କାଥୋଲିକ୍ ଚର୍ଚ୍ଚର ଅଗଣାରେ ଟିକିଏ ଖେଳିବା ପାଇଁ ପିଲମାନେ ଚର୍ଚ୍ଚର ପ୍ରିଷ୍ଟଙ୍କୁ ଅନୁମତି ମାଗିଲେ । କାରଣ ସେମାନେ ଟିକିଏ ଖୋଲାପବନ ଆଉ ସବୁଜିମା ଭିତରେ କିଛି ସମୟ ବିତାଇବା ପାଇଁ ଇଚ୍ଛା କରୁଥିଲେ । ପିଲଙ୍କ ଏଭଳି ଦୟନୀୟ ଅବସ୍ଥାରେ ଏଥିରେ କଅଣ କିଛି ଆଶ୍ଚର୍ଯ୍ୟ ହେବାର ଅଛି ?"

ରାତିରେ ଭୟଙ୍କର ତଥା ଦୁଃସ୍ୱପ୍ନ ସ୍ୱପ୍ନ ଦେଖି ଯେତେବେଳେ ପିଲମାନେ ନିଦରୁ ଉଠିପଡ଼ୁଥିଲେ, ବୃଦ୍ଧ ଡାକ୍ତର କୋର୍ଯାକ ପିଲମାନଙ୍କୁ ସାଙ୍ଗରେ ଧରି ଏକଣା ଘରକୁ ନେଇଯାଉଥିଲେ । ଏହି ପିଲଙ୍କ ଭିତରେ ଅଧିକାଂଶ ଥିଲେ ଡାକ୍ତରଙ୍କ ପୁରୁଣା ଗ୍ରାହଗ୍ରାହୀଙ୍କ ସନ୍ତାନସନ୍ତତି । ତେଣୁ କହିବାକୁ ଗଲେ ଏମାନେ ଥିଲେ ଡାକ୍ତରଙ୍କ ନାତି ନାତୁଣୀ, ଡାକ୍ତର ତାଙ୍କର ସେହି ଏକଣା ଘରେ ଛନକା ପଶିଯାଉଥିବା ପିଲଙ୍କ ମୁହଁରେ ଚୁମ୍ବନ ଦେଉଥିଲେ ଓ ଗେଲ କରୁଥିଲେ । ଥଣ୍ଡାରେ କାଲୁଆ ପଡ଼ି-ଯାଇଥିବା ହାତକୁ ଉଷୁମ କରିଦେଉଥିଲେ । ପାଖରେ ତ ଖାଦ୍ୟ ବା ଔଷଧ କିଛି ନଥିଲା । ସେ ଅବା କଅଣ କରିପାରିଥାନ୍ତେ । କେବଳ ହୃଦୟ ଭିତରେ ଦୁଃଖକୁ ଚାପି ରଖିବା ଛଡ଼ା ତାଙ୍କ ପାଖରେ ଆଉ କୌଣସି ଉପାୟ ନଥିଲା ।

କିଛି ବର୍ଷ ତଳେ ଯେତେବେଳେ କୋର୍ଯାକ ପାଲେଷ୍ଟାଇନ୍‌ରେ ଥିଲେ, ସେ କହିଥିଲେ, 'ମୋର ନିଜର ପିଲାଛୁଆ ନାହାନ୍ତି । ମାତ୍ର ଆଜିର ଦୁନିଆରେ ରକ୍ତ ସଂପର୍କର ସେପରି କିଛି ଅର୍ଥ ନାହିଁ ।" ବିପଦ ଏବଂ ଆବଶ୍ୟକତା ସମୟରେ ଅନାଥା-ଶ୍ରମର ସବୁପିଲା ହେଉଛନ୍ତି ତାଙ୍କର ସନ୍ତାନସନ୍ତତି । ସେ ପ୍ରତି ପିଲାକୁ ନିଜର

ସନ୍ତାନ ବୋଲି ବିଚାର କରୁଥିଲେ । ପ୍ରତ୍ୟେକ ପିଲାକୁ ସେ ନିଜ ପିଲାପରି ସ୍ନେହ ମମତା ଦେଉଥିଲେ ।

ଯୁଦ୍ଧ ପୂର୍ବରୁ ସେ ଅନାଥାଶ୍ରମ ଗୁଡ଼ିକ ପାଇଁ ଖାଦ୍ୟ ତଥା ଅନ୍ୟାନ୍ୟ ଆବଶ୍ୟକ ଜିନିଷ ମାଗି ବୁଲୁଥିଲେ । ଏହି ସମୟରେ ସେ ଲେଖିଥିଲେ, "ପିଲାଟିଏ ଜନ୍ମହେବା କଅଣ ଭଲ ? ମୁଁ ଜାଣିନାହିଁ । ମୁଁ ଭୁଲିଯାଏ; କିନ୍ତୁ ମୁଁ ଜାଣେ ଜଣେ ଇହୁଦୀ ପିଲା ହୋଇ ଜନ୍ମ ହେବା ଅର୍ଥ କଅଣ ? କିନ୍ତୁ ମୁଁ କଅଣ ଜାଣେ ଜଣେ ଗରିବ ଇହୁଦୀ ପିଲା ହେବା ଅର୍ଥ କଅଣ ? ଆଉ ଟିକିଏ ତଳକୁ ଯାଇ ଦେଖିଲେ, ମୁଁ କ'ଣ ଜାଣେ, ଜଣେ ଗରିବ ଏବଂ ଅନାଥ ପିଲା ହେବା ଅର୍ଥ କ'ଣ ?" ତାପରେ ସେ ପ୍ରଶ୍ନ ପଚାରିଛନ୍ତି, "ଏହାଠାରୁ କଅଣ ଆଉ କିଛି ଖରାପ ଅବସ୍ଥା ଥାଇପାରେ ? କାହିଁକି ନୁହେଁ, "ସେ ନିଜକୁ ନିଜେ ଉତ୍ତର ଦେଇ ଚାଲନ୍ତି, "ହଁ, ହଁ ! ଜଣେ ବୃଦ୍ଧ ଏବଂ ନିର୍ଦ୍ଧନ ଇହୁଦୀର ଅବସ୍ଥା ଏସବୁଠାରୁ ଅଧିକ ଖରାପ ।"

କୋର୍ଯାକ ଥିଲେ ସଂପୂର୍ଣ୍ଣ ନିସ୍ୱାର୍ଥପର । ପ୍ରେମର ବେଦୀ ଉପରେ ସେ ଅନାଥ ପିଲାମାନଙ୍କ ପାଇଁ ନିଜକୁ ଉତ୍ସର୍ଗ କରିଦେଇଥିଲେ । ମାତ୍ର ସେ ଚାହୁଁ ନଥିବା ଜିନିଷ ଦେଖିବାକୁ ପାଇଲେ । ତାହା ହେଲା, ତାଙ୍କର ମହନୀୟ ଅସୀମ ପ୍ରେମ ପିଲାମାନଙ୍କୁ କ୍ଷୁଧା କବଳରୁ ରକ୍ଷା କରିପାରନ୍ତି ନାହିଁ । ସେ ଦେଖିଲେ ଯେ କ୍ଷୁଧା ଓ ମୃତ୍ୟୁ ଅନାଥ ପିଲାମାନଙ୍କୁ ତାଙ୍କଠାରୁ ବହୁଦୂରକୁ ନେଇ ଚାଲିଯାଉଛି ।

ଜଣେ ବୃଦ୍ଧ ଇହୁଦୀଙ୍କ ସାଙ୍ଗରେ ଦୁଇଶହ ଅନାଥ ପିଲା । ଏହାଠାରୁ ବଳି ଆଉ କିଛି ଦୁରବସ୍ଥା ଥାଇପାରେ ? ବୃଦ୍ଧ ଡାକ୍ତର କୋର୍ଯାକ୍, ଯାହାଙ୍କ ପିଠିରେ ଯନ୍ତ୍ରଣା ଭରିରହିଛି, କ୍ଷୁଧାରେ ଯାହାର ନିଜ ପେଟ ଜଳୁଛି, ଯାହାର ହୃଦୟ ସର୍ବଦା ସନ୍ତାପିତ ହୋଇ ରହୁଛି—ଏହାଠାରୁ ବଳି ଆଉ କିଛି ମର୍ମନ୍ତୁଦ ତଥା ଦୟନୀୟ ଅବସ୍ଥା ଥାଇପାରେ ! ମାତ୍ର ଏସବୁ ସତ୍ତ୍ୱେ ଥରେହେଲେ ବି କୋର୍ଯାକ୍ ଘୃଣା ସମ୍ବଳିତ ଶବ୍ଦଟିଏ ବି ଉଚ୍ଚାରଣ କରିନାହାନ୍ତି ।

ମହାନ୍ ସେହି ବୃଦ୍ଧ ଡାକ୍ତର ! ମହାନ୍ ସେହି ଅମର ଆତ୍ମା !

## (୨୮) ବାର୍ଦ୍ଧକ୍ୟର ଯନ୍ତ୍ରଣା

ଜର୍ମାନ୍‌ମାନେ ପୋଲାଣ୍ଡକୁ ପରାସ୍ତ କରି ଦଖଲ କରିନେଲେ । ଦେଶପ୍ରେମୀ ଡାକ୍ତର କୋର୍ଯାକଙ୍କୁ ଏହା ବହୁତ ବାଧିଲା । ମାତ୍ର ସେ ଦୁର୍ବଳମନା ନହୋଇ ଅଧିକ କ୍ରିୟାଶୀଳ ହୋଇପଡ଼ିଲେ । ନିଜର ଦୈହିକ ତଥା ମାନସିକ ଶକ୍ତିକୁ ଠୁଳ କରି ସେ ବିପଦର ସାମନା କରିବାପାଇଁ ସଜାଗ ହେଲେ ।

ଇହୁଦୀ ବସ୍ତିରେ କୌଣସି ଏକ ସୁପରଭାଇଜରର ଗୃହକର୍ମ ପାଇଁ ସେ ଦରଖାସ୍ତ କଲେ । ଏହି ଦରଖାସ୍ତରେ ତାଙ୍କ ଭିତରେ ଜାଗିଉଠିଥିବା ପ୍ରତିବନ୍ଧିତାଗୁଡ଼ିକ ସ୍ପଷ୍ଟ ଭାବରେ ପ୍ରକାଶିତ ହୋଇଉଠିଥିଲା । ସେ ଲେଖିଥିଲେ, "ମୋତେ ଏବେ ଷାଠିଏ ବର୍ଷ ବୟସ । ଗତ ବର୍ଷ ଯେତେବେଳେ ମୁଁ ପାଓ୍ୱିକା ବନ୍ଦୀଶାଳାରେ ପ୍ରବେଶ କଲି, ସେତେବେଳେ ସ୍ୱାସ୍ଥ୍ୟ ପରୀକ୍ଷାରେ ମୁଁ ସୁସ୍ଥ ଓ କାର୍ଯ୍ୟକ୍ଷମ ବୋଲି ପ୍ରମାଣପତ୍ର ପାଇଛି । ସେଠାରେ ସବୁ ପ୍ରକାର ଅସୁବିଧା ଓ କଷ୍ଟରେ ପରିବେଶ ଥିବା ସତ୍ତ୍ୱେ ମୋ ଦେହ କେବେ ଖରାପ ହୋଇନାହିଁ । ଏଇ ଅତି ନିକଟରେ ମୁଁ ପ୍ରାୟ ୩ ଢ଼ି ବାଟ ରାତ୍ରିର ଘନ ଅନ୍ଧକାର ଭିତରେ ସାମାନ୍ୟ ଟିକିଏ ମୋଡ଼କା ପିଇ ଚାଲିଆସିଥିଲି । ମୋ ମାନସିକ ଶକ୍ତି ସଂପୂର୍ଣ୍ଣ ସତେଜ ଓ ଦୃଢ଼ ଅଛି । ଫଳରେ ମୁଁ ମୋର ଏତେ ବଡ଼ ପରିବାରଟିର (ଅନାଥାଶ୍ରମର ସମସ୍ତ ପିଲାଙ୍କର) ଦାୟିତ୍ୱ ତୁଲାଇ ପାରୁଛି ।"

ସେଇ ସମାନ ଦରଖାସ୍ତରେ ସେ ଲେଖିଥିଲେ, "ମୁଁ ପ୍ରତିଦିନ ରାତିରେ ଦୁଇଥର ଉଠେ । କାରଣ ୧୦ଟି ବଡ଼ ବଡ଼ ବାଲ୍‌ଟିରେ ଭରିଯାଇଥିବା ପିଲାଙ୍କର ପରିସ୍ରାକୁ ମୋତେ ଖାଲି କରିବାକୁ ପଡ଼େ ।'' ଏତେ ବଡ଼ ଅନାଥାଶ୍ରମପାଇଁ ମାତ୍ର ଗୋଟିଏ ଧାଡ଼ି ପାଇଖାନା ଏବଂ ପାଇଖାନାଗୁଡ଼ିକ ତଳ ମହଲାରେ ଥିଲା । ତେଣୁ ରାତିରେ ପିଲାମାନଙ୍କୁ ଉଠାଇ ପରିସ୍ରା କରାଇବା ବଦଳରେ ସେମାନେ ନିଜ ନିଜ ଶୋଇବା ଜାଗା ପାଖରେ ରଖାଯାଇଥିବା ବାଲ୍‌ଟିରେ ପରିସ୍ରା କରୁଥିଲେ । ଜାନୁସ୍ କୋର୍ଚ୍ଚାକ ପ୍ରତିଦିନ ରାତିରେ ନିଜେ ଏହି ପରିସ୍ରା ବାଲ୍‌ଟିଗୁଡ଼ିକୁ ଢାଳି ଖାଲି କରୁଥିଲେ ।

ଦରଖାସ୍ତରେ କୋର୍ଚ୍ଚାକ୍ ଯାହା ଲେଖିଥିଲେ ସେସବୁ ଯେ ଅକ୍ଷରେ ଅକ୍ଷରେ ସତ୍ୟ ସେକଥା ନୁହେଁ । ଡାକ୍ତର ନିଜକୁ ଯେତେ ସମର୍ଥ ବୋଲି ବର୍ଣ୍ଣନା କରୁଥିଲେ ମଧ୍ୟ ପ୍ରକୃତ କ୍ଷେତ୍ରରେ କାମ କଲାବେଳେ ସେ ବହୁତ କ୍ଲାନ୍ତ ହୋଇପଡ଼ୁଥିଲେ । ପିଲାଙ୍କ ଭାଗ୍ୟରେ କେତେବେଳେ କ'ଣ ଘଟିବ,ପୁଣି ସେମାନଙ୍କ ପାଇଁ ଖାଦ୍ୟ, ବସ୍ତ୍ର ଆଦି ଯୋଗାଡ଼ କରିବାକୁ ହେବ ଇତ୍ୟାଦି ପାଇଁ ତାଙ୍କ ମନ ଭିତରେ ଉତ୍କଣ୍ଠା ଓ ଦୁଶ୍ଚିନ୍ତା ଭରିରହୁଥିଲା । ପ୍ରତିଦିନ ଅପରାହ୍ନ ୨ଟା ବେଳକୁ ଡାକ୍ତରବାବୁ ସଂପୂର୍ଣ୍ଣ ରୂପେ ହାଲିଆ ହୋଇପଡ଼ୁଥିଲେ । ସେ ନିଜ ଖଟିଆଟି ଉପରେ ଲୀନ ହୋଇ ଗଡ଼ିଯାଉଥିଲେ । ରାତିରେ ଉଠି ପୁଣି ଚିନ୍ତା ଓ ଲେଖା ଭିତରେ ନିମଗ୍ନ ହୋଇଯାଉଥିଲେ । ସକାଳୁ ଉଠି, ସେ କେଉଁଠିକି କିଛି ମାଗିବା ପାଇଁ ତ, କେଉଁଠି ଦାବି ଜଣାଇବା ପାଇଁ ଓ ଆଉ କେଉଁଠିକି ଯୁକ୍ତିକରି ମର୍ଯ୍ୟାଦାର ସହ କାର୍ଯ୍ୟହାସଲ ପାଇଁ ବାହାରି ପଡ଼ୁଥିଲେ । ଏସବୁ ସେ କରୁଥିଲେ ନିଜ ପିଲାଙ୍କର ଜୀବନ କେବଳ ବଞ୍ଚାଇବା ପାଇଁ ।

୧୯୪୨ ମସିହାର ମେ ମାସଠାରୁ ଜୁଲାଇ ମାସ ମାତ୍ର ଦୁଇମାସ ଭିତରେ ଡାକ୍ତର କୋର୍ଚ୍ଚାକ ନିଜର ଜୀବନୀ ସ୍ମୃତିଟି ଲେଖିଥିଲେ । ତାପରେ ଆସିଲା ଆତ୍ମବଳିଦାନର

ଅନ୍ତିମ ଯାତ୍ରା । ଏହି ଅଳ୍ପ ସମୟ ଭିତରେ ସେ ଲେଖିଥିବା ତାଙ୍କର ଜୀବନୀ ସ୍ମୃତି ଅତ୍ୟନ୍ତ ସମ୍ବେଦନଶୀଳ ଏବଂ ହୃଦୟବିଦାରକ ଥିଲା । ଗୋଟିଏ ପାଖରେ ନିଜର ଇଚ୍ଛାଶକ୍ତି ଏବଂ ସ୍ୱପ୍ନ ସମ୍ଭାର, ଅନ୍ୟପାଖରେ ଦୁଃଖ କଷ୍ଟ, ଯନ୍ତ୍ରଣାର କଷାଘାତ ତଥା ଅନାଥାଶ୍ରମରେ ପ୍ରତିଦିନ ଆବଶ୍ୟକ ଜିନିଷପତ୍ରର ଅଭାବ । ଏପରି ଦୁଇଟି ବିରୋଧ ସତ୍ୟ ଭିତରେ ଥିବା ଦ୍ୱନ୍ଦ୍ୱଗୁଡ଼ିକୁ କୋର୍ଜାକ ଯଥାର୍ଥ ଭାବରେ ତାଙ୍କ ଜୀବନୀ ସ୍ମୃତିରେ ବର୍ଣ୍ଣନା କରିଯାଇଛନ୍ତି ।

ଆଗରୁ ଯେତେବେଳେ କୋର୍ଜାକଙ୍କୁ ତାଙ୍କ ଆତ୍ମଜୀବନୀ ଲେଖିବାପାଇଁ ଅନୁରୋଧ କରାଯାଇଥିଲା, ସେତେବେଳେ ସେ ସିଧାସଳଖ ମନା କରିଦେଇଥିଲେ । ମାତ୍ର ଯେତେବେଳେ ସେ ଅଣାୟତ୍ତ ପରିସ୍ଥିତିକୁ ସହ୍ୟ କରିପାରିଲେ ନାହିଁ ଏବଂ ଏଥିପାଇଁ ଯଥେଷ୍ଟ ପ୍ରତିକ୍ରିୟାଶୀଳ ହୋଇପଡ଼ିଲେ, ସେତେବେଳେ ଜୀବନୀ ଲେଖିବାର ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତିଟି ଗ୍ରହଣ କଲେ । କୌଣସି ପ୍ରକାର ଦ୍ୱିଧା ନରଖି ସେ ତାଙ୍କ ଜୀବନର ସତ୍ୟ ଘଟଣାଗୁଡ଼ିକୁ ଲିପିବଦ୍ଧ କରିବାକୁ ଲାଗିଲେ ।

ଇହୁଦୀ ବସ୍ତିରେ ଦୁଃଖଦାୟକ ଜୀବନ କାଳ ଭିତରେ କୋର୍ଜାକ ତାଙ୍କ ଆତ୍ମଜୀବନୀରେ ଯେଉଁସବୁ କଥା ଲେଖିଯାଇଛନ୍ତି, ସେଥିରୁ କୋର୍ଜାକଙ୍କ ଜୀବନର ମାନସିକ ସ୍ଥିତି ଅନୁମାନ କରିହେବ । ସବୁଠାରୁ ଖରାପ ସମୟଗୁଡ଼ିକରେ କୋର୍ଜାକ୍ ସ୍ୱପ୍ନିଲ ଦୁନିଆ ଭିତରକୁ ନିଜକୁ ନେଇଯାଉଥିଲେ ଏବଂ ସେଠାରେ ସେ ଆଗନ୍ତା କାଳଗୁଡ଼ିକୁ ଅନୁଭବ କରି ନିଜ ଭିତରେ ଶକ୍ତି ସଂଗ୍ରହ କରିପାରୁଥିଲେ । ପରେ ପରେ ସେ ନିଶାଦ୍ରବ୍ୟ ସେବନ କରି ନିଜ ଶାରୀରିକ ଏବଂ ମାନସିକ ବଳକୁ ଚେଙ୍ଗା କରାଇ ରଖିବାକୁ ଚେଷ୍ଟା କରୁଥିଲେ । ସେ ଏଥିପାଇଁ କୋକେନ୍ ବ୍ୟବହାର କରୁଥିଲେ । ସେ କୋକେନ୍ କେମିତି ଖାଉଥିଲେ, ସେଥିରେ କେତେ ପାଣି ବା ଆଉ କଅଣ ସବୁ ମିଶାଉଥିଲେ, ସେ ସମ୍ବନ୍ଧରେ ପୁଙ୍ଖାନୁପୁଙ୍ଖ ଭାବରେ ଜୀବନୀରେ ବର୍ଣ୍ଣନା କରିଥିଲେ । କୋକେନ୍ ଖାଇଲାପରେ ହେଉଥିବା ଅନୁଭୂତି ଗୁଡ଼ିକୁ ବି ସେ ବିନାଦ୍ୱିଧାରେ ବର୍ଣ୍ଣନା କରିଥିଲେ ।

କୋର୍ଜାକ୍‌ଙ୍କର ଖାଦ୍ୟପେୟ ଓ ରହଣୀ ଅତ୍ୟନ୍ତ ସରଳ ଥିଲା । ଅନାଥାଶ୍ରମରେ ପିଲାଙ୍କ ଭୋଜନାଳୟରେ ସେ ଖାଉଥିଲେ । ଖାଲିପଡ଼ିଥିବା କୌଣସି ଟେବୁଲ ପାଖରେ ସେ ପିଲାଙ୍କ ପରିବାରର ଜଣେ ହୋଇ, ପିଲାଙ୍କ ପରି ଖାଉଥିଲେ । ଯେତେବେଳେ ଇହୁଦୀ ପରିଷଦକୁ ସେ ଘୁଅରଭାଇକର ଗୃହକକ୍ଷ ପାଇଁ ଦରଖାସ୍ତ ଲେଖିଥିଲେ, ସେଥିରେ ସେ ଉଲ୍ଲେଖ କରିଥିଲେ, "ଗୃହକକ୍ଷ ପାଇଁ ମୋର କୌଣସି ସର୍ତ୍ତ ନାହିଁ । କ୍ୱାର୍ଟର ଅର୍ଥ ମୁଁ ବୁଝେ ଘରର କୌଣସି ଏକ କୋଣ ଯେଉଁଠି ମୁଁ ଶୋଇପାରିବି, ଲେଖିପାରିବି ଏବଂ ଦରିଦ୍ରର ରୋଷେଇଘରୁ ଖାଇବାକୁ ଯାଇପାରିବି ।"

ଅନାଥାଶ୍ରମର ଅନ୍ୟମାନଙ୍କ ପରି ସେ କ୍ଷୁଧା ଜ୍ୱାଳାରେ ପୀଡ଼ିତ ହେଉଥିଲେ । କଅଣ ଖାଇବେ, ଏହା ଭାବି ଭାବି ସେ ରାତିରେ ଶୋଇ ପାରୁନଥିଲେ । ବିନିଦ୍ର ରଜନୀରେ ସେ ଶେଜ ଉପରେ ଲେଟିପଡ଼ୁଥିଲେ ଓ ଭାବୁଥିଲେ ଯେ ଛଅମାସ ପୂର୍ବରୁ ସେ ସ୍ୱାଦ କଅଣ, ଅସ୍ୱାଦ କଅଣ ଏ ବିଷୟରେ ଆଦୌ ସଚେତନ ନଥିଲେ ଏବଂ ଯାହା ମିଳିଲି ଖାଇଯାଉଥିଲେ । ମାତ୍ର ଏବେ ବାଧ ନକଲେ ତାଙ୍କୁ ଖାଇବାକୁ ଇଚ୍ଛା ହେଉନାହିଁ ।

କ୍ଷୁଧା ଏବଂ ଦୁଶ୍ଚିନ୍ତାରେ ଜଡ଼ଭୂତ ହୋଇ କୋର୍ଝାକ୍ ବହୁତ ବ୍ୟସ୍ତତା ଭିତରେ କାଳ କାଟୁଥିଲେ । ତାଙ୍କପାଇଁ ସବୁକିଛି କଷ୍ଟକର ବୋଧ ହେଉଥିଲି । ସେ ଲେଖିଥିଲେ, "ମୁଁ ବହୁତ କ୍ଲାନ୍ତ ହୋଇପଡ଼ୁଛି । ସକାଳେ ଯେତେବେଳେ ଶେଯରୁ ଉଠୁଛି, ସେତେବେଳେ ବି ମୁଁ କ୍ଳାନ୍ତ ଅନୁଭବ କରୁଛି । ଚିନ୍ତା କରିବା ପାଇଁ ମଧ୍ୟ ମୋତେ ଚେଷ୍ଟା କରିବାକୁ ପଡ଼ୁଛି । ଉଠିବା ଅର୍ଥ ମୋ ପାଇଁ ବସିବା । ଏହାର ଅର୍ଥ ଅନ୍ତର୍ବାସଟିକୁ ସଜାଡ଼ି ବୋତାମ ଦେବା । ସବୁ ବୋତାମ ନଦେଇ ପାରିଲେ ବି ଅନ୍ତତଃ ଗୋଟିଏ ବୋତାମ ଦେବା ଅର୍ଥାତ୍ ସାର୍ଟ ସହିତ ସଂଗ୍ରାମ କରିବା । ମୋଜା ପିନ୍ଧିବାକୁ ତ ମୋତେ ନଇଁବାକୁ ପଡ଼ିବ । ପୁଣି ପୋଷାକରେ ଡୋରି ଆଉ ଫିତା ଅଛି । ଓଃ, ଏସବୁ କେତେ କ୍ଲାନ୍ତିକର କାମ ନୁହେଁ ସତେ ! ରାସ୍ତାରେ ଗଲାବେଳେ ପାଦଚଲା ପାର୍ଶ୍ୱପଥକୁ ଓହ୍ଲାଇବାପାଇଁ ମୋତେ କଷ୍ଟ ଲାଗୁଛି । କେବଳ ଜର୍ମାନ ଗୁପ୍ତ ପୋଲିସ୍ ପାଇଁ ମୋ ପାଦର ଗତି କ୍ଷିପ୍ର ହୋଇଯାଏ । ଥରେ ସେମାନେ ମୋତେ ଧକ୍କା ମାରି ତଳେ ପକାଇଦେଲେ । ମୁଣ୍ଡ ବୁଲାଇ ଦେଉଥିଲାବେଳେ ମୁଁ କାଠଟିକୁ ଧରିବା ପାଇଁ ବରାଣ୍ଡି ହୋଇଥିଲି ।" ତା' ପରେ ସେ ନିଜସ୍ୱ ଦମ୍ଭ ଦେଖାଇ ଲେଖିଥିଲେ, "କିନ୍ତୁ ମୁଁ ବ୍ୟାବହାରିକ ଅର୍ଥନୀତିର ବିଶାରଦ । ମୋ ଶରୀରର ପ୍ରତି ଆଉନ୍ସକୁ ମୁଁ ସଞ୍ଚୟ କରୁଛି ।"

କୋର୍ଝାକ୍ କେବଳ ଜଣେ ଡାକ୍ତର ନଥିଲେ, ସେ ଥିଲେ ଜଣେ ମନସ୍ତତ୍ତ୍ୱବିତ୍ ମଧ୍ୟ । ସେ ଭଲଭାବରେ ବୁଝିପାରୁଥିଲେ ଯେ କଳା କଫି ଏବଂ ଆଲ୍‌କୋହଲ୍ ତାଙ୍କ ସ୍ନାୟୁକୁ ସତେଜ ରଖିପାରିବ ନାହିଁ । ପୁଣି ସେତେବେଳେ ଆଉ ଅଧିକ କୋକେନ୍ ମଧ୍ୟ ନଥିଲା । ସେ ନିଷ୍ପତ୍ତି ନେଇଥିଲେ, ଆଗକୁ ଯାହା ବି ବିପଦ ଆସିବ ସେସବୁ ସେ ନୈତିକ ତଥା ଆଧ୍ୟାତ୍ମିକ ଉପାୟରେ ମୁକାବିଲା କରିବେ । ନିଜର ସ୍ୱପ୍ନିଳ ଖିଆଲ୍ ଗୁଡ଼ିକ ଭିତରେ ସେ ଆଶ୍ରୟ ନେବାକୁ ଚେଷ୍ଟା କରୁଥିଲେ ଏବଂ ସେଥିରୁ ସେ ଶକ୍ତି ସଂଗ୍ରହ କରୁଥିଲେ ।

ସେ ଲେଖିଥିଲେ, "ସ୍ୱପ୍ନ କିମ୍ବା କଳ୍ପନା ଉପରେ ଯୌବନର ଏକ ଚାଟିଆ ଅଧିକାର ନାହିଁ ଏବଂ ଏହା ଏପରି ହୋଇପାରିବ ନାହିଁ । କିନ୍ତୁ ବୃଦ୍ଧମାନେ

ସେମାନଙ୍କର ସ୍ୱପ୍ନକୁ ପ୍ରକାଶ କରନ୍ତି ନାହିଁ । ସେମାନେ ହାହାକାରକୁ ଭୟ କରନ୍ତି ।"

ସେ ଲେଖାଲେଖି ମାଧ୍ୟମରେ ଦୁଃଖକଷ୍ଟର ବାସ୍ତବତାକୁ ଭୁଲିଯିବାକୁ ଚେଷ୍ଟା କରୁଥିଲେ । ପ୍ରତିଦିନର ଘଟଣାଗୁଡ଼ିକୁ ଓ ତାଙ୍କ ମନ ଏବଂ ସ୍ୱାସ୍ଥ୍ୟ ଉପରେ ଆଘାତ ଦେଇ ଚାଲିଯାଉଥିବା ଜୀବନର ପ୍ରତି ଶିହରଣକୁ ସଂକ୍ଷେପରେ ଏବଂ ପୁଙ୍ଖାନୁପୁଙ୍ଖ ଭାବରେ ବର୍ଣ୍ଣନା କରିବାକୁ କୋର୍ଜାକ୍ ଇଚ୍ଛା କରୁଥିଲେ । କୋର୍ଜାକ୍ ଲେଖିପାରୁଥିଲେ ଏବଂ ଲେଖାରୁ ଆରାମ ପାଉଥିଲେ । ମାତ୍ର ପଢ଼ିବାବେଳେ କଥାଟା ସମ୍ପୂର୍ଣ୍ଣ ଅଲଗା ଥିଲା । ପଢ଼ିବା ଦ୍ୱାରା ତାଙ୍କୁ ଆବଶ୍ୟକ ମୁତାବକ ଆରାମ ବା ଖୁସି ମିଳିପାରୁ-ନଥିଲା ।

କୋର୍ଜାକ୍ ଅସୁସ୍ଥ ହୋଇପଡ଼ୁଥିଲେ ଏବଂ ଦୁର୍ବଳ ଅନୁଭବ କରୁଥିଲେ । ତାଙ୍କର ହୃଦ୍‌ବୋଧ ହେଉଥିଲା ଯେ ସେ ଆଉ ବେଶିଦିନ ବଞ୍ଚିବେ ନାହିଁ । ସେ ଜୀବନୀ ସ୍ମୃତିରେ ଲେଖିଛନ୍ତି, "ମୃତ୍ୟୁ ! ପ୍ରତିଟି ପାହାଚରେ ହିଁ ମୃତ୍ୟୁ ! ରାସ୍ତା ଉପରେ ମୃତ୍ୟୁ ! ମୃତ୍ୟୁ ଅତି ନିକଟରେ ଦଣ୍ଡାୟମାନ । ମୃତ୍ୟୁ ମୋତେ ଆହ୍ୱାନ କରୁଛି ।"

ଏହି ସମୟରେ କୋର୍ଜାକ ମୃତ୍ୟୁ ସମ୍ବନ୍ଧରେ ନାନାପ୍ରକାର କଳ୍ପନାଜଳ୍ପନା କରିବାକୁ ଲାଗିଲେ । "ମୃତ୍ୟୁ ହେଉଛି ଆରାମ, ମୃତ୍ୟୁ ହେଉଛି ଔଷଧ" ଏହିପରି ଭାବନା ଭିତରେ ସେ ନିଜକୁ ଭସାଇ ଦେଉଥିଲେ ।

ଯେତେବେଳେ ଅଧିକରୁ ଅଧିକ ଦାୟିତ୍ୱ ଓ କର୍ତ୍ତବ୍ୟର ବୋଝ ବଢ଼ିବାକୁ ଲାଗିଲା, ସେତେବେଳେ କୋର୍ଜାକ୍ ଭାବିଲେ, "ମୃତ୍ୟୁ ହେଉଛି ଚେତନାନାଶକ ଦ୍ରବ୍ୟ । ଦୁଃଖ ଯନ୍ତ୍ରଣାରେ ମୃତ୍ୟୁ ହିଁ ସହାୟକ । ମୃତ୍ୟୁ ଏକ ଅନୁକମ୍ପାମୂଳକ ଆଘାତ ।"

## (୨୯) ଆତ୍ମବଳୀଦାନ ଏବଂ ଅମରତ୍ୱ

ସବୁବେଳେ ବିପଦ ଘନେଇ ହୋଇ ରହିଥିଲା । କେତେବେଳେ କାହାର ଜୀବନ ଚାଲିଯିବ କହିବା ଅନିଶ୍ଚିତ । ଅନାଥାଶ୍ରମର ପିଲାମାନଙ୍କ ପାଇଁ ବୃଦ୍ଧ ଡାକ୍ତରଙ୍କର ଅହର୍ନିଶ ଚିନ୍ତା । ଏ ବୟସରେ ସେ ସବୁବେଳେ ହତାଶାର ଗ୍ଳାନି ଭିତରେ ଚିନ୍ତାକରି ବସୁଥିଲେ, "ସତରେ ମୃତ୍ୟୁ କ'ଣ ସବୁଠାରୁ ଉତ୍ତମପନ୍ଥା ନୁହେଁ ।"

ଇହୁଦୀମାନେ ରହୁଥିବା ଜାଗାଟି ଉପରେ ସବୁବେଳେ ମୃତ୍ୟୁର ଘୋଷଣା । ଅତ୍ୟାବଶ୍ୟକ ସାମଗ୍ରୀ ବସ୍ତି ଅଞ୍ଚଳକୁ ଯଥେଷ୍ଟ ଭାବରେ କମାଇ ଦିଆଗଲା ।

ଅତ୍ୟାଚାର, ଗଣହତ୍ୟାର ସତର୍କ ସୂଚନା ଜର୍ମାନମାନଙ୍କ ତରଫରୁ ବାରମ୍ବାର ଘୋଷିତ ହେଉଥିଲା । ଏପରି ଶଙ୍କାକୁଳ ପରିସ୍ଥିତି ଭିତରୁ ବାହାରି ଆସିବା ପାଇଁ କୌଣସି ବାଟ ହିଁ ନଥିଲା ।

ବସ୍ତି ବାହାରେ ଯେପରି ନିରାପତ୍ତା ନଥିଲା, ଭିତରେ ବି ସେପରି କୌଣସି ନିରାପତ୍ତା ନଥିଲା । ସବୁବେଳେ ପୁରୁଷ, ମହିଳା, ଶିଶୁ ନିର୍ବିଶେଷରେ ସମସ୍ତଙ୍କୁ ଗଣହତ୍ୟା ଶିବିରକୁ ସ୍ଥାନାନ୍ତର କରାଯାଉଥିଲା । ସ୍ଥାନାନ୍ତର କରାଗଲାବେଳେ ବି ବାଟରେ ସେମାନଙ୍କୁ ବାଧା, ଗୋଇଠା ମାଡ଼ ଦିଆଯାଉଥିଲା । ଏପରିକି ସେମାନଙ୍କ ଆଡ଼କୁ ବନ୍ଧୁକରୁ ଗୁଳି ବି ଫୁଟି ଉଠୁଥିଲା ।

ସବୁବେଳେ କୋର୍ଜାକଙ୍କ ଚିନ୍ତା ରହୁଥିଲା ତାଙ୍କ ପିଲାମାନଙ୍କ ପାଇଁ । ସେ ଏପରି ମଧ୍ୟ ଚିନ୍ତା କରୁଥିଲେ ଯେ ଯଦି ଯନ୍ତ୍ରଣା ବିହୀନ ମୃତ୍ୟୁ ହୋଇପାରନ୍ତା, ତେବେ ବୋଧହୁଏ ପିଲାମାନଙ୍କ ସମସ୍ୟାର ସମାଧାନ ହୋଇଯାଆନ୍ତା । ଆଉ ବା କେଉଁ ଏ ବିପତ୍ତିରୁ ଉଦ୍ଧାର ମିଳିବ । ଜାନୁସ୍ କୋର୍ଜାକ୍, ଯିଏକି ଜୀବନକୁ ଏତେ ସହାନୁଭୂତିର ସହ ଭଲପାଉଥିଲେ, ଯିଏ ଏତେ ଗଭୀର ଭାବରେ ପିଲାମାନଙ୍କୁ ଭଲ ପାଉଥିଲେ, ସେ ବାଧ୍ୟ ହୋଇ ଲେଖିଥିଲେ—"ଭଲ ପାଉଥିବା ବ୍ୟକ୍ତି ଯେତେବେଳେ ଯନ୍ତ୍ରଣା ଭୋଗୁଥାଏ ଏବଂ ନିଜେ ଆଉ ବଞ୍ଚିବାକୁ ଇଚ୍ଛା କରୁନଥାଏ, ତାକୁ ଅନୁକମ୍ପାମୂଳକ ହତ୍ୟା କରିଦେବା ଶ୍ରେୟସ୍କର ଏବଂ ବାସ୍ତବରେ ସୁବିଧା ମଧ୍ୟ । ଭବିଷ୍ୟତରେ ଏପରି ହିଁ ହେବ । ସମାଜ ଏହି କଥାଟିକୁ ଅନୁମୋଦନ କରିବ ।"

କିନ୍ତୁ ସେ ଅନୁଭବ କଲେ ଯେ ଏସବୁ କ୍ଳାନ୍ତ ତଥା ମୃତବତ୍ ଏକ ବୃଦ୍ଧର ରୁଗ୍‌ଣ ସ୍ୱପ୍ନ ମାତ୍ର । ଯେହେତୁ ସେ ଗଭୀର ଭାବରେ ଚାହୁଁଥିଲେ ଯେ ଅନାଥାଶ୍ରମର ପିଲାମାନେ ଆଉ ଅଧିକ ଦୁଃଖ କଷ୍ଟ ନ ପାଆନ୍ତୁ, ସେଥିପାଇଁ ଏଭଳି ଚିନ୍ତାସବୁ ତାଙ୍କ ମୁଣ୍ଡରେ ଘାରି ହେଉଥିଲା । ସେ ଲେଖିଛନ୍ତି—ଅତି ଦୁଃଖ ସମୟରେ ଯେତେବେଳେ ମୁଁ ଏସବୁ କଥାକୁ ବିଚାର କରିଛି, ସେତେବେଳେ ମୁଁ ବୁଝିପାରିଛି ଯେ ଏସବୁକୁ ହତ୍ୟା ବୋଲି ବିଚାର କରାଯିବ । ଏ ପ୍ରକାରର ହତ୍ୟା ଭୀରୁତାର ହିଁ ପରିଚୟ ।

ଡାକ୍ତର କୋର୍ଜାକ ଏପଟେ ଯନ୍ତ୍ରଣା ବିହୀନ ମରଣ କଥା ବିଚାରକୁ ଆଣିଲାବେଳେ ଅନ୍ୟପଟେ ପିଲାମାନଙ୍କୁ ଚିକିତ୍ସା କରିବା, ଆରାମ ଦେବା, ସେମାନଙ୍କର ଯତ୍ନ ନେବା ଏବଂ ସେମାନଙ୍କର ଖବର ବୁଝିବାରେ ନିଜର ସମସ୍ତ ଶକ୍ତି ଖଟାଉଥିଲେ । ମାତ୍ର ଶେଷ ଆଡ଼କୁ ବଞ୍ଚିରହିବାଲାଗି ତାଙ୍କ ମଧ୍ୟରେ ଅଦମ୍ୟ ଲାଲସା ଜାଗିଉଠିଥିଲା । ଜୀବନକୁ ଛିନ୍ନ କରି ଛାଡ଼ିଦେବାକୁ ସେ କେବେ ବି ବିଚାରକୁ ଆଣିନଥିଲେ ।

ଯେତେବେଳେ ମହାବିପଦ ପାଖେଇ ଆସିଲା, ତାଙ୍କ ଭିତରେ ହତାଶା ଓ ନିରାଶା ଆଚ୍ଛନ୍ନ ହୋଇରହିଲା ଓ ସେତେବେଳେ ସେ ଦର୍ଶନ ଭିତରେ ଆଶ୍ରୟ

ଖୋଜୁଥିଲେ । ଯେତେବେଳେ ରାତିରେ ଭୟଙ୍କର ସ୍ୱପ୍ନମାନ ଦେଖି ଦେଖି ହଠାତ୍ ଭୟଭୀତ ହୋଇ ସେ ଉଠିପଡ଼ୁଥିଲେ, ସେତେବେଳେ ତାଙ୍କର ସର୍ବାଙ୍ଗ ଜୁଡ଼ୁବୁଡ଼ୁ ହୋଇ-ପଡ଼ୁଥିଲା । ଏ ସମୟରେ ଦର୍ଶନର ମହାନୁଭବତା ଭିତରେ ସେ ନିଜକୁ ଶାନ୍ତ କରାଇ ଦେଉଥିଲେ ।

ତାଙ୍କ 'ଜୀବନୀ ସ୍ମୃତି'ରୁ ଜଣାପଡ଼େ ଯେ ସେ ନିଜକୁ ନିଜେ କହୁଥିଲେ । "କୌଣସି ଆଦର୍ଶ ପାଇଁ ମୃତ୍ୟୁବରଣ କରିବା ସହଜ । ମାତ୍ର ଦିନ ଦିନ ବର୍ଷ ବର୍ଷ ଧରି ଆଦର୍ଶ ପାଇଁ ବଞ୍ଚିବା ସବୁଠାରୁ କଷ୍ଟକର । ସଂସାରରେ ଜନ୍ମହେବା କଷ୍ଟ, ଜୀବନ ବଞ୍ଚିବା ପାଇଁ ଶିଖିବା । ଏହାଠାରୁ ଅଧିକ କଷ୍ଟକର । କିନ୍ତୁ ମୋ ପାଇଁ ସରଳପନ୍ଥା ହେଲା—ମୃତ୍ୟୁ । ମୃତ୍ୟୁ ପରେ ଏହା ଆହୁରି କଷ୍ଟକର ହୋଇପାରେ । ମାତ୍ର ସେ ବିଷୟ ମୁଁ ଏବେ ଚିନ୍ତା କରିନାହିଁ । ମଲାବେଳକୁ ମୁଁ ସଚେତନ ହେବାକୁ ଚେଷ୍ଟା କରିବି । ମାତ୍ର ଯେତେବେଳେ ମୁଁ ମୋ ପିଲାମାନଙ୍କୁ କ'ଣ କହିବି ? ସେମାନଙ୍କଠାରୁ ବିଦାୟ ନେଲାବେଳେ ମୁଁ ସେମାନଙ୍କ ପାଇଁ ମୁକ୍ତିକାମନା କରିବି । ନିଜର ବାଟ ଖୋଜିବା ପାଇଁ ଆବଶ୍ୟକ ସ୍ୱାଧୀନତା ପାଇଁ କାମନା କରିବି ।"

ଅମରତ୍ୱ ସମ୍ବନ୍ଧରେ ସେ ବର୍ଣ୍ଣନା କରି ଲେଖିଛନ୍ତି—"ବ୍ୟକ୍ତିର ପାର୍ଥିବ ଅମରତ୍ୱ ତା ପିଲାମାନଙ୍କ ଉପରେ ନିର୍ଭର କରିଥାଏ । ତା'ର ଆଧ୍ୟାତ୍ମିକ ଅମରତ୍ୱ ଭ୍ରାତୃତ୍ୱର ଚିନ୍ତାଧାରାକୁ ସୁଦୂରପ୍ରସାରୀ କରିବା ଉପରେ ନିର୍ଭର କରେ । ଏହି ଭ୍ରାତୃତ୍ୱ କେବଳ ତା'ର ନିଜ ଲୋକମାନଙ୍କଠାରେ ସୀମିତ ରହେ ନାହିଁ । ସେହି ରହସ୍ୟମୟ ସତ୍ୟ ଶାଶ୍ୱତର ଅନୁସନ୍ଧାନ ପାଇଁ ଏହାର ପରିଧି ବ୍ୟାପ୍ତ ହୋଇଯାଏ ନକ୍ଷତ୍ରମାନଙ୍କ ପର୍ଯ୍ୟନ୍ତ ଏବଂ ପରମେଶ୍ୱରଙ୍କ ପର୍ଯ୍ୟନ୍ତ ।

ମଣିଷ ଚିନ୍ତାକରେ ତଥା ମାନିନିଏ ଯେ ମୃତ୍ୟୁ ହେଉଛି ସବୁକିଛିର ଶେଷ । କିନ୍ତୁ, ପ୍ରକୃତରେ ଏହା ହେଉଛି ବିଭିନ୍ନ ଭାବରେ ଜୀବନର ଏକ ନିରବଚ୍ଛିନ୍ନ ପ୍ରକ୍ରିୟା । ତୁମେ ଯଦି ଆତ୍ମା ଉପରେ ବିଶ୍ୱାସ କରନାହିଁ, ତେବେ ତୁମେ ଏକଥା ସ୍ୱୀକାର କରିବ ଯେ ତୁମର ଶରୀରଟି ଏହି ମାଟିରେ ମିଶିଯିବ । ତୁମ ଶରୀରର ବାୟୁ ବାୟୁମଣ୍ଡଳରେ ମିଶିଯିବ, ତୁମ ଶରୀରର ଜଳ ବିଶ୍ୱର ଜଳରେ ମିଶିଯିବ, ଆଉ ତୁମ ଜୀବନ ପରିସ୍ଫୁଟ ହେବ ସବୁଜ ଘାସ ଭିତରେ କମ୍ପା ଛୋଟ ଛୋଟ ମେଘ ଖଣ୍ଡ ଭିତରେ । ବାସ୍ତବରେ କହିବାକୁ ଗଲେ ତୁମେ କ'ଣ ? ତୁମେ ହେଉଛ ମାଟି, ଧୂଳି, ପାଣି ପବନର ଏକ ଜୀବନ୍ତ ମିଶ୍ରଣ ।"

ଅନାଥାଶ୍ରମ 'ହୋମ୍'ର ଶେଷ ଦିନଗୁଡ଼ିକ ସ୍ୱାଭାବିକ ଭାବରେ ଚାଲିଥାଏ । ସେତେବେଳେ ଇହୁଦୀ ବସ୍ତିରେ ନିର୍ବାସନ ଆଦେଶ ଲାଗୁ ହୋଇନଥାଏ । ଏ ସମୟରେ ଜାନୁସ୍ କୋର୍ଚାକ ପିଲାମାନଙ୍କୁ ନେଇ ଏକ ନାଟକ ଅଭିନୟ କରାଇଥିଲେ ।

ବୁଦ୍ଧିମତୀ, ସୁଦକ୍ଷା, କୁମାରୀ ଏସ୍‌ଥର୍ ନାଟକଟି ପରିବେଷଣ କରାଇଥିଲେ । ରବୀନ୍ଦ୍ରନାଥ ଠାକୁରଙ୍କର ରଚିତ 'ଡାକ' ଯାହାକି ଜର୍ମନ ସେନ୍‌ସର ବୋର୍ଡ଼ ଦ୍ୱାରା ମନାକରାଯାଇଥିଲା । ସେହି ନାଟକଟିକୁ ଡାକ୍ତର କୋର୍ଚାକ ବାଛିଥିଲେ ।

ନିମନ୍ତ୍ରଣ ପତ୍ରରେ ଡାକ୍ତରବାବୁ ତାଙ୍କର ଉଭୟ ନାମକୁ ଯୋଡ଼ି ଦସ୍ତଖତ କରିଥିଲେ । ତାହା ହେଉଛି ଗୋଲ୍‌ଡ଼ସ୍ମିଥ୍-କୋର୍ଚାକ । ଜୁଲାଇ ୧୫ ତାରିଖ ୧୯୪୨ ମସିହାରେ ଲେଖାହୋଇଥିବା ଏହି ନିମନ୍ତ୍ରଣ ପତ୍ରରେ ଏକ ଗୁରୁତ୍ୱପୂର୍ଣ୍ଣ ବାର୍ତ୍ତାଥିଲା । ତାହା ହେଉଛି, "କୌଣସି ଏକ ବିଷୟରେ ପ୍ରତିଜ୍ଞାକରି ସେହି ଅନୁଯାୟୀ କିଛି କରିବା ଆମର ଆଦତ ନୁହେଁ । ଆମେ ଭଲଭାବରେ ବୁଝିପାରୁଛୁ ଯେ ଏକ ସୁନ୍ଦର କାହାଣୀର ଅବସାନ ଘଟିବାକୁ ଯାଉଛି । ବର୍ତ୍ତମାନ ସମୟ ଆସିଛି ଯେତେବେଳେ ଆମ୍ଭେମାନେ ଭାବ ଓ ଆବେଗ ଶିଡ଼ିର ଉଚ୍ଚତମ ଶିଖରରେ ପହଞ୍ଚିବୁ, ଯେଉଁଥିପାଇଁ ଆମେ ମଣିଷମାନେ ସକ୍ଷମ । ସେଥିପାଇଁ ୧୯୪୨ ମସିହା ଜୁଲାଇ ୧୮ ତାରିଖ ଅପରାହ୍ନ ୪.୨୦ରେ 'ହୋମ୍'କୁ ଆସି ନାଟକ ଦେଖିବା ପାଇଁ ଆମର ନିମନ୍ତ୍ରଣ ରହିଲା ।"

ଏହି ନିମନ୍ତ୍ରଣ ସାଙ୍ଗରେ ଇହୁଦୀବସ୍ତିର କବି ଓ୍ୱାଲ୍‌ଡ଼ସ୍କୋ କେଞ୍ଜେଲଙ୍କ କବିତାଟି ବି ଲେଖାଯାଇଥିଲା । କବିତାର ମର୍ମଟି ଥିଲା ଏହିପରି—

"ଏପରି କିଛି ଯାହା ପଢ଼ା ବହିଠାରୁ ଅଧିକ ତାହାହେଲା ମିଜାଜ୍ ବା ମନର ଖିଆଲ, ଏପରି କିଛି ଯାହା ଭାବ ଆବେଗଠାରୁ ଅଧିକ ତାହାହେଲା ଅନୁଭୂତି, ଏପରି କିଛି ଯାହା ଅଭିନେତା ଅଭିନେତ୍ରୀଙ୍କଠାରୁ ଅଧିକ ତାହାହେଲା ପିଲାମାନେ ।"

ଆବ୍ରାସା ନାଟକରେ ପ୍ରଧାନ ଭୂମିକା ଗ୍ରହଣ କରିଥିଲା । ଆବ୍ରାସା ସାନ ପିଲାଟିଏ । ଆଖିଦୁଇଟି ତା'ର ଭାରତୀୟମାନଙ୍କ ପରି । ଅନେକ ପ୍ରେରଣାର ସହି ସେ ମରିବାକୁ ଯାଉଥିବା ଭାରତୀୟ ବାଳକର ଭୂମିକାଟିକୁ ନିଖୁଣ ଭାବରେ ଫୁଟାଇଥିଲା । ଜୀବନରୁ ମୃତ୍ୟୁକୁ ଯିବା ଭିତରେ ଥିବା ସ୍ୱଳ୍ପ ସମୟ ବ୍ୟବଧାନର ସୂକ୍ଷ୍ମ ଅନୁଭୂତିକୁ ସେ ଏପରି ନିଷ୍ଠା ଓ ବାସ୍ତବତାର ସହ ପରିବେଷଣ କଲା ଯେ ଦେଖଣାହାରୀମାନେ ଆଖିରୁ ଲୁହ ନଗଡ଼ାଇ ରହିପାରିଲେ ନାହିଁ ।

ନିଜେ କୋର୍ଚାକ ପିଲାଟିର ଭୂମିକାଟି ଫୁଟାଇବାର ନିପୁଣତାକୁ ନିମଗ୍ନ ହୋଇ ଦେଖୁଥିଲେ ଏବଂ ତାଙ୍କ ମୁଖମଣ୍ଡଳରେ ଅନେକ ଅସ୍ୱାଭାବିକ ଝଲକ ପ୍ରତିଫଳିତ ହେଉଥିଲା । ସେ ବହୁତ ଫିକା ଦିଶୁଥିଲେ । ତାଙ୍କ ଭିତରେ ଦୁଃଖ ପ୍ରକାଶିତ ହେଉନଥିଲା । ଯେତେବେଳେ ପଚାରାଗଲା ସେ କାହିଁକି ଏହି ନାଟକଟିକୁ ବାଛିଲେ, ସେତେବେଳେ ସେ ଉତ୍ତର ଦେଲେ, "ମୁଁ ଚାହୁଁଥିଲି ମୋ ପିଲାମାନେ ମୃତ୍ୟୁର

ଦେବଦୂତଙ୍କୁ ସମ୍ମାନର ସହ ଓ ଶାନ୍ତିରେ ଅଭ୍ୟର୍ଥନା କରିବା ପାଇଁ ଶିକ୍ଷାଲାଭ କରନ୍ତୁ ।"

କୋର୍ଜାକ୍ ଜାଣିଥିଲେ ଯେ, ମୃତ୍ୟୁ ହିଁ ଅନିବାର୍ଯ୍ୟ ଏବଂ ଏହା ଅତି ନିକଟରେ ତାଙ୍କ ଅନାଥାଶ୍ରମର ଦ୍ୱାରଦେଶରେ ପଦାଘାତ କରିବ । ତେଣୁ ସେ ଉପାସ୍ଥ ଚିନ୍ତା କରୁଥିଲେ, ଯଦ୍ଵାରା ତାଙ୍କ ନିଷ୍ପାପ ପିଲାମାନେ ଯେଉଁମାନଙ୍କର କୌଣସି ପ୍ରକାର ପ୍ରତିରୋଧକାରୀ ଶକ୍ତି ନଥିଲା । ସେମାନେ ଏହି ଦାରୁଣ ବିଭିଷିକାଗ୍ରସ୍ତ କରୁଣ ଅନୁଭୂତିକୁ ସହଜରେ ଗ୍ରହଣ କରିନେବା ପାଇଁ ପ୍ରସ୍ତୁତ ହୋଇଯିବେ । ଫଳରେ ଏହି ଅନୁଭୂତି ସେମାନଙ୍କୁ ସେତେ ଜୋର୍‌ରେ ମାନସିକ ଆଘାତ ଦେଇପାରିବ ନାହିଁ ।

କୋର୍ଜାକ ତାଙ୍କ ପିତାମାତାଙ୍କର ସ୍ମୃତିକୁ ମନେପକାଇ ମହାମାନବୀୟ ଭାଷାରେ ପ୍ରକାଶ କରିଥିଲେ, "ତୁମକୁ ବହୁତ ବହୁତ ଧନ୍ୟବାଦ ଯେ ତୁମେ ମୋତେ ଜୀବନ ଓ ମୃତ୍ୟୁ ପରସ୍ପର ଭିତରେ ଫୁସୁରୁ ଫାସର ହୋଇ କଥାହେବା ବିଷୟରେ ବୁଝାଇ ଦେଇଛୁ । ଅଶେଷ କୃତଜ୍ଞତାର ସହ ମୁଁ ତୁମକୁ ମୁଣ୍ଡିଆ ମାରୁଛି ଯେ ତୁମେ ମୋତେ ମୃତ୍ୟୁର ଏହି ସୌନ୍ଦର୍ଯ୍ୟପୂର୍ଣ୍ଣ ସମସ୍ତ ଭିତରେ ଜୀବନର ରହସ୍ୟକୁ ଜଣାଇ ଦେଇଛ ।"

## (୩୦) ରାତ୍ରିର ନୀରବତା ଭିତରେ

୧୯୪୨ ମସିହା କଥା । ଜୁନ୍ ଜୁଲାଇ ଅଗଷ୍ଟ ମାସଗୁଡ଼ିକ ଓ୍ୱାର୍ସୋରେ ଖରା ଗରମ । କିନ୍ତୁ ରାତିଗୁଡ଼ିକ ପ୍ରବଳ ଥଣ୍ଡା । ଏ ସମୟରେ କୌଣସି ଏକ ବଡ଼ସକାଳକୁ ବର୍ଣ୍ଣନା କରି କୋର୍ଜାକ ଲେଖିଛନ୍ତି—'ଏଇଟା ଥିଲା ସବୁଠାରୁ କୋଳାହଳଶୂନ୍ୟ ସମୟ । ଘଣ୍ଟାରେ ୫ଟା ବାଜିଥିଲା । ପିଲାମାନେ ଆରାମରେ ଶୋଇଥିଲେ । ସେମାନେ ଥିଲେ ଦୁଇଶହ । ଡାହାଣ ପାଖ ଘରେ ଶୋଇଥିଲେ ଶ୍ରୀମତୀ ଷ୍ଟିଫା । ମୁଁ ଶୋଇଥିଲି ବାଁ ପାଖର ଏକୁଟିଆ କୋଠରୀରେ । ଏହି କୋଠରୀ ମଝିରେ ଥିଲା ମୋ ଖଟିଆ । ଖଟିଆ ପାଖ ଟେବୁଲ ଉପରେ ଥିଲା କଳାରୋଟି ଆଉ ପାଣି ।

ସେଇ ମର୍ମନ୍ତୁଦ ଦିନର ପୂର୍ବ ରାତିରେ ଅନାଥାଶ୍ରମର ପରିସ୍ଥିତି ଏଇପରି ଥିଲା ।

କୋର୍ଜାକ୍ ପୁଣି ଲେଖିଥିଲେ, "ଅନ୍ୟମାନେ ଦିନବେଳା ଶୋଇବାକୁ ଡରନ୍ତି, କାରଣ କାଳେ ରାତିରେ ଆଉ ନିଦ ହେବନାହିଁ । କିନ୍ତୁ ମୋପାଇଁ କଥାଟା ଥିଲା ଓଲଟା । ମୁଁ ରାତିର ନୀରବତାକୁ ବହୁତ ଭଲପାଏ । ···ଏହାକୁ ମୁଁ ସମ୍ପତ୍ତି ଭାବରେ ସାଇତି ରଖେ ।

ଡାକ୍ତର ଜାନୁସ୍ କୋର୍ଚ୍ଚାକଙ୍କ ପାଇଁ ଏସବୁ ଥିଲା ଅତି ସ୍ୱାଭାବିକ କଥା । ରାତିରେ ସେ ମାନସିକ ପରିକ୍ରମ କରିଥା'ନ୍ତି । ଜୀବନର ଶେଷଆଡ଼କୁ ରାତିଗୁଡ଼ିକରେ ତାଙ୍କୁ ଆତୁର ଅନେକ କିଛି କରିବାକୁ ପଡ଼ୁଥିଲା । ରାତିସାରା ଚେଇଁ ରହି ସେ ଜଗି ରହୁଥିଲେ । ଏହି ଚେଇଁ ରହିବା ଭିତରେ ଅଳ୍ପ କିଛି କ୍ଷଣପାଇଁ ଡାକ୍ତରବାବୁ ହିଂସା ଓ ମୃତ୍ୟୁ ବିହୀନ ଏକ ଶାନ୍ତ ପରିବେଶର କଳ୍ପନା ଓ ସ୍ୱପ୍ନ ଭିତରେ ନିଜକୁ ବୁଡ଼ାଇ ରଖିବା ପାଇଁ ଠିକଏ ସୁଯୋଗ ପାଉଥିଲେ ।

ରାତିର ଘନ ଅନ୍ଧକାର । ଗୃହଆଡ଼ ଶୂନଶାନ୍ । ଝରକାଗୁଡ଼ିକ ବନ୍ଦ ଥାଏ । କାରବାଇଡ୍ ଲାମ୍ପର ଆଲୁଅକୁ କମ୍ତି କରି ଦିଆଯାଇଥାଏ । ଏପଟେ ପିଲାମାନଙ୍କର ନିଃଶ୍ୱାସର ସୁଁ ସୁଁ ଶବ୍ଦ ଶୁଣାଯାଉଥାଏ । ଏସବୁ ଡାକ୍ତରଙ୍କ ସ୍ନାୟୁରେ ନୂତନ ଶକ୍ତି ଭରିଦେଉଥାଏ । ମଝିରେ ମଝିରେ କୌଣସି ପିଲାର କ୍ରନ୍ଦନଧ୍ୱନି ଭାସି ଆସି ଏ ପ୍ରଶାନ୍ତ ନୀରବତାକୁ ଭାଙ୍ଗିଦେଉଥାଏ । ଏହି ସମୟରେ ଅନାଥାଶ୍ରମର ବାହାରେ ବନ୍ଧୁକରୁ ଗୁଳିଫୁଟିବାର ଶବ୍ଦ ମନେପକାଇ ଦେଉଥାଏ ଯେ ହିଂସା, ରାତିର ଅନ୍ଧକାରରେ ବି ଅତି ପାଖେ ପାଖେ ରହିଛି ।

ରାତି ପାହି ଆସିଲାବେଳେ ସେ ଝରକା ଖୋଲି ବାହାରକୁ ଚାହାନ୍ତି । ଘରଗୁଡ଼ିକ ଉପରେ ଏକ ଫିକା ଆକାଶ ପରିବ୍ୟାପ୍ତ ହୋଇ ରହିଥାଏ । ସେହି ଘରଗୁଡ଼ିକରେ ନିଦ୍ରାର ନିଶ୍ଚେତନତା ଭିତରେ ଦଳିତ, ଅତ୍ୟାଚାରିତ ଇହୁଦୀମାନେ କିଛିକ୍ଷଣ ପାଇଁ ଆରାମରେ ଶୋଇ ରହିଥା'ନ୍ତି । କୋର୍ଚ୍ଚାକ୍ ସେତେବେଳେ ପ୍ରାର୍ଥନା କରନ୍ତି :— ନୀରବ ରାତିର ସୌନ୍ଦର୍ଯ୍ୟ ଆନନ୍ଦଦାୟକ ହେଉ,···ଶାନ୍ତି, ଆରାମଦାୟକ ହେଉ··· ।

ତାଙ୍କ ଜୀବନ ସ୍ମୃତିରେ ଏହି ରାତି ଅନୁଭୂତିଗୁଡ଼ିକ ଯଥେଷ୍ଟ ଭାବରେ ସ୍ଥାନ ପାଇଛନ୍ତି । ଅନେକ ଜାତିଦ୍ରୋହୀ ଇହୁଦୀ ଜର୍ମାନମାନଙ୍କ ସାଙ୍ଗରେ କାମ କରୁଥିଲେ । ଅତି ଦୟନୀୟ କଥା ଯେ ସେମାନେ ଭାବୁଥିଲେ, ସେମାନେ ଜର୍ମାନମାନଙ୍କ ସାଙ୍ଗରେ ସୁରକ୍ଷିତ ହୋଇଅଛନ୍ତି । ସେମାନେ ସେମାନଙ୍କ ନିଜ ଲୋକଙ୍କ ବିରୋଧରେ ଜର୍ମାନ-ମାନଙ୍କୁ ଜଣାଉଥିଲେ ଏବଂ ସେମାନଙ୍କୁ ହିଂସାତ୍ମକ ପ୍ରତିକ୍ରିୟା ଦେଖାଉଥିଲେ ।

ସେମାନେ କିପରି ସୁରକ୍ଷିତ ଥିଲେ, ସେ ବିଷୟରେ କୋର୍ଚ୍ଚାକ ଟିକିଏ ଲେଖିଛନ୍ତି । "ଗତରାତିରେ ଜର୍ମାନ୍ ଗୁପ୍ତ ପୋଲିସ୍ ବିଭାଗରେ ଥିବା ସାତଜଣ ଇହୁଦୀଙ୍କୁ ଗୁଳିକରି ମାରିଦିଆଗଲା ।" ତା'ପରେ ସେ ଲେଖିଛନ୍ତି, "ଏହାର ଅର୍ଥ କ'ଣ ? ବରଂ ନପଚାରିବା ଭଲ ।" କିନ୍ତୁ ସେ ଭଲ ଭାବରେ ହୃଦୟଙ୍ଗମ କରି-ପାରୁଥିଲେ ଯେ ଏଭଳି ଏକ ଘଟଣାର ପ୍ରକୃତ ଅର୍ଥ ଏକ ଛୋଟିଆ କଥା ନୁହେଁ !

ଏହି ବୃଦ୍ଧ ଇହୁଦୀ ଡାକ୍ତରଙ୍କ ଜୀବନରେ ଏଭଳି କେତେ କେତେ ରାତି ବିତିଯାଇଛି । ଶିଶୁସୁଲଭ ସ୍ୱପ୍ନିଳ ରାତି, ଭୟଙ୍କର ସ୍ୱପ୍ନଯୁକ୍ତ ରାତି, ଅନେକ ଆଶା ଓ

କାମନାର ରାତ ଆଉ ଏକାକୀ ଅନୁଭବ କରିବାର ରାତ, ଅନେକ ଅନୁସନ୍ଧାନର ରାତ ଏବଂ ଅନେକ ହତାଶାର ରାତ ବିତିଯାଇଛି ।

ତାଙ୍କର ଅନେକ ରାତ କଟିଛି ପୁରୁଣା ଓ୍ୱାର୍ସୋ ନଗରର ଓଲ୍ଡେ, ପୋଓ୍ୱିସ୍ଲରେ ଥିବା ସାଧାରଣ ଜନତାଙ୍କପାଇଁ ଉଦ୍ଦିଷ୍ଟ ଘରମାନଙ୍କରେ । ଛାତ୍ରଜୀବନରେ ପାଠପଢ଼ା ପାଇଁ କଟିଛି ଅନେକ ରାତ, ଆଉ ହାଉସ୍ ସର୍ଜନ ଥିଲାବେଳେ ଡାକ୍ତରଖାନାରେ କଟିଛି ଅନେକ ରଜନୀ, ଯେଉଁଠି ରୋଗୀ ଦେଖିବାପାଇଁ ବାଜଉଠୁଥିବା ଘଣ୍ଟା ଶବ୍ଦରେ ତାଙ୍କର ନିଦ ହଠାତ୍ ଭାଙ୍ଗିଯାଉଥିଲା ।

ଅନେକ ବର୍ଷ ହେଲା ସେ ଅନାଥାଶ୍ରମରେ ଧାଡ଼ି ଧାଡ଼ି ହୋଇ ପଡ଼ିଥିବା ଖଟଗୁଡ଼ିକ ମଝିରେ ରାତିମାନଙ୍କରେ ବୁଲିଛନ୍ତି । ଶୋଇପଡ଼ିଥିବା ପୁଅଝିଅମାନଙ୍କୁ ପାଖରୁ ନିରୀକ୍ଷଣ କରିଛନ୍ତି । ଅନେକ ସମୟରେ ସେମାନଙ୍କ କପାଳରେ ହାତବୁଲାଇ ଝାଳ ପୋଛିଦେଇଛନ୍ତି । ଶୋଇଥିବା ପିଲାମାନଙ୍କୁ ଚୁମା ଦେଇଛନ୍ତି । ସେମାନଙ୍କର ଛୋଟ ଛୋଟ ଦେହକୁ କମ୍ବଳ ଘୋଡ଼େଇ ଦେଇଛନ୍ତି, ସେମାନଙ୍କର ଶୋଇବା ଚଦରଗୁଡ଼ିକକୁ ସଜାଡ଼ି ଦେଇଛନ୍ତି । ଶୋଇଲା ପିଲାଟିଏ କୌଣସି କାରଣରୁ କାନ୍ଦିଉଠିଲେ ତାକୁ ଆଉଁସେଇ ଶୁଆଇ ଦେଇଛନ୍ତି, ଅର୍ଦ୍ଧ ନିଦ୍ରିତ ଅବସ୍ଥାରେ ପିଲାମାନଙ୍କୁ ପରିସ୍ରା କରାଇବାପାଇଁ ପରିସ୍ରାଗାର ପାଖକୁ ନେଇଛନ୍ତି । ଡାକ୍ତର ଜାନୁସ୍ କୋର୍ଜାକଙ୍କର ଅନେକ ରାତି ଏହିପରି ଭାବରେ ପିଲାମାନଙ୍କ ସେବାରେ ବିତିଯାଇଛି ।

ଶେଷ ଗ୍ରୀଷ୍ମଛୁଟିରେ ଗୋକ୍ଲାଓ୍ୱେକ୍ ଅନାଥାଶ୍ରମ ଫାର୍ମରେ କୋର୍ଜାକ ତାଙ୍କର ଜଣେ ବନ୍ଧୁ ପାଖକୁ ଗୋଟିଏ ଚିଠି ଲେଖିଥିଲେ । ସେଥିରେ ସେ ଯାହା ଲେଖିଥିଲେ, ସେଥିରୁ ହୃଦୟଙ୍ଗମ କରିହେବ ତାଙ୍କ ରାତ୍ରି ଜୀବନଗୁଡ଼ିକ କିପରି ପିଲାମାନଙ୍କ ପାଇଁ ଏକ ପରିଚିତ ଦରଦୀ ହୃଦୟ ହୋଇ ରହିଥିଲା । ଚିଠିରେ ଥିଲା—ଜମାନ୍ ମିଜ୍‌ଲିସ୍ ରୋଗରେ ପୀଡ଼ିତ ପିଲାଙ୍କ ଉଦ୍ଦେଶ୍ୟରେ ଥିବା ଅଲଗାଘରେ ମୁଁ ଶୋଇଥିଲି । ଗତ ରାତିରେ ମୁଁ ଖୁବ୍ କ୍ଲାନ୍ତ ହୋଇପଡ଼ିଥିଲି । ମୋତେ ରାତିରେ ନିଦ ଘାରିଗଲା । ସତରେ କେଡ଼େ ଚମତ୍କାର କଥା ! ମୁଁ ପିଲାମାନଙ୍କର ନିଃଶ୍ୱାସ ପ୍ରଶ୍ୱାସ, କରୁଣ କାନ୍ଦ ଏବଂ କାଶର ଶବ୍ଦ ଶୁଣିଲି । ସତରେ ନିଦ୍ରିତ ପିଲାଟିର କାଶିବା, ଜର ଓ ରୋଗରେ ପିଲାର ସଂଗ୍ରାମ, କୁଣ୍ଠେଇ ହେବା ଆଉ ପିଲାଙ୍କ ଭିତରେ ମାଛିମାନଙ୍କର ଭଣ ଭଣ ଶବ୍ଦ ଭିତରେ କେତେ ଯେ ଜ୍ଞାନ ଭରି ନ ରହିଛି !

ବର୍ତ୍ତମାନର ଅବସ୍ଥା ବି ଠିକ୍ ଏକାଭଳି, ଯଦିଓ ସାମାନ୍ୟ ପାର୍ଥକ୍ୟ ରହିଛି । ତାଙ୍କର ଜୀବନସ୍ମୃତିରେ ସେ ଲେଖିଛନ୍ତି,—ମୁଁ ଶେଯ ଉପରେ ପଡ଼ିଥାଏ । ମୋ ଘରେ ଶୋଇଥା'ନ୍ତି ଖୁବ ମୋନିଅସ୍‌ଙ୍କ ଭିତରୁ ସାନ ମୋନିଅସ୍, ଆଲ୍‌ବର୍ଟ, ଗର୍ଗି

ଏବଂ ଅନ୍ୟପାଖରେ ଛଅଟି ଝିଅପିଲା—ଫେଲୁଦଆ, ଓଜନଆ, ଏବଂ ହାନେକ୍‌ଜ୍‌କା । ଘରର ଜବ ୫ ମେଲାଥାଏ । ୬୦ ଜଣ ପିଲା ଶୁଅନ୍ତି ଡର୍ମିଟୋରିରେ । ଝିଅଏ ପୁଅଙ୍କୁ ୬୦ ଜଣ ପୁଅ ଶୁଅନ୍ତି । ଅନ୍ୟମାନେ ଉପର ମହଲରେ ଶୁଅନ୍ତି । ଯଦିଓ ଘରଗୁଡ଼ିକ ଅଣ୍ଟା, ବଡ଼ପିଲାମାନେ ଉପର ମହଲରେ ଅଣ୍ଟା ସହୁଥା'ନ୍ତି ।

ଜାନୁସ୍ କୋର୍ଝାକ "ଗୋଟିଏ ପ୍ରଜାପତିର ଦୋଷସ୍ୱୀକାର" ବହିର ଶେଷ ଅଧ୍ୟାୟରେ ଲେଖିଛନ୍ତି—ଜଣେ କୁନପିଲା ମନରେ ଏକ ବନ୍ଦୀ ବିଷୟରେ ଦୃଶ୍ୟପଟଟିଏ ନାଚଉଠିଲା । ବନ୍ଦୀଜଣକ ଏକ ଚଳମାନ କାନ୍ଥଥିବା ଜେଲପ୍ରକୋଷ୍ଠ ଭିତରେ ଫାଶୀଦ୍ୱାରା ମୃତ୍ୟୁଦଣ୍ଡ ପାଇବା ପାଇଁ ଅପେକ୍ଷା କରିଥିଲା । ହଠାତ୍ ଜେଲ୍ ପ୍ରକୋଷ୍ଠର କାନ୍ଥଗୁଡ଼ିକ ସଙ୍କୁଚିତ ହେବାରେ ଲାଗିଲା ଏବଂ ବନ୍ଦୀଟିର ବଞ୍ଚିରହିବା ପାଇଁ ଯଥେଷ୍ଟ କମ୍ ବାୟୁ ରହିଲା । କୁନ ପିଲାଟି ଏ ସମୟରେ ବନ୍ଦୀଟି କ'ଣ ଭାବୁଥିବ ଭାବି ଭାବି ଭୟ କାତରତାରେ ଥରିଉଠିଲା ।

ଡ କ୍ଟର ଯେଉଁ କାଳ୍ପନିକ ରାଜ୍ୟରେ ବଞ୍ଚିବାପାଇଁ ସ୍ୱପ୍ନ ଦେଖୁଥିଲେ, ସେ ଆଜି ସେହି ରାଜ୍ୟରେ ବାସ୍ତବରେ ବଞ୍ଚୁଛନ୍ତି । କୌଣସି ପ୍ରକାରର ସୁରକ୍ଷା ନଥାଇ ସେ ସବୁଠାରୁ ଖରାପ ପରିସ୍ଥିତିକୁ ସାମନା କରୁଥିଲେ । ଶେଷ ଦିନଗୁଡ଼ିକ ମଧ୍ୟରେ ଧ୍ୱଂସ ହୋଇଯାଉଥିବା ତାଙ୍କର କଳ୍ପନାଗୁଡ଼ିକୁ ମନ ଭିତରୁ ଫୋପାଡ଼ି ଦେବାକୁ ଅକ୍ଷମ ହୋଇପଡ଼ୁଥିଲେ ।

ସେ ପରମେଶ୍ୱରଙ୍କୁ ତାଙ୍କ ଭାବନାଗୁଡ଼ିକୁ ଜଣେଇବାକୁ ଲାଗିଲେ । ତାଙ୍କପାଇଁ ପରମେଶ୍ୱର ହେଉଛନ୍ତି ସିଏ, ଯାହାଙ୍କ ପ୍ରତି ତାଙ୍କର ସର୍ବାଧିକ ବିଶ୍ୱାସ ରହିଥିଲା ଏବଂ ଏହି ବିଶ୍ୱାସ ଭିତରେ କୌଣସି ଅନ୍ଧବିଶ୍ୱାସ ନଥିଲା । ପରମେଶ୍ୱରଙ୍କ ପାଖରେ ଏହା ତାଙ୍କର କରୁଣ ଚିତ୍କାର ନଥିଲା, ବରଂ ଥିଲା ପ୍ରଶଂସା ଓ କୃତଜ୍ଞତାର ସ୍ତୁତିଗାନ ।

ହେ ପରମେଶ୍ୱର ଧନ୍ୟ ତୁମକୁ । ତୁମେ ଦେଇଛ ଏଇ ସବୁଜ ଘାସ ଗାଲିଚା, ସୁନେଲି ଆଭାରେ ରଞ୍ଜିତ କୋମଳ ସୂର୍ଯ୍ୟାସ୍ତର ଦୃଶ୍ୟ, ଦିନସାରର ରୌଦ୍ରତାପ ପରେ ସନ୍ଧ୍ୟା କାଳର ସୁଲୁସୁଲିଆ ମଳୟ ପବନ । ଧନ୍ୟ ତୁମେ ପ୍ରଭୁ, ତୁମେ ଦେଇଛ ଏତଲି ଜ୍ଞାନ ଆଉ ସୁବାସିତ କୁସୁମର ସୌନ୍ଦର୍ଯ୍ୟ, ଜୁଳୁଜୁଳିଆ ପୋକ ଭିତରେ ସବୁଜ-ଆଲୋକ ଏବଂ ସ୍ୱରଜ ଜ୍ୟୋତିରେ ଭରିଦେଇଛ ଏଇ ମହା-ଆକାଶକୁ ।···ଧନ୍ୟ ତୁମେ ପ୍ରଭୁ, ଧନ୍ୟ ତୁମେ ଶିଳ୍ପୀ ।"

ତାଙ୍କ ଜୀବନ ସ୍ମୃତିରେ ଯେଉଁଠି ସେ ପ୍ରଥମେ ପରମ ପ୍ରଭୁଙ୍କୁ ଲକ୍ଷ୍ୟକରି ଲେଖିଛନ୍ତି, ସେଠାରେ ସେ ଡାଭିଡ଼ଙ୍କ ଧର୍ମ ସ୍ତୋତ୍ରରୁ ଉଦ୍ଧୃତ କରିଛନ୍ତି । ଏହି ସ୍ତୋତ୍ରଟି ଉଭୟ ଇହୁଦୀ ଏବଂ ଖ୍ରୀଷ୍ଟିୟାନମାନଙ୍କର ପ୍ରାର୍ଥନା ଅଟେ ।

ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଯେ ତାଙ୍କର ପିଲାମାନଙ୍କ ପାଖରେ ଏପରି କିଛି ଥିବା ଦରକାର ଯାହାଦ୍ୱାରା ସବୁଠୁ ବଡ଼ ବିପଦ ସମୟରେ ସେମାନେ ରକ୍ଷାପାଇ-ପିବେ । ଅତି କମ୍‌ରେ ଧ୍ୱଂସର ସଂକୀର୍ଣ୍ଣ ବୃତ୍ତ ଭିତରେ ସେମାନଙ୍କର ମନ ଓ ହୃଦୟରେ ଟିକିଏ ଆଶ୍ୱାସନା ଓ ଭରସା ଭରିଉଠିବ । କିନ୍ତୁ, ଏହି ପ୍ରାର୍ଥନାଟି ପିଲାଙ୍କୁ ଯୋଗାଇ ଦେବାପାଇଁ ତାଙ୍କର ସମସ୍ତ ଉଦ୍ୟମ ହିଁ ହତାଶାରେ ପରିଣତ ହୋଇଥିଲା ।

ସେ ପ୍ରାର୍ଥନା ଭିତରେ ଯାହା ଖୋଜୁଥିଲେ ସେହି କଥାଟିକୁ ଅତ୍ୟନ୍ତ ଯନ୍ତ୍ରଣା-ଦାୟକ ଗ୍ଲାନି ଭିତରେ ଖୋଜିବାକୁ ଲାଗିପଡ଼ିଲେ । ପ୍ରକୃତ ପ୍ରାର୍ଥନାଟି ଏତେ ସହଜରେ ସେ ପାଇପାରିଲେ ନାହିଁ । କାରଣ ହୋଇ ସେ ଆତୁର କାକୁସ୍ଥ ଭାବରେ ପ୍ରାର୍ଥନାଟିକୁ ପୁନରାବୃତ୍ତି କଲେ—ହେ ପରମ ପିତା···ଏହି ପ୍ରାର୍ଥନାଟି କ୍ଷୁଧା ଓ ଯନ୍ତ୍ରଣାର ସ୍ତୂପ ଭିତରୁ ବାହାରି ହୋଇଛି । ହେ ପରମ ପିତା, ତୁମେ ଯିଏ ସ୍ୱର୍ଗରେ ରହିଛ···ଆମର ଦୈନିକ ରୁଟି···ଆମର··ରୁଟି···ରୁଟି···ନା, ନା !! ହେ ପରମ ପିତା !! ମୋ ପିଲାଙ୍କ ପାଇଁ ରୁଟି ନାହିଁ ।"

ରାତିରେ ସର୍ବଶକ୍ତିମାନ ପରମେଶ୍ୱରଙ୍କଠାରେ ବିନୀତ ନିବେଦନ ପରେ ବୃଦ୍ଧ ଡାକ୍ତର ଝରକା ଖୋଲିଦିଅନ୍ତି ଏବଂ ଜୁଲାଇ ମାସର ନୀଳ ଆକାଶର ପରିବ୍ୟାପ୍ତିକୁ ନିମଗ୍ନ ହୋଇ ନିରୀକ୍ଷଣ କରନ୍ତି ।

"ତା'ପରେ ଆସିଲା ମୃତ୍ୟୁର ବିଜ୍ଞପ୍ତିକା । ଇହୁଦୀ ଅନାଥାଶ୍ରମର ବଗିଚା ଫୁଲଗୁଡ଼ିକ । ରକ୍ଷୀଟି ମୋ କାମକୁ ଲକ୍ଷ୍ୟକରୁଛି । ତାକୁ କ'ଣ ଏହା ଦେଖି ବିରକ୍ତ ଲାଗୁଛି ? କେତେ ଶାନ୍ତିରେ ମୁଁ ସକାଳ ଛ'ଟାବେଳେ ଏ କାମରେ ଲାଗିଯାଉଛି । ତା'ପାଇଁ ସତରେ କେଉଁ ଭଲ ଶିକାରଟିଏ । ତା'ପରେ ବନ୍ଧୁକଟିଏ ଅଛି । ସେ କାହିଁକି ଛିଡ଼ାହୋଇଛି ଏବଂ ମୋତେ ଲକ୍ଷ୍ୟକରୁଛି ?"

ସେ ରକ୍ଷୀ ବିଷୟରେ ଅନେକ କଥା ଭାବିବାକୁ ଲାଗିଲେ—ବୋଧହୁଏ ରକ୍ଷୀଟି ଲେଇପିଗ୍‌ର ଜଣେ ଗାଉଁଲି ଶିକ୍ଷକ, ବୋଧହୁଏ ସେ ମାନ୍‌ହେମ୍‌ର ରାସ୍ତା ସଫା କରୁଥିବା ଜଣେ ଲୋକ ବା ସେ କଲୋନ୍‌ର ହୋଟେଲରେ ଖାଦ୍ୟ ପରଷୁଥିବା ଜଣେ ବ୍ୟକ୍ତି । ମୁଁ ଯଦି ତା' ଆଡ଼କୁ ମୋ ମୁଣ୍ଡ ନୁଆଁଇଦେବି ବା ହାତ ହଲାଇ ଦେବି, ତେବେ ସେ କ'ଣ କରିବ ? ବୋଧହୁଏ ସେ ଜାଣିନାହିଁ ଏଠାରେ ସବୁ କ'ଣ ଅଛି । ହୋଇପାରେ ସେ ଗତକାଲି କୌଣସି ଦୂର ଜାଗାରୁ ଆସି ଏଠାରେ ପହଞ୍ଚିଛି ।

ପରିଶେଷରେ ତାଙ୍କ ପାଇଁ ସବୁଠାରୁ ଅଧିକ ଗ୍ରହଣୀୟ ପ୍ରାର୍ଥନା ଥିଲା—"ମୁଁ କାହାର ଅନିଷ୍ଟ କାମନା କରେ ନାହିଁ···ମୁଁ ଜାଣେନା ଏସବୁ କେମିତି ହେଉଛି···।"

## (୩୧) ମରୀଚିକା ପରେ ମରୀଚିକା

ଇହୁଦୀ ବସ୍ତି ଭିତରେ ରହୁଥିବା ଲୋକମାନେ ବିଶ୍ୱାସ କରିବାକୁ ପ୍ରସ୍ତୁତ ନଥିଲେ ଯେ ସେମାନଙ୍କର ଜୀବନ ଏକ ଭୟାବହ କାରୁଣ୍ୟ ଭିତରକୁ ପ୍ରବେଶ କରୁଛି । କିନ୍ତୁ ସେମାନଙ୍କର ଅଜ୍ଞାତରେ ସେମାନଙ୍କର ଜୀବନ ଏକ ଦାରୁଣ ବିଭୀଷିକା ଭିତରକୁ ଟାଣି ହୋଇଯାଉଥିଲା ।

୧୯୪୨ ମସିହା ଆରମ୍ଭରୁ ଓ୍ୱାର୍ସୋର ପ୍ରତ୍ୟେକ ଗଳି ସରଳ ଲୋକମାନଙ୍କର ରକ୍ତରେ ରଞ୍ଜିତ ହୋଇଆସୁଥିଲା । ଜଣେ ଇହୁଦୀକୁ ହତ୍ୟା କରିବା ଏକ କୁକୁରକୁ ହତ୍ୟା କରିବାଠାରୁ ହୀନ ବୋଲି ବିଚାର କରାଯାଉଥିଲା ।

ପ୍ରତିଦିନ ଦୁଃସମ୍ବାଦ ଆସି ପହଞ୍ଚୁଥିଲା ଯେ ଆଜି ଅମୁକ ଜାଗାରେ ଇହୁଦୀ-ମାନଙ୍କୁ ହତ୍ୟା କରାଗଲା, କାଲି ଅମୁକ ଜାଗାରେ ଆଉ ଦଳେ ନିଃଶେଷ ହେଲେ, ଇତ୍ୟାଦି । କିନ୍ତୁ ଇହୁଦୀ ବସ୍ତିରେ ରହୁଥିବା ଇହୁଦୀମାନେ ଏ ସମ୍ବାଦକୁ ବିଶ୍ୱାସ କରିବାକୁ ପ୍ରସ୍ତୁତ ନଥିଲେ ।

ଜର୍ମାନମାନେ ସେମାନଙ୍କର ଆଦେଶ କେମିତି ପାଳିତ ହେବ, ସେଥିପାଇଁ ଯଥେଷ୍ଟ ଯତ୍ନଶୀଳ ଓ ପ୍ରତିଜ୍ଞାବଦ୍ଧ ଥିଲେ । ସେମାନେ ବହୁତ ଚତୁରତାର ସହ ବିଭିନ୍ନ ଭାବରେ ମିଥ୍ୟା ପ୍ରଚାର କରୁଥିଲେ । ପ୍ରଚାରଗୁଡ଼ିକ ଏପରି ଥିଲା ଯଦ୍ଦ୍ୱାରା ଇହୁଦୀମାନଙ୍କ ଭିତରେ ଭୟ କମିଯିବ ଏବଂ ସେମାନେ ଜର୍ମାନମାନଙ୍କ କଥାରେ ଭୁଲିଯିବେ । ଇହୁଦୀମାନଙ୍କୁ ଏଠୁ ନେଇ ଅନ୍ୟ କେଉଁଠି ରଖାଯିବ ବା ସେମାନଙ୍କର ଭଲପାଇଁ ଆଉ କ'ଣ କ'ଣ କରାଯିବ, ଏହିପରି ନାନା ପ୍ରକାରର ମିଥ୍ୟା ପ୍ରତିଶ୍ରୁତି ଦେଇ ସେମାନେ ଇହୁଦୀମାନଙ୍କୁ ଶାନ୍ତ କରିଦେଉଥିଲେ ଏବଂ ମିଥ୍ୟା ଭରସା ଦେଉଥିଲେ ।

ସରଳ ସାଧାରଣ ଜୀବନଯାପନ କରୁଥିବା ଇହୁଦୀମାନେ ଏକ ଦଳଗତ ହତ୍ୟାର ଶୀକାର ହେବେ ବୋଲି କଳ୍ପନା କରିପାରିନଥିଲେ । ନୀରିହ, ନିଷ୍କପଟ ତଥା ନିର୍ଦ୍ଦୋଷ ପୁରୁଷ, ମହିଳା, ଶିଶୁ ଆଦି ସମସ୍ତେ ଏହି ଭୟଙ୍କର ପରିଣତି ଭୋଗ କରିବେ ବୋଲି ଚିନ୍ତା ବି କରିନଥିଲେ ।

୧୯୪୨ ମସିହା ଏପ୍ରିଲ ୧୭ ଓ ୧୮ ତାରିଖରେ ଘଟିଥିବା ବର୍ବର ଅମାନୁଷିକ ଘଟଣା ହିଁ ଅନେକଙ୍କ ଆଖି ଖୋଲିଦେଲା । ବିଶେଷତଃ ସର୍ବନିମ୍ନ ଯୁଦ୍ଧଖୋର ଇହୁଦୀ ଯୁବବାସୀ ଏଥିପ୍ରତି ଅଧିକ ପ୍ରତିହିଂସାଶୀଳ ହୋଇଥିଲେ । ଏହିଦିନ ପ୍ରାୟ ପଚାଶ ହଜାର ଇହୁଦୀଙ୍କୁ ଗୁଳିକରି ମାରିଦିଆଗଲା ।

ଜନସାଧାରଣଙ୍କ ଭିତରେ ସବୁବେଳେ କୋଳୁଆ ଭୟ ଲାଗି ହୋଇରହିଲା । ପ୍ରତିଦିନ ରାତିରେ ଗୁଳିଗୁଳାର ଗର୍ଜନ ଶୁଭିଲା । ପ୍ରତି ଗଳିରେ ମୃତ୍ୟୁର ଆର୍ତ୍ତନାଦ । କେଉଁଠି ପୁରୁଷ ତ କେଉଁଠି ମହିଳା ଆଉ କେଉଁଠି ଶିଶୁର ମୃତ ଶରୀର । ଜଘନ୍ୟ ରକ୍ତର ହୋରି ।

ଗେଜଆ ଗଳିର ଜେଲ୍ ପାଖରେ ଇହୁଦୀ ବସ୍ତି ସୀମାକୁ ପାରହୋଇ ଆର୍ଯ୍ୟ-ଭୂଇଁକୁ ଯାଉଥିବା ହଜାର ହଜାର ଇହୁଦୀଙ୍କୁ ଦୋଷୀ ସାବ୍ୟସ୍ତ କରାଗଲା । ସେମାନେ ଗଣହତ୍ୟାର ଶୀକାର ହେଲେ । ଶହ ଶହ ଇହୁଦୀ ମୃତ୍ୟୁର ଶେଷ ଆବାଜ ଶୁଣିବା ପାଇଁ ବନ୍ଧୁକ ସାମନାରେ ନତମସ୍ତକ ହୋଇ ଛିଡ଼ା ହୋଇଥିଲେ ।

ଅନେକ ସାହସୀ ଇହୁଦୀ କିଛି ଖାଦ୍ୟ ଛଡ଼ାଇ ନେଇ ସେମାନଙ୍କର ଭୋକିଲା ପିଲାଛୁଆଙ୍କ ପାଟିରେ ଦେବେ ବୋଲି ବସ୍ତିର କାନ୍ଥ ତଳେ ପ୍ରତିଦିନ ଆସି ଛିଡ଼ା ହେଉଥିଲେ । ଅନେକଙ୍କ ହାତରୁ ଗୁଳିଆଘାତରେ ସେ ସବୁ କୁଆଡ଼େ ଖସିପଡ଼ୁଥିଲା । ସେହିପରି ଅନେକ ଶିଶୁଙ୍କର ଶେଷ ପରିଣତି ହୋଇଥିଲା ମୃତ୍ୟୁ । ସେମାନଙ୍କର ପ୍ରଧାନ ଦୋଷ ଥିଲା ଯେ ସେମାନେ ବସ୍ତି କାନ୍ଥର ଖୁବ୍ ନିକଟରେ ଖେଳିଥିଲେ କିମ୍ବା କାନ୍ଥ ବାହାରକୁ ଯାଇ ଖାଇବା ପାଇଁ ହାତ ପତାଇଥିଲେ ।

ଜର୍ମାନମାନେ ଆଉ ଏକ ମଜାଚକା ଦେଖାଇ ଇହୁଦୀମାନଙ୍କୁ କୁହେଳିକାରେ ପକାଇଦେଲେ । ସେହିବର୍ଷ ଜୁଲାଇ ମାସରେ ଇହୁଦୀମାନଙ୍କର ପୁନର୍ବସତି ପାଇଁ ଘୋଷଣା କରାଗଲା । ଏହାର ପ୍ରକୃତ ଅର୍ଥ ବୁଝିବାପାଇଁ ଇହୁଦୀମାନଙ୍କର ଅକଲ ପାଇଲା ନାହିଁ । ଏହି ଘୋଷଣାରେ ଦଳଗତ ହତ୍ୟାର କୌଣସି ଗ୍ରୁପ ହିଁ ନଥିଲା । ଏଥିରେ କୁହାଯାଇଥିଲା ଯେ ପୁରୁଷ, ମହିଳା ତଥା ଶିଶୁ ଯେଉଁମାନେ କଳ-କାରଖାନାରେ କାମ କରୁନାହାନ୍ତି ବା ଯେଉଁମାନେ ଜର୍ମାନ ସୈନ୍ୟବାହିନୀରେ ନାହାନ୍ତି, ସେମାନଙ୍କୁ ଓ୍ୱାର୍ସୋରୁ ବାହାର କରି ଦିଆଯିବ ।

ଏହା ନୂଆ ସତର୍କ ଘଣ୍ଟି ଭାବରେ ଇହୁଦୀମାନଙ୍କୁ ଦୋହଲାଇଦେଲା । ଲୋକେ କାଗଜପତ୍ର ଯୋଗାଡ଼ କରିବାକୁ ବ୍ୟସ୍ତ ହୋଇପଡ଼ିଲେ । ସେମାନେ ଭାବିଲେ କାଗଜପତ୍ର ଦେଖାଇପାରିଲେ ସେମାନଙ୍କୁ ଓ୍ୱାର୍ସୋରେ ରହିବାକୁ ଅନୁମତି ମିଳିଯିବ ।

ଜୁଲାଇ ୨୨ ତାରିଖରେ ଜର୍ମାନ କର୍ମଚାରୀମାନେ ଇହୁଦୀ ପରିଷଦର ଅଫିସ୍ ଦ୍ୱାରରେ ପହଞ୍ଚିଲେ । ସେମାନେ ସାଙ୍ଗରେ ଇହୁଦୀମାନଙ୍କୁ ନିର୍ବାସନ କରିବାର ନିର୍ଦ୍ଦେଶାବଳୀଟି ଧରି ଆସିଥିଲେ । ଜର୍ମାନମାନେ ସେଠାରୁ ଚାଲିଗଲାପରେ ଇହୁଦୀ ପରିଷଦରେ ଅନେକ ସମସ୍ୟାଧରି ନିର୍ଦ୍ଦେଶାବଳୀ ଉପରେ ଆଲୋଚନା କରାଗଲା । ବସ୍ତିର ଇହୁଦୀ ପୋଲିସମାନଙ୍କୁ ନିର୍ଦ୍ଦେଶ ଦିଆଯାଇଥିଲା ଯେଉଁ ଜର୍ମାନୀର ନିର୍ବାସନ

ନିର୍ଦ୍ଦେଶାବଳୀ ଯେପରି ଶୃଙ୍ଖଳିତ ଭାବରେ ପାଳନ କରାଯାଏ । ଏଥିରେ ଯେପରି କୌଣସି ବିଶ୍ୱାସଘାତକତା ନହୁଏ, ସେଥିପାଇଁ କଡ଼ାକଡ଼ି ନଜର ଦିଆଯାଇଥିଲା ।

ଗଳି, କନ୍ଧ, ଅଗଣା, ଘରର ଏରୁଣ୍ଡି ବନ୍ଧ ଉପରେ ଠିଆହୋଇ ଲୋକମାନେ ଉତ୍ତେଜିତ ଭାବରେ ଏ ବିଷୟରେ କଥାବାର୍ତ୍ତା ହେଉଥିଲେ । ଅଳ୍ପ କେତେକ ବିଶ୍ୱାସ କଲେ ଯେ ଏହି ନିର୍ବାସନ କେବଳ ଏକ ସ୍ଥାନାନ୍ତର । ଅଧିକାଂଶ ବିଶ୍ୱାସ କରିପାରିଲେ ନାହିଁ ଯେ ଏହି ନିର୍ବାସନ ହିଁ ପୃଥିବୀ ପୃଷ୍ଠରୁ ଅନ୍ତିମ ବିଦାୟ । ଦ୍ୱନ୍ଦ୍ୱ ଓ ଆଶଙ୍କା ଭିତରେ ବସ୍ତିରୁ ଏହି ନିର୍ବାସନ କାର୍ଯ୍ୟକ୍ରମ ଆରମ୍ଭ ହେଲା ।

ଏପରି କାଣ୍ଡ ଘଟିବ ବୋଲି ଡାକ୍ତର କାନୁସ୍ କୋର୍ଯାକ୍ ତାଙ୍କର ଅନ୍ତର୍ନିହିତ ଜ୍ଞାନବଳରେ ଆଗରୁ ଅନୁମାନ କରିସାରିଥିଲେ ।

ଲୋକମାନଙ୍କୁ ବସ୍ତିରୁ ବାହାର କରିବାର ଦ୍ୱିତୀୟଦିନ ଇହୁଦୀ ପରିଷଦର ସଭାପତି ଆଡ଼ାମ୍ କର୍ନିକ୍‌ଜୋ ଆତ୍ମହତ୍ୟା କଲେ ।

'ଅଇଫ୍ ଡର୍‌ଓ୍ୱାକ୍' ନାମକ ଇହୁଦୀ ପତ୍ରିକା ଏହି ସ୍ଥାନାନ୍ତରକରଣ ବିରୋଧରେ ସ୍ୱର ଉଠାଇଲା ଏବଂ ସ୍ଥାନାନ୍ତରର ବିପଦ ସମ୍ବନ୍ଧରେ ସତର୍କ କରାଇଲା । ଇହୁଦୀ ପରିଷଦର ଗୁପ୍ତଚରମାନଙ୍କ ଦ୍ୱାରା କରାଯାଇଥିବା ଅନୁସନ୍ଧାନମୂଳକ ତଥ୍ୟକୁ ଏହି ପତ୍ରିକାରେ କ୍ରମାନୁସାରେ ପ୍ରକାଶ କରାଗଲା । ପତ୍ରିକାର ଦ୍ୱିତୀୟ ସଂଖ୍ୟାରେ ଟ୍ରେବ୍ଲିଙ୍କାକୁ ଯାଉଥିବା ହତଭାଗ୍ୟ ଯାତ୍ରୀମାନଙ୍କୁ ଗ୍ୟାସ୍ ଦ୍ୱାରା ହତ୍ୟା କରାଯାଉଥିବା ଘଟଣାକୁ ଜନସାଧାରଣଙ୍କୁ ଖୋଲାଖୋଲି ଭାବରେ ଜଣାଇ ଦିଆଗଲା ।

ବସ୍ତିରେ ରହୁଥିବା ଅଧିକାଂଶ ଇହୁଦୀ ଏସବୁ କାହାଣୀକୁ ବିଶ୍ୱାସ କଲେ ନାହିଁ । ଏଭଳି ବୀଭତ୍ସତାମୟ ସତ୍ୟଘଟଣା ଗୁଡ଼ିକୁ ଶୁଣିବାକୁ ସେମାନଙ୍କର ରୁଚି ଅରି-ଉଠୁଥିଲା ।

ନିର୍ବାସନ ନିର୍ଦ୍ଦେଶାବଳୀକୁ ମାନି ଅନେକ ଇହୁଦୀ ସ୍ୱେଚ୍ଛାକୃତ ଭାବେ ବାହାରି ଆସିଲେ । ସେମାନଙ୍କ ପାଖରେ ଥିଲା ଅଳ୍ପ କିଛି ଜିନଷ ଆଉ ସେମାନଙ୍କର ପିଲାମାନେ । ଅତି ଦୟନୀୟ ଥିଲା ସେମାନଙ୍କର ଅବସ୍ଥା । ସେମାନଙ୍କୁ ପ୍ରଥମେ ଉମସ୍କ୍ଲାଗ୍‌ପ୍ଲାଜ୍ ନିଆଯାଉଥିଲା । ଉପସ୍କ୍ଲାଗପ୍ଲାଜ୍ ହେଉଛି ସେହି ଜାଗା ଯେଉଁଠାରୁ ସେମାନେ ଟ୍ରକ୍‌ରେ ଲଦାହୋଇ ବିଭିନ୍ନ ଜାଗାକୁ ଯିବେ । ଜର୍ମାନମାନେ ସେମାନଙ୍କୁ ଜଣପିଛା ତିନଖଣ୍ଡ ରୋଟି ଆଉ କେଜିଏ କମଳା ଚିଆରି ଜାମ୍ ଦେବା ପାଇଁ ଲୋଭ ଦେଖାଇ ପ୍ରବର୍ତ୍ତାଇଥିଲେ ।

ଏହି ନିରୀହ ଇହୁଦୀମାନଙ୍କର କରୁଣ କାହାଣୀ ଅତ୍ୟନ୍ତ ହୃଦୟବିଦାରକ ଥିଲା । ହଜାର ହଜାର ପ୍ରିୟଜନଙ୍କୁ ଛାଡ଼ି ସ୍ୱେଚ୍ଛାକୃତ ଭାବେ ସେମାନେ ନିଶ୍ଚିତ ମରଣ

ମୁହଁକୁ ଚାଲିଆସିଥିଲେ କେବଳ ତିନିଟଣ୍ଡ ରୁଟି ଆଉ ଦୁଇପାଉଣ୍ଡ କମଳା ଡିଆରି ଜାମ୍ ପାଇଁ ।

ସମସ୍ତଙ୍କ ମୁହଁରେ ସେହି ଗୋଟିଏ ପ୍ରଶ୍ନ । କ'ଣ କରିବା ? ଜର୍ମାନମାନଙ୍କ ଆଦେଶ ମାନିନେବା ? ନା ବାଡ଼ି, ପଥର, ଦାନ୍ତ, ନଖ ଲଗାଇ ସେମାନଙ୍କ ସାଥିରେ ଯୁଦ୍ଧ କରିବା ? ଏ ପ୍ରଶ୍ନ ସବୁର ଉତ୍ତର କିଏ ଅବା ଦେଇପାରିଥା'ନ୍ତା ।

ଯେଉଁଦିନ ଇହୁଦୀମାନଙ୍କୁ ବାହାର କରିବା ପ୍ରକ୍ରିୟା ଆରମ୍ଭ ହେଲା, ସେଇ-ଦିନ ଏକ ପ୍ରସ୍ତାବ ଆସିଲା ଯେ, ଷ୍ଟାଉକି ଗଳିର ହସ୍ପିଟାଲ୍‌ରେ ଥିବା କେତେ ଡଜନ୍ ଇହୁଦୀପିଲାଙ୍କୁ କୋର୍ଚ୍ଚାକ୍‌ଙ୍କ ଅନାଥାଶ୍ରମରେ ରଖାଯିବ । କାରଣ ଏହି ହସ୍ପିଟାଲ୍‌କୁ ଜର୍ମାନମାନେ ବନ୍ଦ କରିଦେଲେ । ଇହୁଦୀ କମିଟିରେ ପ୍ରସ୍ତାବଟିକୁ ବିଧିବଦ୍ଧଭାବରେ ଗ୍ରହଣ କରାଗଲା । କିନ୍ତୁ କୋର୍ଚ୍ଚାକ ପ୍ରସ୍ତାବଟିକୁ ବିରୋଧ କଲେ । ସେ ତାଙ୍କ ନିଜ ପିଲାଙ୍କୁ ଯେପରି ଯତ୍ନ ନେବା କଥା ସେପରି ନେଇ ପାରୁ ନାହାନ୍ତି, ପୁଣି ବର୍ତ୍ତମାନ ଆହୁରି ଅଧିକ ପିଲା ଆସିଲେ ପିଲାମାନଙ୍କର ଦୁର୍ଦ୍ଦଶା ବଢ଼ିଯିବ । ସେ ବିଶ୍ୱାସ କରୁଥିଲେ ଯେ ସେ ଯେଉଁ ଅନାଥ ପିଲାମାନଙ୍କ କଥା ବୁଝୁଛନ୍ତି, ସେମାନଙ୍କୁ ପରମେଶ୍ୱର ତାଙ୍କ ଜିମା ଦେଇଛନ୍ତି । ତେଣୁ ସେ ଶେଷ ପର୍ଯ୍ୟନ୍ତ ନିଜର ସମସ୍ତ ଶକ୍ତି ଖଟାଇ ବାହାର ପିଲାଙ୍କୁ ନନେବାପାଇଁ ଜିଦ୍ ଧରିଲେ ।

ସେଇ ଶେଷ କେତୋଟିଦିନ ଜାନୁସ୍ କୋର୍ଚ୍ଚାକ ନିଜ ବିଶ୍ୱାସ ଉପରେ ଅଟଳ ରହିଲେ । ହଜାର ହଜାର ଲୋକ ଆସି ତାଙ୍କୁ ଘେରି ରହିଲେ । ସେମାନଙ୍କ ପିଲାମାନଙ୍କୁ ଅନାଥାଶ୍ରମରେ ଗ୍ରହଣ କରିବା ପାଇଁ ଅନେକ ପାଟିତୁଣ୍ଡ କଲେ । କୋର୍ଚ୍ଚାକ ଏ ଲୋକମାନଙ୍କର ନିସହାୟତା ଓ ଶିଶୁମାନଙ୍କର ନିସହାୟତା ସମ୍ପର୍କରେ ବୁଝିଥିଲେ । କିନ୍ତୁ ଶେଷ ପର୍ଯ୍ୟନ୍ତ ସେ ତାଙ୍କ ଅନାଥାଶ୍ରମକୁ ଅନ୍ୟମାନଙ୍କୁ ପ୍ରବେଶ କରାଇଦେଲେ ନାହିଁ ।

ସତେ ଯେପରି ଏଇ କେତେଦିନ ଡାକ୍ତରଙ୍କ ଦେହରେ ନୂଆ ଜୀବନ ଓ ନୂଆ ଶକ୍ତି ପ୍ରବେଶ କଲା । ସେ ପ୍ରତିଦିନ ଦିନତମାମ ଖଟିଚାଲିଲେ । ରାତିରେ ତାଙ୍କର କ୍ଳାନ୍ତ ଶରୀରଟା ପଥରପରି ଥିରି ହୋଇ ଶୋଇପଡ଼ୁଥିଲା ।

ତାଙ୍କ ଦିନଲିପିରେ ସେ ଲେଖିଥିଲେ, "ପ୍ରତିଦିନ କେତେକେତେ ନିର୍ମମ ଓ କୁତ୍ସିତ ଅନୁଭୂତି ଆସି ପହଞ୍ଚୁଥିଲା । ପ୍ରତି ୨୪ ଘଣ୍ଟାରେ ଓ୍ୱାର୍ସୋର ଚେହେରା ବଦଳି ଯାଉଥିଲା । ଗଣହତ୍ୟାର ପରିମାଣ ଦିନକୁ ଦିନ ବହୁଗୁଣିତ ହୋଇ-ଯାଉଥିଲା ।"

ସେ ଏହି ପରିସ୍ଥିତିଟିକୁ ଏକ ବନ୍ଦୀଶାଳା ଏବଂ ପାଗଳାଖାନା ସହ ତୁଳନା କରିଛନ୍ତି । ପ୍ରକୃତରେ ଏହି ବୀଭତ୍ସ ଓ ଭୟଙ୍କର ଅବସ୍ଥାକୁ କାହାସହ ତୁଳନା କରିବା କଷ୍ଟକର ଏବଂ ସବୁ ଘଟଣାକୁ ବର୍ଣ୍ଣନା କରିବା ସାଧାରଣ ଭାଷାର ବାହାରେ ।

ନିଜ ଅନାଥାଶ୍ରମଟିକୁ ଠିକ୍ ଭାବରେ ରଖିବା ପାଇଁ ଡାକ୍ତର କୋର୍ଯାକ ପାରୁ-ପର୍ଯ୍ୟନ୍ତ ସଂଗ୍ରାମ କଲେ । ସେ ନିଜ ପିଲାମାନଙ୍କ ଜୀବନ୍ତ ଧରିବାକୁ ଲାଗିଲେ । ଗ୍ରୀଡ ଭିତରେ ଅମାପ ଆଶା ଯେ ସେ ତାଙ୍କ ପିଲାମାନଙ୍କୁ ରକ୍ଷା କରିପାରିବେ । ମାତ୍ର ଏ ଆଶା କେବଳ ଏକ ବୃଥା ଆତ୍ମପ୍ରବଞ୍ଚନା ହୋଇ ରହିଲା । ସେ ଇହୁଦୀ କର୍ତ୍ତୃପକ୍ଷଙ୍କ ସାହାଯ୍ୟ ଭିକ୍ଷା କଲେ । କନ୍-ହେଲର ସଂଗଠନ, ଯାହାର କି ଅନେକ ବଦ୍‌ନାମ ଥିଲା, ତାକୁ ବି ସେ ସାହାଯ୍ୟ ମାଗିଲେ । ସାହାଯ୍ୟ ମିଳିବ ବୋଲି ପ୍ରତିଶ୍ରୁତି ମିଳିଲା । ମାତ୍ର କୌଣସି ସାହାଯ୍ୟ ମିଳିପାରିଲା ନାହିଁ ।

ତାଙ୍କ ଜୀବନୀର ଶେଷ ଆଡ଼କୁ ସେ ଲେଖିଛନ୍ତି, ସେ କେବଳ ନିଜକୁ ଠକିବାକୁ ଚେଷ୍ଟା କରୁଥିଲେ । ନିଜର ଯୁକ୍ତି ବିଗ୍ରହକୁ ବିରୋଧ କରି ସେ ନିଶ୍ଚିତ ମୃତ୍ୟୁକୁ ମନରୁ ଏଡ଼େଇ ଦେଉଥିଲେ । କେବଳ ନିଜର ପିଲାମାନଙ୍କ ସକାଶେ ସେ ଭୟ ଓ ଆଶଙ୍କାକୁ ଦୂରକୁ ଠେଲିଦେବା ପାଇଁ ସବୁବେଳେ ଉତ୍କଣ୍ଠିତ ଥିଲେ । କାରଣ ସେ ଜାଣିଥିଲେ, ଯେ ତାଙ୍କ ପାଖରେ ଯଦି ସାମାନ୍ୟତମ ସତର୍କତା ପରିଲକ୍ଷିତ ହୁଏ, ତେବେ ତାଙ୍କ ପିଲାମାନେ ସଙ୍ଗେ ସଙ୍ଗେ କାରଣଟିକୁ ଠଉରେଇନେବେ ।

ସତ୍ୟ ହିଁ ସତ୍ୟ । ନିଜକୁ ଯେତେ ଘୋଡ଼ାଇ ରଖିବାକୁ ଚେଷ୍ଟା କଲେ ବି ଏଥିରୁ ତ୍ରାହି ମିଳିବା କଷ୍ଟକର । ଡାକ୍ତର କୋର୍ଯାକ ଗଣହତ୍ୟାକୁ ବିଶ୍ୱାସ କରିବାକୁ ଲାଗିଲେ । ସେ କେତୋଟି ପଦ ଆବୃତ୍ତି କଲାବେଳେ ତାଙ୍କ ଓଠ ଦୁଃଖରେ ଥରି-ଉଠୁଥିଲା ।

ଗୁହୁଁ ଗୁହୁଁ ଅନ୍ତିମ ରଜନୀ ଉପସ୍ଥିତ ହେଲା । ସେ ଜାଣିଲେ ଯେ ସକାଳେ ବସ୍ତିରୁ ପିଲାମାନଙ୍କୁ ବାହାର କରି ଦିଆଯିବ । ନିଜ ଶୋଇବା ଶଯ୍ୟାଟିକୁ କୋର୍ଯାକ ଖୁବ ଭଲପାଉଥିଲେ । ସେ ବଡ଼ ଭୋର୍‌ରୁ ନିଦରୁ ଉଠିପଡ଼ନ୍ତି, କିନ୍ତୁ ଶେଯ ଗ୍ରୁଡ଼ିଲା-ବେଳକୁ ଖୁବ କୁନ୍ଥୁ କୁନ୍ଥୁ ହୁଅନ୍ତି । ମାତ୍ର ସେହି ଶେଷ ସକାଳଟି ସେ ସବୁଠାରୁ ଅଧିକ ଅନିଚ୍ଛୁକ ଭାବରେ ଶଯ୍ୟା ପରିତ୍ୟାଗ କରିଥିଲେ । ସବୁଦିନ ପରି ସେ ବୁଲି ବାହାରିପଡ଼ିଲେ । ତା'ପରେ ପିଲାଙ୍କର ଓଜନ ଓ ଉଚ୍ଚତା ମାପିଲେ ।

ସେ ସେଦିନ ଲେଖିରଖିଲେ, "ମୁଁ ମୋ ଜୀବନରେ ଆଜି ପ୍ରଥମକରି ଓଜନ ଓ ଉଚ୍ଚତାର ଫଳ ଉପରେ ଆଦୌ ଆଗ୍ରହୀ ନଥିଲି ।"

ଦିଦୀ ଷ୍ଟିଫା ଡାକ୍ତରଙ୍କୁ ସାହାଯ୍ୟ କଲେ । କେତେବେଳେ 'ହୋମ୍'ରୁ (ଅନାଥାଶ୍ରମର ନାଁ) ସମସ୍ତଙ୍କୁ ବାହାର କରାଯିବ ଜଣାନଥିଲା । ଷ୍ଟିଫା ଦିଦୀ ଯଦି ଇଚ୍ଛା କରିଥାନ୍ତେ, ତେବେ ସେଦିନ 'ହୋମ୍'ରୁ ଆଉ କୁଆଡ଼େ ଗୁଲିଯାଇଥାନ୍ତେ ଓ ନିଜ ଜୀବନକୁ କିଛି ଦିନ ପାଇଁ ବଞ୍ଚାଇ ପାରିଥାନ୍ତେ । ଶେଷ ପର୍ଯ୍ୟନ୍ତ ଜଣେ ବିଶ୍ୱସ୍ତ ମାଆର ଭୂମିକା ନିଭାଇଥିବା ଷ୍ଟିଫା ଦିଦୀ ପିଲାମାନଙ୍କୁ ଛାଡ଼ି ଗୁଲିଯିବା ପାଇଁ ମନ

ବଳାଇଲେ ନାହିଁ । ସେ ଘୁଞ୍ଚିଲେ ନାହିଁ ପିଲମାନେ ତାଙ୍କୁ ଛାଡ଼ି 'ହୋମ୍'ରୁ ବାହାରିଯିବେ । ସେ ଜାଣିଥିଲେ ପିଲମାନେ ତାଙ୍କୁ ଖୋଜିବେ । ସେ ପିଲମାନଙ୍କୁ ସାହାଯ୍ୟ କରିପାରିବେ, ଆଶ୍ରୟ ଦେଇପାରିବେ ଓ ଆଶ୍ୱାସନା ଦେଇପାରିବେ ବୋଲି ତାଙ୍କର ବିଶ୍ୱାସ ଥିଲା ।

ଷ୍ଟିଫା ଦିଦୀ ଭଲ ଭାବରେ ଜାଣିଥିଲେ ଘଟଣାର ଅନ୍ତିମ ପରିଣାମ କ'ଣ । ଡାକ୍ତରଙ୍କ ପରି ସେ ମଧ୍ୟ ପିଲଙ୍କୁ ଛାଡ଼ି ନିଜ ଜୀବନକୁ ସୁରକ୍ଷିତ ରଖିବେ ବୋଲି କେବେ ପରିକଳ୍ପନା କରିନଥିଲେ ।

କୋର୍ଜାକଙ୍କ ପାଇଁ ଏ ସମୟରେ ଆଉ ଏକ ବୋଝ ଆସି ପହଞ୍ଚିଲା । ତାଙ୍କ ଶରୀରରେ ଗୋଟିଏ ବଥ ଉଠିଲା । ଏଥିପାଇଁ ଛୋଟ ଧରଣର ଅପରେସନ୍ ଦରକାର ହେଲା । ବସ୍ତିର ଅପରିଷ୍କାର ପରିବେଶ ଯୋଗୁଁ ଅପରେସନ୍ ପରେ ବଥ ଶୁଖିଲା ନାହିଁ ଓ ସେ ଜାଗାରୁ ରକ୍ତସ୍ରାବ ହେଲା ।

୧୯୩୭ ମସିହା ମାର୍ଚ୍ଚ ୭ ତାରିଖରେ କୋର୍ଜାକ୍ ତାଙ୍କର ଜଣେ ବନ୍ଧୁଙ୍କ ପାଖକୁ ଲେଖିଥିଲେ, 'ପରିଣାମ ଯାହା ହେଉ ପଛକେ ଜଣେ ନିଜ ସ୍ଥାନରେ ଦୃଢ଼ ହୋଇ ରହିବା ଏକାନ୍ତ ଅପରିହାର୍ଯ୍ୟ ।' ବର୍ତ୍ତମାନ ସେହି ସମୟ ଆସିଛି । ସେ ସ୍ଥିର କରିଥିବା ସ୍ଥାନରୁ ବିଚ୍ୟୁତ ହୋଇନାହାନ୍ତି । ସେ ଅନ୍ୟ କୌଣସି ପନ୍ଥା ଗ୍ରହଣ କରିବା ପାଇଁ ଚିନ୍ତା ବି କରିନାହାନ୍ତି । ଯଦିଓ ସେତେବେଳେ ବହୁତ ଅସୁସ୍ଥ ଥିଲେ ସେ 'ହୋମ୍'କୁ ଫେରି ଆସିଥିଲେ ।

କୋର୍ଜାକ ପିଲମାନଙ୍କୁ ଆଶ୍ୱାସନା ଦେବାକୁ ଅନେକ ପ୍ରଚେଷ୍ଟା କଲେ । ସେ ଗୋଟିଏ ରୁଗ୍ଣ ପିଲକୁ ଅନାଇଁ ଟିକିଏ ହସିଦେଲେ । ଦୁର୍ବଳ ହୋଇ ପଡ଼ିଥିବା ସେଇ ପିଲଟିର ଓଠରୁ ଜୀବନର ଅନ୍ତିମ ଦିବସରେ ମଧ୍ୟ ସ୍ମିତ ହାସ୍ୟ ଲହରୀଟିଏ ଅଳ୍ପ ସମୟ ପାଇଁ ବାହାରି ଆସିଥିଲା । କ'ଣ ଗୋଟିଏ ବଡ଼ ଅଘଟଣ ଘଟିବାକୁ ଯାଉଛି—ଏକଥା ବୁଝିପାରି ପିଲମାନଙ୍କ ଭିତରେ ଭୟ କାତରତା ଭରିରହିଥିଲା । ସ୍ୱାଭାବିକ ଭାବରେ ସାହାଯ୍ୟ ଓ ସୁରକ୍ଷା ପାଇଁ ପିଲମାନେ ବଡ଼ମାନଙ୍କୁ କୁଣ୍ଢାଇ ପକାଇଲେ ।

ସବୁ ଆଶାକୁ ନିରାଶ କରି ସେଇ ଦୁର୍ଦ୍ଦିନ ଆସି ଦ୍ୱାର ପାଖରେ ଉପନୀତ ହେଲା । ସବୁ ଗଳିକୁ ଜର୍ମାନ ସୈନ୍ୟମାନେ ଅବରୋଧ କରି ରହିଲେ । ଉକ୍ରାନିଆର ପୋଲିସ୍ 'ହୋମ୍'ରୁ ସବୁ ଦ୍ୱାରକୁ ଜଗିରହିଲେ । ଇହୁଦୀ ପୋଲିସ୍‌ମାନେ ଅନାଥାଶ୍ରମର ଅଗଣାରେ ପ୍ରବେଶ କଲେ । ହ୍ୱିସିଲ୍‌ର ଆତଙ୍କନାଦ ଶିହରିଉଠିଲା । ନିର୍ଦ୍ଦେଶ ହେଲା—ଆଲେ ଫୁଡ଼େ ର୍‌ର୍‌ ରଉସ୍ । ଅର୍ଥାତ୍ ସମସ୍ତେ ବାହାରିଆସ ।

ସୁଦକ୍ଷା ମାତୃସମ ଦିଦୀ ଷ୍ଟିଫା ପରିସ୍ଥିତିକୁ ସମ୍ଭାଳିନେଲେ । ଜଳଖିଆ ଖାଇବାକୁ ରୁଣ୍ଡ ହୋଇଥିବା ସବୁ ପିଲଙ୍କୁ ସେମାନଙ୍କର ନିତିଦିନିଆ କାର୍ଯ୍ୟକ୍ରମକୁ

ବାହାର କରି ସେ ଅନ୍ୟ ଆଡ଼କୁ ନେଇଗଲେ । କିନ୍ତୁ ସେମାନେ ସେମାନଙ୍କର ଶୃଙ୍ଖଳାବୋଧକୁ ହରାଇନଥିଲେ । ସେମାନେ ପାହାଚରେ ତଳ ଅଗଣାକୁ ଓହ୍ଲାଇ ଆସିଲେ । ପାଞ୍ଚ ଧାଡ଼ିରେ ସଜାଇ ହୋଇ ଠିଆହେଲେ । ନର୍ସ ଦେବୀ ଷ୍ଟିଫା ଓ ବଡ଼ଗ୍ରୁପ ଡାକ୍ତର ଅଗଣାକୁ ଓହ୍ଲାଇ ଆସିଲେ । ହାତରେ ଥିଲା ତାଙ୍କର ଅନାଥାଶ୍ରମ 'ହୋମ୍'ର ନୂଆ ସବୁଜ ବ୍ୟାନର ।

## (୩୭) ଅନ୍ତିମ ଯାତ୍ରା

ସେଦିନ ଅନ୍ତିମ ଦିବସ । ଦୁଇଶହ ପିଲା ପ୍ୟାରେଡ୍ କରି ଚାଲିଥାନ୍ତି । ସବା ଆଗରେ ଥା'ନ୍ତି ନର୍ସ ଡାକ୍ତରବାବୁ । ହାତରେ ତାଙ୍କର ଅନାଥାଶ୍ରମର ପତାକା । ପ୍ରଚଣ୍ଡ ଖରା ତେଜରେ ପତାକାର ଜ୍ୟୋତି ଫୁଟି ବାହାରୁଥାଏ ।

କିନ୍ତୁ, ଏ ଯାତ୍ରା କେଉଁଆଡ଼କୁ ! ଏହି ଯାତ୍ରାର ଅନ୍ତିମ ପରିଣାମ ଯେ ମୃତ୍ୟୁ ଏକଥା ଦେଖଣାହାରିମାନେ ବିଶ୍ୱାସ କରିବା ପାଇଁ ପ୍ରସ୍ତୁତ ନଥିଲେ ।

ଯାତ୍ରାର ମର୍ମନ୍ତୁଦ ଉଦ୍ଦେଶ୍ୟ ସମ୍ବନ୍ଧରେ ଡାକ୍ତରବାବୁ ଜାଣିଥିଲେ । ଦେବୀ ଷ୍ଟିଫା ଉଇଲକ୍‌ନସ୍କାଙ୍କୁ ବି ଅଜ୍ଞାତ ନଥିଲା ଯାତ୍ରାର ଉଦ୍ଦେଶ୍ୟ । ଏମିତି ଭୟାବହ ପରିଣାମ ବିଷୟରେ ସମ୍ପୂର୍ଣ୍ଣ ଅବଗତ ଥାଇ ବି ସେ ପିଲାମାନଙ୍କୁ ଠିକ୍ ଭାବରେ ସଜାଡ଼ି ନେଇଥିଲେ । ଅନାଥାଶ୍ରମର ସବୁଠାରୁ ଭଲ ପୋଷାକ ଓ ଜୋତା ସେଦିନ ପିଲାମାନେ ପିନ୍ଧିଥିଲେ । ସବୁଦିନ ପରି ସେଦିନ ବି ସେମାନଙ୍କର ମୁଣ୍ଡବାଳଗୁଡ଼ିକ ପରିଷ୍କାର ପରିଚ୍ଛନ୍ନ ଥିଲା ।

ସେଦିନର ଖରା ତେଜ ଅସହ୍ୟ ଥିଲା । ତା' ସାଙ୍ଗକୁ ପିଲାମାନେ ଅନେକ ଦିନ ହେଲା ଭଲକରି ଗଣ୍ଡେ ଖାଇବାକୁ ପାଇନଥିଲେ । ଦୁର୍ବଳ ଦେହ, ଯନ୍ତ୍ରଣା-ଦାୟକ ପ୍ରଚଣ୍ଡ ଖରା ଏବଂ ତା ସାଙ୍ଗକୁ ପ୍ୟାରେଡ୍ । କୌଣସି ପରିସ୍ଥିତିରେ ବି ଏ ଅବସ୍ଥା ଭିତରେ ପିଲାଙ୍କ ମୁହଁରେ ଟିକେ ହସ ଫୁଟାଇବା ଅତ୍ୟନ୍ତ ଦୁରୂହ ମନେହେଉଥିଲା । ଅନେକ ସାହସ ଓ ପ୍ରତିଜ୍ଞାବଦ୍ଧତାକୁ ଠୁଳ କରି ଏହି ଅନ୍ତିମ ଯାତ୍ରା ଆରମ୍ଭ କରାଯାଇଥିଲା । ମାତ୍ର କୁନି କୁନି ପିଲାମାନେ ଅଧିକ ସମୟ ଏ ପ୍ରତିଜ୍ଞା ଭିତରେ ସଜାଳ ହୋଇ ରହିପାରି ନଥିଲେ । ସେମାନେ ଅଳ୍ପକେ କ୍ଳାନ୍ତ ହୋଇ-ପଡ଼ିଲେ । ସେମାନଙ୍କ ପାଦ ଶିଥିଳ ହୋଇପଡ଼ିଲା । ସେମାନେ ମଝିରେ ମଝିରେ ଅଟକି ଯାଉଥିଲେ । ମାତ୍ର ପଛରୁ ହୁଇସିଲ୍‌ର ଦାରୁଣ ସଙ୍କେତ ଓ ବନ୍ଧୁକ ନଳୀରୁ ଗୁଳିର ଆବାଜ ସେମାନଙ୍କୁ ଆଗକୁ ପାଦ ପକାଇବାକୁ ବାଧ୍ୟ କରୁଥିଲା । କୁନି

ପିଲମାନେ ତଥାପି ବୁଝିପାର ନଥିଲେ ଏ ପ୍ୟାରେଡ଼୍‌ର ପ୍ରକୃତ ଉଦ୍ଦେଶ୍ୟ କ'ଣ । ମାତ୍ର ବଡ଼ ପିଲମାନେ ବୁଝିପାରଥିଲେ । ସେମାନଙ୍କ ଅନ୍ତିମ ଭାଗ୍ୟ ସମ୍ବନ୍ଧରେ । ଅନାଥାଶ୍ରମରୁ ବାହାରିଲାବେଳେ ସେମାନେ ଏହାର ଆଭାସ ପାଇ ସାରଥିଲେ । ଏହି ଯାତ୍ରା ଭିତରେ ସେମାନେ ନିଶ୍ଚିତ ହୋଇଯାଇଥିଲେ ଯେ ଏ ଯାତ୍ରା ବଣଭୋଜି ପାଇଁ ନୁହେଁ, ଏ ଯାତ୍ରା ସେମାନଙ୍କ ଅନାଥାଶ୍ରମର କାର୍ଯ୍ୟକ୍ରମ ତଥା ନିୟନ୍ତ୍ରଣ ବାହାରେ ।

ଅପରାହ୍ଣର ଶେଷ ପର୍ଯ୍ୟାୟ । ଝଗ୍ସ ମଇଲ ଆସିଲା । ପତାକା ଭିତରୁ ବିଚ୍ଛୁରିତ ହେଉଥିବା ପ୍ରେରଣାର ପ୍ରଭା ନିଷ୍ପ୍ରଭ ଜଣାପଡ଼ିଲା । ତଥାପି ପ୍ୟାରେଡ଼୍‌ର କ୍ଳାନ୍ତ ପଦଧ୍ୱନି ପ୍ରତିଧ୍ୱନିତ ହେଉଥିଲା । ଦୁଇଶହ ପିଲାଙ୍କ ଭିତରେ ଆଶଙ୍କା ଅଧିକରୁ ଅଧିକ ଘନୀଭୂତ ହେବାରେ ଲାଗିଥିଲା ।

ଡାକ୍ତରବାବୁ ଛୋଟ ଛୋଟ ପିଲମାନଙ୍କୁ କାଖେଇ କୋଳେଇ ଆଶ୍ୱାସନା ଦେବାକୁ ଲାଗିଲେ । ରୋମାସିଆ ଷ୍ଟକ୍‌ମ୍ୟାନ୍ ପାଞ୍ଚବର୍ଷର ଛୋଟ ଝିଅଟିଏ । ସେ ଡାକ୍ତରବାବୁଙ୍କର ନାତୁଣୀ । କାରଣ ରୋମାସିଆର ବାପା ମା' ଥିଲେ ଡାକ୍ତରବାବୁଙ୍କର ପୁରୁଣା ଛାତ୍ର-ଛାତ୍ରୀ । ଅନାଥାଶ୍ରମରେ ସେମାନେ ଶିକ୍ଷକତା କରୁଥିଲେ । ୧୯୩୯ ମସିହାରୁ ରୋମାସିଆର ବାପା ନିମୋନିଆରେ ଚାଲିଗଲେ ।

ଛୋଟ ଝିଅଟି ଶେଷରେ ଆଉଟୁପାଉଟୁ ହୋଇ କାନ୍ଦିଉଠିଲା । ଡାକ୍ତରବାବୁ ତାକୁ କୋଳକୁ ଉଠାଇନେଲେ । ରୋମାସିଆ ଡାକ୍ତରବାବୁଙ୍କୁ ପଚାରିଲା—ଡାକ୍ତର ଅଜା, ମୋ ଡଲ (କଣ୍ଢେଇ) କାହିଁ ?

ଡାକ୍ତରବାବୁ ଠକିଦେଲେ । କହିଲେ, ସେମାନେ ପରେ ପଠାଇଦେବେ ।

ରୋମାସିଆ—ଡାକ୍ତର ଅଜା, ମାମା କଅଣ ମୋ ଡଲକୁ ନେଇଆସିବେ ?

ଡାକ୍ତରବାବୁ—ହଁ ରୋମି, ତୋ ଡଲକୁ ତୋ ମାମା ନେଇଆସିବେ ।

ରୋମାସିଆ—ମୁଁ ମୋ ଡଲକୁ କୁଣ୍ଢେଇ ଶୋଇବି ।

ଡାକ୍ତରବାବୁ—ହଁ ରୋମି, ତୁ ଡଲକୁ କୁଣ୍ଢେଇ ଶୋଇବୁ । ବହୁତ ଆରାମରେ ଶୋଇପଡ଼ିବୁ । ଶୋଇବା ଭିତରେ ତୋ ବାବା ବିଷୟରେ ଅନେକ ସୁନ୍ଦର ସୁନ୍ଦର ସ୍ୱପ୍ନ ଦେଖିବୁ ।

ରୋମାସିଆ ଭଳି ଅନେକ ଛୋଟ ଛୋଟ ପିଲାଙ୍କୁ ଡାକ୍ତରବାବୁ ଭରସା ଓ ସାନ୍ତ୍ୱନା ଦେବାକୁ ଚେଷ୍ଟାକଲେ । ହେଲେ ବଡ଼ ପିଲମାନଙ୍କୁ କ'ଣ କହି ସାନ୍ତ୍ୱନା ଦେଇ-ଥା'ନ୍ତେ ଯେ ! ସେମାନେ ସବୁକଥା ଠିକ୍ ବୁଝିପାରୁଥିଲେ ।

ଯାତ୍ରା ଆରମ୍ଭବେଳେ ଡାକ୍ତରବାବୁ ପିଲାମାନଙ୍କୁ ମିଛ କହିଥିଲେ । ସେ କହିଥିଲେ, ଖୁସିମଜା କରିବାପାଇଁ ସେମାନେ ଏକ ଲମ୍ବା ଯାତ୍ରାରେ ଯାଉଛନ୍ତି । ଛୋଟ ପିଲାମାନେ ଡାକ୍ତରବାବୁଙ୍କ ଏ ମିଥ୍ୟା ପ୍ରତିଶ୍ରୁତିକୁ ସତ ବୋଲି ମାନି ନେଇଥିଲେ । ସେମାନେ ଅତି ସରଳ ଭାବରେ ଡାକ୍ତରବାବୁଙ୍କୁ ବିଶ୍ବାସ କରିଯାଇଥିଲେ । ମାତ୍ର ବଡ଼ ପିଲାମାନେ କଥାଟାର ଅର୍ଥ ବୁଝିପାରିଥିଲେ । କାରଣ ବସ୍ତିରୁ ଜର୍ମାନ ରକ୍ଷୀମାନଙ୍କ ଦ୍ୱାରା ସେମାନଙ୍କୁ ଯେଭଳି ଜବରଦସ୍ତି ବାହାର କରାଗଲା, ସେଥିରୁ ଯାତ୍ରାର ଅସଲ ଲକ୍ଷ୍ୟ ବଡ଼ ପିଲାଙ୍କ ପାଇଁ ଅବୁଝା ହୋଇ ରହିନଥିଲା । ସେମାନେ ଠଉରେଇ ନେଇଥିଲେ ସେମାନଙ୍କର ଭାଗ୍ୟ କ'ଣ ଓ ଯାତ୍ରାର ଶେଷ କେଉଁଠି ।

ଡାକ୍ତରବାବୁ ପ୍ରାଣପଣେ ଚେଷ୍ଟା କରୁଥିଲେ, ଯେତେଦୂର ସମ୍ଭବ ପିଲାମାନଙ୍କୁ ପ୍ରକୃତ ସତ୍ୟଠାରୁ ଦୂରରେ ରଖିବେ । ସେମାନେ ଆଉ ଏକ ଭଲ ଜାଗାରେ ରହିବା ପାଇଁ ଯାଉଛନ୍ତି—ଏହିଭଳି ଏକ ଭ୍ରାନ୍ତ ଧାରଣା ଦେଇ କାରୁଣ୍ୟ ମାନସିକତାର ଊର୍ଦ୍ଧ୍ୱକୁ ପିଲାମାନଙ୍କୁ ନେଇଯିବା ପାଇଁ ସେ ଅବିରତ ଉଦ୍ୟମ କରିଚାଲିଥିଲେ ।

ଅନାଥାଶ୍ରମର କର୍ମଚାରୀମାନେ ଏବଂ ବିଶେଷକରି ମାତୃସମ ଦିଦୀ ଷ୍ଟିଫା ଓ୍ବିଲ୍ କ୍ୟାନ୍ଜା ପିଲାମାନଙ୍କ ମନରୁ ଭୟ କମାଇବା ପାଇଁ ବଡ଼ ପିଲାମାନଙ୍କୁ ଗୀତ ଗାଇବାକୁ ଉତ୍ସୁକାଇଲେ । ଜଣେ ସେଇ ଗୀତଟିକୁ ମନେପକାଇଦେଲେ, ଯେଉଁ ଗୀତଟିକୁ ସେମାନେ କିଛିବର୍ଷ ତଳେ ଡାକ୍ତରବାବୁଙ୍କ ନେତୃତ୍ୱରେ ଗାଁ ଭିତରକୁ ବୁଲିଲାବେଳେ ଗାଇଥିଲେ ।

ସେଇ ଗୀତର ମର୍ମ ହେଲା— ଆମେ ଯାଉଛୁ ଗାଧୋଇବା ପାଇଁ
ଆମେ ଯାଉଛୁ ପହଁରିବା ପାଇଁ
ପରିଷ୍କାର ହୋଇ ଆମେ ଫେରିବୁ
ହସ ଖୁସିରେ ମନ ଭରିବୁ ।

କିନ୍ତୁ ଗୀତଗାଇବା ବେଶି ସମୟ ଚାଲିପାରିଲା ନାହିଁ । ପ୍ୟାରେଡ଼ ଶେଷ ହୋଇ ଆସିଲାବେଳକୁ ପିଲାମାନେ ଗୋଟିଏ ଗୋଟିଏ ଭୂତ ଭଳି ଦିଶୁଥିଲେ । ଧୂଳି ଧୂସର ହୋଇ ସମସ୍ତଙ୍କର ମୁଖମଣ୍ଡଳ ନିଷ୍ପ୍ରଭ ହୋଇପଡ଼ିଥିଲା । ଶେଷ କେତେ ଫୁଟର ଯାତ୍ରା ଅତ୍ୟନ୍ତ ମର୍ମନ୍ତୁଦ । ଭାଷାରେ ବର୍ଣ୍ଣନା କରିବା କଷ୍ଟକର । ସେତେବେଳକୁ ଅଧିକାଂଶ ପିଲା ଜାଣିଯାଇଥିଲେ ସେମାନଙ୍କର ଭାଗ୍ୟର ଅନ୍ତିମ ପରିଣତି । ସେମାନେ ଅନୁଭବ କରିପାରୁଥିଲେ ମୃତ୍ୟୁର ତାଣ୍ଡବ ପ୍ରତିଧ୍ୱନି, ପ୍ରତି ମୁହୂର୍ତ୍ତିରେ ଶୁଭୁଥିଲା ମୃତ୍ୟୁର ସତର୍କ ଘଣ୍ଟି ।

ବସ୍ତିର ପରିବେଶରେ ଅତ୍ୟାଚାର ଥିଲା । ସେଠାରେ ଯନ୍ତ୍ରଣା ଭରିରହିଥିଲା । କିନ୍ତୁ ସେଠିକାର ଜୀବନ ଏ ଯାତ୍ରାର ଜୀବନ ଅପେକ୍ଷା ଶହେ ଗୁଣରେ ଭଲ ଥିଲା । ବସ୍ତି ହିଁ ଏଇ ପିଲାମାନଙ୍କ ପାଇଁ ନିଜ ଘର । ଅଧିକାଂଶଙ୍କ ପାଇଁ ବସ୍ତି ଛଡ଼ା ରହିବାପାଇଁ ଆଉ କିଛି ଜାଗା ନଥିଲା ।

ଯାତ୍ରାର ଶେଷ ଦୃଶ୍ୟ ଅତ୍ୟନ୍ତ କରୁଣ ଓ ହୃଦୟବିଦାରକ ଥିଲା । ଶେଷ-ବେଳକୁ ଅନେକ ପିଲା ପାଗଳପ୍ରାୟ ହୋଇଗଲେ । ସେମାନଙ୍କର ଶେଷ ଆଶା ଭରସା ଥିଲେ ଡାକ୍ତରବାବୁ । ଡାକ୍ତର ଜାନୁସ୍ କୋର୍ଜାକ୍ । ପିଲାମାନେ ଡାକ୍ତର-ବାବୁଙ୍କ ଜାବୁଡ଼ି ଧରିବାକୁ ଲାଗିଲେ । ହତାଶାର ଚରମ ବେଦନାରେ ଉବୁଟୁବୁ ହୋଇପଡ଼ିଥିଲେ ସେମାନେ । ପିଲାମାନଙ୍କ ପାଖରେ ଛିଡ଼ାହେବା ଛଡ଼ା ଡାକ୍ତରବାବୁ ଆଉ ଅବା କଅଣ କରିପାରିଥାଆନ୍ତେ ? ସେମାନଙ୍କର ଦୁର୍ବଳ କାନ୍ଧଗୁଡ଼ିକୁ ଥାପୁ-ଡେଇ ନୀରବରେ ଆଶ୍ୱାସନା ଦେବାଛଡ଼ା ତାଙ୍କ ପାଖରେ ଆଉ କୌଣସି ଉପାୟ ନଥିଲା । ସମସ୍ତେ ତୃଷାର୍ତ୍ତ । ମାତ୍ର କପେ ପାଣି ଦେବାପାଇଁ ସେ ଥିଲେ ଅକ୍ଷମ । କେବଳ ସେମାନଙ୍କ ଗହଣରେ ଛିଡ଼ାହେବା ଦ୍ୱାରା ଯେଉଁ ଭରସା ଓ ସାହସ ମିଳିଥିବ, ସେତିକ ହିଁ ଡାକ୍ତରବାବୁ ଦେଇପାରିଥିଲେ ।

ଏହି ଜଘନ୍ୟ ଓ ବେଦନାପୂର୍ଣ୍ଣ ପରିବେଶ ଭିତରେ ଡାକ୍ତରବାବୁଙ୍କ ଆଖିରୁ ଲୁହ ଝରିନଥିଲା । ଅସୀମ ଧୈର୍ଯ୍ୟର ରୁଦ୍ଧଦ୍ୱାରକୁ ଭେଦି ନୟନରୁ ଲୁହ ବାହାରି ପାରିନଥିଲା । ଡାକ୍ତରବାବୁ ଡରୁଥିଲେ କାଳେ ସେ ଏ ଘଟଣାକୁ ସହିନପାରି କାନ୍ଦି-ପକାଇବେ । ତାଙ୍କର ଗୋଲାପୀ ନୟନଗୁଡ଼ିକ ଶୁଖିଯାଇଥିଲା । ସେ ତାଙ୍କ କର୍ତ୍ତବ୍ୟରୁ ନିଜକୁ ଟିକେହେଲେ ବିଚ୍ୟୁତ କରିନଥିଲେ । ଭରସା ଓ ବିଶ୍ୱାସ ଯୋଗାଇ ସେ ତାଙ୍କ ପିଲାମାନଙ୍କୁ ଯାତ୍ରାର ଶେଷ ପର୍ଯ୍ୟାୟକୁ ନେଇଯିବାପାଇଁ ଉଦ୍ୟମରତ ଥିଲେ । ପ୍ରକୃତ ଅର୍ଥରେ କହିବାକୁ ଗଲେ ସେ ଥିଲେ ଏହି ଅନାଥ ପିଲାମାନଙ୍କର ପ୍ରକୃତ ବାପା, ଯିଏକି ପିଲାମାନଙ୍କ ପାଇଁ ନିଷ୍ଠାର ସହ ନିଜ ଜୀବନଟି ବଞ୍ଚିଥିଲେ ।

ସେମାନେ ଉମସ୍ଚ୍ଲାଗ୍ପ୍ଲାଜ୍‌ର ମଧ୍ୟଭାଗରେ ପହଞ୍ଚିଗଲେ । ସେତେବେଳକୁ ଟ୍ରକ୍‌ର କବାଟଗୁଡ଼ିକ ମେଲା ହୋଇ ରହିଥିଲେ । ଏହି ଟ୍ରକ୍‌ର ପେଟ ଭିତରକୁ ପିଲାମାନଙ୍କୁ ଠେଲିଦିଆଯିବ । ଏତିକିବେଳେ ଡାକ୍ତର କୋର୍ଜାକ୍‌ଙ୍କୁ ଟିକେ ଆଡୁଆଳକୁ ଡାକି ନିଆଗଲା ।

ଏହି ବର୍ବରୋଚିତ, ଅମାନୁଷିକ ତଥା ପାଶବିକ ହୃଦୟବିଦାରକ ବାତାବରଣ ଭିତରେ ଜର୍ମାନରକ୍ଷୀମାନେ ଡାକ୍ତରବାବୁଙ୍କୁ ତାଙ୍କର ଜୀବନ ଯାଚିଲେ । ପିଲାମାନଙ୍କୁ ଛାଡ଼ି ସେ ଚାଲିଯାଆନ୍ତୁ ବୋଲି ଅନୁରୋଧ କଲେ । ଜର୍ମାନ ରକ୍ଷୀମାନେ ଜାଣିଥିଲେ

ଯେ ଡାକ୍ତରବାବୁଙ୍କ ହତ୍ୟାରେ ବିଭିନ୍ନ କୋଣରୁ ପ୍ରତିକ୍ରିୟାମାନ ପ୍ରକାଶ ପାଇବ, ଯାହାକି ପରେ ଜର୍ମାନୀକୁ ଅଡୁଆରେ ପକାଇବ । ତା'ଛଡ଼ା ଏଭଳି ଜଣେ ନିଷ୍ଠାପର ଡାକ୍ତରଙ୍କୁ ପାଇ ସେମାନେ ଅନ୍ୟ କାମରେ ଲଗାଇପାରିବେ ।

ଡାକ୍ତରବାବୁ ଭଲ ଭାବରେ ଜାଣିଥିଲେ ଯେ ନାଜିମାନଙ୍କ କଥା ପାଣିର ଗାର । ସେମାନଙ୍କୁ ଆଦୌ ବିଶ୍ୱାସ କରାଯାଇନପାରେ । ସେମାନେ ତାଙ୍କୁ ଅଳ୍ପ କିଛିଦିନ ପାଇଁ ଛାଡ଼ିଦେଇପାରନ୍ତି; ମାତ୍ର ସବୁଦିନ ପାଇଁ ନୁହେଁ । କିନ୍ତୁ ଏହି କଥାକୁ ବିଚାରକରି ଯେ ସେ ଜର୍ମାନୀମାନଙ୍କର ଅଯାଚିତ ଦାନକୁ ପ୍ରତ୍ୟାଖ୍ୟାନ କରିଥିଲେ, ତାହା ନୁହେଁ । ନିଜର ଏଇ ପିଲାମାନଙ୍କ ପାଇଁ କର୍ତ୍ତବ୍ୟର ନିଷ୍ଠା ଓ ଶପଥର ଦୃଢ଼ତା ତାଙ୍କ ଆଗରେ ଥିଲା ସବୁଠାରୁ ମୂଲ୍ୟବାନ୍ ।

ମୃତ୍ୟୁର ଦ୍ୱାରଦେଶରେ ଜୀବନ ପାଇଁ ମୁକ୍ତ ପଥଟିଏ ମିଳୁଥିଲାବେଳେ ସେ ଜୀବନକୁ ପ୍ରତ୍ୟାଖ୍ୟାନ କରିଥିଲେ । ଏପରି ଭାବରେ ମୃତ୍ୟୁକୁ ଗ୍ରହଣ କରିନେବା ପଛରେ କି ପ୍ରକାରର ସାହସୀ ମାନସିକତା ରହିଛି ତାହା ଭାବିବା କଥା । ଦ୍ୱିତୀୟ ବିଶ୍ୱଯୁଦ୍ଧର ତାଣ୍ଡବଲୀଳା ଚାଲିଥିବାବେଳେ ଅନେକ ପୁରୁଷ ଓ ମହିଳା ମୃତ୍ୟୁ ଓ ଜୀବନର ଦ୍ୱନ୍ଦ୍ୱ ଭିତରେ ଜୀବନକୁ ଆବୋରି ନେଇଥିବାର ଉଦାହରଣମାନ ଜଳଜଳ ହୋଇ ଦିଶୁଥିଲା । ଏଥିପାଇଁ ଅନେକ ହୃଦୟ ଓ ରକ୍ତର ସମ୍ପର୍କକୁ ଛିଣ୍ଡାଇଦେବା ପାଇଁ କୁଣ୍ଠାବୋଧ କରିନଥିଲେ । ପିତାମାତା ପିଲାଙ୍କୁ ଭୁଲିଯାଇଥିଲେ, ପୁଅଝିଅ ପିତାମାତାଙ୍କୁ ଭୁଲିଯାଇଥିଲେ । ପ୍ରେମିକ ପ୍ରେମିକାକୁ ଓ ପ୍ରେମିକା ପ୍ରେମିକକୁ ଭୁଲି-ଯାଇଥିଲେ ।

ୟୁରୋପର ନାଜି ଅଧିକୃତ ଅଞ୍ଚଳରେ ଏହା ଏକ ନିତିଦିନିଆ ଘଟଣା ହୋଇ-ପଡ଼ିଥିଲା ।

କିନ୍ତୁ ଆହୁରି ଅନେକ ସାହସୀ, ସତ୍ୟନିଷ୍ଠ ଥିଲେ, ଯେଉଁମାନେ ସ୍ରୋତ ବିରୋଧରେ ଛିଡ଼ା ହୋଇଥିଲେ । ଅତ୍ୟାଚାର, ମୃତ୍ୟୁ ଆଦି ସମସ୍ତଙ୍କୁ ସାମ୍ନାକରି ସେମାନେ ଦୃଢ଼ ଭାବରେ ଛିଡ଼ାହୋଇଥିଲେ, ପ୍ରେମ ପ୍ରତି ବିଶ୍ୱସ୍ତ ଥିଲେ ଏବଂ ସତ୍ୟକୁ ସମ୍ମାନ ଦେଉଥିଲେ । ଏହିମାନଙ୍କ ଭିତରୁ ଡାକ୍ତର ଜାନୁସ୍ କୋର୍ଚ୍ଚାକ ଥିଲେ ଅନ୍ୟତମ ।

୧୯୩୯ ମସିହାରେ ଯେତେବେଳେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହେଲା, ସେତେ-ବେଳେ ଜାନୁସ କୋର୍ଚ୍ଚାକଙ୍କ ପାଖକୁ ଅନେକ ନିରପେକ୍ଷ ଦେଶମାନଙ୍କରୁ ସେ ଦେଶ-ମାନଙ୍କୁ ଚାଲିଯିବାପାଇଁ ନିମନ୍ତ୍ରଣ ଆସିଥିଲା । କିନ୍ତୁ ବହୁତ ଆଗରୁ ଯେତେବେଳେ ସେ ପାଲେଷ୍ଟାଇନ୍ ଚାଲିଯିବାପାଇଁ ସ୍ଥିର କରିଥିଲେ, ଯେତେବେଳେ ସେ ତାଙ୍କ ଜୀବନର

ବ୍ରତ ଠିକ୍‌କରି ନେଇଥିଲେ । ସେ ଠିକ୍ କରିନେଇଥିଲେ ତାଙ୍କ ପିଲାଙ୍କ ସାଙ୍ଗରେ ରହିବେ । ଯେତେବେଳେ ବିପଦ ଆସି ତାଙ୍କ କବାଟରେ ଠକ୍‌ଠକ୍ କଲା, ସେତେ-ବେଳେ ମଧ୍ୟ ତାଙ୍କର ଦ୍ୱିଧା ନଥିଲା । ତାଙ୍କର କୌଣସି ବନ୍ଧୁ ତାଙ୍କୁ ତାଙ୍କ ଜୀବନ ରକ୍ଷାପାଇଁ ପ୍ରବର୍ତ୍ତାଇ ପାରିନଥିଲେ ।

ଯେଉଁ ବ୍ୟକ୍ତି ସତ୍ୟର ପୂଜାରୀ, ଯେଉଁ ବ୍ୟକ୍ତି ବ୍ରତର ପୂଜାରୀ, ସେ ଜର୍ମାନମାନେ ଦେଖାଉଥିବା ଲୋଭରେ ଆସକ୍ତ ହୋଇଯିବା ଏତେ ସହଜ ନୁହେଁ, ସେ ନୀରବରେ ମୃତ୍ୟୁକୁ ଆବୋରି ନେଲେ । ମାତ୍ର ସେ କାହିଁକି ଏହି ପଦକ୍ଷେପ ନେଲେ ତାହା ତାଙ୍କର ସମଗ୍ର ଜୀବନହିଁ ସ୍ପଷ୍ଟ ଭାବରେ ପ୍ରକାଶ କରୁଛି । ଅନେକ ବର୍ଷ ଆଗରୁ ସେ ସ୍ଥିର କରି-ସାରିଥିଲେ ଯେ ସେ ତାଙ୍କ ଏହି ପରିବାରକୁ ସ୍ନେହ ଓ ପ୍ରେମରୁ ବଞ୍ଚିତ କରିବେ ନାହିଁ ।

ଆଜିର ଏହି କଠିନ ମୁହୂର୍ତ୍ତରେ ସେ ବିନା ଦ୍ୱିଧାରେ ପିଲାମାନଙ୍କ ସାଙ୍ଗରେ ରହିଲେ । ୧୯୦୭ ମସିହାରେ ସେ ନିଜ ଜୀବନକୁ କେତେଜଣ ଇହୁଦୀ ବାପା-ମା ଛେଉଣ୍ଡ ଅନାଥ ପିଲାଙ୍କ ଉଦ୍ଦେଶ୍ୟରେ ଅର୍ପଣ କରିବେ ବୋଲି ଦୃଢ଼ ନିଷ୍ପତ୍ତି ନେଇ-ସାରିଥିଲେ । ଏଥିପାଇଁ ସେ ନିଜ ଜୀବନରୁ ସମସ୍ତ ଆରାମ, ବିଳାସବ୍ୟସନକୁ ପାଶୋରି ଦେଇଥିଲେ ।

ତାଙ୍କର ଜୀବନରେ ଉତ୍କର୍ଷତା ଦେଖାଇ । ଲେଖକ ହିସାବରେ ଉଚ୍ଚ ପ୍ରଶଂସା ପାଇ ସମାଜରେ ଆଦର୍ଶ ଭାବରେ, ପୂଜ୍ୟ ଭାବରେ ଦେଖାଯିବା ପାଇଁ ତାଙ୍କ ମନରେ ଲୋଭ ହୋଇନଥିଲା । ଧନ କମାଇ ସୁଖୀ ସଂସାରଟିଏ ଗଢ଼ିବାପାଇଁ ସେ ମନ ବଳାଇ ନଥିଲେ । ହୁଏତ ତାଙ୍କ ପାଇଁ ଏସବୁ ଆଦୌ ଅପହଞ୍ଚ ହୋଇନଥିଲା । ଜୀବନର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ସ୍ଥିର କରି ସେ ନୀରବ କର୍ତ୍ତବ୍ୟନିଷ୍ଠ ସାଧକ ଭାବରେ ବିନମ୍ର କର୍ମୀଟିଏ ହୋଇ ଏକ ସାହସୀ ଜୀବନ ବଞ୍ଚିବାକୁ ଲାଗିଲେ ।

ତାଙ୍କ ଆତ୍ମଜୀବନୀରେ ଶେଷଆଡ଼କୁ ସେ ଲେଖିଛନ୍ତି, "ଯେତେବେଳେ ଏଇ ଯୁଦ୍ଧର ଅବସାନ ଘଟିବ, ସେବେଳେ ଅନେକ ଆମ ମୁହଁକୁ ସିଧାସଳଖ ଅନେଇବାକୁ ସାହସ କରିବେ ନାହିଁ, କାରଣ ସେମାନେ ଆମ ମୁହଁରେ ଦେଖିବାକୁ ପାଇବେ ସେଇ ଅଡ଼ୁଆ ପ୍ରଶ୍ନ ଗୁଡ଼ିକ ।

ଯଥା—ତୁମେମାନେ ବଞ୍ଚିଛ କେମିତି ? ତୁମେମାନେ ବଞ୍ଚିବା ପାଇଁ କ'ଣ କେମିତି ଫାଇଦା ହାସଲ କରିଦେଲ ଯେ ! ଆମେ ଯେତେବେଳେ ଯୁଦ୍ଧ କରୁଥିଲୁ, ସେତେବେଳେ ତୁମେମାନେ କ'ଣ କରୁଥିଲ ? ଇତ୍ୟାଦି ଇତ୍ୟାଦି ।

ଇହୁଦୀମାନଙ୍କର ଉପରେ ଯେତକ ଯେତକ ଉତ୍ପୀଡ଼ନ ବଢ଼ୁଥିଲା ଏବଂ ସେମାନେ ଯେତକ ଯେତକ ଦୁଃଖ ଯନ୍ତ୍ରଣାରେ ପଡ଼ିବାକୁ ବାଧ୍ୟ ହେଉଥିଲେ, ସେତକ ସେତକ ଡାକ୍ତର ଜାନୁସ୍ କୋର୍ଚାକଙ୍କ ଭିତରେ ନର୍ଯ୍ୟାତିତ ଜାତିଟି ପ୍ରତି ଏକତ୍ୱର ସଂପର୍କଟି ଦୃଢ଼ୀଭୂତ ହୋଇଉଠୁଥିଲା । ତିରିଶ ବର୍ଷରୁ ଅଧିକ କାଳ ଧରି ଡାକ୍ତରବାବୁ ମୃତ୍ୟୁକୁ ପାଖେ ପାଖେ ଦେଖି ପାରୁଥିଲେ । ମାତ୍ର ଆଜ ସେ ନିଜ ତରଫରୁ, ଅନାଥାଶ୍ରମର ସହଯୋଗୀମାନଙ୍କ ତରଫରୁ ତଥା ନିଜ ପିଲାମାନଙ୍କ ତରଫରୁ ମୃତ୍ୟୁକୁ ଗ୍ରହଣ କରିନେଲେ ।

ହଠାତ୍ ଯେତେବେଳେ ମୃତ୍ୟୁର ଉନ୍ମୁକ୍ତ ମୁଖ ପାଖରୁ ତାଙ୍କୁ ଜୀବନ ନେଇ ଫେରିଯିବାକୁ ଅନୁରୋଧ କରାଗଲା, ସେତେବେଳେ ସେ ନେଇଥିବା ଶପଥ ପାଖରୁ ଆଉ ଫେରିଗଲେ ନାହିଁ ।

ଏଇ ହିଁ ସେଇ ସମାନ ମଣିଷ ଯିଏ ଦିନେ ଏକୁଟିଆ ୨-ଫ୍ରାନ୍‌ସିସ୍କାନସ୍କା ଗଳିରେ ଥିବା ଇହୁଦୀ ଅନାଥାଶ୍ରମର ଭୋଜନାଳୟ ପଛପାଖେ ଛିଡ଼ାହୋଇ ଶୁଣୁଥିଲେ ମାରିଆ କୋନୋପ୍‌ନିକାଙ୍କ ଆବୃତ୍ତି ସେଇ ପଦଟିକୁ ଯେଉଁଥିରେ ଥିଲା—"ତୁମେ ଯିଏ ଆଦର୍ଶ ପାଇଁ ହୋଇଗଲ ନିଃଶେଷ ତୁମପାଇଁ ଆମ୍ଭ ଗଢ଼ିବ ଆଉ ଯଶ ।"

ପରେ ଜଣେ ଆର୍ଯ୍ୟ ମହିଳା ତାଙ୍କୁ ବସ୍ତିରେ ସାକ୍ଷାତ କରିଥିଲେ ଓ ସେ ପିଲାଙ୍କ କୋର୍ଟରେ ବସିଥିବାବେଳେ ତାଙ୍କ ସହ କଥାବାର୍ତ୍ତା କରିଥିଲେ । ସେତେ-ବେଳେ ଡାକ୍ତରବାବୁ ସେହି ମହିଳାଙ୍କୁ ଧନ୍ୟବାଦ ଦେଇଥିଲେ, କାରଣ ସେ ତାଙ୍କୁ ତାଙ୍କ ପବିତ୍ର କର୍ମ କ୍ଷେତ୍ରରୁ ଓହରି ଆସିବା ପାଇଁ ପ୍ରବର୍ତ୍ତାଇ ନଥିଲେ ।

ସୃଜନଶୀଳ କାର୍ଯ୍ୟର ପ୍ରଥମ ପର୍ଯ୍ୟାୟରେ ଦିନେ ଗ୍ରୀଷ୍ମଛୁଟି ସମୟରେ ତାଙ୍କର ଦଳେ ପିଲାଙ୍କୁ ନେଇ ସେ ସନ୍ଧ୍ୟାବେଳେ ବୁଲିଯାଇଥିଲେ । ଅସ୍ତଗାମୀ ସୂର୍ଯ୍ୟଙ୍କର ସୁନେଲି ଆଭାରେ ସେ ମୋହିତ ହୋଇଗଲେ । କିଛିକ୍ଷଣ ଅଟକିଯାଇ ସେ ପ୍ରକୃତି ରାଣୀର ଏ ଅପୂର୍ବ ଦୃଶ୍ୟସମ୍ଭାରକୁ ପ୍ରଶଂସା କରିବାକୁ ଲାଗିଲେ । ଦେଶରେ ମୁକ୍ତ ଭାବରେ ବଞ୍ଚିବାପାଇଁ ଏଇ ଦିନଟି ଥିଲା ସେମାନଙ୍କର ଶେଷଦିନ । ପରଦିନ ସକାଳେ ଯେ ସେମାନେ ଆବର୍ଜନାଯୁକ୍ତ ସହରର ଅଗଣାରେ ରହିବେ, ସେକଥା ସେମାନଙ୍କର କଳ୍ପନାର ବାହାରେ ଥିଲା । ସେହିଦିନ ଡାକ୍ତରବାବୁ ପିଲାମାନଙ୍କୁ କହିଥିଲେ, "ବୋଧହୁଏ ଆମେ ଆଉ ଓ୍ୱାର୍ସୋକୁ ଫେରିବା ନାହିଁ ! ଆମେ ଦୁଇଧାଡ଼ି ହୋଇ ଆମ ପତାକାକୁ ଉଡ଼ାଇ ଗୀତ ଗାଇ ଏକ ଯୁଦ୍ଧଯାତ୍ରା ଆରମ୍ଭ କରନ୍ତେ କି !

ସେତେବେଳେ ପିଲାଟିଏ ଡାକ୍ତରବାବୁଙ୍କୁ ପଚାରିଲା—ଆମେ କେଉଁଆଡ଼େ ଯାତ୍ରା କରିବା ?

ଡାକ୍ତରବାବୁ କହିଲେ—ସୂର୍ଯ୍ୟ ପାଖକୁ ।

ଅନେକ ବର୍ଷ ପରେ ସେ ପରୀକାହାଣୀଟି ସତ୍ୟରେ ପରିଣତ ହୋଇଛି ।

ଆଜି ଜର୍ମାନମାନେ ମୃତ୍ୟୁର ଦ୍ୱାରଦେଶରେ ଛିଡ଼ାକରାଇ ଡାକ୍ତରବାବୁଙ୍କ ଜୀବନ ଯାଚିଛନ୍ତି ଯାହାକୁ ସେ ବିନା ଦ୍ୱିଧାରେ ପ୍ରତ୍ୟାଖ୍ୟାନ କରିଛନ୍ତି । ଏକ ସୁହୃତ୍ତ୍ୱର ଜୀବନ ବଞ୍ଚୁଥିବା ତଥା ଏକ ପ୍ରକୃତ ମଣିଷ ଭାବରେ ଡାକ୍ତର ଜାନୁସ୍ କୋର୍ଚ୍ଚାକ୍ଙ୍କର ସେହି ଉତ୍ତରଟି ସ୍ୱତଃସ୍ଫୂର୍ତ୍ତିଭାବରେ ନିସୃତ ହୋଇଥିଲା । କାରଣ ତାଙ୍କର ସୁଦୂରପ୍ରସାରୀ ଅନୁଭବ ଥିଲା ଯେ ଯଦି ମୋ ଉପସ୍ଥିତି ଦ୍ୱାରା ଗୋଟିଏ ପିଲାର ଭୟ ମୁହୂର୍ତ୍ତିକ ପାଇଁ ଦୂର ହୋଇପାରିବ, ତେବେ ମୋ ଜୀବନ ନିଃଶେଷ ହୋଇଯିବାରେ ମୂଲ୍ୟ ରହିଛି ।

ଆଜି ଏହି ମହାନ ବ୍ୟକ୍ତିତ୍ୱର ନେତୃତ୍ୱରେ ଦୁଇଶହ ଅନାଥ ଇହୁଦୀ ପିଲା ତାଙ୍କର ଅନ୍ତିମ ଅଭିଯାତ୍ରାରେ ଚାଲିଛନ୍ତି । ସେମାନେ ବାଟରେ ଥକିପଡ଼ିଛନ୍ତି, ସେମାନଙ୍କ ପାଦ ପଥରକୁ ଫାଟି ହୋଇଯାଇଛି, ତଥାପି ସେମାନେ ଆଗକୁ ଚାଲିଛନ୍ତି । ସେମାନେ ଚାଲିଛନ୍ତି, ସେମାନଙ୍କର ଜୀବନୀ ଶକ୍ତିକୁ ବିସର୍ଜନ କରିଦେବା ପାଇଁ, ଯାହାକି ସେମାନଙ୍କ ନିଜ ଇଚ୍ଛାରେ ନୁହେଁ, ବରଂ ଏକ ଅମାନୁଷିକ ବର୍ବରତାର ଦାରୁଣ କଷାଘାତରେ ।

ଅଭିଯାତ୍ରାର ପୁରୋଭାଗରେ ଥିଲା ଅନାଥାଶ୍ରମର ସବୁଠାରୁ ବୟସ୍କ ପିଲାଟି । ସେ ଧରିଥିଲା ଆଶ୍ରମର ପତାକା, ଯେଉଁ ପତାକାରେ ରହିଥିଲା ଡାଭିଡ୍ଙ୍କର ସମ୍ମାନସୂଚକ ତାରାଚିହ୍ନ ଏବଂ ଚେଷ୍ଟନଟ୍ (ପିଙ୍ଗଳବର୍ଣ୍ଣର ଏକ ଫଳ) ବୃକ୍ଷଗଛର ସଂକେତ । ଯାତ୍ରା ସମୟରେ କେତେଜଣ ପିଲା ସେମାନଙ୍କର ଅଭିଯାନ ଗୀତ ଗାଇବାକୁ ଆରମ୍ଭ କରିଦେଲେ; ମାତ୍ର ଅଳ୍ପ କେଇ ମିନିଟ୍ ଭିତରେ ଗୀତ ଗାଇବା ବନ୍ଦ ହୋଇଗଲା ।

ସେମାନେ ସେମାନଙ୍କର ଏହି ଯାତ୍ରାରେ ଅତିକ୍ରମ କଲେ ଗୋଲ ଗୋଥାନ ରାସ୍ତା, ସେମାନଙ୍କର ନିଜ ସହର ରାସ୍ତା ଓ ଗଳିକନ୍ଦି । ତା'ଛଡ଼ା ସେମାନେ ଅତିକ୍ରମ କଲେ ଜୀବନ ଓ ମୃତ୍ୟୁର ସୀମା, ଶାଶ୍ୱତ ସତ୍ୟଠାରୁ କାଳକୁ ବିଚ୍ଛେଦ କରୁଥିବା ସରଳରେଖା ।

ଡାକ୍ତର ଜାନୁସ୍ କୋର୍ଚ୍ଚାକଙ୍କ ସାଙ୍ଗରେ ତାଙ୍କର ଦୁଇଶହ ପିଲା, ଆଶ୍ରମର ସମସ୍ତ କର୍ମଚାରୀ ଏହି ଅନ୍ତିମ ଯାତ୍ରାର ଅନ୍ତିମ ଦ୍ୱାରରେ ଉପନୀତ ହେଲେ । ଡାକ୍ତରଙ୍କ ସାଥିରେ ଯେଉଁ ସହଯୋଗୀମାନେ ଥିଲେ ସେମାନେ ହେଲେ, ଦିଦୀ ଷ୍ଟିଫେନିଆ ଉଇଲ୍‌କ୍ୟାନ୍‌ସ୍କା, ବୃଦ୍ଧ ହେନ୍ରିକ୍ ଆଷ୍ଟର୍‌ବ୍ଲମ୍, ଅନାଥାଶ୍ରମ 'ହୋମ୍'ର ପୁସ୍ତକ ତତ୍ତ୍ୱାବଧାରକ, ଫେଲେକ୍ ଗ୍ରେଡ୍‌ବ, ନାସିଆ ପୋଜ୍, ରୋଜା ସ୍ତୋକ୍‌ମାନ୍,

ସ୍ତେମାସିଆର ମା' ସାବନା ଲେକେଗ୍ରେଓ୍ବିଦ୍, ଦୋର୍କା ସୋଲୋନକା, ଶ୍ୱାସରୋଗୀ ହାନେକ୍ଜା ଏବଂ ନମୋନିଆରେ ପୀଡ଼ିତ ଥିବା ଜୁଲେକ୍ । ଏହାଛଡ଼ା ଏଥିରେ ଥିଲା ଆବ୍ରାଜା ସିଏକ ଅଳ୍ପ ସମୟ ଆଗରୁ 'ହୋମ୍'ରେ ଅଭିନୀତ ହୋଇଥିବା ରବିନ୍ଦ୍ରନାଥଙ୍କ ନାଟକ 'ଡାକ'ରେ ମରିବାକୁ ଯାଉଥିବା ଜଣେ ଭାରତୀୟ ବାଳକର ଭୂମିକା ବହୁତ ସୁନ୍ଦର ଭାବରେ ଫୁଟାଇ ପାରିଥିଲା ।

ଏହି ଅଭିଯାତ୍ରାରେ ଭରିରହିଥିଲା ଭୟ, ବଭୀଷିକା ଓ ହତାଶା । ଏଇଠି ବି ରହିଥିଲା ବିରଳ ମହାନୁଭବତା, ସାହସ, ସମ୍ମାନବୋଧ ଓ ଗୌରବବୋଧ ସେମାନେ ଡାକ୍ତରଙ୍କ ତାରକାସଂକେତ ଥିବା ସବୁଜ ପତାକା ତଳେ ଚିରଦିନ ପାଇଁ ଅମରଯାତ୍ରା କରିଥିଲେ । କାଳଜୟୀ ମହାମାନବ, ସତ୍ୟ ଓ ଶପଥର ପୂଜାରୀ ଡାକ୍ତର ଜାନୁସ୍ କୋର୍ଚାକଙ୍କର ସାହସଦ୍ୱାରା ଏହି ଅଭିଯାତ୍ରା ମୃତ୍ୟୁଞ୍ଜୟୀ ହୋଇ ରହିଥିଲା ।

